କବି ହଳଧର ଦାସଙ୍କ ବିରଚିତ

# ଅଧ୍ୟାତ୍ମ ରାମାୟଣ

ଶ୍ରୀ କାଶୀନାଥ ଦାଶଙ୍କ ଦ୍ୱାରା

ସମ୍ପାଦିତ

* ପ୍ରଥମ ସଂସ୍କରଣ *



ପ୍ରକାଶକ

ଶ୍ରୀରାଧାରମଣ ପୁସ୍ତକାଳୟ

ବାଲୁବଜାର, କଟକ—୨

୧୯୬୨

ମୂଲ୍ୟ [illegible] ଟଙ୍କା

# ଭୂମିକା

ଅଦି କାବ୍ୟ ରାମାୟଣରେ ମହର୍ଷି ବାଲ୍ମୀକି ମହାମାନବ ରାମଚନ୍ଦ୍ରଙ୍କ ଜୀବନଚରିତ ଆଲୋଚନା କରି ସେଥିରେ ମାନବ ଜୀବନର ଉତ୍ଥାନ ପତନ ଦୋଷଗୁଣ ବିଶେଷ ଭାବରେ ଆଲୋଚନା କରିଛନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ରଚିତ ଅଧ୍ୟାତ୍ମରାମାୟଣରେ କବି ରାମଚନ୍ଦ୍ରଙ୍କୁ ଏକ ଅବତାର ରୂପେ କଳ୍ପନା କରି ପ୍ରତ୍ୟେକ ସ୍ଥଳରେ ତାଙ୍କ କାର୍ଯ୍ୟରେ ଅତି-ମାନୁଷତ୍ୱ ଆରୋପ କରିଛନ୍ତି ଏବଂ ସାଧାରଣ ଜୀବନର ଉତ୍ଥାନ ପତନ ଓ ଗୁଣଦୋଷ ଗୁଡ଼ିକୁ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଚାର କରି ରାମାୟଣର କଥାବସ୍ତୁକୁ ପରଂବ୍ରହ୍ମ ପରମାତ୍ମାଙ୍କର ଗୁଣାନୁକୀର୍ତ୍ତନ ଗ୍ରନ୍ଥ ରୂପେ ପ୍ରତିପାଦନ କରିବାରେ ସମର୍ଥ ହୋଇଛନ୍ତି । ଏହାଦ୍ୱାରା ଅଧ୍ୟାତ୍ମରାମାୟଣ ଗ୍ରନ୍ଥ ଜନ-ସାଧାରଣଙ୍କର ସୁଖପାଠ୍ୟ ଗ୍ରନ୍ଥ ନ ହୋଇ ଭକ୍ତଜନଙ୍କର ଆଦରଣୀୟ ଧର୍ମଗ୍ରନ୍ଥରେ ପରିଣତ ହୋଇଛି । ସଂସ୍କୃତର ଏହି ଚିନ୍ତାଧାରା ଅବଲମ୍ବନରେ ପ୍ରାଦେଶିକ ଭାଷାଗୁଡ଼ିକରେ ମଧ୍ୟ ଅଧ୍ୟାତ୍ମ ରାମାୟଣ ଅନୁବାଦ ହୋଇଛି । ସେହି ପ୍ରାଚୀନ ପରଂପରାର ଅନୁକରଣରେ ଓଡ଼ିଆଭାଷାରେ ମହାତ୍ମା ହଳଧର ଦାସ ଅଧ୍ୟାତ୍ମରାମାୟଣ ରଚନା କରିଛନ୍ତି ।

ସଂସ୍କୃତ ଅଧ୍ୟାତ୍ମ ରାମାୟଣର ପ୍ରଥମ ଅନୁବାଦକ ରୂପେ କବି ହଳଧର ଦାସଙ୍କୁ ଶୀର୍ଷ ସ୍ଥାନ ଦିଆଯାଇପାରେ । କବି ଉତ୍କଳର ଏକ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଅନନ୍ତ ପଟ୍ଟନାୟକ, ଓଡ଼ିଶାର ଶେଷ ସ୍ୱାଧୀନ ରାଜା ତେଲିଙ୍ଗା ମୁକୁନ୍ଦଦେବଙ୍କ ସମସାମୟିକ ଥିଲେ ବୋଲି ମଧ୍ୟ ଉକ୍ତ ଗ୍ରନ୍ଥରେ ସୂଚିତ ହୋଇଛି । ଯଥା—

"ଗଜେଶ ଶ୍ରୀ ମୁକୁନ୍ଦଦେବ । ବିବେକୀ ବ୍ରହ୍ମଣ୍ୟ ବୈଷ୍ଣବ ।।
ପ୍ରଜାପାଳନେ ଧର୍ମ ସମ । ଦଣ୍ଡ ଲୋକରେ ସେହି ଯମ ।।
ସଂଗ୍ରାମେ ମହେନ୍ଦ୍ର ସମାନ । ରୂପରେ ଯେସନ୍ତ ମଦନ ।।
ଯାଚକ ଠାରେ କଳ୍ପଦ୍ରୁମ । ତେଜରେ ଚଣ୍ଡକର ସମ ।।
ଯାହାର ଯଶଃ ପୁଣ୍ୟ କୀର୍ତ୍ତି । ସମ୍ପୂର୍ଣ୍ଣ କରିଛି ଏ କ୍ଷିତି ।।

ତାଙ୍କର ଯେତେ ଗୁଣ ମାନ । ଏହା କହିବ କେଉଁ ଜନ ॥
ସବୁ ଭକ୍ତମେ ଗୁଣ ଯୁତ । ସମସ୍ତ ଦୁର୍ଗୁଣ ରହିତ ॥
ଏମନ୍ତ ପରକାରେ ଯେହୁ । ତାଙ୍କର ଅଟନ୍ତି ତଥାଇ ॥
ଶ୍ରୀ ଅନନ୍ତ ପଟ୍ଟନାୟକ । ସେ ବଡ଼ ବ୍ରହ୍ମଣ୍ୟ ଧାର୍ମିକ ॥
ବିବେକୀ ବିଦ୍ୟାବନ୍ତ ଶାନ୍ତ । ବୈଷ୍ଣବ ଅଗ୍ରର ନିଷ୍ଠିତ ॥
କନିଷ୍ଠ ପୁତ୍ର ମୁଁ ତାଙ୍କର । ନାମ ମୋହର ହଳଧର ॥"

ଅତଏବ ମଧ୍ୟ ଅଧ୍ୟାତ୍ମରାମାୟଣ ପ୍ରଣେତା ହଳଧର, ମହେଶ୍ୱର ଅଗ୍ରୁଣୀ ନାମକ ଜନୈକ ପଣ୍ଡିତଙ୍କଠାରୁ ଅଧ୍ୟାତ୍ମରାମାୟଣର ଅର୍ଥ ଭଲ-ଭାବରେ ହୃଦୟଙ୍ଗମ କରି ଉକ୍ତ ଗ୍ରନ୍ଥର ଓଡ଼ିଆ ଅନୁବାଦ କରିବାକୁ ସମର୍ଥ ହୋଇଥିଲେ । ତା'ର ପ୍ରମାଣ ନିମ୍ନଲିଖିତ ଉଦ୍ଧୃତାଂଶରୁ ଦେଖିବାକୁ ମିଳେ ।—

"ରାୟପୁର ନାମେ ଶାସନ । ତହିଁରେ ଅଛେ ମହାଜନ ॥
ବତ୍ସସ ଗୋତ୍ରରେ ଜନମ । ମହେଶ୍ୱର ଅଗ୍ରୁଣୀ ନାମ ॥
ସେ ବ୍ରହ୍ମକର୍ମରେ ନିରତ । ପଣ୍ଡିତ ବଇଷ୍ଣବ ଶାନ୍ତ ॥
ମୋତେ ତ ଅନୁଗ୍ରହ କଲେ । ରାମାୟଣ ଅର୍ଥ କହିଲେ ॥
ଶୁଣି ମୁଁ ତା କୃତାର୍ଥ ହୋଇଲି । ତହିଁରୁ ଯେତେ ମୁଁ ବୁଝିଲି ॥
ତାହା ଭାବନା କରି ଚିତ୍ତେ । ସବୁ ଲୋକମାନଙ୍କ ହିତେ ॥
× × × ×
ଦେଶ ଭାଷାରେ କଲି ଗୀତ । ଏତ ଅଗାଧ ସିନ୍ଧୁମତ......"

ଉକ୍ତ ଉଦ୍ଧୃତାଂଶରୁ ସ୍ପଷ୍ଟ ଦେଖାଯାଏ, କବି ହଳଧର ତାଙ୍କ ଅନୁବାଦ ପୂର୍ବରୁ ରାୟପୁରବାସୀ ପଣ୍ଡିତ ମହେଶ୍ୱରଙ୍କ ଠାରୁ ଭଲ ଭାବରେ ସଂସ୍କୃତ ଅଧ୍ୟାତ୍ମ ରାମାୟଣଟିକୁ ଅଧ୍ୟୟନ କରିଥିଲେ ।

ହଳଧର ଦାସଙ୍କ ରଚନା କାଳ ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ କବିଙ୍କ ପିତା ଅନନ୍ତ ପଟ୍ଟନାୟକ ତେଲଙ୍ଗା ମୁକୁନ୍ଦଦେବଙ୍କ ସମସାମୟିକ ଥିଲେ ଏବଂ କବି ମଧ୍ୟ ସ୍ୱଗ୍ରନ୍ଥର ଉତ୍ତରକାଣ୍ଡରେ ତାଙ୍କ ଗ୍ରନ୍ଥ ରଚନାର ସମୟ ସୂଚକ ଯୁଗାଙ୍କ ଦେଇ ସମସ୍ତ ସନ୍ଦେହ ଦୂର କରିଅଛନ୍ତି । ଯଥା :—

"ଶୁଭ ସହସ୍ର ସାତ ଶତ । ତେୟାଣୀ ବରଷେ ସମ୍ମତ ।
ଅଷ୍ଟାବିଂଶତ ଜଳମୂଗ । ଏତେକ ହୋଇଥିଲା ଭୋଗ ।
ଅଶ୍ୱିନ ମାସରେ ଏ ଗୀତ । ସର୍ବ ଶୁଭେ ହେଲା ରଚିତ ।

ଏଥିରୁ ଜଣାଯାଏ କବି ୪୭୮୩ ଯୁଗାବ୍ଦ ବା ଖ୍ରୀ: ଅ: ୧୭୮୨-୮୩ ରେ ଗ୍ରନ୍ଥଟି ସମାପ୍ତ କରିଥିଲେ ।

କବି ହଳଧର ସଂସ୍କୃତ ଅଧ୍ୟାତ୍ମରାମାୟଣର ଅବିକଳ ଅନୁବାଦ କରିଥିଲେ ହେଁ ଭାଷା କ୍ଷେତ୍ରରେ ସେ ନିଜର ମୌଳିକତା ଯଥେଷ୍ଟ ଦେଖାଇଛନ୍ତି । ସ୍ଥଳ ବିଶେଷରେ ସଂସ୍କୃତ ଶବ୍ଦ ବ୍ୟବହାର କରିଥିଲେ ମଧ୍ୟ ଅନେକ କ୍ଷେତ୍ରରେ ସୁଲଭ ଓଡ଼ିଆ ଶବ୍ଦ ପ୍ରୟୋଗ କରି ଗ୍ରନ୍ଥଟିକୁ ସର୍ବଜନଗ୍ରାହ୍ୟ କରିବା ଲାଗି ଯଥାସମ୍ଭବ ଚେଷ୍ଟା କରିଛନ୍ତି । ଉଦାହରଣ ସ୍ୱରୂପ :—

"ସମସ୍ତଙ୍କ ହୃଦୟରେ ଅଛନ୍ତି ଯେଉଁ ରାମ
ତାହାଙ୍କର ଦୂତ ମୁଁ ରେ ରାକ୍ଷସ ଅଧମ ।
ତୁ ନିଷ୍ଟୟ ଆପଣାର ନାଶ ହେବା ପାଇଁ
ଯାଗ ଧରୁ ହବି ଯେହ୍ନେ କୁକୁର ନିଅଇ ।
ସେ ରୂପେ ତାଙ୍କର ଯହୁଁ ହରିଲୁ କାନ୍ତାକୁ
ତେଣୁ ସେ ଶ୍ରୀରାମ ଆସି ମତଙ୍ଗ ନାଗକୁ ।
ହୁତାଶନ ସାକ୍ଷୀ କରି ସୁଗ୍ରୀବ ସଙ୍ଗରେ
ମିତ୍ର ହୋଇ ବାଳିକି ମାଇଲେ ଏକ ଶରେ ।
ସୁଗ୍ରୀବକୁ କିଷ୍କିନ୍ଧ୍ୟାରେ ଅଭିଷେକ କଲେ
ସେ ସୁଗ୍ରୀବ ଏବେ ନିଜ କପିଙ୍କର ତୁଲେ ।
ଶ୍ରୀରାମ ଲକ୍ଷ୍ମଣେ ଦୁହିଙ୍କର ସଙ୍ଗତରେ
କୁଶଳେ ଅଛନ୍ତି ପ୍ରସ୍ରବଣ ଗିରିବରେ ।
ଜାନକୀଙ୍କି ଖୋଜିବାର ପାଇଁ କପୀଶ୍ୱର
ଦଶଦିଗକୁ ପେଷିଣ ଅଛନ୍ତି ବାନର······।"

କବି ହଳଧର ଦାସ ସରଳ ଭାଷା ପ୍ରୟୋଗରେ ସବୁ ସ୍ଥଳରେ ମୂଳ ସଂସ୍କୃତର ମାର୍ଗ ଅନୁସରଣ କରିଥିଲେହେଁ ଅନେକ ସ୍ଥଳରେ ନିଜ ପ୍ରତିଭାର ଦକ୍ଷତା ଦେଖାଇ ବର୍ଣ୍ଣନା କରିବାରେ ସମର୍ଥ ହୋଇଛନ୍ତି । ନିମ୍ନଲିଖିତ କେତୋଟି ପଂକ୍ତିରୁ ତାଙ୍କ ଅସାଧାରଣ ପ୍ରତିଭାର ପରିଚୟ ମିଳିଥାଏ :—

"କାଏ ମର୍କତ ରମ୍ଭାତରୁ । ତଳ୍‌ଟ ହୋଇଅଛୁ ଊରୁ ॥
ମହୀନ୍ଦ୍ର କର-କୁମ୍ଭ ପ୍ରାୟେ । ନିତମ୍ବ ଯୁଗ ଶୋଭାପାଏ ॥
କଟିଭାଗ ଡମ୍ବରୁ ମତ । ଉଦରେ ତ୍ରିବଳୀ ଶୋଭିତ ॥
ହୃଦୟ ପୃଥୁଳ ବିସ୍ତାର । ଶ୍ରୀବତ୍ସ ଚିହ୍ନେ ମନୋହର ॥
ବକ୍ଷ ତମାଳ ବନ ତେଜ । ରୋମ ଛଳେ କି ଭୃଙ୍ଗରାଜ ॥
ଗମନ୍ତ ମଧୁପାନ ଆଶେ । ନାଭି ସରପଦ୍ମକୁ କି ସେ ॥

× × × ×

ନିର୍ମଳ ଦର୍ପଣ ଯେସନ । ଏମନ୍ତ ପ୍ରକାରେ ବଦନ ॥
ପ୍ରବାଳ ଶ୍ରେଣୀ କି ଅଧର । ଦଶନ ମୁକୁତା ପ୍ରକାର ॥
କରୁଣାରସରେ ସମ୍ପୂର୍ଣ୍ଣ । ବିକାଶ ପଙ୍କଜ ଲୋଚନ ॥
ନାସିକା ଅତି ମନୋହର । ସବୁ ନେତ୍ରର ସେ କି ଘର ॥

× × × ×

ପୀତବସନ କଟି ଦେଶେ । ଶରୀର ଘନେ ଶମ୍ପା କି ସେ ॥
ମହେନ୍ଦ୍ର ଧନୁ ପ୍ରାୟେ ହୋଇ । ରତନ ଓଢ଼ଣୀ ଶୋହି ॥
କଙ୍କିଣୀଗଣ କି ନକ୍ଷତ୍ର । ଏ ଶୋଭା କାହିଁ କରେ ଚିତ୍ର..."

( ଅଯୋଧ୍ୟାକାଣ୍ଡ, ପ୍ରଥମଅଧ୍ୟାୟ )

କବି ଅନେକ ସ୍ଥଳରେ ପ୍ରାଚୀନ କାଳର ବହୁ ବଚନ ଅର୍ଥରେ 'ମାନ' ପ୍ରତ୍ୟୟ ମଧ୍ୟ ନିଜ ଇଚ୍ଛାନୁସାରେ କରିଛନ୍ତି, ଯଥା—ଗରଜନ ମାନ, ଚୁମ୍ବନ ମାନ, ମଧୁ ମାନ, ଅଶ୍ରୁଧାରା ମାନ, ଚେଷ୍ଟାମାନ ଆଦି ।

ଅଧ୍ୟାତ୍ମ ରାମାୟଣରେ ଦୁଇଟି ମାତ୍ର ଛନ୍ଦ ପରିଦୃଷ୍ଟ ହୁଏ । ଚତୁର୍ଦ୍ଦଶାକ୍ଷର କେବଳ ସୁନ୍ଦରାକାଣ୍ଡରେ ବ୍ୟବହାର କରା ଯାଇଛି ଓ ଅନ୍ୟ ଛ'ଟି କାଣ୍ଡରେ ନବାକ୍ଷର ଛନ୍ଦର ପ୍ରୟୋଗ ହୋଇଛି ।

କବି ହଳଧର ଦାସଙ୍କ ମାର୍ଗ ଅନୁସରଣ କରି ସମ୍ବଲପୁରର ଗୋପାଳ ତେଲଙ୍ଗା, ସୂର୍ଯ୍ୟମଣି ରାଜପଟ୍ଟନାୟକ ଆଦି ଅନେକ କବି ସଂସ୍କୃତ ଅଧ୍ୟାତ୍ମ ରାମାୟଣର ଅନୁବାଦ କାର୍ଯ୍ୟ ଆରମ୍ଭ କରିଛନ୍ତି । ମାତ୍ର ହଳଧର ଦାସଙ୍କ ପରି ସେମାନଙ୍କ ଅନୁବାଦରେ ବିଶେଷ ମୌଳିକତା ପରିଲକ୍ଷିତ ହୁଏ ନାହିଁ । ଉଦାହରଣ ସ୍ୱରୂପ ବାଳକାଣ୍ଡ ଷଷ୍ଠ ସର୍ଗର ତୃତୀୟ ଓ ଚତୁର୍ଥ ଶ୍ଲୋକର ତୁଳନାତ୍ମକ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

"କ୍ଷାଳୟାମି ତବ ପାଦପଙ୍କଜଂ
ନାଥ ଦାରୁଦୃଷଦୋଃ କିମନ୍ତରମ୍ ।
ମାନୁଷୀକରଣ ଚୂର୍ଣ୍ଣମସ୍ତି ତେ
ପାଦୟୋରିତି କଥା ପ୍ରଥୀୟସୀ ॥
ପାଦାମ୍ବୁଜଂ ତେ ବିମଲଂ ହି କୃତ୍ୱା
ପଶ୍ଚାତ୍ ପରଂ ତୀରମହଂ ନୟାମି ।
ନୋ ଚେତ୍ ତରୀଃ ସଦ୍ୟୁବତୀ ମଲେନ
ସ୍ୟାଚ୍ଛେଦ୍‌ବିଭୋ ବିଦ୍ଧି କୁଟୁମ୍ବହାନିଃ ॥

(ଅଧ୍ୟାତ୍ମରାମାୟଣ, ବାଳକାଣ୍ଡ, ଷଷ୍ଠସର୍ଗ—୩ୟ ଓ ୪ର୍ଥ ଶ୍ଳୋକ)

"ତବ ପଦପଙ୍କଜ କ୍ଷାଳନ ନ କର
ବସାଇ ନ ଦେବି ମୁଁ ନାବେ ରଘୁପଧାର ।
ଯେଣୁ ତୁମ୍ଭ ପାଦ ରଜର ପ୍ରଭାବରୁ
ପାଷାଣ ହୋଇଗଲା ଉତ୍ତମ ରମ୍ଭୋରୁ ।
ଅପଣଙ୍କ ପାଦକୁ ଧଉତ କରିଣ
ବସାଇବି ତେବେ ମୁଁ ନାବରେ ନେଇଣ ।
ନାବଖଣ୍ଡି ଯେବେ ଅବଳା ହୋଇଯିବ
ତେବେ ମୋର କୁଟୁମ୍ବ ହାନି ଦୋଷ ହେବ ॥"

(ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ)

"ଶୁଣିଣ ନାବିକ ବୋଲଇ । ତୁମ୍ଭଙ୍କୁ ପାର ନ କରଇ ॥
ତୋ ପାଦରେଣୁରେ ପାଷାଣ । ମନୁଷ୍ୟ ହେଲା ଏହିକ୍ଷଣ ॥
ଦାରୁ ପାଷାଣ ଏକ ଭାବ । ମୋ ନାବ ମନୁଷ୍ୟ ହୋଇବ ॥
ମୋର ଜୀବିକା ଯିବ ସର । ତେଣୁ ମୁଁ ନ କରଇଁ ପାର ॥
କ୍ଲାନ୍ତୟେ ପାର ହେବ ଯେବେ । କଥାଏ ଅଛି କର ତୁମ୍ଭେ ॥
ତୋ ପାଦରେଣୁ ପଖାଳିବି । ତେବେ ନାବରେ ବସାଇବି ॥"

(ଗୋପାଳ ତେଲିଙ୍ଗା—Or. Ms. 29,
ଓଡ଼ିଶା ମ୍ୟୁଜିଅମ୍, ପୋଥି)

ହେ ନାଥ ତୋ ପାଦ ନଳିନ । କରିଣ ଦେବି ମୁଁ କ୍ଷାଳନ ॥
ଯେଉଁ ପାଦରେଣୁ ମହିମା । କରନ୍ତି ପାଷାଣକୁ ବାମା ॥
ଯେଣୁ କାଷ୍ଠର ପାଷାଣର । ନାହିଁ ତ କିଛିହିଁ ଅନ୍ତର ॥

କାଳେ ତୋ ଚରଣର ଧୂଳି । ପଡ଼ି ମୋ ନାବ ହେବ ବାଳୀ ॥
କୁଟୁମ୍ବ ପୋଷିବାର ବୃତ୍ତି । ନଷ୍ଟ ହେବ ମୋ ଦାଶରଥି ॥
ତେଣୁ ନ ଧୋଇ ତୋ ପୟର । ବସାଇ ନ ଦେବି ହେ ବୀର ॥
( ହଳଧର ଦାସ )

ଏ ତ ଗଲା କବି ଓ ଗ୍ରନ୍ଥର ପରିଚୟ । ବର୍ତ୍ତମାନ ଏ ପୁସ୍ତକ ପ୍ରକାଶନ ଓ ତତ୍‌ସମ୍ପର୍କରେ ମୋ ନିଜ କଥା ପଦେ କହେ ।

ପିଲାଦିନୁ ଦେଖି ଆସିଛି, ଆମ ଘର ଦାଆଙ୍କ ପାଖରେ କେତେ ଖଣ୍ଡି ପୋଥି ଏକ ବ୍ୟାସାସନରେ ପ୍ରତ୍ୟହ ଫୁଲ ଚନ୍ଦନ ଦିଆ ହୋଇ ପୂଜା ହେଉଥାଏ । ଦିନେ କାହିଁକି କୌତୂହଳୀ ହୋଇ ସେ ଗୁଡ଼ିକ ଖୋଲି ବସିଲି । ଦେଖିଲି, ପୋଥି ଗୁଡ଼ିକ ମଧ୍ୟରେ କେତେଗୁଡ଼ିଏ ଉପାଦେୟ ପୁରାଣ ରହିଛି । ବର୍ତ୍ତମାନ ପ୍ରକାଶ ପାଇବାକୁ ଯାଉଥିବା ହଳଧର ଦାସଙ୍କ ଅଧ୍ୟାତ୍ମ ରାମାୟଣ ସେଥିମଧ୍ୟରୁ ଅନ୍ୟତମ ।

ପୋଥିଟିର ପତ୍ର ଓଲଟାଇ କିଛି ଅଂଶ ପଢ଼ିବା ପରେ ଏହାର ପରିପାଟୀ, ବର୍ଣ୍ଣନା ଚାତୁରୀ, ବିଶେଷତଃ ଆଦିଗ୍ରନ୍ଥ ରାମାୟଣର ମନୋହର କଥାବସ୍ତୁର ସାବଲୀଳ ବର୍ଣ୍ଣନାରେ ଆକୃଷ୍ଟ ନ ହୋଇ ରହି ପାରିଲି ନାହିଁ । ସଙ୍ଗେ ସଙ୍ଗେ ଏହାକୁ ପୁସ୍ତକାକାରରେ ପ୍ରକାଶ କରିବାର ପ୍ରବଳ ବାସନା ମନରେ ଜାଗି ଉଠିଲା । ପୋଥି ଖଣ୍ଡିକ ଧରି ମୋର କର୍ମସ୍ଥଳୀ ଭୁବନେଶ୍ୱରକୁ ଆସିଲି ଓ ଏହାର ପାଠୋଦ୍ଧାର କାର୍ଯ୍ୟରେ ଲାଗି ଗଲି । ପାଠୋଦ୍ଧାର ସମୟରେ ଏହାର କେତେକ ପଂକ୍ତିରେ ବିଷୟଗତ ଭ୍ରମ ପ୍ରମାଦ ଅନେକ ସ୍ଥଳରେ ଥିବା ମୋର ମନେ ହେଲା, ଯାହା କି ହାତଲେଖା ପୋଥିମାନଙ୍କରେ ରହିବା ସ୍ୱାଭାବିକ । ପୁଣି ସ୍ଥାନେ ସ୍ଥାନେ କୀଟଦଂଷ୍ଟ ହେତୁ ବିଷୟଗତ ଅସ୍ପଷ୍ଟତା ମଧ୍ୟ ପରିଲକ୍ଷିତ ହେଲା । ମୁଁ ଅନ୍ୟ ପୋଥି ସନ୍ଧାନରେ ରହି ଓଡ଼ିଶା ମ୍ୟୁଜିଅମର କ୍ୟୁରେଟର ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ସାହାଯ୍ୟ ଲୋଡ଼ିଲି । ସେ ମହାଶୟ ମୋର ଏ କାର୍ଯ୍ୟରେ ବଡ଼ ଆଗ୍ରହ ପ୍ରକାଶ କରି ମ୍ୟୁଜିଅମ୍‌ର ସଂଗ୍ରହାଳୟରେ କଳାହାଣ୍ଡି ଜିଲ୍ଲା ଓ ଗଞ୍ଜାମ ଜିଲ୍ଲାରୁ ସଂଗୃହୀତ ଓ ସଂରକ୍ଷିତ ହଳଧର ଦାସଙ୍କ ଦୁଇଖଣ୍ଡ ପୋଥି ଦେଖାଇଲେ । ଏହା ବ୍ୟତୀତ ପୁରୀଜିଲ୍ଲାର ଚନ୍ଦକାଥାନା ଅନ୍ତର୍ଗତ ଜାମୁଝାରି ଗ୍ରାମରୁ ଆଉ ଦୁଇଖଣ୍ଡି ପୋଥି ସଂଗ୍ରହ କରିଥିଲି । ଏ ଗୁଡ଼ିକର ସାହାଯ୍ୟ ଗ୍ରହଣ କରି ଓ ଆବଶ୍ୟକ ସ୍ଥଳେ ମୂଳ ସଂସ୍କୃତର ଆଶ୍ରୟ ନେଇ ପୋଥିଟିର ଶୁଦ୍ଧ



ପାଠୋଦ୍ଧାର କରିବାରେ ପ୍ରୟାସୀ ହୋଇଛି ମାତ୍ର । ପୋଥି ପାଠକୁ ବିଶୁଦ୍ଧ କରିବା ସଙ୍ଗେ ସଙ୍ଗେ ମୂଳ ଲେଖାର ମୌଳିକତା ଯେପରି ନଷ୍ଟ ନ ହୁଏ, ସେଥି ପ୍ରତି ବିଶେଷ ସତର୍କତା ଅବଲମ୍ବନ କରିଛି ।

ଏ ଉଦ୍ୟମ ଆରମ୍ଭରେ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ଆନୁକୂଲ୍ୟ ମିଳି ନ ଥିଲେ ମୋର ପୁସ୍ତକ ପ୍ରକାଶ ସ୍ପୃହା ବୋଧହୁଏ ଇତିଶ୍ରୀ ହୋଇଥାନ୍ତା । ମ୍ୟୁଜିଅମ୍‌ର ଅନ୍ୟ ଜଣେ ସହକାରୀ ପଣ୍ଡିତ ନୀଳମଣି ମିଶ୍ରଙ୍କ ନାମ ଏ ସଂପର୍କରେ ବିଶେଷ ଭାବେ ଉଲ୍ଲେଖ ଯୋଗ୍ୟ । ସେ ମହାଶୟ ଏ ସଂପାଦନା କାର୍ଯ୍ୟରେ ମୂଳରୁ ଶେଷ ପର୍ଯ୍ୟନ୍ତ ବରାବର ମୋ ସହିତ ସହଯୋଗ କରି ଆସିଛନ୍ତି । କହିବା ବାହୁଲ୍ୟ, ତାଙ୍କର ଅକୁଣ୍ଠିତ ସାହାଯ୍ୟ ବ୍ୟତିରେକେ ଏପରି ଏକ ସଂପାଦନା କାର୍ଯ୍ୟରେ ଅଗ୍ରସର ହେବା ମୋ ପକ୍ଷେ ସମ୍ଭବପର ହୋଇ ନ ଥାନ୍ତା । ଏଥିପାଇଁ ମୁଁ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଓ ପଣ୍ଡିତ ନୀଳମଣି ମିଶ୍ରଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଏ ଭଳି ଏକ ପ୍ରାଚୀନ ଗ୍ରନ୍ଥର ସମ୍ପାଦନା ମୋ ପକ୍ଷେ ଏକ ନୂତନ ଚେଷ୍ଟା । ସମ୍ପାଦନାରେ ଦୋଷ ତ୍ରୁଟି ରହିବା ଅସମ୍ଭବ ନୁହେଁ । ତେଣୁ ବିଜ୍ଞ ପାଠକବର୍ଗଙ୍କୁ ଅନୁରୋଧ ସେମାନେ ନିଜର ଉଦାର ଗୁଣରେ ଦୋଷତ୍ରୁଟି ପ୍ରତି କ୍ଷମାଶୀଳ ହେବେ ।

• ପରିଶେଷରେ, ଶ୍ରୀରାଧାରମଣ ପୁସ୍ତକାଳୟର ସ୍ୱତ୍ୱାଧିକାରୀ ଏ ପୁସ୍ତକ ଖଣ୍ଡିକର ପ୍ରକାଶ ଭାର ଅତି ଆଗ୍ରହର ସହିତ ଗ୍ରହଣ କରିଥିବା ହେତୁ ମୁଁ ତାଙ୍କଠାରେ ବିଶେଷ ଭାବେ କୃତଜ୍ଞ ।

ଅକ୍ଷୟ ତୃତୀୟା<br>ତା ୭।୫।୭୨ } କାଶୀନାଥ ଦାଶ

## ହଳଧରକୃତ ଅଧ୍ୟାତ୍ମ ରାମାୟଣ

# ସୂଚିପତ୍ର


| | ବିଷୟ | ପୃଷ୍ଠା |
|---|---|---|
| | **—ଆଦିକାଣ୍ଡ—** | |
| ପ୍ରଥମ ଅଧ୍ୟାୟ— | ଶ୍ରୀରାମ ହୃଦୟ | ୧ |
| ଦ୍ୱିତୀୟ ଅଧ୍ୟାୟ— | ଭୂମାତାଙ୍କର ବ୍ରହ୍ମାଙ୍କ ନିକଟରେ ପ୍ରାର୍ଥନା ଏବଂ ଭଗବାନଙ୍କର ତାଙ୍କ ପ୍ରତି ଆଶ୍ୱାସନା ବାଣୀ | ୧୧ |
| ତୃତୀୟ ଅଧ୍ୟାୟ— | ଭଗବାନଙ୍କ ଜନ୍ମ ଓ ବାଲ୍ୟଲୀଳା | ୧୪ |
| ଚତୁର୍ଥ ଅଧ୍ୟାୟ— | ବିଶ୍ୱାମିତ୍ରଙ୍କ ସହିତ ରାମ ଲକ୍ଷ୍ମଣଙ୍କ ତପୋବନ ଗମନ ଓ ତାଡ଼କା ବଧ | ୨୧ |
| ପଞ୍ଚମ ଅଧ୍ୟାୟ— | ମାରୀଚ ଓ ସୁବାହୁ ବିନାଶ, ଅହଲ୍ୟା ଉଦ୍ଧାର | ୨୪ |
| ଷଷ୍ଠ ଅଧ୍ୟାୟ— | ଧନୁର୍ଭଙ୍ଗ ଓ ବିବାହ | ୩୦ |
| ସପ୍ତମ ଅଧ୍ୟାୟ— | ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ପରଶୁରାମ ଭେଟ | ୩୬ |
| | **—ଅଯୋଧ୍ୟା କାଣ୍ଡ—** | |
| ପ୍ରଥମ ଅଧ୍ୟାୟ— | ଶ୍ରୀରାମ-ନାରଦ ସମ୍ବାଦ | ୪୨ |
| ଦ୍ୱିତୀୟ ଅଧ୍ୟାୟ— | ରାଜ୍ୟାଭିଷେକ ଓ ବଶିଷ୍ଠ ଶ୍ରୀରାମ ସମ୍ବାଦ | ୪୮ |
| ତୃତୀୟ ଅଧ୍ୟାୟ— | ଦଶରଥଙ୍କର କୈକେୟୀଙ୍କୁ ବରଦାନ | ୫୫ |
| ଚତୁର୍ଥ ଅଧ୍ୟାୟ— | ଶ୍ରୀରାମଙ୍କର ମାତାଙ୍କଠାରୁ ବିଦାୟ ଗ୍ରହଣ, ସୀତା ଓ ଲକ୍ଷ୍ମଣଙ୍କସହ ବନଗମନପାଇଁ ପ୍ରସ୍ତୁତ | ୬୨ |
| ପଞ୍ଚମ ଅଧ୍ୟାୟ— | ଶ୍ରୀରାମଙ୍କ ବନଗମନ | ୭୦ |
| ଷଷ୍ଠ ଅଧ୍ୟାୟ— | ଗଙ୍ଗାପାର, ଭରଦ୍ୱାଜ ଓ ବାଲ୍ମୀକିଙ୍କ ସହ ଭେଟ | ୭୭ |
| ସପ୍ତମ ଅଧ୍ୟାୟ— | ଦଶରଥଙ୍କ ସ୍ୱର୍ଗାରୋହଣ, ଭରତଙ୍କର ମାତୁଳାଳୟରୁ ପ୍ରତ୍ୟାବୃତ୍ତି, ତାହାଙ୍କଦ୍ୱାରା ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ | ୮୫ |
| ଅଷ୍ଟମ ଅଧ୍ୟାୟ— | ଭରତଙ୍କର ବନଗମନ, ପଥରେ ଗୁହକ ଓ ଭରଦ୍ୱାଜଙ୍କ ସହିତ ଭେଟ ଏବଂ ଚିତ୍ରକୂଟ ଦର୍ଶନ | ୯୫ |

| ବିଷୟ | | ପୃଷ୍ଠା |
|---|---|---|
| ନବମ ଅଧ୍ୟାୟ | ଶ୍ରୀରାମଙ୍କ ସହିତ ଭରତଙ୍କର ମିଳନ, ଭରତଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ଶ୍ରୀରାମଙ୍କର ଅତ୍ରିମୁନିଙ୍କ ଆଶ୍ରମକୁ ଗମନ | ୧୦୦ |

**—ଆରଣ୍ୟକ କାଣ୍ଡ—**

| | | |
|---|---|---|
| ପ୍ରଥମ ଅଧ୍ୟାୟ— | ବିରାଧ ବଧ | ୧୧୦ |
| ଦ୍ୱିତୀୟ ଅଧ୍ୟାୟ— | ଶରଭଙ୍ଗ ଓ ସୁତୀକ୍ଷଣ ଆଦି ମୁନିମାନଙ୍କ ସହିତ ଭେଟ | ୧୧୫ |
| ତୃତୀୟ ଅଧ୍ୟାୟ— | ମୁନିବର ଅଗସ୍ତ୍ୟଙ୍କ ସହ ଭେଟ | ୧୨୦ |
| ଚତୁର୍ଥ ଅଧ୍ୟାୟ— | ପଞ୍ଚବଟୀ ନିବାସ, ମୋକ୍ଷମାର୍ଗ କଥନ | ୧୨୮ |
| ପଞ୍ଚମ ଅଧ୍ୟାୟ— | ସୂର୍ପଣଖାର ନାସାକର୍ଣ୍ଣ ଛେଦନ, ଖର ଓ ଦୂଷଣ ବଧ | ୧୨୯ |
| ଷଷ୍ଠ ଅଧ୍ୟାୟ— | ରାବଣର ମାରୀଚ ନିକଟେ ଗମନ, ମାୟାମୃଗ ରୂପେ ମାରୀଚର ପଞ୍ଚବଟୀ ପ୍ରବେଶ | ୧୩୪ |
| ସପ୍ତମ ଅଧ୍ୟାୟ — | ମାରୀଚ ବଧ, ଛାୟା ସୀତା ହରଣ | ୧୩୮ |
| ଅଷ୍ଟମ ଅଧ୍ୟାୟ— | ରାମ ବିଳାପ, ଜଟାୟୁ ମୋକ୍ଷଣ | ୧୪୫ |
| ନବମ ଅଧ୍ୟାୟ | କବନ୍ଧ ଉଦ୍ଧାର | ୧୫୧ |
| ଦଶମ ଅଧ୍ୟାୟ— | ଶବରୀର ମୋକ୍ଷଲାଭ | ୧୫୬ |

**—କିଷ୍କିନ୍ଧ୍ୟା କାଣ୍ଡ—**

| | | |
|---|---|---|
| ପ୍ରଥମ ଅଧ୍ୟାୟ— | ସୁଗ୍ରୀବ-ମିତ୍ରଲାଭ | ୧୬୨ |
| ଦ୍ୱିତୀୟ ଅଧ୍ୟାୟ— | ବାଳିବଧ | ୧୬୯ |
| ତୃତୀୟ ଅଧ୍ୟାୟ— | ସୁଗ୍ରୀବ-ରାଜ୍ୟଲାଭ | ୧୬୮ |
| ଚତୁର୍ଥ ଅଧ୍ୟାୟ | ଲକ୍ଷ୍ମଣଙ୍କ ଆଗେ ଶ୍ରୀରାମଙ୍କର ପୂଜାବିଧି କଥନ | ୧୮୩ |
| ପଞ୍ଚମ ଅଧ୍ୟାୟ— | ଶ୍ରୀରାମଙ୍କ ଶୋକ ଓ ଲକ୍ଷ୍ମଣଙ୍କର କିଷ୍କିନ୍ଧ୍ୟାଗମନ | ୧୮୮ |
| ଷଷ୍ଠ ଅଧ୍ୟାୟ— | ସୀତା ଅନ୍ୱେଷଣ, ବାନରମାନଙ୍କ ଗୁହା ପ୍ରବେଶ ଓ ସ୍ୱୟଂପ୍ରଭା ଚରିତ | ୧୯୪ |
| ସପ୍ତମ ଅଧ୍ୟାୟ— | ବାନରମାନଙ୍କର ପ୍ରାୟୋପବେଶନ ଓ ସମ୍ପାତିସହ ଭେଟ | ୨୦୩ |

ବିଷୟ ପୃଷ୍ଠା


ଅଷ୍ଟମ ଅଧ୍ୟାୟ— ସମ୍ପାତି ଚରିତ ୨୦୭
ନବମ ଅଧ୍ୟାୟ— ସମୁଦ୍ର ଲଙ୍ଘନ ନିମନ୍ତେ ମନ୍ତ୍ରଣା ୨୧୨


## —ସୁନ୍ଦର କାଣ୍ଡ—


ପ୍ରଥମ ଅଧ୍ୟାୟ— ହନୁମାନର ସମୁଦ୍ର ଲଙ୍ଘନ ଓ ଲଙ୍କା ପ୍ରବେଶ ୨୧୫
ଦ୍ୱିତୀୟ ଅଧ୍ୟାୟ— ହନୁମାନର ଅଶୋକ ବନରେ ପ୍ରବେଶ, ରାବଣର ସୀତାଙ୍କୁ ଭୀତି ପ୍ରଦର୍ଶନ ୨୨୨
ତୃତୀୟ ଅଧ୍ୟାୟ— ସୀତା ଠାବ, ଅଶୋକବନ ବିଧ୍ୱସ୍ତ ଓ ବ୍ରହ୍ମପାଶ ବନ୍ଧନ ୨୨୯
ଚତୁର୍ଥ ଅଧ୍ୟାୟ— ରାବଣ, ହନୁମାନ ସମ୍ବାଦ ଓ ଲଙ୍କା ଦହନ ୨୪୦
ପଞ୍ଚମ ଅଧ୍ୟାୟ— ଜାନକୀଙ୍କଠାରୁ ହନୁମାନର ବିଦାୟ ଗ୍ରହଣ ଓ ଶ୍ରୀରାମଙ୍କୁ ବାର୍ତ୍ତା ପ୍ରଦାନ ୨୦୭


## —ଲଙ୍କାକାଣ୍ଡ—


ପ୍ରଥମ ଅଧ୍ୟାୟ— ବାନର ସେନାଙ୍କସହ ଶ୍ରୀରାମଙ୍କ ଲଙ୍କାଗମନ, ସିନ୍ଧୁ ତଟରେ ପ୍ରବେଶ ୨୫୬
ଦ୍ୱିତୀୟ ଅଧ୍ୟାୟ— ରାବଣର ବିଭୀଷଣଙ୍କୁ ତିରସ୍କାର ୨୬୨
ତୃତୀୟ ଅଧ୍ୟାୟ— ଶରଣାଗତ ବିଭୀଷଣ ପ୍ରତି ଶ୍ରୀରାମଙ୍କର ପ୍ରସନ୍ନତା, ଶୁକବନ୍ଧନ, ସମୁଦ୍ର ତ୍ରାସ ଓ ସେତୁବନ୍ଧ ନିର୍ମାଣ ୨୬୭
ଚତୁର୍ଥ ଅଧ୍ୟାୟ— ସମୁଦ୍ର ତରଣ, ଲଙ୍କା ସନ୍ଦର୍ଶନ ଓ ଶୁକରାବଣ ସମ୍ଭାଷଣ ୨୭୫
ପଞ୍ଚମ ଅଧ୍ୟାୟ— ଶୁକ ଚରିତ, ମାଲ୍ୟବାନର ଚେତାବନୀ ଓ ବାନର-ରାକ୍ଷସ ଯୁଦ୍ଧ ୨୮୧
ଷଷ୍ଠ ଅଧ୍ୟାୟ— ଲକ୍ଷ୍ମଣ ଶକ୍ତିଭେଦ, ରାମ-ରାବଣ ଯୁଦ୍ଧ, ହନୁମାନର ଔଷଧ ଅନୟନ ଓ କାଳନେମି ସମ୍ବାଦ ୨୮୮
ସପ୍ତମ ଅଧ୍ୟାୟ — କାଳନେମି ବଧ, ଲକ୍ଷ୍ମଣଙ୍କର ସଂଜ୍ଞାଲାଭ ଓ କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ ୨୯୪
ଅଷ୍ଟମ ଅଧ୍ୟାୟ— କ ର୍ଣ୍ଣ ବଧ, ଇନ୍ଦ୍ରଜିତର ହୋମାନୁଷ୍ଠାନ ୩୦୦

| ବିଷୟ | | ପୃଷ୍ଠା |
|---|---|---|
| ନବମ ଅଧ୍ୟାୟ— | ଇନ୍ଦ୍ରଜିତ ବଧ | ୩୦୬ |
| ଦଶମ ଅଧ୍ୟାୟ— | ରାବଣର ହୋମ ଭଙ୍ଗ ଓ ମନ୍ଦୋଦରୀଙ୍କୁ ଆଶ୍ୱାସନା | ୩୧୨ |
| ଏକାଦଶ ଅଧ୍ୟାୟ - | ରାମ-ରାବଣ ଯୁଦ୍ଧ ଓ ରାବଣ ବଧ | ୩୧୭ |
| ଦ୍ୱାଦଶ ଅଧ୍ୟାୟ— | ବିଭୀଷଣଙ୍କ ରାଜ୍ୟାଭିଷେକ ଓ ମାତା ସୀତାଙ୍କ ଅଗ୍ନି ପରୀକ୍ଷା | ୩୨୪ |
| ତ୍ରୟୋଦଶ ଅଧ୍ୟାୟ— | ବ୍ରହ୍ମାଦି ଦେବତାଙ୍କ ସ୍ତୁତି, ବୈଦେହୀ ପ୍ରାପ୍ତି, ଦଶରଥ ଦର୍ଶନ, ମୃତକପିଙ୍କ ପ୍ରାଣଦାନ, ପୁଷ୍ପକବିମାନରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ | ୩୩୨ |
| ଚତୁର୍ଦ୍ଦଶ ଅଧ୍ୟାୟ— | ଭରଦ୍ୱାଜ ଆଶ୍ରମରେ ଆତିଥ୍ୟ ଗ୍ରହଣ, ଭରତ ମିଳନ ଓ ନନ୍ଦିଗ୍ରାମରେ ପ୍ରବେଶ | ୩୪୦ |
| ପଞ୍ଚଦଶ ଅଧ୍ୟାୟ— | ଶ୍ରୀରାମାଭିଷେକ | ୩୪୯ |
| ଷୋଡ଼ଶ ଅଧ୍ୟାୟ— | ବାନରମାନଙ୍କର ବିଦାୟ ଗ୍ରହଣ, ଫଳଶ୍ରୁତି | ୩୫୯ |


## —ଉତ୍ତର କାଣ୍ଡ—


| | | |
|---|---|---|
| ପ୍ରଥମ ଅଧ୍ୟାୟ— | ଶ୍ରୀରାମଙ୍କ ସମୀପକୁ ଅଗସ୍ତ୍ୟାଦି ମୁନିମାନଙ୍କର ଆଗମନ ଓ ରାବଣାଦି ରାକ୍ଷସମାନଙ୍କର ପୂର୍ବଚରିତ ବର୍ଣ୍ଣନ | ୩୬୫ |
| ଦ୍ୱିତୀୟ ଅଧ୍ୟାୟ - | ରାକ୍ଷସମାନଙ୍କର ରାଜ୍ୟସ୍ଥାପନ ବୃତ୍ତାନ୍ତ | ୩୭୧ |
| ତୃତୀୟ ଅଧ୍ୟାୟ— | ବାଳି-ସୁଗ୍ରୀବ ଚରିତ, ରାବଣ-ସନତ୍‌କୁମାର ସମ୍ବାଦ | ୩୭୮ |
| ଚତୁର୍ଥ ଅଧ୍ୟାୟ— | ରାମରାଜ୍ୟ ଓ ସୀତା ବନବାସ | ୩୮୩ |
| ପଞ୍ଚମ ଅଧ୍ୟାୟ— | ରାମ ଗୀତା | ୩୮୯ |
| ଷଷ୍ଠ ଅଧ୍ୟାୟ— | ଲବଣାସୁର ବଧ, ଭଗବାନ ଶ୍ରୀରାମଙ୍କ ଯଜ୍ଞରେ କୁଶଲବ, ଓ ମହର୍ଷି ବାଲ୍ମୀକିଙ୍କ ଉପସ୍ଥିତି ଓ କୁଶଙ୍କୁ ପରମାର୍ଥ ପ୍ରଦାନ | ୩୯୮ |
| ସପ୍ତମ ଅଧ୍ୟାୟ— | ଶ୍ରୀରାମଙ୍କ ଯଜ୍ଞରେ କୁଶଲବଙ୍କ ରାମାୟଣ ଗାନ ସୀତାଙ୍କ ପାତାଳ ପ୍ରବେଶ | ୪୦୪ |
| ଅଷ୍ଟମ ଅଧ୍ୟାୟ— | କାଳର ଆଗମନ ଓ ଲକ୍ଷ୍ମଣଙ୍କର ବୈକୁଣ୍ଠ ଗମନ | ୪୧୧ |
| ନବମ ଅଧ୍ୟାୟ— | ମହାପ୍ରସ୍ଥାନ | ୪୧୮ |

# ବନ୍ଦନା



ସ ଜୟତୁ ରଘୁବଂଶତିଲକଃ କୌଶଲ୍ୟାହୃଦୟନନ୍ଦନୋ ରାମଃ
ଦଶବଦନନିଧନକାରୀ ଦାଶରଥିଃ ପୁଣ୍ଡରୀକାକ୍ଷଃ ।

ପୂର୍ବଂ ରାମ ତପୋବନଂ ପ୍ରବସନଂ ହତ୍ୱା ମୃଗଂ କାଞ୍ଚନଂ
ବୈଦେହୀହରଣଂ ଜଟାୟୁମରଣଂ ସୁଗ୍ରୀବସମ୍ଭାଷଣମ୍ ।
ବାଲିନିଗ୍ରହଣଂ ସମୁଦ୍ରତରଣଂ ଲଙ୍କାପୁରୀଦାହନଂ
ପଶ୍ଚାଦ୍ରାବଣକୁମ୍ଭକର୍ଣ୍ଣନିଧନଂ ଏତଦ୍ଧି ରାମାୟଣମ୍ ॥

ରାମଂ ଲକ୍ଷ୍ମଣପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁତ୍ସ୍ଥଂ କରୁଣାର୍ଣ୍ଣବଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକମ୍ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକାଭିରାମଂ ରଘୁକୁଳତିଲକଂ ରାଘବଂ ରାବଣାରିମ୍ ।

କୂଜନ୍ତଂ ରାମରାମେତି ମଧୁରଂ ମଧୁରାକ୍ଷରମ୍
ଆରୁହ୍ୟ କବିତାଶାଖାଂ ବନ୍ଦେ ବାଲ୍ମୀକିକୋକିଳମ୍ ।

ରାମ ରାମେତି ରାମେତି ରମେ ରାମେ ମନୋରମେ
ସହସ୍ରନାମତତ୍ତୁଲ୍ୟଂ ରାମନାମ ବରାନନେ ।

ଅଞ୍ଜନାନନ୍ଦନଂ ବୀରଂ ଜାନକୀଶୋକନାଶନମ୍
କପିସମକ୍ଷହନ୍ତାରଂ ବନ୍ଦେ ଲଙ୍କାଭୟଙ୍କରମ୍ ।

ଶ୍ରୀ ରାମଚନ୍ଦ୍ରାୟ ନମଃ ।

# ଅଧ୍ୟାତ୍ମ ରାମାୟଣ



## ପ୍ରଥମ ଅଧ୍ୟାୟ



ବନ୍ଦଇ ଶ୍ରୀଗୁରୁ ଚରଣ
ପରମ ଗତିର କାରଣ ।
ଜୟ ଜୟ ହେ ସୀତାପତି
ସୁମରକତ ପ୍ରାୟ କାନ୍ତି ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ବଦନ
ପଙ୍କଜ ପଲାଶ ଲୋଚନ ।
ଅଧର ଜବାପୁଷ୍ପ ଜିଣି
ପ୍ରବାଳ ପ୍ରାୟ ପାଦପାଣି ।
ପୀତବସନେ ଶୋଭାବନ
ନୀରଦେ ଚପଳା ଯେସନ ।
ହୃଦରେ ମୋତିମାଳ ଜାଳ
ଯମୁନାରେ କି ହଂସକୁଳ ।
ଲଲାଟେ ଚନ୍ଦନର ବିନ୍ଦୁ
ଆକାଶେ କିବା ପୂର୍ଣ୍ଣ ଇନ୍ଦୁ ।
କିରୀଟ କୁଣ୍ଡଳ କେୟୂର
କଙ୍କଣ ନୂପୁର ରୁଚିର ।
କୋଦଣ୍ଡ ଅଛି ବାମ କର
ଦକ୍ଷିଣ କରେ ଦିବ୍ୟ ଶର ।
ସେ ଦକ୍ଷେ ଧରି ଧନୁବାଣ
ଅଛନ୍ତି ଊର୍ମିଳା-ରମଣ ।

ବାମ ପାରୁଶେ ବଇଦେହୀ
ଆଗେ ମାରୁତି ଛନ୍ତି ରହି ।
ତେଜରେ କୋଟିଏ ଭାସ୍କର
ସୁଖଦ ଯେହ୍ନେ ସୁଧାକର ।
କୋଟିଏ କନ୍ଦର୍ପ ଲାବଣ୍ୟ
ନୁହଇ ଶୋଭାକୁ ସମାନ ।
ଏରୂପେ ଦିବ୍ୟ ସିଂହାସନେ
ବିଜୟେ ପ୍ରଭୁ ବୀରାସନେ ।
ସେ ରାମ ପାଦ-ପଙ୍କଜରେ
ମୋ ମନ-ମଧୁପ ନିର୍ଭରେ ।
ଭକ୍ତି-ମରନ୍ଦ କରି ପାନ
ହେ ସ୍ୱାମି ଶ୍ରୀରଘୁନନ୍ଦନ ।
ତୋହର ଅଧ୍ୟାତ୍ମ ଚରିତ
ଭାଷାରେ କରିବାକୁ ଗୀତ ।
ଶରଧା ହେଉଛି ମୋହର
ଯା ନୁହେ ଶିବରେ ଗୋଚର ।
ଯେଣୁ ତୋ ନାମ ଥରେ ଧରି
ପାପୀ ତରନ୍ତି ଭବବାରି ।
ଏ ହେଜୁ ବଳାଇଛି ମନ
ନମସ୍ତେ ପତିତପାବନ ।

ମୋ ମନୋରଥ ପୂର୍ଣ୍ଣ କର
ତୁମ୍ଭେ ତ କରୁଣାସାଗର ।
ଉମା ଶିବଙ୍କୁ ନମସ୍କାର
କରୁଛୁ ଅନୁଗ୍ରହ କର ।
ତୁମ୍ଭ ଚରଣ ମହିମାରେ
ଏ ସ୍ଥୂଳରୁ ଉତ୍ତମ ପ୍ରକାରେ ।
ସୃଜନେ ଅଧ୍ୟାତ୍ମ ଚରିତ
ଶୁଦ୍ଧ ନିର୍ମଳ କରେ ଚିତ୍ତ ।

ସୂତ ଉବାଚ

ନୈମିଷେ ଋଷିବୃନ୍ଦ ଆଗେ
ସୂତ କହନ୍ତି ଅନୁରାଗେ ।
ନାରଦ ଯୋଗୀ ଏକ ଦିନେ
ପରାନୁଗ୍ରହ ଚିନ୍ତି ମନେ ।
ବୁଲନ୍ତେ ବିବିଧ ଭୁବନେ
ମିଳିଲେ ବ୍ରହ୍ମାର ସଦନେ ।
ମନୁଷ୍ୟ ପ୍ରାୟ ଦେହ ବହି
ବେଦେ ଅଛନ୍ତି ପାଶେ ରହି ।
ବାଳ ଆଦିତ୍ୟ ପ୍ରାୟେ ପ୍ରଭା
ସେ ସଭା କରିଅଛୁ ଶୋଭା ।
ମାର୍କଣ୍ଡ ଆଦି ମୁନିମାନେ
ସ୍ତୁତି କରନ୍ତି ତୋଷ ମନେ ।
ସର୍ବ ଅର୍ଥ ଗୋଚର ଜ୍ଞାନେ
ଶାରଦା ତୁଲେ ଏକାସନେ ।
ଭଗତ ବାଞ୍ଛା ଫଳଦାତା
ଯେ ସବୁ ଜଗତ କରତା ।
ଏମନ୍ତେ ବ୍ରହ୍ମାଙ୍କୁ ଦେଖିଲେ
ପ୍ରଣାମ କରି ସ୍ତୁତି କଲେ ।
ସନ୍ତୋଷ ହୋଇ ପ୍ରଜାପତି
ନାରଦ ମୁନିଙ୍କୁ ବୋଲନ୍ତି ।

କହ ହେ ବଇଷ୍ଣବ ବର
କହିବା, ଯେ ଇଚ୍ଛା ତୁମ୍ଭର ।
ଶୁଣି ନାରଦ ମୁନି କହେ
ହେ ନାଥ ତୋର ଅନୁଗ୍ରହେ ।
ବହୁତ ଶୁଭାଶୁଭ ବାଣୀ
ତୋର ଶ୍ରୀମୁଖୁ ଅଛୁ ଶୁଣି ।
ଏବେ ମୁଁ ପଚାରିବି ଯାହା
ଶୁଣିଲା ମାତ୍ରକରେ ତାହା ।
ମୋଠାରେ ଥିଲେ ଅନୁଗ୍ରହ
ଗୁପତ ନ କରିଣ କହ ।
ଘୋର କଳି ହେଲେ ପ୍ରାପତ
ହେବେ ନରେ ପୁଣ୍ୟ ରହିତ ।
ଦୁରାଚାରରେ ରତ ହେବେ
ସତ୍ୟରେ ବିମୁଖ ହୋଇବେ ।
ପରକୁ ଅପବାଦ ଦେବେ
ପରଦ୍ରବ୍ୟରେ ଲୋଭୀ ହେବେ ।
ପର ସ୍ତ୍ରୀ କରିବେ ସୁରତ
ପର ହିଂସାରେ ଦେବେ ମତ ।
ଦେହେ ଆତ୍ମା ବୁଦ୍ଧି କରିବେ
ଅଜ୍ଞାନ ନାସ୍ତିକ ହୋଇବେ ।
ବୁଦ୍ଧିରେ ପଶୁପ୍ରାୟ ହେବେ
ମାତା ପିତାଙ୍କୁ ଗାଳି ଦେବେ ।
ସେବକ ହେବେ ସ୍ତ୍ରୀଙ୍କର
କାମର ହୋଇବେ କିଙ୍କର ।
ବିପ୍ରେ ଲୋଭୀ ଭସ୍ମାନ୍ତ ହେବେ
ବେଦ ବିକି ପେଟ ପୋଷିବେ ।
ପାଠ ପଢ଼ିବେ ଧନ ପାଇଁ
ନାଶ ହୋଇବେ ଗର୍ବ ବନ୍ଧୁ ।
ଆପଣା କର୍ମକୁ ଛାଡ଼ିବେ
ପରକୁ ବଞ୍ଚନା କରିବେ ।

କ୍ଷତ୍ରିୟ ବୈଶ୍ୟ ନିଜ ଧର୍ମ
ଛାଡ଼ି କରିବେ ଆନ କର୍ମ ।
ଶୂଦ୍ର ଛାଡ଼ିଣ ନିଜ ବୃତ୍ତି
ହେବେ ବ୍ରହ୍ମକର୍ମେ ନିରତ ।୫୦।
ସ୍ତ୍ରିୟା ଭର୍ତ୍ତାଙ୍କୁ ନ ସେବିବେ
ଶାଶୁ ଶ୍ୱଶୁରଙ୍କୁ ନିନ୍ଦିବେ ।
ଏହାଙ୍କ ପରଲୋକେ ଗତି
କିରୂପେ ହେବ ପ୍ରଜାପତି ।
ଏ କଥା ବିଚାରି ସନ୍ତତ
ଆକୁଳ ହେଉଛି ମୋ ଚିତ୍ତ ।
ଅଳପ ଶ୍ରମେ ପିତାମହ
ତାଙ୍କ କୃତାର୍ଥ ମାର୍ଗ କହ ।
ଆପଣ ସବୁ ଯେଣୁ ଜାଣ
ଏଥିକୁ କହ ପରମାଣ ।
ଏମନ୍ତ ଶୁଣି ପଦ୍ମଯୋନି
ବୋଲନ୍ତି ଶୁଣ ମହାମୁନି ।
ଅଛି ସାଧୁଙ୍କ ମଧ୍ୟେ ବର
ଏ ଘେନ କଲି ଏ ବିଚାର ।
କହିବା ପୂର୍ବର ଚରିତ
ଶୁଣ ନିଶ୍ଚଳ କରି ଚିତ୍ତ ।
ଶ୍ରୀରାମ ତତ୍ତ୍ୱ ଜାଣିବାକୁ
ଉମା ପୁଚ୍ଛିଲେ ମହେଶଙ୍କୁ ।
ସେ ତାଙ୍କୁ ଗୁପତ ହୋଇଲେ
ସାନନ୍ଦ ହୋଇ ତା କହିଲେ ।
ସମସ୍ତ ପୁରାଣରେ ସାର
ଅଧ୍ୟାତ୍ମ ବୋଲି ନାମ ଯାର ।
ଶୁଣି ସେ ପୁରାଣ ଗିରିଜା
ତହିଁକି ନିତ୍ୟେ କରି ପୂଜା ।
ସନ୍ତତେ ସେ କଥା ବିଚାରି
ଆତ୍ମାକୁ ଅନୁଭବ କରି ।

ରାମଙ୍କ ଚରିତ୍ରରେ ଭକ୍ତି
ରହିଛି ସେହି ରସେ ମଜ୍ଜି ।
ଏବେ ଯେ ପୁରାଣ ଚରିତ
ଲୋକରେ ହୋଇବ ବିଦିତ ।
ପଢ଼ିଲା ମାନେ ତାହା ଥରେ
ମୁକତ ହୋଇବେ ପାମରେ ।
ବ୍ରହ୍ମହତ୍ୟାଦି ପାପକୁଳ
ଗରଜୁ ଥିବେ ଯେତେ କାଳ ।
କଳିର କଳୁଷସମୂହ
ସେହି କରାଉଥିବ ମୋହ ।
ଏକ ଅନେକେ ଶାସ୍ତ୍ରଜାଳ
ବାଦ କରିବେ ଯେତେ କାଳ ।
ରାମ କି ରୂପେ କି ପ୍ରକାର
ସେ ହୋଇଥିବେ ଅଗୋଚର ।
ଯେତେ ଅଛି ପୁରାଣମାନ
ପ୍ରବର୍ତ୍ତିଥିବେ ତେତେଦିନ ।
ଜଗତେ ଅଧ୍ୟାତ୍ମ ଚରିତ
ନୋହିଛି ଯେତେ କାଳ ଖ୍ୟାତ ।
ଅଧ୍ୟାତ୍ମ ଚରିତ ଶ୍ରବଣ
ଫଳକୀର୍ତ୍ତନର ଫଳମାନ ।
ସବୁ କହିବାକୁ ତ ମୋର
ଶକ୍ୟ ନୋହିବ ମୁନିବର ।
ତଥାପି ସାର ସାର ଜାଣ
କିଛି କହିବା ତାହା ଶୁଣ ।
ପୂର୍ବେ ସନ୍ତୋଷ ମନ ହୋଇ
ଶିବ ଅଛନ୍ତି ମୋତେ କହି ।
ଶ୍ଳୋକେ କି ଅର୍ଦ୍ଧେ ଯେ ପଢ଼ଇ
ସେହୁ ପାପରୁ ମୁକ୍ତ ହୋଇ ।
ଯେ ନିତ୍ୟେ ପଢ଼େ ସାବଧାନେ
ଜୀବନମୁକ୍ତ ଛି ସେମାନେ ।

ଯେ ତାହା ଭକ୍ତିରେ ପଢ଼ଇ
ସେ ଅଶ୍ୱମେଧ ଫଳ ପାଇ ।
ଯେ ତାହା ହେଳାରେ ଶୁଣଇ
ସେ ପାପୁଁ ମୁକତ ହୁଅଇ ।
ଯେ ପୁଣି ହୋଇ ଭକ୍ତିପର
ତାହାଙ୍କ କରେ ନମସ୍କାର
ସମସ୍ତ ଦେବତା ପୂଜନ
ଫଳ ଲଭଇ ସେହୁ ଜନ ।
ଶ୍ରୀରାମଠାରେ ଭକ୍ତ ଥିବ
ଏମନ୍ତ ବ୍ରାହ୍ମଣ ହୋଇବ ।
ଲେଖି ଏ ପୋଥି କଲେ ଦାନ
ସକଳ ବେଦ ଅଧ୍ୟୟନ
ସମସ୍ତ ଶାସ୍ତ୍ର ପଢ଼ିବାର
ସମାନ ଫଳ ହୋଏ ତାର ।
ଯେ ଏକାଦଶୀ କରି ଥାଇ
ଶ୍ରୀରାମ ଭକ୍ତକୁ ଶୁଣାଇ ।
[illegible]ପୁଷ୍କରେ ଯେତେ
ବର୍ଣ୍ଣିଲେ ଫଳ ଲଭେ ତେତେ ।
ରାମନବମୀ କରିଥାଇ
ରାତିରେ ଜାଗର ହୋଇ
ଯେ ଏହା ପଢ଼ଇ ଶୁଣାଇ
ସେ ପୁଣ୍ୟ କହି କି ହୁଅଇ ।
କୁରୁକ୍ଷେତ୍ରାଦି ତୀର୍ଥ ସ୍ଥଳେ
ଆଦିତ୍ୟ ଗ୍ରହଣର କାଳେ
ବ୍ୟାସ ପ୍ରମୁଖ ବିପ୍ରଠାରେ
ଧନ ଆପଣା ସମାନରେ
ଉଭୟମୁଖୀ ଆଦି ଦାନ
କଲେ ନ ଲଭଇ ସେ ପୁଣ୍ୟ ।
ସତ୍ୟ ଏ ସଂଶୟ ନ କର
ଏମନ୍ତ କହିଛନ୍ତି ହର ।

ଯେହୁ ପରମ ହର୍ଷ ହୋଇ
ରାମ ଦିବସରେ ପଢ଼ଇ
ଇନ୍ଦ୍ରାଦି ଦେବତା ତାହାର
ଆଜ୍ଞାରେ ହୁଅନ୍ତି କିଙ୍କର ।
ପଢ଼ିଣ ଏହା ପ୍ରତିଦିନ
କରଇ ଯେହୁ କର୍ମମାନ ।
ସେ ଫଳ ହୁଏ କୋଟିଗୁଣ
ଅତି ବିଶେଷ କଥା ଶୁଣ ।
ତହିଁରେ ଶ୍ରୀରାମ ହୃଦୟ
ଅଛି ଯେ ଅତି ପୁଣ୍ୟମୟ ।
ଯେ ଜନ୍ମ ଦିବସ ପଢ଼ଇ
ବ୍ରହ୍ମହତ୍ୟାରୁ ସେ ତରଇ ।
ଯେ ହନୁମନ୍ତ ପ୍ରତିମାର
ନିକଟେ ନିତ୍ୟେ ଶତଥର ।୧୦୦।
ଶ୍ରୀରାମ ହୃଦୟ ପଢ଼ଇ
ମନେ ବାଞ୍ଛିଲା ଫଳ ପାଇ ।
ତୁଳସୀ ଅଶ୍ୱତ୍ଥ ଯେ ପୁଣି
ପଢ଼ି କରଇ ପ୍ରଦକ୍ଷିଣ ।
ତାହାର ବ୍ରହ୍ମହତ୍ୟା ଦୋଷ
ଅବଶ୍ୟ କରଇ ବିନାଶ ।
ରାମ ଲକ୍ଷ୍ମଣ ସୀତା ଭାବ
ସବୁ ଜାଣନ୍ତି ସଦାଶିବ ।
ଅଧେ ପାର୍ବତୀ ବଖାଣଇ
ତହିଁରୁ ଅଧେ ମୁଁ ଜାଣଇ ।
କହିବା ତହୁଁ କିଛି ଯାହା
ଶୁଣିଲ ମାନବକରେ ତାହା ।
ଚିତ୍ତ ତତ୍କାଳ ଶୁଦ୍ଧି ହୋଇ
ଶିବ ଅର୍ଚ୍ଚନ୍ତି ମୋତେ କହି ।
ଏ ଗୀତାରେ ଯେ କହେ ନାହିଁ
ଏମନ୍ତ ପ୍ରକାରେ କହୁଛି ।

ଖୋଜଲେ ବହୁତ ପ୍ରକାରେ
ତାହାଙ୍କୁ ନ ଦେଖି କାହିଁରେ ।
ଉପନିଷଦ କ୍ଷୀରାର୍ଣ୍ଣବ
ଆପଣେ ମନ୍ଥିଲେ ରାଘବ ।
ଗୀତା ଅମୃତ କଲେ ଜାତ
ତା ଲକ୍ଷ୍ମଣଙ୍କୁ କଲେ ଦତ୍ତ ।
ଭକ୍ତିରେ ଯେ ପାନ କରଇ
ତାହାକୁ ମୃତ୍ୟୁ ନ ବାଧଇ ।
ସହସ୍ରାର୍ଜ୍ଜୁନ ବଧ ପାଇଁ
ପରଶୁରାମ ପୂର୍ବେ ଯାଇଁ ।
ଶଙ୍କର ସମ୍ମୁଖୁ ସେ ଗଲେ
ଧନୁର୍ବିଦ୍ୟା ଅଭ୍ୟାସ କଲେ ।
ସେ କାଳେ ରାମ ଗୀତା ପଢ଼ୁଁ
ଶ୍ରବଣ କଲେ ତାଙ୍କ ତଣ୍ଡୁଁ ।
ଏ ପୁସ୍ତି ଗ୍ରହଣ ତା କଲେ
ବାସ୍ତ୍ରର କଳାକୁ ପାଇଲେ ।
ବ୍ରହ୍ମହତ୍ୟାଦ ପାପମାନ
ନାଶ କିବାକୁ ଭଂର ମନ ।
ଯେ ମାସେ ମାହାତ୍ମ୍ୟ ପଢ଼ଇ
ତହୁଁ ସେ ମୁକତ ହୁଅଇ ।
କେନଇ ଯେ ଅପାର ଦାନ
ଅଶ୍ୱମେଧ କରଇ ଭୋଜନ
ଅସାର କଥା ସମ୍ଭାଷଣ
ହୁଅନ୍ତି ଯେତେ ପାତକ ପୁଣି
ସେ ପାପମାନଙ୍କରୁ ଅରେ
ପଡ଼ିଲେ ମୁକ୍ତ ହୋନ୍ତି ନରେ ।
କୁଳବତୀ ଅବ୍ରତ ରଜସ୍ୱଳୀ
ଶାଳଗ୍ରାମର ଅଗ୍ରେ ବସି
ପଢ଼ିଲେ ଯେତେ ଫଳ ଫଳ
ବଦନେ କହ ତା କହର ।

ଶ୍ରାଦ୍ଧରେ କରେ ଯେ ପଠନ
ବିପ୍ରଙ୍କୁ କରାଇ ଭୋଜନ
ତାହାର ପିତୃଲୋକମାନେ
ବସନ୍ତି ବୈକୁଣ୍ଠ ଭୁବନେ ।
ଏକାଦଶୀରେ ଉପବାସ
କରଣ ଯେ ଆଉ ଦିବସ
ଅଗସ୍ତି ତରୁର ମୂଳରେ
ପଢ଼ଇ ହରଷ ମନରେ
ସେ ସବୁ ଦେବେ ପୂଜ୍ୟ ହୋଇ
ଶ୍ରୀରାମ ସ୍ୱରୂପ ଲଭଇ ।
ଦାନଧ୍ୟାନ ତୀର୍ଥସ୍ନାନ
ନ କରି ଥାଇ ଯେଉଁ ଜନ
ସେ ଯେବେ ଏ ଗୀତା ପଢ଼ଇ
ଅକ୍ଳେଶେ ମୁକତ ହୁଅଇ ।
ଅଉ ବହୁତ କହୁ ପୁଣି
କି ହେବ ତତ୍ତ୍ୱ ଏବେ ଶୁଣ ।
ସମସ୍ତ ପୁରାଣ ସ୍ମୃତି
ବେଦ ଭାରତ ଯେତେ ଛନ୍ତି
ଅଧ୍ୟାତ୍ମ କଳାକୁ ସମାନ
ନୁହନ୍ତି ଶୁଣ ତପୋଧନ ।
ଅଧ୍ୟାତ୍ମ ରାମ ଚରିତକୁ
ବ୍ରହ୍ମା କହିଲେ ନାରଦଙ୍କୁ ।
ସେ ଏହା ଶ୍ରଦ୍ଧାରେ ପଢ଼ଇ
କି ଅବା ଭକ୍ତିରେ ଶୁଣଇ ।
ସବୁ ଦେବଙ୍କ ପୂଜ୍ୟ ହୋଇ
ସେ ଭକ୍ତ ପଦକୁ ଲଭଇ ।
ସେ ଜନ୍ମସ୍ୱରୂପ ବସ୍ତୁକୁ
ଭୁଞ୍ଜଇ ନାଶ କରବାକୁ ।
ଦେବେ ମାଗିଲେ ବ୍ରହ୍ମପୁରର
ଏବେ ସେ ଅଧ୍ୟତ୍ମ କରିବ ।

ମାୟା ମନୁଷ୍ୟରୂପ ଧରି
ରଘୁସକୁଳ ନାୟକରି ।
ପାପଘ୍ନ କୀରତି ରଖିଲେ
ପୁଣି ସେ ବ୍ରହ୍ମଭାବ ହେଲେ ।
ସେ ସୀତାପତିଙ୍କି ମୋହର
ସତତେ ହେଉ ନମସ୍କାର ।
ଜଗତ ସର୍ଜନା ପାଳନ
ସଂହାର ହେତୁର କାରଣ ।
ଯହୁଁ ସେ ଅଦ୍ୱିତୀୟ ପୁଣି
ମାୟା ଆଶ୍ରୟ ବୋଲି ଜାଣି ।
ମାୟାଗୁଣରେ ନ ମିଶାଇ
ଯା ମୂର୍ତ୍ତି ଚିନ୍ତଣ ନୁହଇ ।
ଆନନ୍ଦ ସ୍ୱରୂପ ଅଟଇ
ଯେ ଅବିଦ୍ୟାରେ ନ ମିଶଇ ।
ଆତ୍ମା ଜ୍ଞାନ ସ୍ୱରୂପ ଯହୁଁ
ଆପଣା ତ ଜାଣନ୍ତି ତହୁଁ ।
ସେ ଲକ୍ଷ୍ମୀପତିଙ୍କୁ ମୋହର
ସତତେ ହେଉ ନମସ୍କାର ।
ସମସ୍ତ ପୁରାଣସମ୍ମତ
ଯେ ଏହୁ ଅଧ୍ୟାତ୍ମ ଚରିତ
ଶ୍ରଦ୍ଧାରେ ପଢ଼ଇ ଶୁଣଇ
ନିଶ୍ଚୟ ହରିଙ୍କି ସେ ପାଇ ।
ଯେ ଭବୁ ମୁକତି ଇଚ୍ଛିବ
ସେ ପ୍ରାଣୀ ଏହାକୁ ପଢ଼ିବ
ଏହା ଯେ ନିତ୍ୟାନ୍ତି ପଢ଼ଇ
ଗୋ-କୋଟି ଦାନ ଫଳ ପାଇ ।
ଶିବମୁଖ ଗିରି ସମ୍ଭୂତ
ଶ୍ରୀରାମ ଅର୍ଣ୍ଣବେ ସଙ୍ଗତ ।
ଅଧ୍ୟାତ୍ମ ନାମ ଗଙ୍ଗା ନିତ୍ୟ
କରନ୍ତୁ ତ୍ରୈଲୋକ୍ୟ ପବିତ୍ର ।

ବ୍ରହ୍ମା ବୋଇଲେ ଅହେ ଦ୍ୱିଜ
ଶତ ଆଦିତ୍ୟ ସମ ତେଜ ।
ଏମନ୍ତ କୈଳାସ ମଧ୍ୟରେ
ଦିବ୍ୟ ରତନ ପୀଠ ପରେ ।
ସିଦ୍ଧ ଗଣରେ ସେବ୍ୟମାନ
ହୋଇ ସେ କରୁଛନ୍ତି ଧ୍ୟାନ ।
ଏମନ୍ତ ଶିବ ବାମ ଅଙ୍ଗେ
ଥାଇ ପାର୍ବତୀ ଅନୁରାଗେ ।
ଭଗତି ଭାବେ ତୁ ଯୋଡ଼ିକର
କହିଲେ କରି ନମସ୍କାର ।

ପାର୍ବତୀଉବାଚ

ସାକ୍ଷୀ ତୁ ସମସ୍ତ ଆତ୍ମାର
ତୁ ଅବିନାଶୀ ତୁ ଈଶ୍ୱର ।
ସମସ୍ତ ପାପ ନିବାରଣ
ପରମ ଅନାଦି କାରଣ ।
ବିଷ୍ଣୁର ଅବିନାଶୀ ତତ୍ତ୍ୱ
କହି ମୋ ବୋଧ କର ଶତ୍ରୁ ।
ଅତି ଗୁପତ କଥାମାନ
ଭକ୍ତକୁ କହେ ସାଧୁଜନ ।
ମୁଁ ତୋ ଭଗତ ତୁ ମୋ ପ୍ରିୟ
ଏ ହେତୁ କହ ସ୍ୱାମୀ ଶ୍ରେୟ ।
ଜ୍ଞାନ ଭଗତ ବଇରାଗ୍ୟ
କହ ହୋଇଣ ଅନୁରାଗ ।
ଯିଶି ମୁଁ ବୁଝିବି ଯେମନ୍ତେ
ସେରୂପେ ଆଜ୍ଞା ହେଉ ମୋତେ ।
ଯାହାକୁ ଜନେ ନାବ କରି
ଭବ ସମୁଦ୍ର ହେବେ ପାରି ।
ପ୍ରଥମେ ପରମ ରହସ୍ୟ
କହିବା ହେଉ ଦାଗବାସ ।

ରାମ ଯେ ସବୁ ତତ୍ତ୍ୱସାର
ତାହାରେ ଆତ୍ମ ବୁଦ୍ଧିଙ୍କର ।
ଭଗତ ଅଛୁ ତ ହୃଦରେ
ଏଥିଁ ଦୁର୍ଲ୍ଲଭ ଜଗତରେ ।
ସଂସାର ଦୁଃଖ ନାଶ ପାଇଁ
ଆଉ ଉପାୟ କିଛି ନାହିଁ ।
ତଥାପି ସଂଶୟ ମୋହର
କହ ଛିଣ୍ଡାଅ ମହେଶ୍ୱର ।
କେ ବୋଲେ ରାମ ମାୟାଗୁଣି
ପ୍ରବାହ ବାନ୍ଧିଛନ୍ତି ପୁଣି ।
ଏମନ୍ତ ବୋଲି ସାବଧନେ
ଦୃଢ଼େ ଭଜନ୍ତି ଏକମନେ ।
ଯେଣେ ସିଦ୍ଧ ସେ ହୁଅନ୍ତି
ପରମ ପଦକୁ ଲଭନ୍ତି ।
କେ ପୁଣି ବୋଲଇ ଏମନ୍ତ
ପରାତ୍ମା ହେଲେ ସୀତାକାନ୍ତ ।
ସେ ପୁଣି ଅବିଦ୍ୟାରେ ଥାଇ
ଆପଣା ଆତ୍ମା ନ ଜାଣଇ ।
ପର କହିଲେ ଜ୍ଞାନ ହୋଏ
ଏ କଥା ହୋଇଲା ସଂଶୟେ ।
ଜାଣିଲେ କାହା ରଘୁସାଇଁ
ବିଳାପ କଲେ ସୀତା ପାଇଁ ।
ଯେବେ ଆତ୍ମାକୁ ନ ଜାଣିବେ
ସବୁର ସଙ୍ଗେ ସମ ହେବେ ।
କେବେ ସେ କାହା ହେବେ ସେବ୍ୟ
ଏ ଭେଦ କହ ମହାଦେବ ।

ଶ୍ରୀ ମହାଦେବ ଉବାଚ

ଶୁଣି ବୋଲନ୍ତି ପଶୁପତି
ତୁ ଧନ୍ୟ ତୁ ବଡ଼ ସୁକୃତି ।
ରାମ ତତ୍ତ୍ୱ ଶ୍ରବଣେ ମନ
ହେଲା ଯେଣୁ ତୋ ଭକ୍ତି ଧନ୍ୟ ।
ଏ ଅତି ରହସ୍ୟ ତ କେହୁ
ପଚୁର ନ ଥିଲେ ଗୋ ସହି ।
ଏବେ ତୁ ଜଗତରେ ଯାହା
ପୁଛିଲୁ କହିବି ମୁଁ ତାହା ।
ରାମଙ୍କ କରି ଦଣ୍ଡବତ
କହୁଛି ଶୁଣ ଦେଇ ଚିତ୍ତ ।
ଶ୍ରୀ ରାମ ପ୍ରକୃତିରୁ ପର
ଆତ୍ମା ସେ ଅନାଦି ଈଶ୍ୱର ।
ଅନାଦି ପୁରୁଷଟି ସେହି
ଯହୁଁ ଦ୍ୱିତୀୟ କେହି ନାହିଁ ।
ପୁରୁଷୋତ୍ତମ ଯେ ବୋଲନ୍ତି
ସେହି ସ୍ୱରୂପ ସେ ଅଟନ୍ତି ।
ଆପଣା ମାୟାରେ ବିହରି
ସବୁ ସୃଷ୍ଟି ସର୍ଜନା କରି ।
ଆକାଶ ପ୍ରାୟେ ପ୍ରଚରନ୍ତି
ଅନ୍ତର ବାହାରେ ଅଛନ୍ତି ।
ସବୁରି ଅନ୍ତରେ ପ୍ରକାଶ
ହେଲେ ତା ଆତ୍ମା ଅପ୍ରକାଶ ।
ଏମନ୍ତ ହୋଇ ଅପଣାର
ମାୟାରେ ହୋଇ ପରବଶର ।
ଜଗତ ସର୍ଜନା କରିଛି
ଏମନ୍ତ ସେ ଟି କହୁଅଛି ।
ଚୁମ୍ବକ ଦେଖି ଲୁହାମତ
ଯା ପାଖେ ଭ୍ରମଇ ଜଗତ ।
ଅବିଦ୍ୟାରେ ଯେ ମୂଢ଼ ହୋଇ
ସେ ଲୋକ ଏହା ନ ଜାଣଇ ।
ବିଶୁଦ୍ଧ ଚୈତନ୍ୟ ସ୍ୱରୂପ
ସେ ପୁଣି ପରମାତ୍ମା ନିଷ୍ପାପ ।

ଏମନ୍ତ ବସ୍ତୁ ଠାରେ ନୋଇ
ଆପଣା ଅଜ୍ଞାନ ରଖଇ ।
ଯେ ଘର କର୍ମ ଧନ ସୁତ
ଏଥିରେ ହୋଇ ଆସକତ
ଅସାର ସଂସାରେ ପଡ଼ଇ
ସେ ଶ୍ରୀରାମଙ୍କୁ ନ ଜାଣଇ ।
ଆପଣା ବେକେ ସୁନା ଥାଇ
ତା ଯେସନ୍ତେ ଅନ୍ଧ ନ ଜାଣଇ ।
ଯେସନ୍ତେ ଅପ୍ରକାଶ ହୋଇ
ଦିବାକରର ବେଳ ନାହିଁ ।
ରାମ ଈଶ୍ୱର ମାନଙ୍କର
ଅଟନ୍ତି ପରମ ଈଶ୍ୱର ।
ବିଶୁଦ୍ଧ ସେ ଜ୍ଞାନ ସ୍ୱରୂପ
ସେ ପରମାତ୍ମା ସେ ନିଷ୍ପାପ ।
ଏମନ୍ତ ରାମଚନ୍ଦ୍ର ତହିଁ
ଅବିଦ୍ୟା ପ୍ରବର୍ତ୍ତିବ କାହିଁ ।
ମୋହ ହୁଅଇ ଯେଉଁ ନର
ନୟନ ଭ୍ରମିଲରୁ ତାର ।
ଯେଉଁ ସ୍ଥଳକୁ ସେ ଅନାଇ
ବୁଲିଲି ପ୍ରାୟେ ସେ ଦିଶଇ ।
ଦେହ ଇନ୍ଦ୍ରିୟବନ୍ତ ନର
ଯେତେ କଲାର କର୍ମ ତାର
ସେହି କର୍ମରେ ମୋହ ହୋଇ
ଈଶ୍ୱରଠାରେ ତା ଦେଖଇ ।
ଯେସନ୍ତ ହୋଇ ରବି ତହିଁ
ରାତ୍ରି ଦିବସ ଦୁଇ ନାହିଁ ।
ସେ ରୂପେ ରାମଚନ୍ଦ୍ର ତହିଁ
ବିଦ୍ୟା ଅବିଦ୍ୟା ବେନି ନାହିଁ ।
ଏ ଘେନି କରି ସେ କେବଳ
ଜ୍ଞାନ ସ୍ୱରୂପ ଆଦମୂଳ ।

ଆନନ୍ଦମୟ ରାମ ତହିଁ
ଅଜ୍ଞାନ କଛୁହିଁ ଯେ ନାହିଁ ।
ସାକ୍ଷୀ କେବଳ ଅଜ୍ଞାନର
କେବଳ ଆଶ୍ରୟ ମାୟାର ।
ମୋହ କଛୁହିଁ ପୁଣି ନାହିଁ
ହେ ସଖି ଏ ମନ୍ତ୍ର ରାମହିଁ ।
କହିବା ଏ ବିଷୟ ପୁଣି
ଦୁର୍ଲ୍ଲଭ ରହସ୍ୟ ପ୍ରମାଣି ।
ରାମ ମାରୁତି ବଇଦେହୀ
ସମ୍ବାଦ ମୋକ୍ଷକୁ ଦିଅଇ ।
ପୂର୍ବକାଳରେ ଗୋ ଗଉରୀ
ବଳ ବାହନ ପୁତ୍ର କରି
ଦେବକଣ୍ଟକ ରାବଣକୁ
ଶ୍ରୀରାମ କଲେ ନିଧନକୁ ।
ସୀତା ଲକ୍ଷ୍ମଣ ହନୁବୀର
ସୁଗ୍ରୀବ ଆଦି ଯେ ବାନର
ସହିତେ ପୁଷ୍ପକରେ ବସି
ମିଳିଲେ ଅଯୋଧ୍ୟାରେ ଆସି ।
ବିଜେ କରାଇ ସିଂହାସନେ
ବଶିଷ୍ଠ ଆଦି ମୁନିମାନେ
ଘେନିଣ ସୁବାସ ଉଦକ
ରାମଙ୍କୁ କଲେ ଅଭିଷେକ ।
ଏହି ସମୟେ ହନୁମନ୍ତ
କେବଳ ଜ୍ଞାନ ଅପେକ୍ଷିତ
ହୋଇ ତୀରରେ କର ଯୋଡ଼ି
ରହିଲା ରାମଙ୍କୁ ଅନାଇଁ ।
ଏମନ୍ତ ଦେଖି ରଘୁପତି
ଜାନକୀ ଆଗରେ କହନ୍ତି ।
ହନୁମନ୍ତର ଆମ୍ଭଠାଇଁ
ଦୃଢ ଭକତି ଅଛି ହୋଇ ।

ଜ୍ଞାନର ପାର ଏ ଅଟଇ
ଏହାକୁ ତତ୍ତ୍ୱ କହ ସହ ।
ସୀତା ବୋଇଲେ ହନୁମାନ
ଶୁଣ ତୁ ଆମ୍ଭର ବଚନ ।
ପରମ ବ୍ରହ୍ମ ଏ ବୋଲିଣ
ରାମଚନ୍ଦ୍ରଙ୍କୁ ନିଶ୍ଚେ ଜାଣ ।
ବିଶୁଦ୍ଧ ଜ୍ଞାନରୂପମୟ
ଆନନ୍ଦ ସ୍ୱରୂପ ଅବ୍ୟୟ ।
ନିର୍ମଳ ଶାନ୍ତ ନିର୍ବିକାର
ନିଷ୍କାମ ପ୍ରାଜ୍ଞ ନିରାକାର ।
ସମସ୍ତ ଏହାଙ୍କ ନିବାସ
ଆପଣା ଇଚ୍ଛାଏ ପ୍ରକାଶ ।
ମୁଁ ଟି ମୂଳ ପ୍ରକୃତି ଜାଣ
ସର୍ଗ ସ୍ଥିତି ଲୟ କାରଣ ।
ରାମର ନିକଟକୁ ଯାଇ
ଜଗତ ସର୍ଜନା କରଇ ।
ଅଜ୍ଞାନ ଲୋକ ଦେଖି ତାହା
ବୋଲନ୍ତି ରାମ କଲେ ଏହା ।
ଏ ଯାହା ଅଯୋଧ୍ୟା ନଗରେ
ନିର୍ମଳ ଅଦିତ୍ୟ ବଂଶରେ ।
କୌଶଲ୍ୟା ଗର୍ଭେ ଜନ୍ମ ହେଲେ
କୌଶିକ ଯାଗ ରକ୍ଷା କଲେ ।
ଅହଲ୍ୟା ଶାପୁଁ ମୁକ୍ତ କଲେ
ଶଙ୍କର କାର୍ମୁକ ଭାଙ୍ଗିଲେ ।
ମୋତେ ଯା ବିବାହ ହୋଇଲେ
ଭାର୍ଗବ ଦର୍ପ ନାଶ କଲେ ।
ମୋ ତୁଲେ ଅଯୋଧ୍ୟାରେ ବାସ
ହୋଇଲା ଦ୍ୱାଦଶ ବରଷ ।
ଦଣ୍ଡକ ଅରଣ୍ୟକୁ ଗଲେ
ବିରାଧକୁ ଯା ବଧ କଲେ ।

ମାୟା ମାରୀଚ ଯାହା ମଲା
ମାୟା ସୀତା ହରଣ ହେଲା ।
ଜଟାୟୁ ମୁକତି ହୋଇଲେ
କବନ୍ଧ ଶାପୁଁ ମୋକ୍ଷ ହେଲେ ।
ହୋଇଲେ ଶବରୀ ପୂଜିତ
ସୁଗ୍ରୀବ ସଙ୍ଗେ ହେଲେ ମିତ ।
ବାଳିକି ଯାହା ବଧ କଲେ
ମୋତେ ବାନରେ ଖୋଜି ଗଲେ ।
ସେତୁ ଯେମନ୍ତ ହୋଇ ହେଲା
ଲଙ୍କା କଟକ ବେଢ଼ାଗଲା ।
ରାବଣ ସଗୋତ୍ର ସହିତେ
ବଧ ହୋଇଲା ଯେଉଁ ମତେ ।
ବିଭୀଷଣକୁ ରାଜ୍ୟ ଦେଲେ
ମୋ ତୁଲେ ଏଥକୁ ଅଇଲେ ।
ଏବେ ହୋଇଲେ ଅଭିଷେକ
ମୁଁ କଲି ଏତେ କଥା ଯାକ ।
ନିର୍ବିକାର ଯେ ରାମଠାରେ
ଅଜ୍ଞାନ ଆରୋପଣ କରେ ।
ଏ ରାମ କାହିଁକି ନ ଯାନ୍ତି
କେଉଁ ସ୍ଥଳରେ ଏ ନ ଥାନ୍ତି ।
କିଛି ଶୋଚନା ନ କରନ୍ତି
କିଛି ମନରେ ନ ଧରନ୍ତି ।
କିଛିହିଁ ତ୍ୟାଗ ନ କରଇ
ଆନନ୍ଦ ସ୍ୱରୂପ ଅଟଇ ।
ଅଚଳ ପରିଣାମହୀନ
ମାୟା ଗୁଣରେ କଲେ ମନ ।
ଏ ସବୁ କଲା ପ୍ରାୟ ହୋଇ
ମନକୁ ପରତେ ହୁଅଇ ।
ଏଥୁ ଉତ୍ତରେ ରଘୁବୀର
ବୋଇଲେ ପବନ କୁମାର ।

ଶରୀର ଜୀବ ପରମର
ଏ ଭେଦ ତତ୍ତ୍ୱ ଶୁଣ ବୀର ।
ଆକାଶ ଯେମନ୍ତ ହୋଇଣ
ଦିଶଇ ତିନି ପ୍ରକାରେଣ ।
ଏ ଭେଦ ସେହି ରୂପେ ଜାଣି
କହିବା ସେ ତିନି ଲକ୍ଷଣି ।
ମହା ଆକାଶ ଘଟାକାଶ
ହୋଏ ପ୍ରତିବିମ୍ବ ଆକାଶ ।
ବୁଦ୍ଧିର ଅବଚ୍ଛିନ୍ନ ସେହି
ଏ ରୂପେ ଚୈତନ୍ୟ ଅଛଇ ।
ସେ ପୁଣି ଯେବେ ଏକ ହୋଇ
ସମ୍ପୂର୍ଣ୍ଣ ତେବେଟି ବୋଲାଇ ।
ପରମ ତିନି ପରକାର
ଏ ରୂପେ ଆଭାସ ବଶୃର ।
ଏମନ୍ତ ଆଭାସ ବୁଦ୍ଧିରେ
ସଭ୍ରମ ହୋଇ ମୂର୍ଖ ନରେ ।
ଯେ ଅବଚ୍ଛିନ୍ନ ଅବିକାରୀ
ସମସ୍ତ ସାକ୍ଷୀ ଯେଉଁ ହରି ।
ତାଠାରେ ଭ୍ରମବୁଦ୍ଧି ହୋନ୍ତି
କର୍ତ୍ତା ଏ ଜୀବ ଏ ବୋଲନ୍ତି ।
ଅବିଦ୍ୟାରୁ ଯେ ମିଥ୍ୟା ହୋଇ
ସେ ବୁଦ୍ଧି ଆଭାସ ବୋଲାଇ ।
ଯେ ଅବଚ୍ଛିନ୍ନମୟ ବ୍ରହ୍ମ
ସକଳେ ବିଚ୍ଛେଦ ତା ନାମ ।
ସେ ଅବଚ୍ଛିନ୍ନ ପୁଣି ଯାଇ
ପୂର୍ଣ୍ଣରେ ଏକତ୍ୱ ହୁଅଇ ।
ଆଭାସଯୁକ୍ତ ଅହଙ୍କାର
ମହା ବାକ୍ୟରେ କରି ତାର ।
ଜୀବ ପରମ ଯେବେ ଦୁଇ
ଏକତ୍ୱ ଜ୍ଞାନ ଜାତ ହୋଇ ।
ତେବେ ଅବିଦ୍ୟା ସଂସାରର
ମୂଳରେ ନାଶ ହୁଏ ତାର ।
ଏହା ଯେଉଁ ଭକ୍ତ ଜାଣଇ
ସେହି ସେ ମୋ ଭାବ ଲଭଇ ।
ଯେ ମୋ ଭକ୍ତିରେ ହୀନ ହୋଇ
କେବଳ ଶାସ୍ତ୍ରେ ଶ୍ରମ ପାଇ ।
ସେ ଲୋକ ହେଲେ ଜନ୍ମ ଶଏ
ଜ୍ଞାନ ମୁକତି ସେ ନ ପାଏ ।
ମୁଁ ଟି ସବୁର ଆତ୍ମାମୟ
ଏ ମୋର ଏକାନ୍ତ ହୃଦୟ ।
ସାକ୍ଷାତ କହିଲି ମୁଁ ତୋତେ
ତାକୁ ନ ଦେବୁ କଦାଚତେ ।
ଯେ ମୋ ଭକ୍ତିରେ ହୀନ ହୋଇ
ସାଧୁଙ୍କୁ ବଞ୍ଚନା କରଇ ।
ଏଥିର କୋଟି ଅଂଶେ ପୁଣି
ସମ ନୁହଇ ଇନ୍ଦ୍ର ପୁଣି ।

ଶ୍ରୀ ମହାଦେବ ଉବାଚ

ଶଙ୍କର ବୋଲନ୍ତି ପାର୍ବ୍ବତି
ଯାହା କହିଲେ ରଘୁପତି ।
ସେ ହୃଦୟ ତ କହିଲଇଁ
ଏ ବଡ଼ ଗୁପତ ଅଛଇ ।
ଅତ୍ୟନ୍ତ ରମ୍ୟ ଏ ରହସ୍ୟ
ପାପ ସମୂହ କରେ ନାଶ ।
ସବୁ ବେଦାନ୍ତ ସାର ଏହି
ଏହା ଯେ ସନ୍ତତ ପଢ଼ଇ ।
ସେ ମୁକ୍ତ ସଂଶୟ ନ କର
ବହୁତ ଜନ୍ମ ଅର୍ଜିଲାର ।
ବ୍ରହ୍ମହତ୍ୟାଦି ପାପକୁଳ
ବହିନ ନାଶଇ ସକଳ ।
ଜାତରୁ ଯେ ଭ୍ରଷ୍ଟ ହୁଅଇ
ଯେ ଅତି ପାପ କରିଥାଇ

ଯେ ପରଧନେ ଲୋଭୀ ହୋଇ
ଯେ ପରସ୍ତିରଙ୍କୁ ରମଇ
ଯେ ଅବା ସୁବର୍ଣ୍ଣ ଚୋରାଇ
ଯେ ବ୍ରହ୍ମହତ୍ୟା କରିଥାଇ
ଯେ ମାତା ପିତା ଥାଇ ମାର
ଯେ ଯୋଗୀ ବୃନ୍ଦେ ଅପକାରୀ
ସେ ଯେବେ ରାମଙ୍କୁ ପୂଜନ୍ତି
ଭକ୍ତିରେ 'ହୃଦୟ' ପଢ଼ନ୍ତି
ଯୋଗୀନ୍ଦ୍ରମାନେ ଯା ନ ପାନ୍ତି
ଅନାୟାସେ ସେ ପଦ ଲଭନ୍ତି ।
ତାହାଙ୍କୁ ସମସ୍ତ ଅମର
ପୂଜା କରନ୍ତି ନିରନ୍ତର ।
ଶିବ ବୋଲନ୍ତି ଶୁଣ ଉମା
ଏମନ୍ତ ଶ୍ରୀରାମ ମହିମା ।
କହିଲି ତୁହି ହେଲୁ ଧନ୍ୟ
ତୋହରେ ଲଭିଲି ମୁଁ ପୁଣ୍ୟ ।
ଅଧ୍ୟାତ୍ମ ପୁରାଣ ଚରିତ
ଭାଷା ପ୍ରକାରେ କଲି ଗୀତ ।
ଶଙ୍କର କହିଛନ୍ତି ଯାହା
ମୋ ଛାର କି କହିବ ତାହା ।
ଏ ଅଟେ ଅକାଶ ପ୍ରକାର
କହିଲି ଯେତେ ମୋ ଗୋଚର ।
ଏମନ୍ତ ବଚନ ମୋହର
ସୁଜନେ ଦୋଷ କ୍ଷମା କର ।
ଶ୍ରୀରାମ ପାଦେ ଯେ କିଙ୍କର
ତାଙ୍କ କିଙ୍କର ହଳଧର ।
ଭଣଇ ଏହୁ ରସ ବାଣୀ
ଶୁଣି ସଂସାରୁ ତର ପ୍ରାଣୀ ।
ଶ୍ରୀରାମଚନ୍ଦ୍ର ଦିବ୍ୟ ପଦ
ହେଉ ମୋ ସମସ୍ତ ସମ୍ପଦ ।
ହେ ରାମ ତୋ ଦାସର ଦାସ
କୋଟି ଦାସଙ୍କୁ ମୋ ଆଶ ।
ଏ ଅଧ୍ୟା ଜନ୍ମ ଶତ ଦୁଇ
ସମସ୍ତ ଦୁରିତ ହରଇ ।
ରାମ ଚରଣେ ଅଶ୍ରା କର
ଭବ ସାଗରୁ ହେବ ପାର ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଆଦିକାଣ୍ଡେ ଶ୍ରୀରାମହୃଦୟୋ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

### ପାର୍ବତ୍ୟୁବାଚ

ପାର୍ବତୀ ବୋଲେ ପଶୁପତି
ମୁଁ ଧନ୍ୟ ମୁଁ ଅତି ସୁକୃତି ।
ତୁମ୍ଭ ପ୍ରସାଦେ ବିଶ୍ୱନାଥ
ଶୁଣି ମୁଁ ହୋଇଲି କୃତାର୍ଥ ।
ସନ୍ଦେହ ଗଣ୍ଠି ମୋ ଫିଟିଲା
ମୋହ ପଟଳ ନାଶ ଗଲା ।
ଦୁଷ୍କୃତ ନାଶଇ ସନ୍ତତ
ଶ୍ରୀରାମ ଚରିତ ଅମୃତ ।
ଚନ୍ଦ୍ରେଙ୍କୁ ବଦନୁଁ ତୁମ୍ଭର
ତା ପାନ କଲେ ହେଁ ମୋହର

ମନ ମୋ ତୃପ୍ତି ହେଉ ନାହିଁ
କହିବା ହେଉ ଭାବଗ୍ରାହୀ ।
ସଂକ୍ଷେପେ ଶୁଣିଲି ମୁଁ ଯାହା ।
ବିସ୍ତାର ଆଜ୍ଞା ହେଉ ତାହା

ଶ୍ରୀ ମହାଦେବ ଉବାଚ

ଶୁଣି ବୋଇଲେ ଶିବ ଉମା
ପରାତ୍ମା ଶ୍ରୀରାମ ମହିମା ।
ଗୁହ୍ୟରୁ ଗୁହ୍ୟ ସେ ଅଟଇ
ରାମ ଅଛନ୍ତି ମୋତେ କହି ।
ଶୁଣିଲା ମାତ୍ରେ ତାପତ୍ରୟ
ନାଶ ହୋଏ ଅଜ୍ଞାନ ଭୟ ।
ବହୁତ ସମ୍ପଦ ଲଭଇ
ଆୟୁଷ ପୁତ୍ରବନ୍ତ ହୋଇ ।
ରାବଣ ଆଦି ରାକ୍ଷସର
ଭୟରେ ହୋଇଣ କାତର ।
ଭୂମି ସୁରଭୀ ରୂପ ହୋଇ
ଦେବତା ବୃନ୍ଦ ତୁଲେ ଯାଇ ।
ବ୍ରହ୍ମାଙ୍କ ଛାମୁରେ ମିଳିଲା
ସମସ୍ତ ଦୁଃଖ ଜଣାଇଲା ।
ବ୍ରହ୍ମା ମୁହୂର୍ତ୍ତେ ଧ୍ୟାନ କଲେ
ପୃଥ୍ୱୀର ବେଦନା ଜାଣିଲେ ।
ସର୍ବ ଦେବଙ୍କ ସଙ୍ଗେ ଘେନି
ବାହାର ହେଲେ ପଦ୍ମଯୋନି ।
ମିଳିଲେ କ୍ଷୀରସିନ୍ଧୁ ତୀରେ
ବିଷ୍ଣୁଙ୍କ ଧରି ହୃଦୟରେ ।
ବେଦ ପୁରାଣ ସିଦ୍ଧ ଯେହୁ
ସେ ପାଦେ ସ୍ତୁତି କଲେ ସହୁଁ ।
ଯେ ସବୁ ହୃଦୟରେ ଅଛନ୍ତି
ସର୍ବଙ୍କ ପୁରୁଷ ଅଟନ୍ତି ।

ଅବିଦ୍ୟା ନାଶଇ ସନ୍ତତ
ଯାର ମହିମା ଅପ୍ରମିତ ।
କୌସ୍ତୁଭ ଶ୍ରୀବତ୍ସଲାଞ୍ଛନ
ବନମାଳାରେ ଶୋଭିବନ ।
ସନକ ଆଦି ମୁନିମାନେ
ସ୍ତୁତି କରନ୍ତି ତୋଷମନେ ।
ନନ୍ଦାଦି ପାରଷଦ ଯେତେ
ବେଢ଼ିଣ ଅଛନ୍ତି ସମସ୍ତେ ।
ଶଙ୍ଖ ଚକ୍ର ଗଦା ପଙ୍କଜ
ଏଣେ ଶୋଭିତ ଚାରିଭୁଜ
କନ୍ଧରେ ସୁବର୍ଣ୍ଣ ପବିତ
କଟୀ ତଟରେ ପୀତବସ୍ତ୍ର ।
ସହିତ ଅଟନ୍ତି ଲକ୍ଷ୍ମୀରେ
ବିଜୟେ ଗରୁଡ଼ କନ୍ଧରେ ।
ଗୋବିନ୍ଦ ଏମନ୍ତ ପ୍ରକାରେ
ମିଳିଲେ ବ୍ରହ୍ମା ଅଗ୍ରଭରେ ।
ଦେଖି ହରଷ ପ୍ରଜାପତି
ଅତି ଉତ୍ସୁକେ କଲେ ସ୍ତୁତି ।
ଭକ୍ତିରେ ଗଦଗଦ ହୋଇ
ଆନନ୍ଦେ ଅଶ୍ରୁଜଳ ବହି ।

ବ୍ରହ୍ମୋବାଚ

ଭୋ ଦେବ କର୍ମପାଶୁ ମୁକ୍ତ
ହେବାକୁ ଯେ ଚିନ୍ତେ ସନ୍ତତ ।
ଇନ୍ଦ୍ରିୟ ମନ ବୁଦ୍ଧି ତୁଲେ
ଭଜନ୍ତି ଚରଣକମଳେ ।
ସେ ପାଦପଦ୍ମକୁ ଭୁମ୍ଭର
କରୁଅଛି ମୁଁ ନମସ୍କାର ।
ତୋ ମାୟା କରଇ ସଂସାର
ସର୍ଜନୀ ପାଳନା ସଂହାର ।
ତୁ ଶୁଦ୍ଧ ଜ୍ଞାନ ରୂପ ଯେଣୁ
ତହିଁ ନ ମିଶୁ ସ୍ୱାମୀ ତେଣୁ ।

ସମସ୍ତ ଦାନ ଅଧ୍ୟୟନ
ସକଳ କର୍ମ କଲେ ମନ ।
ଏ ରୂପେ ଶୁଦ୍ଧ ନୋହେ ପ୍ରାଣୀ
ତୋର ଚରିତ ଶ୍ରୁତେ ଗୁଣି ।
ସାଧୁଜନମାନଙ୍କ ମନ
ବିଶୁଦ୍ଧ ହୁଅଇ ଯେସନ ।
ଚିତ୍ତ ମଳିନ ନାଶ କଲି
ଯେଣୁ ତୋ ଚରଣ ଦେଖିଲି ।
ଯେଉଁ ଚରଣ ସ୍ୱଜନଗଣେ
ହୃଦେ ଧରନ୍ତି ଅନୁକ୍ଷଣେ ।
ମୁଁ ଆଦି ସବୁ ଲୋକମାନେ
କାର୍ଯ୍ୟ କାରଣେ ଚିନ୍ତି ମନେ ।
ପୂର୍ବକାଳରୁ ଏ ପଦ୍ମର
ସେବା କରନ୍ତି ସୁରେଶ୍ୱର ।
ଏ ପଦ ଜ୍ଞାନୀଏ ସନ୍ତତେ
ଆତ୍ମାକୁ ଜାଣିବା ନିମିତ୍ତେ ।
ହୃଦୟ ମଧ୍ୟେ ଧରିଥାନ୍ତି
ଭାବନା କରୁଥାନ୍ତି ନିତି ।
କମଳା ଥିଲେ ତୋ ହୃଦରେ
ଚରଣ ପୂଜା ତୁଳସୀରେ ।
ସଙ୍ଗେ ସପତ୍ନୀ ପ୍ରାୟ ହୋଇ
ସ୍ନାନ କରଇ ବିଶେଷ ବହି ।
ଏଣୁ ଯେ ତୋ ପାଦେ କିଙ୍କର
ସେମାନେ ରମାଠାରୁ ବର ।
ଯେ ପୁଣି ଭବେ କାଳ କଟଇ
ସେ ତୋତେ ଭଗତ ମାଗଇ ।
ଏ ଯେନ ତୋ ପାଦେ ମୋହର
ଭଗତ ହେଉ ନିରନ୍ତର ।
ସଂସାର ରୋଗରେ ଯେ ଯୁକ୍ତ
ତାଙ୍କୁ ସେ ଭଗତ ଅମୃତ ।

ଏମନ୍ତ ଶୁଣି ଭଗବାନ
ବୋଇଲେ ହେ ଚତୁରାନନ ।
କି କାର୍ଯ୍ୟ କରିବା ତା କହ
ହସି କହିଲେ ପିତାମହ ।
ବିଶ୍ରବା ଋଷିର ତନୟ
ରାବଣ ରାକ୍ଷସ ଦୁର୍ଜ୍ଜୟ ।
ମୋ ବରଦାନେ ଗର୍ବୀ ହୋଇ
ତ୍ରୈଲୋକ୍ୟ ବାଧୁଛି ଗୋସାଇଁ ।
ମନୁଷ୍ୟ ସକାଶୁ ତା ନାଶ
ହୋଇବ ବୋଲିଛି ଅବଶ୍ୟ ।
ଏଣୁ ସେ ରୂପେ ତାକୁ ମାରି
ଶୁଣି ବୋଇଲେ ଚକ୍ରଧର ।

ଶ୍ରୀଭଗବାନୁବାଚ

ପୂର୍ବରେ ତପେ ତୋଷ ହେଲି
ବର କଶ୍ୟପଙ୍କୁ ଯାଚିଲି ।
ସେ ମାଗିଲେ ମୁଁ ପୁତ୍ର ହେବାକୁ
ହୋଇବି ବୋଲିଛି ତାହାଙ୍କୁ ।
ସେ ଦଶରଥ ନାମ ବହି
ଅଛି ଭୂମିରେ ଜାତ ହୋଇ ।
ତାହାର ତିନି ରାଣୀଠାରେ
ଜନ୍ମିବି ଚତୁର୍ଦ୍ଧା ରୂପରେ ।
ଯୋଗମାୟା ଜନକ ଘରେ
ଜାତ ହେବେ ସୀତା ରୂପରେ ।
ତା ତୁଲେ ସବୁ କାର୍ଯ୍ୟମାନ
କରିବି ନିଷ୍ଟୟ ବଚନ ।
ଏମନ୍ତ କହି ଭଗବାନ
ସେଠାରୁ ହେଲେ ଅନ୍ତର୍ଦ୍ଧାନ ।

ବ୍ରହ୍ମୋବାଚ

ବ୍ରହ୍ମା ବୋଇଲେ ଶୁଣ ସୁରେ
ବିଷ୍ଣୁ ନର ହେବେ କ୍ଷିତିରେ ।

ରଘୁବଂଶରେ ହେବେ ଜାତ
ରାକ୍ଷସ କରିବେ ନିପାତ ।
ଦେବତା ଅଂଶରେ ହୋଇ ଯୁକ୍ତ
ବାନର ରୂପେ ହୁଅ ଜାତ ।
ଧରଣୀ କି ସେ ଶାନ୍ତ କଲେ
ସ୍ୱର୍ଗଲୋକକୁ ସୁଖେ ଗଲେ ।
ଦେବେ ମର୍କଟ ରୂପ ବହି
ରାମ ଜନ୍ମକୁ ବାଟ ଗୃହି ।
ରହିଲେ ସର୍ବେ ମହାବଳ
ଅୟୁଧ କରି ତରୁ ଶିଳ ।
ଅଧ୍ୟାତ୍ମ ପୁରାଣ ଚରିତ
ସୁଜନ ହିତେ କଲି ଗୀତ ।
ଶଙ୍କର କହିଛନ୍ତି ଯାହା
ମୁଁ ଛାର କି କହିବି ତାହା ।
ଏ ତ ଅକାଶରୁ ବିସ୍ତାର
ମୁଁ ବୁଦ୍ଧିହୀନ ପାପୀ ନର ।
ଏ ଦୋଷ କରଣ ମୋହର
ସୁଜନେ ଦୋଷ କ୍ଷମାକର ।
ଶ୍ରୀରଘୁନାଥ ପଦ୍ମପାଦ
ହରୁ ମୋ ସମସ୍ତ ଆପଦ ।
କହଇ ହଳଧର ଦାସ
ଅମୃତମୟ ରାମ ରସ ।
ଏ ଅଧ୍ୟା ପଞ୍ଚସ୍ତରୀ ପଦ
ସବୁ କାଳରେ ଏ ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅଦିକାଣ୍ଡେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

ଶ୍ରୀମହାଦେବ ଉବାଚ

ଶିବ ବୋଲନ୍ତି ଗୋ ଗିରିଜା
ଅଯୋଧ୍ୟା କଟକରେ ରାଜା ।
ଦଶରଥ ବୋଲି ତା ନାମ
ଶ୍ରୀମନ୍ତ ସତ୍ୟ ପରାକ୍ରମ ।
ସମସ୍ତ ଲୋକରେ ସେ ଖ୍ୟାତ
ଅପୁତ୍ର ଦୁଃଖରେ ପୀଡ଼ିତ ।
ହୁଅନ୍ତେ ଏକ ଦିବସରେ
ମିଳିଲେ ବଶିଷ୍ଠ ପାଶରେ ।
ବୋଲନ୍ତି ଶୁଣ ମୁନିବର
କେଉଁ ଉପାୟରେ ମୋହର ।
ସର୍ବ ଲକ୍ଷଣେ ହୋଇ ଯୁତ
ଜାତ ହେବେ ବହୁତ ପୁତ୍ର ।
ପୁତ୍ର ନୋହିବେ ଯେବେ ପୁଣ
ଧିକ ମୋ ଚକ୍ରବର୍ତ୍ତୀ ପଣ ।
ଶୁଣି ବୋଲନ୍ତି ମୁନିବର
ସତ୍ୟ ସକଳ ହୋଇ ତୋର ।
ଚାରି ଲୋକପାଳ ସମାନ
ଜାତ ହେବେ ତୋର ନନ୍ଦନ ।
ଶାନ୍ତା ଭର୍ତ୍ତା ଯେ ଋଷ୍ୟଶୃଙ୍ଗ
ତାହାଙ୍କୁ ଅଣ ଯାଇ ବେଗ ।
ଅମ୍ଭମାନଙ୍କ ତୁଲେ କର
ପୁତ୍ରାର୍ଥ ଯାଜ୍ଞେ ତୁମ୍ଭର ।
ଶୁଣି ସେ ମହା ସୁଖୀ ହୋଇ
ମନ୍ତ୍ରୀମାନଙ୍କ ତୁଲେ ଯାଇ ।
ଆଣି ସେ ଋଷି ବୃନ୍ଦ ତୁଲେ
ତୁରଙ୍ଗ ମେଧ ଆରମ୍ଭିଲେ ।

ଶ୍ରଦ୍ଧାରେ ହୋମ କରୁ କରୁ
ପୁରୁଷେ ସେ କୁଣ୍ଡୁ ଭିତରୁ ।
ବାହାର ହେଲା ତା ଶରୀର
ତପ୍ତ କାଞ୍ଚନ ପରକାର ।
ପାୟସ ସେ ହେମ ପାତ୍ରରେ
ଘେନି କହିଲେ ସନ୍ତୋଷରେ ।
ହେ ଦଶରଥ ନୃପବର
ତନୟ ହେବାକୁ ତୁମ୍ଭର ।
ସୁରଙ୍କ ଦେଲ ଦିବ୍ୟ ଚରୁ
ଘେନିମା ହେଉ ମୋହଠାରୁ ।
ପରମ ଆତ୍ମା ହେତା କୁମର
ହୋଇବେ ସଂଶୟ ନ କର ।
ଏମନ୍ତ କହି ଚରୁ ଦେଲେ
ସେଠାରୁ ଅନ୍ତର୍ଦ୍ଧାନ ହେଲେ ।
ପାୟସ ପାଇ ନୃପବର
ଋଷିଙ୍କି କଲେ ନମସ୍କାର ।
ବଶିଷ୍ଠ ଋଷ୍ୟଶୃଙ୍ଗ ଯନ୍ତ୍ର
ଅନୁଜ୍ଞା ଦେଲେ ରାଜା ତହୁଁ ।
କୌଶଲ୍ୟା କୈକେୟୀଙ୍କି ପୁଣି
ଦେଲେ ତା ଦି ଅଧ କରଣି ।
ସୁମିତ୍ରା ସୁତ କାମନାରେ
ମିଳନ୍ତେ ଏହି ସମୟରେ ।
ସେ ଦୁହେଁ ଆପଣା ଭାଗରୁ
ଅଧେ ଲେଖାଏ ଦେଲେ ଚରୁ ।
ତିନିହେଁ ଖାଇ ଗର୍ଭ ହେଲେ
ଦେବତା ପରାୟେ ଦିଶିଲେ ।
ଦଶମାସ ହୁଅନ୍ତେ ପୂର୍ଣ୍ଣ
ପରମ ରସ ଜନ୍ମା ଶୁଣ ।
ନବମୀ ଚୈତ୍ର ଶୁକ୍ଳ ଅହ
ଉଚ୍ଚେ ଅଛନ୍ତି ପଞ୍ଚଗ୍ରହ ।

କକଡ଼ା ଚନ୍ଦ୍ର ଗୁରୁ ଯୋଗ
ରବି କରନ୍ତି ମେଷ ଭୋଗ
ଅଦିତ ଋକ୍ଷ ସେ ଦିନରେ
ଜନମ କକଡ଼ା ଲଗ୍ନରେ ।
ଆକାଶୁଁ ପୁଷ୍ପ ବୃଷ୍ଟି ହୁଏ
କୌଶଲ୍ୟା ଗର୍ଭୁଁ ଏ ସମୟେ ।
ପରମ ଆତ୍ମା ଯେ ଅଚ୍ୟୁତ
ସେ ହେଲେ ମର୍ତ୍ତ୍ୟେ ଅବତୀର୍ଣ୍ଣ ।
ନୀଳ ଉତ୍ପଳ ପ୍ରାୟେ ଆଭା
ପୀତ ବସନେ ଦିଶେ ଶୋଭା ।
ହୋଇଅଛନ୍ତି ଚାରି ଭୁଜ
ସହସ୍ରେ ସୂର୍ଯ୍ୟ ପ୍ରାୟ ତେଜ ।
ଯେସନେ କୋକନଦ ପତ୍ର
ସେ ରୂପେ ରଙ୍ଗ ନେତ୍ର ପ୍ରାନ୍ତ ।
କର୍ଣ୍ଣରେ ମକର କୁଣ୍ଡଳ
ଶିରେ କଣି କୁଞ୍ଚିତ କୁନ୍ତଳ ।
କିରୀଟ କେୟୂର କଙ୍କଣ
ନୂପୁର ଯୁଗରେ ଶୋଭନ ।
ଶଙ୍ଖ ଚକ୍ର ଗଦା କମଳ
ଶ୍ରୀବତ୍ସ ହାର ବନମାଳ ।
ଏଣେ ଦିଶନ୍ତି ଶୋଭାବନ
କୋଟି କାମ ପ୍ରାୟ ଲାବଣ୍ୟ ।
ହୃଦୟ କୃପା ଚନ୍ଦ୍ରମାର
ଚନ୍ଦ୍ରିକା ମନ୍ଦ ହାସ ଧାର ।
କରୁଣା ରସରେ ସମ୍ପୂର୍ଣ୍ଣ
ବିକାଶ ଉତ୍ପଳ ଲୋଚନ ।
ପରମ ଆତ୍ମା ଯେହ୍ନୁ ପୁଣ
ତାହାଙ୍କୁ ଏ ରୂପେ ଦେଖିଣ ।
କୌଶଲ୍ୟା ହୋଇଲ ବିସ୍ମୟ
ଆନନ୍ଦେ ଅଶ୍ରୁଜଳ ବହେ ।

ସଭ୍ରମରେ କରି ନମସ୍କାର
ସ୍ତୁତି ସେ କଲେ ଯୋଡ଼କର ।

କୌଶଲ୍ୟୋବାଚ

ହେ ଦେବ ଦେବ ତୋତେ ମୋର
ସତତେ ହେଉ ନମସ୍କାର ।
ହେ ଶଙ୍ଖ ଚକ୍ର ଗଦାଧର
ଭବସାଗରୁ କର ପାର ।
ପରମ ଆତ୍ମା ତୁ ଅଚ୍ୟୁତ
ତୁ ପୂର୍ଣ୍ଣ ତୁ ଅଟୁ ଅନନ୍ତ ।
ବୁଦ୍ଧ୍ୟାଦିଙ୍କର ବଚନର
ଇନ୍ଦ୍ରିୟଙ୍କର ଅଗୋଚର ।
ଏମନ୍ତ ବୋଲି କର ତୋତେ
ବେଦବାଦୀ ବୋଲନ୍ତି ସତ୍ୟେ ।
କେବଳ ତୁମ୍ଭେ ସତ୍ତ୍ୱ ମାତ୍ର
ତୁ ଜ୍ଞାନ ସ୍ୱରୂପ ପବିତ୍ର ।
ମାୟାରେ ସତ୍ତ୍ୱାଦି ଗୁଣରେ
ସଂଯୁତ ହୋଇ ବାରେ ବାରେ ।
ସଂସାର ସର୍ଜନା ପାଳନ
ସଂହାର କରୁ ଭଗବାନ ।
ନ କରୁ କଲ୍ପ ପ୍ରାୟେ ହୋଇ
କେବଳ ଚତ୍ତେ ଅଭ୍ୟାସଇ ।
ନ ଯାଉ ତୁ କେଉଁ ସ୍ଥଳକୁ
ଗଲା ପ୍ରାୟେ ଦିଶୁ ନେତ୍ରକୁ ।
ନ ଶୁଣି ଶୁଣିଲା ପରାୟେ
ମନରେ ଅଭ୍ୟାସେ ନିଶ୍ଚୟେ ।
ନ ଦେଖୁ ଦେଖିଲା ପ୍ରକାର
ଛୁଅଇ ଚତ୍ତରେ ବାସ୍ତବ ।
ମନ ପ୍ରାଣ ନାହିଁ ତୋହର
ନିର୍ମଳ ଆକାଶ ପ୍ରକାର ।
ଏହା ଅଛନ୍ତି ବେଦେ କହି
ତୁ ସବୁ ଭୂତମାନଙ୍କହିଁ ।
ଥିଲେ ସମାନ ହୋଇ ବୀର
ଅଜ୍ଞାନ ଅନ୍ଧାରେ ଯାହାର ।
ଚତ୍ତ ଅବୃତ ହୋଇ ଥାଇ
ସେ ଲୋକ ତୋତେ ନ ଜାଣଇ ।
ତୁ ଶୁଦ୍ଧ ଜ୍ଞାନ ରୂପ ଯେଣୁ
ତୋତେ ଜାଣନ୍ତି ଜ୍ଞାନୀ ତେଣୁ ।
ତୋର ଉଦରେ ଜଗନ୍ନାଥ
କୋଟି ବ୍ରହ୍ମାଣ୍ଡ ଅତଯାତ ।
ପରମାଣୁ ଯେମନ୍ତ ହୋଇ
ଜଲା କଟାହିରେ ଦିଶଇ ।
ତୁ ଯାହା ମୋ ଉଦରରୁ ଜାତ
ଏ କଥା ଲୋକେ ବିଡ଼ମ୍ବିତ ।
ତୁ ଭକ୍ତେ ଭକତର ବଶ
ଜାଣିଲି ଆଜ ପୀତବାସ ।
ଏବେ ମୁଁ ସଂସାର ସାଗରେ
ପତି ପୁତ୍ର ଧନ ଗୃହରେ ।
ପଡ଼ି ତୋ ମାୟା ପବନରେ
ଭରମୁଁ ଅଛି ନିରନ୍ତରେ ।
ଏବେ ତୋ ପାଦ ମୂଳ ପାଇ
କୃତାର୍ଥ ହେଲି ଭବଗାହୀ ।
ତୋର ଏ ରୂପ ମନେ ମୋର
ସତତେ ରହୁ ଚକ୍ରଧର ।
ଏମନ୍ତ ସ୍ୱାମୀ ଅଜ୍ଞା ହେଉ
ତୋ ମାୟା ଏହା ନ ଘୋଟାଉ ।
ଲୋକେ ଅସମ୍ଭବ ଏ ତୋର
ରୂପ ଲୁଗୃଅ ମାୟାଧର ।
ବଡ଼ ଆନନ୍ଦକୁ ଦିଅଇ
ଅତି ମନୋହର ଅଟଇ ।

ଏମନ୍ତ ଯେଉଁ ବାଲଭାବ
ତା ମୋତେ ଦେଖାଅ ରାଘବ ।
ଅତି ଲଳିତ ଅଲଙ୍ଗନ
ମଧୁର କୋମଳ ବଚନ ।
ଏ ରୂପେ ଭୋଗ କର ତୋତେ
ଅଜ୍ଞାନ ନାଶିବ ତୁରତେ ।

ଶ୍ରୀ ଭଗବାନୁବାଚ

ଶୁଣି ବୋଲନ୍ତି ଭଗବାନ
ହେ ମାତ ଶୁଣ ମୋ ବଚନ ।
ମୋ ରୂପ ଏମନ୍ତ ହୋଇବ
ତୁମ୍ଭ କାମନା ପୂର୍ଣ୍ଣ ହେବ ।
ପୂର୍ବେ ରାବଣ ବଧ ପାଇଁ
ମୋତେ ମାଗିଲେ ବ୍ରହ୍ମା ଯାଇଁ ।
ମାୟା ମନୁଷ୍ୟ ରୂପ ବହି
ରାକ୍ଷସ ମାରି ରଖ ମହୀ ।
ପୂର୍ବେ ଦଶରଥ ସହିତେ
ତୁମ୍ଭେ ତପସ୍ୟା କଲ ମୋତେ ।
ମୁଁ ପୁଣି ହେଲି ପରସନ
ଏ ରୂପେ ଦେଇ ଦରଶନ ।
ବୋଇଲି ନିଷ୍ଟେ ଦେବି ବର
ମାଗ ଯାହା ଇଚ୍ଛା ତୁମ୍ଭର ।
ସ୍ନେହରେ ବୋଇଲ ଅମ୍ଭର
ପୁତ୍ର ତୁ ହୁଅ ପୀତାମ୍ବର ।
ମୁଁ ତାହା ସ୍ୱୀକାର କଲି
ଏ ହେତୁ ମନୁଷ୍ୟ ହୋଇଲି ।
ଦେଖିଲ ରୂପ ଯାହା ମୋର
ସେ ତପ ଫଳ ଏ ତୁମ୍ଭର ।
ଅତି ଦୁର୍ଲ୍ଲଭ ମୋ ଦର୍ଶନ
ହେଲେ ମୋକ୍ଷ ହୁଅନ୍ତି ଜନ ।
ତୁମ୍ଭ ଅମ୍ଭ ସମ୍ବାଦ ବାଣୀ
ପଢନ୍ତି ଶୁଣନ୍ତି ଯେ ପ୍ରାଣୀ ।
ମରଣ କାଳେ ଯେତୁ ଜନ
କରଇ ମୋତେ ସୁମରଣ ।
ମୋହର ସ୍ୱରୂପ ଲଭଇ
ଏଥି ସଂଶୟ କିଛି ନାହିଁ ।
ଏତେ କହି ବାଳକ ହେଲେ
ସୁସ୍ୱରେ ରୋଦନ ସେ କଲେ ।
ଇନ୍ଦ୍ରନୀଳମଣିର ବର୍ଣ୍ଣ
ସୁଦୀର୍ଘ ପଙ୍କଜ ଲୋଚନ ।
ପରମ ମନୋହର ଶୋଭା
ବାଳ-ଅରୁଣ ପ୍ରାୟେ ପ୍ରଭା ।
ସବୁ ଲୋକର ଯେ ପାଳକ
ସେ ହେଲେ ଏରୂପେ ବାଳକ ।
ଏଥି ଉତ୍ତାରେ ଗୋ ଗିରିଜା
ପୁତ୍ର ଉତ୍ପତ୍ତି ଶୁଣି ରାଜା ।
ଆନନ୍ଦ ସମୁଦ୍ରେ ବୁଡିଲେ
ହରଷେ ଲୋତକ ମୁଞ୍ଚିଲେ ।
ସତ୍ୱରେ ବଶିଷ୍ଠ କୁଳରେ
ମିଳିଲେ ଅନ୍ତଃପୁର ମନ୍ଦିରେ ।
ପଦ୍ମପତ୍ର ପ୍ରାୟ ନୟନ
ଦେଖିଣ ଏମନ୍ତ ନନ୍ଦନ ।
ପରମ ହରଷ ହୋଇଲେ
ସମସ୍ତ ଜାତକର୍ମ କଲେ ।
କୈକେୟୀ ଜାତକଲେ ପୁତ୍ର
ପଦ୍ମପଲାଶ ପ୍ରାୟେ ନେତ୍ର ।
ପୂର୍ଣ୍ଣଚନ୍ଦ୍ର ପ୍ରାୟେ ବଦନ
ଏରୂପେ ଯୋଡ଼ଏ ନନ୍ଦନ ।
ସୁମିତ୍ରା ଯହୁଁ ଜାତକଲେ
ଦେଖି ଆନନ୍ଦ ରାଜା ହେଲେ ।

ଏଥି ଉତ୍ତାରେ ମହାରାଜା
ବିପ୍ରମାନଙ୍କୁ କରି ପୂଜା ।
ପରମ ହରଷ ହୋଇଲେ
ସହସ୍ରେ ଗ୍ରାମ ଦାନ ଦେଲେ ।
ରତ୍ନ ସୁବର୍ଣ୍ଣ ଧେନୁ ବସ୍ତ୍ର
ଏମାନ ଦେଲେ ଅପ୍ରମିତ ।
ମୁନିମାନେ ଜ୍ଞାନକୁ ଧରି
ଅବିଦ୍ୟା ମାନ ନାଶକରି ।
ରମଣ କରନ୍ତି ଯା ତୁଲେ
ଏ ଘେନି ରାମ ନାମ ଦେଲେ ।
ସକଳ ଲୋକର ଭରଣ
କରିବେ ନିଶ୍ଚୟେ ବୋଲିଣ ।
ଭରତ ବୋଲି ନାମ ଦେଲେ
ପରମ ହରଷ ହୋଇଲେ ।
ବହୁତ ଲକ୍ଷଣ ଦେଖିଲେ
ଏଣୁ ଲକ୍ଷ୍ମଣ ନାମ ଦେଲେ ।
ଶତ୍ରୁ ଏ ମାରିବେ ବହୁର
ନାମ ଦେଲେ ଶତ୍ରୁଘ୍ନ କରି ।
ଏରୂପେ ନାମ ସୁତଙ୍କର
ଦେଇ ସନ୍ତୋଷେ ମୁନିବର ।
ଚତୁ ଭାଗର ଅଂଶରୂପେ
ଲକ୍ଷ୍ମଣ ରାମର ସମୀପେ ।
ଥାଆନ୍ତି ହୋଇ ଏକମନ
ଭରତ ଶତ୍ରୁଘ୍ନ ତେସନ ।
ଶ୍ରୀରାମ ଲକ୍ଷ୍ମଣର ତୁଲେ
ବହୁତ ବାଲଲୀଳା କଲେ ।
କହନ୍ତି ଦରୋଷ୍ଟି ବଚନ
ତୋଷନ୍ତି ମାତା ପିତା ମନ ।
ମୋତିରେ ହୋଇଣ ସଂଯୁତ
ଭାଲେ ସୁନା ଅଶ୍ୱତ୍ଥ ପତ୍ର ।

ବ୍ୟାଘ୍ର ନଖରେ ଯୁକ୍ତ ହୋଇ
କଣ୍ଠେ ମଣିମାଳା ଶୋଭଇ ।
କର୍ଣ୍ଣେ ରତ୍ନମୟେ କୁଣ୍ଡଳ
ତେଣୁ ଝଟକେ ଗଣ୍ଡସ୍ଥଳ ।
ପାଦେ ନୂପୁର ମଣି ଗଣ
ଚଳନ୍ତେ ଶୁଭେ ରୁଣଝୁଣ ।
କଟିରେ ମେଖଳା ମୋହଇ
କରେ କଙ୍କଣ ବିରାଜଇ ।
ଦେହ ମର୍କତ ମଣି ବର୍ଣ୍ଣ
ସଂପୂର୍ଣ୍ଣ ଚନ୍ଦ୍ରମା-ବଦନ ।
ଗଜୁରି ଅସୁଷ୍ଠୁ ଦଶନ
ମନ୍ଦହାସରେ ଶୋଭମାନ ।
ଏରୂପେ ବସ୍ତ୍ରାଙ୍କ ପଛରେ
ଧାମନ୍ତି ଅଗଣା ଭିତରେ ।
କୌଶଲ୍ୟା ଦଶରଥ ଦେଖି
ହେଉଥାନ୍ତି ପରମ ସୁଖୀ ।
ଭୋଜନକାଳେ ନୃପବର
ଡାକନ୍ତି ଆସ ବାବୁ ମୋର ।
ଖେଳରେ ମନ ଦେଇଥାନ୍ତି
ରାମ ତା କେବେ ନ ଶୁଣନ୍ତି ।
କଉଶଲ୍ୟାଙ୍କୁ ରାଜା ଯହୁଁ
ଆଣ ବୋଲନ୍ତି ଦେବୀ ତହୁଁ ।
ହସି ସେ ରାମଙ୍କୁ ଗୋଡ଼ାନ୍ତି
କେବେହେଁ ଛୁଇଁ ନ ପାରନ୍ତି ।
ଯୋଗୀ ମନ ନ ଛୁଏଁ ଯାକୁ
ଏ କାହୁଁ ଛୁଇଁବେ ତାହାଙ୍କୁ ।
ଆପଣା ଛାଏଁ ଆସେ ଧାଇଁ
ହାତରେ ପଙ୍କ ଲାଗିଥାଇ ।
ଅନ୍ନ କବଳ ମୁଖେ ଦେଇ
ହସି ପୁଣି ସେ ଯାନ୍ତି ଧାଇଁ ।

ଏମନ୍ତେ ବହୁତ ପ୍ରକାର
ଲୀଳା କଲେ ସେ ରଘୁବୀର ।
ଶିବ ବୋଲନ୍ତି ଗୋ ପାର୍ବତୀ
ସେ ଯେ ପରମାନନ୍ଦ ମୂର୍ତ୍ତି ।
ଜଗତ ଆନନ୍ଦ କାରକ
ଏ ରୂପେ ହୋଇ ସେ ବାଳକ ।
ନାନା ପ୍ରକାର କ୍ରୀଡ଼ା କଲେ
ମାତା ପିତାଙ୍କୁ ସୁଖ ଦେଲେ ।
ଏମନ୍ତେ ଗଲା କେତେ ଦିନ
ବ୍ରତ କଲେ କି ତପୋଧନ ।
ଯଜୁର୍ବେଦ ପଠନ କଲେ
ଧନୁର୍ବେଦେ କୁଶଳ ହେଲେ ।
ସମସ୍ତ ବିଦ୍ୟା ଯେତେ ଶାସ୍ତ୍ର
ସବୁଠାରେ ହେଲେ ପଣ୍ଡିତ ।
ଜଗତ ପ୍ରଭୁ ସେ ଅଟନ୍ତି
ଲୀଳାରେ ରୂପ ଧରିଛନ୍ତି ।
ଏ କି ବଚନ ତାହାପାଇଁ
ଶାରଦା ଯା ପାଦେ ଅଛଇ ।
ଶ୍ରୀରାମ ପାଦ ପଙ୍କଜରେ
ଲକ୍ଷ୍ମଣ ଥିଲେ ନିର୍ଭରେ ।
ଭରତ ଠାରେ ସେହି ମତ
ଶତ୍ରୁଘ୍ନ ହେଲେ ଅନୁଗତ ।
ସବୁକାଳେ ରାମ ଲକ୍ଷ୍ମଣ
ମୃଗୟା କରନ୍ତି ପ୍ରବୀଣ ।
ମାରି ସେ ଦୁଷ୍ଟ ମୃଗମାନ
ବାହୁଡ଼ି କରନ୍ତି ଗମନ ।
ଶଙ୍ଖ ମହୁରି ବୀଣା ତାଳ
ଶୁଭନ୍ତେ ଅସଂଖ୍ୟ ମର୍ଦ୍ଦଳ ।
ସ୍ତ୍ରୀ ପୁରୁଷମାନେ ତହିଁ
ଦେଖନ୍ତି ରାଜମାର୍ଗେ ରହି ।

ଚଢ଼ି ଧବଳ ଅଶ୍ୱବର
ବିଜେ କରନ୍ତି ଧୀର ଧୀର ।
କଳା ଉତ୍ରାସ ଯେହ୍ନେ ଦିଶେ
ଚନ୍ଦ୍ରମା ପାଖେ ଘନ କି ସେ ।
ହୁଲା ଦିହୁଡ଼ି ଚନ୍ଦ୍ରଦୀପ
ତେତେଜ ଉଜ୍ଜ୍ୱଳ ଦିଶେ ରୂପ ।
ଖଟନ୍ତି ଆଲଟ ଚାମର
ଲକ୍ଷ୍ମଣ ସୁମିତ୍ରା କୁମର ।
ସୁବର୍ଣ୍ଣ ବେତ କରେ ଧରି
ଘମୁ ଛଡ଼ାନ୍ତି ପ୍ରତିହାରୀ ।
ଭାଟେ କରନ୍ତି କଏବାର
ସ୍ତୁତି କରନ୍ତି ଜ୍ଞାନୀବର ।
ତେଜ ସହସ୍ର ଚଣ୍ଡକର
ପ୍ରିୟ ଦର୍ଶନେ ସୁଧାକର ।
ନବୀନ ଦୁର୍ବାଦଳ ଶ୍ୟାମ
ରୂପେ ନିନ୍ଦିତ କୋଟି କାମ ।
କବଚ ଖଣ୍ଡା ଧନୁର୍ବାଣ
କଟିଦେଶରେ ବେନିତୁଣ ।
କିରୀଟ ନୂପୁର କେୟୂର
କଙ୍କଣେ ଦିଶନ୍ତି ରୁଚିର ।
କର୍ଣ୍ଣରେ ମକର କୁଣ୍ଡଳ
ତେଣୁ ଝଟକେ ଗଣ୍ଡସ୍ଥଳ ।
ପୂର୍ଣ୍ଣଚନ୍ଦ୍ର ପ୍ରାୟେ ବଦନ
ବିକାଶ ପଙ୍କଜ ଲୋଚନ ।
ରୁଚିର ଚନ୍ଦନ ତିଳକ
କୁଞ୍ଚିତ କୁଟୀଳ ଅଳକ ।
କସ୍ତୁରୀ ରେଖା ପ୍ରାୟେ ନାଶ
ଅଧରେ ଯୁକ୍ତ ମନ୍ଦହାସ ।
ବଦନେ ଶ୍ରମଜଳ ବିନ୍ଦୁ
ଅମୀୟ ଶ୍ରବନ୍ତି କି ଇନ୍ଦୁ ।

ପବନେ ପଡ଼ି ଧୂଳିକୁଳ
ଲୁଚର ଯାଏ ରୋମମୂଳ ।
ଏରୂପେ ଦେଖି ସର୍ବ ନରେ
ବୁଡ଼ିଲେ ଆନନ୍ଦ ସାଗରେ ।
ଭକ୍ତିରେ ଦେ ଚ୍ଛେଦ ହୋଇ
ବଚନେ ନ ପାରନ୍ତି କହି ।
ବହେ ହରଷେ ଅଶ୍ରୁ ଧାର
ଗୃହାନ୍ତି ଯେସନେ ଅମର ।
ଯୁବତୀ ରାମଙ୍କୁ ଦେଖନ୍ତି
ଲାଜରେ ନୟନ ବୁଜନ୍ତି ।
ହୃଦରେ ସେହି ରୂପ ଦେଖି
ଫେଡ଼ନ୍ତି ବୁଜନ୍ତି ସେ ଆଖି ।
ସ୍ତନ କମ୍ପଇ ଥରହର
ଧରନ୍ତି ପୁଲକ ନାଗର ।
ଶରୀର ଘର୍ମେ ବହି ଢାଳ
ବସନ ହୁଏ ଅସମ୍ଭାଳ ।
ଶବ ପ୍ରତିମା ପ୍ରାୟେ ହୋଇ
କର ଚରଣ ନ ଚଳଇ ।
ରାମଙ୍କ ମନେ ଅଲିଙ୍ଗନ
କରି କୁହନ୍ତି ତୋଷମନ ।
ବାଳକ ବୃଦ୍ଧ ସ୍ତ୍ରୀ ପୁରୁଷ
ହରଷେ ହୁଅନ୍ତି ଅବଶ ।
ମନୁଷ୍ୟ ରୂପରେ ଅମରେ
ମିଳନ୍ତି ସେ ରାଜ-ମାର୍ଗରେ ।
ଶ୍ରୀରାମ ରୂପକୁ ଗୃହାନ୍ତି
ବ୍ରହ୍ମ ପଦବୀକ ନାଦନ୍ତି ।
ସବୁଠ ନେତ୍ରେ ରୂପ ଥୋଇ
ନଗରେ ମିଳେ ଭାବଗ୍ରାହୀ ।
କରନ୍ତି ପିତାଙ୍କୁ ଦର୍ଶନେ
ମୁଗ କରନ୍ତି ନିବେଦନ ।

ପ୍ରାତଃକାଳରେ ପ୍ରତିଦିନ
କରି ସ୍ନାନାଦି କର୍ମମାନ
ପିତା ମାତାଙ୍କୁ ଦରଶନ
କରି ବୁଝନ୍ତି ଆଜ୍ଞା ମାନ ।
ସଙ୍ଗେ ସମସ୍ତ ବନ୍ଧୁଜନ
ଘେନିଣ କରନ୍ତି ଭୋଜନ ।
ତହୁଁ ଉତ୍ତରେ ମୁନିଗଣ
ଘେନି କରନ୍ତି ବେଦବଚଣ ।
ସବୁ ଶାସ୍ତ୍ରମାନ ରହସ୍ୟ
କହନ୍ତି ଶୁଣନ୍ତି ଅବଶ୍ୟ ।
ପରମ ଆତ୍ମା ଯେ ଅଟନ୍ତି
ଯେଣୁ ମନୁଷ୍ୟ ହୋଇଛନ୍ତି ।
ଏ ଘେନି ତାଙ୍କୁ ଅନୁଗତ
ଭୋଗିଣି କରନ୍ତି ସମସ୍ତ ।
ସେ ଯେଣୁ ଅଟନ୍ତି ଅବିକାର
ପରିଣାମ ନାହିଁ ଯାହାର ।
ଏହା ବିଗ୍ରହ କରି ପୁଣି
ସେ କିଛି କରୁନାହିଁ ଜାଣି ।
ଅଧ୍ୟାତ୍ମ ପୁରାଣ ଚରିତ
ଭାଷା ପ୍ରକାରେ କଲି ଗୀତ ।
ଶଙ୍କର କହିଛନ୍ତି ଯାହା
ମୁଁ ଛାର କି କହିବି ତାହା ।
ଏ ଅଟେ ଆକାଶ ପ୍ରକାର
କହିଲି ଯେ ମୋର ଗୋଚର ।
ଏ ଘେନି କରି ଏଥେ ମୋର
ସୁଜନେ ଦୋଷ କ୍ଷମାକର ।
ଶ୍ରୀରାମଚନ୍ଦ୍ର ଶ୍ରୀପଦ
ହେଉ ମୋ ସମସ୍ତ ସମ୍ପଦ ।
କହଇ ହଳଧର ଦାସ
ସୁଜନେ ପିଅ ରାମ ରସ ।

ଏ ଶତ ବୟାଟିଶୋଈ ପଦ
ଅଟଇ ପରମ ସୁଖଦ ।
ମଙ୍ଗଳ କର ନାରାୟଣ
ତୋ ପାଦ ପଶିଲି ଶରଣ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଆଦିକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶଙ୍କର ବୋଲନ୍ତି ଭବାନୀ !
ଏକଦିନକେ ମହାମୁନି ।
ଅଗ୍ନି ପ୍ରାୟ ତାଙ୍କ ଲକ୍ଷମାନ
ବିଶ୍ୱାମିତ୍ର ଗାଧିନନ୍ଦନ ।
ଶ୍ରୀରାମ ଆପଣା ମାୟାରେ
ଜନ୍ମ ହୋଇଲେ ଅଯୋଧ୍ୟାରେ ।
ଏମନ୍ତ ଧ୍ୟାନରେ ଜାଣିଲେ
ଦେଖିବା ମନେ ବାହୁଡ଼ିଲେ ।
ଅଯୋଧ୍ୟା କଟକରେ ଯାଇ
ମିଳିଲେ ସିଂହଦ୍ୱାରେ ସେହି ।
ଶୁଣି ଆସନ୍ତି ଦଶରଥ
ଉଠି ଅଇଲେ କେତେ ପଥ ।
ବଶିଷ୍ଠ ତୁଲେ ମହାରାଜା
ତାଙ୍କ ଚରଣେ କଲେ ପୂଜା ।
ଦିବ୍ୟ ଆସନେ ବସାଇଲେ
ମୁନି କୁଶଳ ପଚାରିଲେ ।
ଭକ୍ତିରେ ରାଜା ଯୋଡ଼ି କର
ବୋଇଲେ ଶୁଣ ମୁନିବର ।
ଆଜ ମୁଁ କୃତାର୍ଥ ହୋଇଲି
ଯେଣୁ ତୁମ୍ଭ ସଙ୍ଗ ଲଭିଲି ।
ତୁମ୍ଭ ସମାନ ଲୋକ ଯାଇ
ପ୍ରବେଶ ହୋଇ ଯାହାଠାଇଁ ।
ସବୁ ସମ୍ପଦ ତା ମନ୍ଦିରେ
ପ୍ରବେଶ ହୁଅନ୍ତି ସତ୍ୱରେ ।
ଏବେ ଅନୁଜ୍ଞା ଦେବ ଯାହା
ନିଶ୍ଚୟେ କରିବି ମୁଁ ତାହା ।
ଏ କଥା ଶୁଣି ବିଶ୍ୱାମିତ୍ର
ଆନନ୍ଦେ କହିଲେ ଏମନ୍ତ ।
ପୂର୍ବରେ ମୁଁ ଯାଗ କରନ୍ତେ
ନାଶ କରନ୍ତି ତା ଦଇତେ ।
ମାରୀଚ ସୁବାହୁ ସେ ବେନି
ବହୁତ ଅନୁଚର ଘେନି ।
ସମସ୍ତ ସମ୍ଭାର ଭାଙ୍ଗନ୍ତି
ରୁଧିରି ଧରି ସେ ଗିଳନ୍ତି ।
ତାହାଙ୍କ ନାଶର ନିମନ୍ତେ
ରାମ ଲକ୍ଷ୍ମଣ ଦିଅ ମୋତେ ।
ଆମ୍ଭର ଯାଗଫଳ ରହୁ
ତୁମ୍ଭ ମଙ୍ଗଳ ଏଥୁ ହେଉ ।
ବଶିଷ୍ଠ ତୁଲେ କଥା ହୁଅ
ଶଢଙ୍କୁ ଯୋଗାଇଲେ ଦିଅ ।

ଶୁଣି ରାଜା ଗୁରୁଙ୍କ ଭୁଲେ
ଏକାନ୍ତରେ ଯାଇ ବସିଲେ ।
ଆକୁଳେ ବୋଇଲେ ଏସନ
ରାମଙ୍କୁ ଛାଡ଼ିବାକୁ ମନ ।
କେବେହେଁ ହେଉ ନାହିଁ ମୋର
କି କରିବି ହେ ମୁନିବର ।
ଅନେକ ସହସ୍ର ବର୍ଷରେ
ପୁତ୍ରଙ୍କୁ ଲଭିଛୁ କଷ୍ଟରେ ।
ଗୁରୁ ପୁଅଙ୍କଠାରେ ମୋର
ବହୁତ ସ୍ନେହ ମୁନିବର ।
ତହିଁ ମଧ୍ୟରେ ରାମଠାଇଁ
ଯେମନ୍ତ କହି ତା ନୁହଇ ।
ଶ୍ରୀରାମଚନ୍ଦ୍ର ଯେବେ ଯିବେ
ଜୀବନ ଛାଡ଼ିବି ମୁଁ ତେବେ ।
ନାହିଁ କଲେ ତ କଉଶିକ
ଶାପେ ନାଶିବେ ପୁରଯାକ ।
ସତ୍ୟ ରହିବ ରାମ ଥିବ
ଏ କଥା କେମନ୍ତେ ହୋଇବ ।

ବଶିଷ୍ଠ ଉବାଚ

ଶୁଣି କହିଲେ ମୁନିବର
କହିବା ଗୂଢ଼ ଏ ବିଷୟର ।
ଶୁଣି ଗୁପତ କରିଥିବ
କାହାର ଆଗେ ନ କହିବ ।
ଶ୍ରୀରାମ ମନୁଷ୍ୟ ନୁହନ୍ତି
ପରମ ଆତ୍ମା ଏ ଅଟନ୍ତି ।
ଭୂମିର ଭାର ନାଶପାଇଁ
ବ୍ରହ୍ମା ମାଗିଲେ ପୂର୍ବେ ଯାଇ ।
ଏଣୁ ତୁମ୍ଭର ହୋଇ ସୁତ
କୌଶଲ୍ୟାଠାରେ ହେଲେ ଜାତ ।
ତୁମ୍ଭେ କୌଶଲ୍ୟା ପୂର୍ବେ ପୁଣ
କଶ୍ୟପ ଅଦିତି ରୂପେଣ ।
ଛାଡ଼ି ବିଷୟ ସୁଖମାନ
ବୃଷ୍ଣେ ବିଷ୍ଣୁଙ୍କୁ କରି ଧ୍ୟାନ ।
ପୂଜାରେ ତତପର ହେଲ
ବହୁତ ତପସ୍ୟା ଯେ କଲ ।
ଭକ୍ତବତ୍ସଳ ରମାସାଇଁ
ବର ଯାଚିଲେ ତୋଷ ହୋଇ ।
ଶୁଣି ତା ବୋଇଲ ଆମ୍ଭର
ପୁତ୍ର ହୁଅ ଚକ୍ରଧର ।
ସେ ତାହା ସୀକାର କଲେ
ଏଣୁ ତୁମ୍ଭର ପୁତ୍ର ହେଲେ ।
ଶେଷହିଁ ଲକ୍ଷ୍ମଣ କୁମର
ରାମଙ୍କୁ ସେବେ ନିରନ୍ତର ।
ଶଙ୍ଖ ଚକ୍ର ଏ ତାଙ୍କର
ଭରତ ଶତ୍ରୁଘ୍ନ ବୀର ।
ଯୋଗମାୟା ଜନକ ଘରେ
ଜାତ ହେଲେ ସୀତା ନାମରେ ।
ଆସିଛନ୍ତି ଯେ ଗାଧିସୁତ
ରାମ ସୀତା କରିବେ ଯୁକ୍ତ ।
ଏ କଥା ଗୂଢ଼ କରିଥିବ
କାହାର ଆଗେ ନ କହିବ ।
ପୂଜା କରି ବିଶ୍ୱାମିତ୍ରଙ୍କୁ
ବେନି ପୁତ୍ରଙ୍କୁ ଦିଅ ତାଙ୍କୁ ।
ଏମନ୍ତ ଶୁଣି ଦଶରଥ
ବୋଇଲେ ହେଲି ମୁଁ କୃତାର୍ଥ ।
ହରଷେ ରାମ ଲକ୍ଷ୍ମଣଙ୍କୁ
ସାଦର କରି ସେ ପାଖକୁ ।
ଅଣାଇ କରି ଆଲିଙ୍ଗନ
ମସ୍ତକ କରଣ ଅଘ୍ରାଣ ।

ପରମ ହରଷ ହୋଇଲେ
କୌଶିକ ସଙ୍ଗେ ସମର୍ପିଲେ ।
ମୁନି ବଡ଼ ଆନନ୍ଦ ହେଲେ
ବହୁତ ଆଶୀର୍ବାଦ କଲେ ।
ତୂଣୀ ଖଡ଼ଗ ଧନୁର୍ବାଣ
ଧରି ସେ ଶ୍ରୀରାମ ଲକ୍ଷ୍ମଣ ।
ମୁନିଙ୍କ ପଛେ ଗୋଡ଼ାଇଲେ
କେତେହେଁ ଦୂର ପଥ ଗଲେ ।
ମୁନି ଶ୍ରୀରାମଙ୍କୁ ଡାକିଲେ
ସେ ବଳା ଅତିବଳା ଦେଲେ ।
ଯେଉଁମା ମାନେ ବିଦ୍ୟା ଦୁଇ
କ୍ଷୁଧା ପିପାସା ନ ବାଧଇ ।
ତହୁଁ ସେ ଗଙ୍ଗା ପାରି ହେଲେ
ତାଡ଼କା ବନରେ ମିଳିଲେ ।
ରାମଙ୍କୁ ବୋଲେ ମହାଋଷି
ତାଡ଼କା ନାମରେ ରାକ୍ଷସୀ ।
ଏହି ବନରେ ଅଛି ରହି
ସମସ୍ତ ଲୋକଙ୍କୁ ବାଧଇ ।
ସ୍ତିରୀ ବୋଲିଣ ନ ବିଚାର
ତାହାକୁ ମାର ରଘୁବୀର ।
ଶୁଣି ଧନୁରେ ଗୁଣ ଦେଇ
ଟଙ୍କାର କଲେ ରଘୁସାଈଁ ।
ଶବଦେ ସେ ବନ ପୂରିଲା
ରାକ୍ଷସୀ ସହି ନ ପାରିଲା ।
ଗର୍ଜି ସେ ମେଘ ପ୍ରାୟେ ହେଲା
ଶ୍ରୀରାମ ପାଶକୁ ଧାଇଁଲା ।
ଶ୍ରୀରାମ ଏକା ଶରେ ତାର
ହୃଦକୁ କରନ୍ତେ ପ୍ରହାର ।
ବାଜି ରକତ ବାନ୍ତି କଲା
ଧରଣୀ ତଳରେ ପଡ଼ିଲା ।

ଶାପେ ପିଶାଚୀ ହୋଇଥିଲା
ଶ୍ରୀରାମ ଶରେ ମୁକ୍ତ ହେଲା ।
ଅଛି ସମସ୍ତ ଅଳଙ୍କାର
ଶରୀର ପରମ ସୁନ୍ଦର ।
ଏରୂପେ ଯକ୍ଷିଣୀଏ ହେଲା
ଶ୍ରୀରାମ ଛାମୁରେ ମିଳିଲା ।
ଦଣ୍ଡ ପ୍ରଣାମ ପ୍ରଦକ୍ଷିଣ
ଭକତିରେ କଲା ପୁଣ ପୁଣ ।
ଆଜ୍ଞା ପାଇ ବିମାନେ ବସି
ସ୍ୱର୍ଗକୁ ଗଲା ଶୁଭକେଶୀ ।
ଅତି ହରଷେ କଉଶିକ
ଆଘ୍ରାଣ କରି ସେ ମସ୍ତକ ।
ସ୍ନେହରେ ଆଲିଙ୍ଗନ କରି
ଉପରି କାର୍ଯ୍ୟ ସେ ବିଚାରି ।
ଯେତେ ଶାସ୍ତ୍ରାସ୍ତ୍ର ଜାଣିଥିଲେ
ତାହା ରାମଙ୍କୁ ସମର୍ପିଲେ ।
ସବୁ ରହସ୍ୟ ଭୁଲେ ଜନ୍ତ
ହରଷେ ଦେଲେ ବିଶ୍ୱାମିତ୍ର ।
ଅଧ୍ୟାତ୍ମ ପୁରାଣ ଚରିତ
ଭାଷା ପ୍ରକାରେ କଲି ଗୀତ ।
ଶଙ୍କର କହିଛନ୍ତି ଯାହା
ମୁଁ ଛାର କି କହିବି ତାହା ।
ସେ ଅଟେ ଆକାଶ ପ୍ରକାର
କହିଲି ଯେତେ ମୋ ଗୋଚର ।
ଏମନ୍ତ ବିଚାର ମୋହର
ସୁଜନେ ଦୋଷ କ୍ଷମା କର ।
କହଇ ହଳଧର ଦାସ
ସାଧୁ ସେବାକୁ ମୋର ଆଶ ।
ଶ୍ରୀରାମ ପାଦ ପଙ୍କଜରେ
ମୋ ମନ ରହୁ ନିରନ୍ତରେ ।

ଯୋନିରେ ଲୋଭ କଲୁ ଯହୁଁ
ସହସ୍ରେ ଭଗ ଦେହେ ହେଉ ।
ଏରୂପେ ଶାପ ଦେଇ ଗଲେ
ସେ ନିଜ ଆଶ୍ରମେ ମିଳିଲେ ।
ଦେଖି ଅହଲ୍ୟା ପାଦେ ପଡ଼ି
'ଭୟେ କମ୍ପନ୍ତି କରଯୋଡ଼ି ।
ମୁନି ବୋଇଲେ ଗୋ ସୁନ୍ଦରୀ
ପାଷାଣ ରୂପ ବହି କରି ।
କିଛି ଆହାର ନ କରିବୁ
ଏହି ଆଶ୍ରମେ ରହିଥିବୁ ।
ତପସ୍ୟା କରୁଥିବୁ ରହି
ଖର ବରଷା ବାତ ସହି ।
ମନରେ ରାମ ବୋଲୁଥିବୁ
ତାହାଙ୍କ ଧ୍ୟାନ କରୁଥିବୁ ।
ଗୋଟିଏ ମୃଗ ପକ୍ଷୀମାନେ
ନ ଥିବେ ଏ ଆଶ୍ରମ ବନେ ।
ଏ ରୂପେ ସହସ୍ରେ ବରଷ
ଭୋଗ ତୁ କରିବୁ ଅବଶ୍ୟ ।
ତହିଁ ଉତ୍ତାରେ ଦାଶରଥି
ଲକ୍ଷ୍ମଣ ତୁଲେ ଆସି ଏଥି ।
ଏ ରୂପେ ପ୍ରବେଶ ହୋଇବେ
ପାଦେ ତୋ ପାଷାଣ ଛୁଇଁବେ ।
ତେବେ ତୁ ନିଷ୍ପାପ ହୋଇବୁ
ନିଜ ଶରୀରକୁ ଲଭିବୁ ।
ପୂଜା ଶ୍ରୀରାମଙ୍କ କରିଣ
ଦଣ୍ଡ ପ୍ରଣାମ ପ୍ରଦକ୍ଷିଣ ।
ତା ପରେ ପୂର୍ବ ପ୍ରାୟେ ମୋତେ
ସେବା ତୁ କରିବୁ ସନ୍ତତେ ।
ଏ ରୂପେ ଶାପ ତାଙ୍କୁ ଦେଲେ
ହିମାଳୟକୁ ମୁନି ଗଲେ ।

ସେ ଦିନୁ ଅବଧି ଅହଲ୍ୟା
ଅଦୃଶ୍ୟ ହୋଇଣ ରହିଲା ।
ତୁମ୍ଭ ଚରଣ ରଜ ପାଇଁ
ରହି ସେ ଅଛୁ ବାଟ ଚାହିଁ ।
ତୁମ୍ଭଙ୍କ ଧ୍ୟାନ କରି ନିତ୍ୟ
ତପସ୍ୟା କଲଣି ବହୁତ ।
ଗଉତମର ସେହୁ କାନ୍ତା
ପିତାମହର ନିଜସୁତା ।
ଏଣୁ ପବିତ୍ର ତାଙ୍କୁ କରି
ଏମନ୍ତ କହି ମୁନିବର ।
ଶ୍ରୀରାମ ଶ୍ରୀକର ଧରିଲେ
ପାଷାଣ ନେଇ ଦେଖାଇଲେ ।
ଶ୍ରୀରାମ ଶ୍ରୀଚରଣ ଛୁଇ ।
ତହିଁରେ ଲଗାଇଲେଣି ନେଇ ।
ଅହଲ୍ୟା ପୂର୍ବ ପ୍ରାୟେ ହେଲା
ସତ୍ବର ନେତ୍ରକୁ ଦିଶିଲା ।
ସ୍ବନାମ କହି ରଘୁବୀରୁ
ତାହାଙ୍କ କଲେ ନମସ୍କାର ।
ଅହଲ୍ୟା ଆଗେ ବିଜେ ରାମ
ସୁମରକତ ମତ ଶ୍ୟାମ ।
ପୀତବସନ କଟି ଦେଶେ
ଘନେ ଚଞ୍ଚଳା ଯେହ୍ନେ ଦିଶେ ।
ଧରି ଅଛନ୍ତି ଧନୁବାଣ
ପାଖରେ ଅଛନ୍ତି ଲକ୍ଷ୍ମଣ ।
ମୁଖ ଶୋଭିତ ମନ୍ଦହାସେ
ଶ୍ରୀବତ୍ସ ଚିହ୍ନ ହୃଦଦେଶେ ।
ଶରଦଚନ୍ଦ୍ରମାବଦନ
ପଙ୍କଜପଲ୍ଲବ ଲୋଚନ ।
କୋଟିକନ୍ଦର୍ପ ପ୍ରାୟେ ଆଭା
ସେ କରେ ଦଶଦିଗ ଶୋଭା ।

ଏ ରୂପେ କରି ଦରଶନ
ହରଷେ ବିକାଶ ଲୋଚନ ।
ହୋଇ ଅହଲ୍ୟା ହୃଦେ ଗୁଣି ।
ନାଶିଲ ଗଦ୍‌ଗଦ ବାଣୀ ।
ନଷ୍ଟହେବ ବିପତ୍ତି ଏ ଜାଣିଲି
ଯଥା ବିଧିରେ ପୂଜା କଲି ।
ବହୁତ କରି ଯେ ପ୍ରଣାମ
ଅଙ୍ଗରେ ପୁଲକାଇ ରୋମ ।
ଭକ୍ତିରେ ଗଦ ଗଦ ହୋଇ
ହରଷେ ଅଶ୍ରୁଜଳ ବହେ ।
ହସ୍ତ ଯୁଗଳ ଦେଇ ଶିରେ
ସ୍ତୁତି କଲା ସେ ଆନନ୍ଦରେ ।

## ଅହଲ୍ୟୋବାଚ

ଜଗତ ବାସ ହେ ରାଘବ
ମନ ସଂଯୋଗ କରି ଶିବ ।
ବ୍ରହ୍ମା ସହିତେ ସୁରଗଣ
ଖୋଜନ୍ତି ଯେବଣ ଚରଣ ।
ସେ ପାଦରଜ ପାଇ ତୋର
କୃତାର୍ଥ ହେଲି ରଘୁବୀର ।
ତୋ ଚେଷ୍ଟା ବିଚାର ଅଛଇ
ଚରଣ ଆଦ ତୋର ନାହିଁ ।
ତୁ ପୂର୍ଣ୍ଣାନନ୍ଦ ରୂପ ସତ୍ୟ
ଏମନ୍ତ ହେଲେ ହେ ଜଗତ ।
ମନୁଷ୍ୟ ଭାବେ ମୋହ କର
ଲୋକଙ୍କୁ ଯେଣୁ ମାୟା ଧର ।
ତୋ ପାଦପଦ୍ମ ରଜ ପାଇ
ଅତି ପବିତ୍ର ଗଙ୍ଗା ହୋଇ ।
ବ୍ରହ୍ମା ଶଙ୍କର ନିଜଗତ
ସେ ପୁଣି କରୁଛନ୍ତି ପବିତ୍ର

ସେ ପାଦ ସାକ୍ଷାତ ମୋହର
ହୋଇଲା ନୟନ ଗୋଚର ।
ଏ ଯେନି ପୂର୍ବ ଭାଗ୍ୟ ମୋର
କି ବର୍ଣ୍ଣିବି ହେ ରଘୁବୀର ।
ମନୁଷ୍ୟ ହୋଇ ଅବତାର
ଶ୍ରୀରାମ ବୋଲି ନାମ ଯାର ।
ଯେ କାମ ପରାୟେ ସୁନ୍ଦର ।
ଧରି ଅଛନ୍ତି ଧନୁଶର ।
ଚନ୍ଦ୍ରମା ପରାୟେ ବଦନ
ପଙ୍କଜ ପରାୟେ ଲୋଚନ ।
ଏମନ୍ତ ହରିଙ୍କି ଭଜଇ
ଆଉ କାହାକୁ ନ ସେବଇ ।
ପାଦପଙ୍କଜ ରଜ ଯାର
ଦେବେ ଖୋଜନ୍ତି ନିରନ୍ତର ।
ବ୍ରହ୍ମା ସଂଜାତ ଯାହାଠାରୁ
ହୋଇଛନ୍ତି ନାଭି ପଙ୍କଜରୁ ।
ଯେଉଁ ନାମେ ରସିକ ତହିଁ
ଶଙ୍କର ଗାୟନ କରଇ ।
ସେ ରାମଚନ୍ଦ୍ରଙ୍କ ମୋହର
ହୃଦେ ସ୍ଫୁରୁଛି ନିରନ୍ତର ।
ଯା ଅବତାର ଲୀଳାମାନ
ବ୍ରହ୍ମ ଲୋକରେ ପ୍ରତିପନ୍ନ ।
ନାରଦ ଆଦି ବ୍ରହ୍ମାହର
ଗାଉ ଅଛନ୍ତି ନିରନ୍ତର ।
ଆନନ୍ଦାଶ୍ରୁରେ ଭରନ୍ତେ ସ୍ତନ
ଶାରଦା କରନ୍ତେ ଗାୟନ ।
ଏମନ୍ତ ଶ୍ରୀରାମ ଚରଣ
ସନ୍ତତେ ହେଉ ମୋ ଶରଣ ।
ପରାତ୍ମା ପୁରାଣ ପୁରୁଷ
[illegible]କାଶି ।

ଏ ଅଧ୍ୟା ହେଲା ଅଣୀ ପଦ
କାଟିବ ସବୁର ଅପଦ ।
ରଖିବେ ପ୍ରଭୁ ଦୟାମୟ
ସ୍ୱପଦେ ହୋଇଣ ସହାୟ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଆଦିକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଶିବ ବୋଇଲେ ଗୋ ଭବାନୀ !
ଯହିଁରେ ପୂର୍ଣ୍ଣ ବହୁମୁନି ।
ଏମନ୍ତେ କାମ ଆଶ୍ରମରେ
ସେ ନିଶି ରହିଲେ ସୁଖରେ ।
ତହୁଁ ଚଳିଲେ ପ୍ରଭାତରେ
ସେବିତ ଯେ ସିଦ୍ଧମାନରେ ।
ଏମନ୍ତ ସିଦ୍ଧାଶ୍ରମେ ପୁଣି
ପ୍ରବେଶ ହେଲେ ତିନିଜଣି ।
ଯେତେକ ସେ ଆଶ୍ରମବାସୀ
ସର୍ବେ ମିଳିଲେ ତହିଁ ଆସି ।
ଯହୁଁ କୌଶିକ ଆଜ୍ଞା ଦେଲେ
ସେ ବେନି ଭାଇଙ୍କୁ ପୂଜିଲେ ।
ରାମ ବୋଇଲେ ତପୋଧନ
ତୁମ୍ଭେ ଯାଗକୁ ଦୀକ୍ଷା ଘେନ ।
ରାକ୍ଷସ ଅଧମ ସେ ବେନି
କାହିଁ ଦେଖାଅ ମହାମୁନି ।
ଶୁଣି ସେ ସୀତକାର କଲେ
ସନ୍ତୋଷେ ଯାଗ ଆରମ୍ଭିଲେ ।
ଏମନ୍ତେ ମଧ୍ୟାହ୍ନ ସମୟେ
ମାରୀଚ ସୁବାହୁ ସେ ଦୁହେଁ ।
ହାଡ଼ ରକତ ବରଷିଲେ
ଶ୍ରୀରାମ ଲକ୍ଷ୍ମଣ ଦେଖିଲେ ।
କୋଦଣ୍ଡ ଗୁଣେ ରଘୁବୀର
ସନ୍ଧାନ କରି ବେନି ଶର ।
ଏକାବେଳକେ ଦୁଇ ବାଣ
ଆକର୍ଣ୍ଣ ଯାଏ ଓଟାରିଣ ।
ମାରୀଚ ସୁବାହୁ ଉପରେ
ପ୍ରହାର କଲେ କ୍ରୋଧଭରେ ।
ପବନ ପ୍ରାୟେ ଏକବାଣ
ଉଡ଼ାଇ ମାରୀଚକୁ ପୁଣ ।
ଶଏ ଯୋଜନ ଘେନିଗଲା
ସମୁଦ୍ର ମଧ୍ୟେ ପକାଇଲା ।
ଅଗ୍ନି ପରାୟେ ଆର ଶର
ପୋଡ଼ିଲା ସୁବାହୁ ଶରୀର ।
ଯେତେକ ଅନୁଚର ଥିଲେ
ସବୁ ତା ଲକ୍ଷ୍ମଣ ମାଇଲେ ।
ଶ୍ରୀରାମ ଲକ୍ଷ୍ମଣ ଶିରରେ
କୁସୁମ ବରଷିଲେ ସୁରେ ।
ହୃଷ୍ଟେ ଦୁନ୍ଦୁଭି ବଜାଇଲେ
ସିଦ୍ଧ ଚାରଣେ ସ୍ତୁତି କଲେ ।
ମୁନି ରାମଙ୍କୁ ପୂଜା କରି
ଅତି ଉତ୍ସବେ କୋଳେ ଧରି ।
ଗଦ୍‌ଗଦ ହୋଇଣ ଭକ୍ତିରେ
ଆନନ୍ଦେ ନେତ୍ର ଅଶ୍ରୁଭରେ ।

ସ୍ନେହରେ କରି ଆଲିଙ୍ଗନ
ଭୁଞ୍ଜାନ୍ତି ପକ୍ୱ ଫଳମାନ ।
ବିଚିତ୍ର କଥାମାନ କହି
ତିନି ଦିବସ ନେଲେ ତହିଁ ।
ଚତୁର୍ଥ ଦିନ ବିଶ୍ୱାମିତ୍ର
ରାମଙ୍କୁ ବୋଇଲେ ଏମନ୍ତ ।
ବିଦେହ ଦେଶ ନୃପବର
ଜନକ ବୋଲି ନାମ ତାର ।
ଯାଗ କରୁଛନ୍ତି ସେ ରାଜନ
ତହିଁକ କରିବା ଗମନ ।
ସେଠାରେ ଶଙ୍କର କାର୍ମୁକ
ଦେଖିବା ବୋଲି କଉତୁକ ।
ଘେନି ସମସ୍ତ ମୁନିଗଣ
ଶ୍ରୀରାମ ଲକ୍ଷ୍ମଣ ଚଳିଲେଣ ।
ପ୍ରବେଶ ହେଲେ ଗଙ୍ଗାତୀରେ
ଗୌତମ ମୁନି ଆଶ୍ରମରେ ।
ଅହଲ୍ୟା ଶାପ ବଶେ ତହିଁ
ଅଛନ୍ତି ପାଷାଣ ଦେହ ବହି ।
ବିଶ୍ୱାମିତ୍ରଙ୍କୁ ଗୃହିଁ ରାମ
ବୋଇଲେ ଏ କାହା ଆଶ୍ରମ ।
ବିବିଧ ବୃକ୍ଷମାନେ ଯହିଁ
ଅଛନ୍ତି ଫଳ ପୁଷ୍ପ ବହି ।
ଦିଶୁଛି ଅତି ତେଜମୟ
ଆନନ୍ଦ ହେଉଛି ହୃଦୟ ।
କାହିଁକି ମୃଗ ପକ୍ଷୀମାନେ
ନାହାନ୍ତି ଏ ଦୁର୍ଲ୍ଲଭ ବନେ ।
ଏ ଘେନି ସଂଶୟ ମୋହର
କହି ଛଡ଼ାଅ ମୁନିବର ।
ବିଶ୍ୱାମିତ୍ର ଉବାଚ
ତାଙ୍କୁ ବୋଇଲେ ଗାଧି ସୁତ
ଶୁଣ ଏ ପୂର୍ବର ଚରିତ ।

ସମସ୍ତ ଧର୍ମରେ ନିଷ୍ଠିତ
ସବୁ ଲୋକରେ ଅଛି ଖ୍ୟାତ ।
ଗୌତମ ବୋଲି ନାମ ତାର
ବିଷ୍ଣୁ ସେବାରେ ତତପର ।
ଏହି ଆଶ୍ରମେ ଥିଲେ ରହି
ବ୍ରହ୍ମା ତା ଠାରେ ତୁଷ୍ଟ ହୋଇ ।
ଲୋକ ସୁନ୍ଦରୀ ଅହଲ୍ୟାଙ୍କୁ
ସେବା ନିମନ୍ତେ ଦେଲେ ତାଙ୍କୁ ।
ତା ତୁଲେ ଯୁକ୍ତ ହୋଇ ରାମ
ତପ କରନ୍ତି ସେ ଗୌତମ ।
ଅହଲ୍ୟା ସଙ୍ଗେ ରତି ପାଇଁ
ମୁନି ନ ଥିବା ଶଚୀସାଇଁ ।
ନିତ୍ୟେ ବିଚାର କରୁଥାଇ
ଡରେ ଭରସି ନ ପାରଇ ।
ଏମନ୍ତେ ଏକ ଦିବସରେ
ମୁନି ନ ଥିବା ଜାଣି ଘରେ ।
ଗଉତମଙ୍କ ରୂପ ଧରି
ଅହଲ୍ୟାଙ୍କୁ ସେ ରତି କରି ।
ବାହାର ହୋଇ ଯାଉଥିଲେ
ଏକାଳେ ଗୌତମ ମିଳିଲେ ।
ଇନ୍ଦ୍ରଙ୍କୁ ଆପଣା ରୂପରେ
ଦେଖି ପୁଚ୍ଛିଲେ କ୍ରୋଧଭରେ ।
କିଏ ତୁ ସତ୍ୟ ବେଗେ କହ
ନୋହିଲେ ଭସ୍ମ ହେବ ଦେହ ।
ସେ ବୋଇଲେ ମୁଁ ପୁରନ୍ଦର
କାମର ହୋଇଲି କିଙ୍କର ।
ଏ ଘେନି ହୋଇଲି ଅଜ୍ଞାନ
କ୍ଷମା କର ହେ ତପୋଧନ ।
ଏମନ୍ତ ଶୁଣି ଗଉତମ
କ୍ରୋଧେ ବୋଇଲେ ରେ ଅଧମ ।

ଏମନ୍ତ ଶ୍ରୀରଘୁନନ୍ଦନ
ପରାନୁଗ୍ରହେ କର ମନ ।
ମାୟା ଈଶ୍ୱର ଅଛୁ ବହି
ଦେଖିଲା ମାନବକରେ ଦେହୀ ।
ଅଜ୍ଞାନ ହୋଇ ଅନନ୍ଦରେ
ବୁଡ଼ଇ ଅମୃତ ସାଗରେ ।
ଶ୍ରୀରାମ ଈଶ୍ୱର ଅଟଇ
ମାୟା ଗୁଣରେ ଯୁକ୍ତ ହୋଇ ।
ଉତ୍ପତ୍ତି ସ୍ଥିତି ସଂହାରଣ
ଏଥି ନିମନ୍ତେ ସେହୁ ପୁଣ ।
ବିଧାତା ବିଷ୍ଣୁ ରୁଦ୍ର ହୋଇ
ଏ ତିନି ନାମ ସେ ବହଇ ।
ତୁ ପୁଣି ଏକ ପର ପୂର୍ଣ୍ଣ
ସ୍ୱବଶ ହେ ରଘୁନନ୍ଦନ ।
ତୋ ପାଦପଦ୍ମକୁ ମୋହର
ସନ୍ତତେ ହେଉ ନମସ୍କାର ।
ଯେଉଁ ଚରଣ ନିରନ୍ତରେ
ଲକ୍ଷ୍ମୀ ଭାବଇ ହୃଦୟରେ ।
ପୂର୍ବକାଳରେ ଯେ ବଢ଼ିଲା
ତିନି ଜଗତ ଆକ୍ରୋଶିଲା ।
ଛାଡ଼ିଲା ଅହଙ୍କାର ମାନ
ମୁନି କରନ୍ତି ଯାକୁ ଧ୍ୟାନ ।
ସେ ପାଦପଦ୍ମକୁ ମୋହର
ସନ୍ତତେ ହେଉ ନମସ୍କାର ।
ତିନି ଜଗତ ଆଦ୍ୟଭୂତ
ତୁମ୍ଭେଟି ନିଶ୍ଚୟେଁ ଜଗତ ।
ଆଶ୍ରୟ ଜଗତର ତୁହି
ସମସ୍ତ ଭୂତମାନ ତହିଁ ।
ଏକା ହୋଇଣ ଅଛୁ ରହି
ତହିଁରୁ ଅଲଗା ଯେ ତୁହି ।

ପ୍ରକାଶ
ତୁଟି ~~ସାକ୍ଷୀକ~~ ସ୍ୱରୂପହିଁ
ସାକ୍ଷୀ ବୋଲି ତୋତେ କହି ।
ବଚନ ଯାକୁ କହି ନୋହି
ସେ ପୁରୁଷଟି ନିଶ୍ଚେ ତୁହି ।
ବାଚ୍ୟ ବାଚକ ଭେଦେ ବୀର
ଆପଣ ନିଶ୍ଚେଟି ସଂସାର ।
ନାନା ରୂପେ ଯେ ମାୟା ହେଲେ
ତହିଁରୁ ଅଲଗା ଯେ ହେଲେ ।
ସମସ୍ତ ଫଳର ସେ ଯେଣୁ
ସାଧନ ଭେଦ ଘେନି ତେଣୁ ।
କାର୍ଯ୍ୟ କାରଣ କର୍ତ୍ତା ହୋଇ
ଶୋଭୁ ଯେ ପାଉଛ ଗୋସାଇଁ ।
ତୋର ମାୟାରେ ମୋହ ହୋଇ
ଯେଉଁମାନଙ୍କ ବୁଦ୍ଧି ହୋଇ ।
ସେମାନେ ତୋତେ ତତ୍ତ୍ୱ କରି
ଜାଣି ନ ପାରନ୍ତି ଶ୍ରୀହରି ।
ପରମ ଈଶ୍ୱର ତୁ ତୋତେ
ମନୁଷ୍ୟ ବୋଲନ୍ତି ସମସ୍ତେ ।
ଯେଉଁ ସକାଶୁ କର ପୁଣି
ବଡ଼ ମାୟାବନ୍ତ ଆପଣ ।
ତୁମ୍ଭେଟି ଆକାଶ ପ୍ରକାରେ
ରହିଛ ବାହାର ଭିତରେ ।
ଅସଙ୍ଗ ଅଚଳ ତୁ ନିତ୍ୟ
ତୁ ଶୁଦ୍ଧ ତୁ ବୁଦ୍ଧ ତୁ ସତ୍ୟ ।
ସ୍ତ୍ରୀଏ ମୁଁ ଅଜ୍ଞାନ ସନ୍ତତେ
ତୋ ତତ୍ତ୍ୱ ଜାଣିମି କେମନ୍ତେ ।
ଏ ଘେନି ଅନାଠାରେ ମୋର
ମନ ନ ଦେଇ ରଘୁବୀର ।
ତୁମ୍ଭଙ୍କୁ କୋଟି କୋଟି ବାର
କରୁଥିବ ମୁଁ ନମସ୍କାର ।

ଯହିଁ ଥିଲେହେଁ ତୋ ପାଦରେ
ଭଗତ ହୋଇ ନିରନ୍ତରେ ।
ତୁମ୍ଭେ ହିଁ ପୁରୁଷ ପ୍ରେରକ
ଭଗତ ବତ୍ସଳ ତୁ ଏକ ।
ଇନ୍ଦ୍ରିୟ ମାନଙ୍କ ଈଶ୍ୱର
ଅଗ୍ରଜ ମନୁଷ୍ୟ ମାନର ।
ଏମନ୍ତ ଯେ ତୁ ତୋତେ ମୋର
ଅନବରତେ ନମସ୍କାର ।
ନାଶ ଯେ ଭବ ଭୟାଦର
ତେଜ କୋଟିଏ ଅଦିତ୍ୟର ।
ପୀତବସନ ଧନୁର୍ଦ୍ଧର
ନବଘନ ପ୍ରାୟେ ଶରୀର ।
ରତ୍ନକୁଣ୍ଡଳେ ଶୋଭମାନ
ପଙ୍କଜ ପଲାଶ ଲୋଚନ ।
ଲକ୍ଷ୍ମଣ ତୁଲେ ଏ ରାମର
ଚରଣେ ହୋଉ ନମସ୍କାର ।
ରାମଙ୍କୁ କରି ପ୍ରଦକ୍ଷିଣ
ପ୍ରଣାମ କରି ପୁଣ ପୁଣ ।
ଅନୁଜ୍ଞା ମାଗିଣ ଅହଲ୍ୟା
ଗୌତମ ସନ୍ନିଧିକୁ ଗଲା ।
ଭଗତିରେ ଯେ ଯୁକ୍ତ ହୋଇ
ଅହଲ୍ୟା ସ୍ତବକୁ ପଢ଼ଇ ।
ସମସ୍ତ ପାପୁଁ ମୁକ୍ତ ହୋଇ
ପରମ ବ୍ରହ୍ମ ସେ ଲଭଇ ।
ପୁତ୍ର କାମରେ ଯେଉଁ ନାରୀ
ଶୁଣେ ରାମଙ୍କୁ ହୃଦେ ଧରି ।
ସେ ବନ୍ଧ୍ୟାହେଲେ ବରଷକ
ସମ୍ପୂର୍ଣ୍ଣେ ଲଭଇ ବାଳକ ।
ସବୁ କାମନା ଫଳ ତାର
ପୂର୍ଣ୍ଣ କରନ୍ତି ରଘୁବୀର ।
ମହା ପାତକୀ ଯେଉଁ ନର
ପିତାମାତାଙ୍କ ହିଂସା ଯାର ।
ଭ୍ରାତାବଧ ଯେ କରିଥାଇ
ସନ୍ତତେ ଭୋଗ ଯେ ଇଚ୍ଛଇ ।
ରାମଙ୍କୁ ହୃଦରେ ଧରନ୍ତି ।
ସେ ଯେବେ ଏ ସ୍ତବ ପଢ଼ନ୍ତି ।
ସେ ପାପମାନ ତାହାଙ୍କର
ନାଶ କରନ୍ତି ରଘୁବୀର ।
ଯେ ଧର୍ମ ଅଗ୍ରରବେ ଥାଇ
ତା ଫଳ କହି କି ହୁଅଇ ।
ଅଧ୍ୟାତ୍ମ ପୁରାଣ ଚରିତ
ଭାଷା ପ୍ରକାରେ କଲି ଗୀତ ।
ଶଙ୍କର କହିଛନ୍ତି ଯାହା
ମୁଁ ଛାର କି କହିବି ତାହା ।
ଏ ତ ଅକାଶ ପରକାର
କହିଲି ଯେତେ ମୋ ଗୋଚର ।
ଏ ଯେଣୁ କାରଣ ମୋହର
ସୁଜନେ ଦୋଷ କ୍ଷମା କର ।
ଶ୍ରୀରାମ ଚରଣେ ଯେ ଦାସ
ତା କୋଟି ଦାସଙ୍କୁ ଆଶ ।
ଅତି ପାପରେ ହେଲି ଲୀନ
ରାମ ଯେ ପତିତପାବନ ।
ଏ ଯେଣୁ ଶ୍ରଦ୍ଧା ଯେ ମୋହର
ସେ ଯେଣୁ କରୁଣାସାଗର ।
ମାଗଇ ଦାନ ହଳଧର
ସୁଜନେ ମୋତେ କୃପା କର ।
ହେଲା ଶତେ ସତୁରି ପଦ
ଏ ଅଧ୍ୟା ସମସ୍ତ କାମଦ ।୧୭୦।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଆଦିକାଣ୍ଡେ ନାମ ପଞ୍ଚମୋଽଧ୍ୟାୟଃ ।

# ଷଷ୍ଠ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ
ହରଷ ହୋଇ ଶିବ ପୁଣି
ବୋଇଲେ ଉମା ଏବେ ଶୁଣ ।
କୌଶିକ ବୋଇଲେ ରାମଙ୍କୁ
ଯିବା ଜନକ ନଗରକୁ ।
ତହିଁରେ ତା ଯାଗ ଦେଖିବା
ତଦନ୍ତେ ଅଯୋଧ୍ୟାକୁ ଯିବା ।
ସେଠାରୁ ବାହାର ହୋଇଲେ
ଗଙ୍ଗାଙ୍କ ତୀରରେ ମିଳିଲେ ।
ନାବିକ ଏହି ସମୟରେ
ନିବେଦନ କଲା ରାମରେ ।
ନାବିକ ଉବାଚ
ହେ ନାଥ ତୋ ପାଦନଳିନ
କରଣ ଦେବି ମୁଁ କ୍ଷାଳନ ।
ଯେଉଁ ପାଦରେଣୁ ମହିମା
କରନ୍ତି ପାଷାଣକୁ ବାମା ।
ଯେଣୁ କାଷ୍ଠର ପାଷାଣର
ନାହିଁ ତ କିଛିହିଁ ଅନ୍ତର ।
ଜାଳେ ତୋ ଚରଣର ଧୂଳି
ପଡ଼ି ମୋ ନାବ ହେବ ବାଳୀ ।
କୁଟୁମ୍ବ ପୋଷିବାର ବୃତ୍ତି
ନଷ୍ଟ ହେବ ମୋ ଦାଶରଥି ।
ତେଣୁ ନ ଧୋଇ ତୋ ପୟର
ବସାଇ ନ ଦେବି ହେ ବୀର ।
ଏମନ୍ତ କହି ପାଦ ଦୁଇ
ସେହୁ ନାବିକ ଦେଲା ଧୋଇ ।
ତଦନ୍ତେ ନାବରେ ବସାଇ
ଦେଲା ସଭିଙ୍କୁ ପାରିଆଇ ।
କୁଟୁମ୍ବ ତୁଲେ ରଘୁପତି
ତାହାକୁ ଦେଲେ ଦିବ୍ୟଗତି ।
କୌଶିକ ଋଷି ରାମ ତୁଲେ
ବିଦେହ ନଗରକୁ ଗଲେ ।
ମିଥିଳା କଟକେ ମିଳିଲେ
ଯାଗଶାଳାରେ ଯାଇ ହେଲେ ।
ପ୍ରବେଶ ହେଲେ କଉଶିକ
ଏମନ୍ତ ଶୁଣନ୍ତେ ଜନକ ।
ଆନନ୍ଦେ ପୁରୋହିତ ତୁଲେ
ପୂଜା ସାମଗ୍ରୀ ଘେନି ଗଲେ ।
ଦଣ୍ଡ ପ୍ରଣାମ କରି ରାଜା
ବିଧି ପ୍ରମାଣେ କଲେ ପୂଜା ।
ଚନ୍ଦ୍ର ଆଦିତ୍ୟ ପ୍ରାୟେ ପ୍ରଭା
ସମସ୍ତ ଦିଗ କରେ ଶୋଭା ।
ସବୁ ଲକ୍ଷଣେ ଯୁକ୍ତ ହୋଇ
ଅଛନ୍ତି ଧନୁଶର ବହି ।
ଏମନ୍ତେ ରାମ ଲକ୍ଷ୍ମଣଙ୍କୁ
ଦେଖି ପଚାରେ କୌଶିକଙ୍କୁ ।
ମନୁଷ୍ୟ ଶ୍ରେଷ୍ଠ ଏ ଅଟନ୍ତି
ଦେବତା ପ୍ରାୟେ ଦିଶୁଛନ୍ତି ।
ନରନାରାୟଣ କି ଏହି
ମନ ତ ଆନନ୍ଦ ହୁଅଇ ।
ଶ୍ରୀ ମୁନି ତାହାଙ୍କ ସ୍ତୁତି
ଉତ୍ତରେ ବୋଇଲେ ଏମନ୍ତ ।

କୌଶିକ ବୋଇଲେ ରାଜନ
ଏ ଦଶରଥଙ୍କ ନନ୍ଦନ ।
ରାମ ଲକ୍ଷ୍ମଣ ବୋଲି ନାମ
ସିଂହ ଶାର୍ଦ୍ଦୁଳ ପରାକ୍ରମ ।
ମୋ ଯାଗ ରଖିବାର ପାଇଁ
ଆଣିଲି ଅଯୋଧ୍ୟାକୁ ଯାଇ ।
ଆସିବାବେଳେ ରଘୁବୀର
ପ୍ରହାର କରି ଏକଶର ।
ତାଡ଼କା ପ୍ରାଣ ନାଶ କଲେ
ମୋହର ଆଶ୍ରମେ ମିଳିଲେ ।
ସୁବାହୁ ଆଦି ଯେ ରାକ୍ଷସ
କ୍ଷଣକେ ସର୍ବେ କଲେ ନାଶ ।
ଶରେ ମାରୀଚଙ୍କୁ ଉଡ଼ାଇ
ସମୁଦ୍ରେ ପକାଇଲେ ନେଇ ।
ଗୌତମ ଆଶ୍ରମେ ମିଳିଲେ
ଅହଲ୍ୟାକୁ ଉଦ୍ଧାର କଲେ ।
ଏହାଙ୍କ ପାଦରଜ ମାତ୍ର
ଲାଗନ୍ତେ ହୋଇଲା ପବିତ୍ର ।
ଉଦ୍ଧାଲେ ଶାପୁଁ ମୁକ୍ତ ହେଲା
ଏହାଙ୍କୁ ପୂଜାକରି ଗଲା ।
ଏବେ ଶଙ୍କର ଶରାସନ
ବୋଲନ୍ତି କରିବୁଁ ଦର୍ଶନ ।
ଯାହାଙ୍କୁ ସବୁ ରାଜାଗଣ
ପୂଜନ୍ତି ହୋଇଣ କାର୍ପଣ୍ୟ ।
ସେ ଧନୁ ଦେଖାଅ ରାମଙ୍କୁ
ଦେଖିଲେ ଯିବେ ଅଯୋଧ୍ୟାକୁ ।
ପିତାମାତାଙ୍କୁ ଦରଶନ
କରିବେ ଯାଇ ଏ ବହନ ।
ଶୁଣି ଲକ୍ଷ୍ମଣ ତୁଲେ ରାଜା
ରାମଙ୍କୁ କଲେ ବଡ଼ ପୂଜା ।

ଜନକ ଉବାଚ

ମନ୍ତ୍ରୀଙ୍କ ଗୃହିଁ ସେ ଜନକ
ବୋଇଲେ ଶଙ୍କର କାର୍ମୁକ ।
ବହନ ଏଠାକୁ ଅଣାଅ
ଶ୍ରୀରାମ ସମ୍ମୁରେ ଦେଖାଅ ।
ପୁଣି ସେ ଉତ୍ତରରେ ଜନକ
ବୋଇଲେ ଶୁଣ କଉଶିକ ।
ଯେବେ ଧନୁରେ ଗୁଣ ଦେବେ
ନିଶ୍ଚେ ସୀତାଙ୍କୁ ଦେବି ତେବେ ।
ଶୁଣନ୍ତେ ଜନକର ବାଣୀ
ଅଳପ ହସେ ରଘୁମଣି ।
ରାମଙ୍କୁ ଗୃହିଁ କଉଶିକ
ବୋଇଲେ ଶୁଣ ହେ ଜନକ ।
ଏବେ ଶଙ୍କର ଶରାସନ
ଏହାଙ୍କୁ ଦେଖାଅ ବହନ ।
ଶଏ ଘଣ୍ଟାରେ ସମନ୍ବିତ
ସ୍ୱମଣି ବସନେ ଭୂଷିତ ।
ଅଣି ପଞ୍ଚାଶ ଶତ ବୀର
ପ୍ରବେଶ କଲେ ଧନୁବର ।
ଦେଖିଣ ହସ ହସ ହୋଇ
ଅପଣା ବସ୍ତ୍ର ରଘୁସାଇଁ ।
ଦୃଢ଼ରେ ବାନ୍ଧି ବାମ କରେ
ଧନୁକୁ ତୋଳିଲେ ଲୀଳାରେ ।
ଦେଖୁ ଅଛନ୍ତି ରାଜାଗଣ
ହେଳାରେ ତହିଁ ଦେଲେ ଗୁଣ ।
ଅଳପ ଦକ୍ଷିଣ ପାଣିରେ
ଓଟାରି ଅଣନ୍ତେ ଲୀଳାରେ ।
ଶବଦେ ଚଉଦ ବ୍ରହ୍ମାଣ୍ଡ
ପୂରଣ ହେଲା ବେଳଖଣ୍ଡ ।

ଦେବେ ଯେ ଆକାଶରେ ଥିଲେ
ଏମନ୍ତ ଅଦ୍ଭୁତ ଦେଖିଲେ ।
ଅତି ଆନନ୍ଦେ ସ୍ତୁତି କଲେ
ହରଷେ ପୁଷ୍ପ ବରଷିଲେ ।
ଦୁନ୍ଦୁଭିମାନ ବଜାଇଲେ
ଅପସରାଏ ନୃତ୍ୟ କଲେ ।
ଜନକ ଆନନ୍ଦ ହୋଇଲେ
ରାମଙ୍କୁ ଆଲିଙ୍ଗନ କଲେ ।
ଅନ୍ତଃପୁରରେ ନାରୀମାନେ
ବଡ଼ ବିସ୍ମୟ ହେଲେ ମନେ ।
ଶରୀର ଯେସନେ ସୁବର୍ଣ୍ଣ
ପିନ୍ଧଣ ସୁଚୀନ ବସନ ।
ଅଛୁ ସମସ୍ତ ଆଭରଣ
ନୂପୁର ଶୁଭେ ରୁଣଝୁଣ ।
ହାର ସୁବର୍ଣ୍ଣ କଣ୍ଠ ପର
ଏଥିରେ ହୋଇଛୁ ଭୂଷିତ ।
ବସନେ ଦଶେ ପୀନସ୍ତନ
ସ୍ମିତେ ବଦନ ସୁଶୋଭନ ।
ଘେନି ସୁବର୍ଣ୍ଣ ପଦ୍ମମାଳୀ
ସଭାରେ ମିଳି ମହାସ୍ଥଳୀ ।
ଶ୍ରୀରାମ କଣ୍ଠେ ଲମ୍ବାଇଲି
ସାତ୍ତ୍ୱିକେ ଅବଶ ହୋଇଲି ।
ଅନ୍ତଃପୁରରେ ନାରୀଗଣ
ଗବାକ୍ଷେ ରାମଙ୍କ ଗୃହିଣ ।
ପରମ ଆନନ୍ଦ ଲଭିଲେ
ମନ ନୟନରେ ରଖିଲେ ।
ଶୁଣି ଏ ଉତ୍ସବରେ ଜନକ
ବୋଲନ୍ତି ଶୁଣ କଉଶିକ ।
ଦୂତ ବରଗ ଲେଖା ଦେଇ
ଦଶରଥଙ୍କୁ କହୁ ଯାଇ ।

ଭାର୍ଯ୍ୟା ମନ୍ତ୍ରୀ ସହିତ ହୋଇ
ଆସନ୍ତୁ ପୁତ୍ର ବିଭା ପାଇଁ ।
ଗାଧିନନ୍ଦନ ଲେଖି ନେଇ
ଦେଲେ ଦୂତଙ୍କୁ ପଠାଇ ।
ସେମାନେ ଅଯୋଧ୍ୟାରେ ହେଲେ
ରାଜାର ସମ୍ମୁଖରେ ମିଳିଲେ ।
ରାମର ଶୁଭ ଜଣାଇଲେ
ସମସ୍ତ ବିସ୍ତାରି କହିଲେ ।
ଶୁଣି ଆନନ୍ଦେ ମହୀପତି
ମନ୍ତ୍ରୀମାନଙ୍କୁ ସେ ବୋଲନ୍ତି ।
ବେଗେ ମିଥିଳା ଆମ୍ଭେ ଯିବା
ଶ୍ରୀରାମ ଲକ୍ଷ୍ମଣ ଦେଖିବା ।
ଚତୁରଙ୍ଗ ସୈନ୍ୟ ମୋହର
ଯାଆନ୍ତୁ ମିଥିଳା ନଗର ।
ଭୃତ୍ୟକେ ବୋଲେ ଦଶରଥ
ବାହନ ଘେନି ଆସ ରଥ ।
ଏ କ୍ଷଣେ ବାହାର ହୋଇବା
ଜନକ କଟକକୁ ଯିବା ।
କୌଶଲ୍ୟା ଆଦି ଯେତେ ରାଣୀ
ଅଗ୍ନି ଅରୁନ୍ଧତୀଙ୍କି ଘେନି ।
ବଶିଷ୍ଠ ଯାନ୍ତୁ ଆଗ ହୋଇ
ଏ ରୂପେ ସବୁ ପଠାଇ ।
ହରଷେ ରଥେ ବିଜେ କଲେ
ନଗରୁ ବାହାର ହୋଇଲେ ।
ବହୁତ ସୈନ୍ୟ ସଙ୍ଗତରେ
ଘେନି ବିଜେ କଲେ ସତ୍ୱରେ ।
ଜନକ ଶୁଣିଣ ଆନନ୍ଦ
ସଙ୍ଗରେ ଘେନି ଶତାନନ୍ଦ ।
ନଗରୁ ବାହାର ହୋଇଲେ
କେତେ ଦୂର ପାଛୋଟି ଗଲେ ।

ଦଶରଥଙ୍କୁ ଦେଖି ରାଜା
ବିଧି ପ୍ରମାଣେ କଲେ ପୂଜା ।
ରାମ ଲକ୍ଷ୍ମଣ ଦେନି ବୀର
ପିତାଙ୍କୁ କଲେ ନମସ୍କାର ।
ପରମ ହରଷେ ରାଜନ
ରାମଙ୍କୁ ବୋଲନ୍ତି ବଚନ ।
ଭାଗ୍ୟରେ ତୋର ପଦ୍ମମୁଖ
ଦେଖିଲି ଗଲା ସବୁ ଦୁଃଖ ।
କୌଶିକ ଅନୁଗ୍ରହ କଲା
ତେଣୁ ମୋର ସମସ୍ତ ହେଲା ।
ଏମନ୍ତ କହି ଶ୍ରୀରାମର
ଆଘ୍ରାଣ କଲେ ପୁଣି ଶିର ।
ଅତି ସ୍ନେହରେ କରି ପୁଣି
ବହୁତ କଲେ ଆଲିଙ୍ଗନ ।
ଆନନ୍ଦେ ଗଦ ଗଦ ହେଲେ
ହରଷେ ଅଶ୍ରୁ ବରଷିଲେ ।
ସୁଖ ସମୁଦ୍ରେ ସେ ବୁଡ଼ିଲେ
କି ବ୍ରହ୍ମାନନ୍ଦକୁ ପାଇଲେ ।
ଏଥି ଉତ୍ତାରେ ସେ ଜନକ
ସଜାଡ଼ି ମନ୍ଦିର ଅନେକ ।
ସମସ୍ତ ଭୋଗମାନ ଥୋଇ
ରାଜାଙ୍କୁ ରହାଇଲେ ତହିଁ ।
ପୁଣି ସେ ଉତ୍ତାରେ ଜନକ
ଘେନି ବଶିଷ୍ଠ କଉଶିକ ।
ଏକାନ୍ତ ହୋଇଣ ବସିଲେ
ବିଭା ଦିବସ ବିଚାରିଲେ ।
ଶୁଭ ନକ୍ଷତ୍ର ଦିବସରେ
ଅତି ଉତ୍ତମ ମୁହୂର୍ତ୍ତରେ ।
ଜନକ ଭ୍ରାତାମାନ ତୁଲେ
ରାମଙ୍କୁ ବରଣ ଆଣିଲେ ।
ରତ୍ନ ଜଡ଼ିତ ଖମ୍ବମାନ
ତୋରଣ କେବଳ ସୁବର୍ଣ୍ଣ ।
ବିଚିତ୍ର ଚନ୍ଦ୍ରାତପ କୂଳ
ଲମ୍ବନ୍ତି ଫଳ ପୁଷ୍ପ ମାଳ ।
ବହୁ ବେଦଜ୍ଞ ବିପ୍ରଗଣ
ସେ ସ୍ଥାନେ ଅଛନ୍ତି ପୂରଣ ।
ସ୍ୱର୍ଣ୍ଣାଳଙ୍କାର ସୁବସନେ
ଭୂଷିତ ନାନା ମଣିଗଣେ ।
ଏରୂପେ ସୁବେଶ ହୋଇଣ
ଅଛନ୍ତି ଦିବ୍ୟ ନାରୀଗଣ ।
ଅସଂଖ୍ୟ ଶଙ୍ଖ ଭେରୀନାଦ
ହେଉଛି ଦୁନ୍ଦୁଭି ଶବଦ ।
କେ ତହିଁ ଗାୟନ କରନ୍ତି
କେ ପୁଣି ନୃତ୍ୟ କରୁଛନ୍ତି ।
ନେଇ ଏମନ୍ତ ମଣ୍ଡପରେ
ଦିବ୍ୟ ରତ୍ନ ପୀଠ ଉପରେ ।
ରାମଙ୍କୁ ବିଜେ କରାଇଣ
ତାହାଙ୍କ ବେନି ପାରୁଶେଣ ।
ବଶିଷ୍ଠ କୌଶିକ ବସିଲେ
ତାଙ୍କୁ ଶତାନନ୍ଦ ପୂଜିଲେ ।
ଜନକ ଏ ଉତ୍ତାରେ ବେଗେ
ପତ୍ନୀମାନଙ୍କୁ ଘେନି ସଙ୍ଗେ ।
ସେଠାରେ ପ୍ରବେଶ ହୋଇଲେ
ଅଗ୍ନି ସ୍ଥାପନ ବେଗେ କଲେ ।
ନାନା ରତ୍ନରେ କରି ବେଶ
ସୀତାଙ୍କୁ କରାଇ ପ୍ରବେଶ ।
ପୁଣି ଜନକ ହୃଷ୍ଟ ହୋଇ
ଶ୍ରୀରାମ ଶ୍ରୀଚରଣ ଧୋଇ ।
ସେ ଜଳ ଶିରରେ ଘେନିଲେ
କୃତାର୍ଥ ହେବି ବିଚାରିଲେ ।

ବ୍ରହ୍ମା ଶଙ୍କର ତୁଲେ ମୁନି
ଶିରେ ଅଛନ୍ତି ଯାହା ଘେନି ।
ତହିଁ ଉତ୍ତାରେ ମହୀପାଳ
ଘେନି ଦୁର୍ବାଅକ୍ଷତ ଜଳ ।
ଜାନକୀ କର ଧରି କରେ
ଏମନ୍ତ ବୋଇଲେ ହରଷରେ ।
ପଙ୍କଜ ପତ୍ର ପ୍ରାୟେ ନେତ୍ର
ସୁବର୍ଣ୍ଣ ମୁକ୍ତାରେ ମଣ୍ଡିତ ।
ଏମନ୍ତ ଦୁହିତାକୁ ମୋର
ତୁମ୍ଭଙ୍କୁ ଦେଲି ରଘୁବୀର ।
ମୋର କଳୁଷ ନାଶ ଯାଉ
ଆପଣ ପ୍ରୀତ ହେବା ହେଉ ।
ଏ ରୂପେ ବାକ୍ୟ ଉଚ୍ଚାରିଲେ
ଶ୍ରୀରାମ କରେ ସମର୍ପିଲେ ।
ପୂର୍ବେ ବିଷ୍ଣୁଙ୍କୁ ଲକ୍ଷ୍ମୀ ଦେଲା
କ୍ଷୀର ଜଳଧି ଯେହ୍ନେ ହେଲା ।
ତେମନ୍ତ ପ୍ରକାରେ ଜନକ
ଆନନ୍ଦ ଲଭିଲେ ଅନେକ ।
ଏଥି ଉତ୍ତାରେ ସେହୁ ପୁଣ
ସୁମିତ୍ରା ପୁତ୍ରଙ୍କୁ ସୁଜାଣ ।
ଊର୍ମିଳା କନ୍ୟାକୁ ଆଣିଲେ
ତାହାଙ୍କ କରେ ସମର୍ପିଲେ ।
ଜନକର ଯେ ସାନଭ୍ରାତା
ତାହାର ଥିଲା ବେନି ସୁତା ।
ତହିଁ ମାଣ୍ଡବୀ ନାମ ଯାର
ଭରତ ହେଲେ ତାର ବର ।
ଶ୍ରୁତକୀର୍ତ୍ତିଙ୍କ ଶତ୍ରୁଘ୍ନ
ପାଇ ଆନନ୍ଦ କଲେ ମନ ।
ଶ୍ରୀରାମ ଆଦି ଚାରି ଭାଇ
ଶୁଭେଣି ଚାରି କନ୍ୟା ପାଇ ।

ଚତୁର ଲୋକପାଳ ଯେହ୍ନେ
ଏ ଶୋଭା ପାଇଲେ ତେସନେ ।
ପୁଣି ବୋଇଲେ ସେ ଜନକ
ଶୁଣ ବଶିଷ୍ଠ କଉଶିକ ।
ପୂର୍ବେ ଜାନକୀ ବିଷୟରେ
ନାରଦ ମୁନି ମୋ ଆଗରେ
ଯା କହିଅଛନ୍ତି ଗୁପତେ
ମୋ ଠାରୁ ଶୁଣ ତା ସମସ୍ତେ ।।
ଯାଗଭୂମି ଶୁଦ୍ଧ ନିମିତ୍ତେ
ଲଙ୍ଗଳ ଘେନି ମୁଁ ଚଷନ୍ତେ ।
କନ୍ୟା ଗୋଟିଏକ ଦିଶିଲା
ଶିଆର ମଧ୍ୟୁ ଜାତ ହେଲା ।।
ଦେଖି ମୁଁ ଆନନ୍ଦ ହୋଇଲି
ଦୁହିତା କରି ବଢ଼ାଇଲି ।
ମୋ ପ୍ରିୟବତୀ ଭାରିଯାକୁ
ଅତି ସ୍ନେହରେ ଦେଲି ତାକୁ ।।
ଏମନ୍ତେ ଏକ ଦିବସରେ
ବସି ମୁଁ ଥିଲି ଏକାନ୍ତରେ ।
ନାରଦ ଏହି ସମୟରେ
ପ୍ରବେଶ ହେଲେ ମୋ ଆଗରେ ।।
ବିଷ୍ଣୁର ନାମ ଗାଇ ମୁନି
କରୁଅଛନ୍ତି ବୀଣା ଧ୍ୱନି ।
ଦେଖି ବହୁତ ପୂଜା କଲି
ଦିବ୍ୟ ଆସନେ ବସାଇଲି ।
ହସିଣ ସେ ବୋଇଲେ ମୋତେ
ଗୂଢ଼କଥା କହିବା ତୋତେ ।
ଏ କଥା ମନେ ଧରିଥିବୁ
ବହୁତ ମଙ୍ଗଳ ଲଭିବୁ ।
ପରମାତ୍ମା ବିଷ୍ଣୁ ଯେ ଅଟଇ
ଭକ୍ତଙ୍କ ଅନୁଗ୍ରହ ପାଇଁ ।

ଦେବତାଙ୍କର କାର୍ଯ୍ୟ ହେବ
ରାବଣ ରାକ୍ଷସ ମରିବ ।
ଏଥକୁ ରାଜ ରୂପ ହୋଇ
ମାୟା ମନୁଷ୍ୟ ଦେହ ବହି ।
ଦଶରଥର ଘରେ ଜନ୍ମ
ହେଲେ ସେ ବହି ରାମ ନାମ ।
ଯୋଗମାୟା ଯେ ସୀତା ହୋଇ
ଜନ୍ମି ତୋ ଘରେ ଛନ୍ତି ରହି ।
ଏଣୁ ତା ଶ୍ରୀରାମଙ୍କୁ ଦେବୁ
ଆନକୁ ବିଭା ନ କରିବୁ ।
ପରମ ଆତ୍ମା ରଘୁବୀର
ଏ ସୀତା ପୂର୍ବ ଭାର୍ଯ୍ୟା ତାର ।
ଏତେକ ବିଷୟ କହିଲେ
ଆକାଶ ମାର୍ଗେ ମୁନି ଗଲେ ।
ସେ ଦିନୁ ସୀତାଙ୍କୁ ଜାଣଇ
ବିଷ୍ଣୁର ଲକ୍ଷ୍ମୀ ଏ ଅଟଇ ।
ରାମଙ୍କୁ ଦେବି ମୁଁ କେମନ୍ତେ
ଏ ଚିନ୍ତା କରଇ ସତତେ ।
ଏମନ୍ତ କଲି ମୁଁ ବିଚାର
ତ୍ରିପୁରାସୁର ମାରି ହର ।
ପୂର୍ବେ ମୋ ପିତାମହ ଠାଇଁ
ଗଲେ ସନ୍ତୋଷେ ଧନୁ ଥୋଇ ।
ସୀତାର ପରିଣୟ ହେଉ ।
ସଭିଙ୍କର ଗର୍ବ ନାଶ ଯାଉ ।
ଏମନ୍ତ ମନେ ବିଚାରିଲି
ସେ ଘେନି ଧନୁ ଦୃଢ଼ କଲି ।
ଏଠାକୁ ରାମଙ୍କୁ ଆଣିଲ
ମୋ ମନୋରଥ ପୂର୍ଣ୍ଣ କଲ ।
ହେ ରାମ ଦର୍ଶନେ ତୁମ୍ଭର
କଳୁଷକଳ୍ମଷ ଗଲା ମୋର ।

ସୂର୍ଯ୍ୟ ପ୍ରାୟେ ତୁ ଯାହା ଚୋରେ
ଦେଖିଲି ସୀତା ତୁଲେ ନେଇବେ ।
ତୋ ପାଦଜଳ ଶିରେ ଘେନି
ସୃଷ୍ଟି କରଇ ପଦ୍ମଯୋନି ।
ଶିରରେ ଧରି ଏହି ପାଦ
ବଳୀ ସ୍ୱର୍ଗରେ ହେଲା ଇନ୍ଦ୍ର ।
ଏ ପାଦରଜ ପାଇ ତୋର
ଅହଲ୍ୟା ଶାପୁଁ ହେଲା ପାର ।
ତୋ ଠାରୁଁ ବଡ଼ କେ ଈଶ୍ୱର
ସଂସାରେ ଅଛି ରଘୁବୀର ।
ତୋ ପାଦପଦ୍ମର ପରାଗ
ତହିଁରେ କଲେ ଅନୁରାଗ ।
ଏମନ୍ତ ଯୋଗୀ ଯେଉଁ ଜନ
କାଳଚକ୍ରକୁ ସେ ଜିଣନ୍ତି ।
ସଂସାର ଭୟକୁ ଜିଣିଲେ
ଜୀବନ ମୁକତ ସେ ହେଲେ ।
ତୋ ନାମ ସଂକୀର୍ତ୍ତନ କରି
ଦୁଃଖ ଶୋକ ଦୁହିଙ୍କି ହରି ।
ଏ ଦିବ୍ୟପାଦପଙ୍କଜରେ
ଶରଣାପନ୍ନ ହେଲେ ସୁରେ ।
ସ୍ତୁତି କରିଣ ସେ ଜନକ
ରାମଙ୍କୁ ଦେଲେ ଯଉତୁକ ।
ଦାସ କୋଟିଏ ସମର୍ପିଲା
ଛକିଣ ଦାସୀ ପୁଣ ଦେଲା ।
ରଥ ଅୟୁତେ ହାତୀ ତେତେ
ଅଶ୍ୱ ସେ ଦେଲାକ ନିୟୁତେ ।
ଲକ୍ଷେ ପଦାତି ପୁଣ ଦେଲା
ଅନେକ ରତନ ହୋଇଲା ।
ରତ୍ନ ମୁକୁତା ମାଳା ବସ୍ତ୍ର
ସୀତାଙ୍କୁ ଦେଲା ଅପ୍ରମିତ ।

ବଶିଷ୍ଠ ଆଦି ବ୍ରାହ୍ମଣଙ୍କୁ
ଭରତ ଲକ୍ଷ୍ମଣ ରାଜାଙ୍କୁ ।
ଶତ୍ରୁଘ୍ନ ତୁଳଟେଁ ଅନେକ
ବହୁତ ପୂଜି ସେ ଜନକ ।
ବହୁତ ବିନୟେ କହିଲେ
ପୁରକୁ ସେ ମେଲାଣି ହେଲେ ।
ବଇଦେହୀର ମାତାମାନେ
ଲୋତକ ଧରଣି ନୟନେ ।
ଶୋକରେ ଗଦ ଗଦ ହୋଇ
ବଚନ ନ ପାରନ୍ତି କହି ।
ସୀତା ଲୋତକ ମୁଞ୍ଚୁଥିଲେ
ମାୟେ ତା ଅଞ୍ଚଳେ ପୋଛିଲେ ।
ସ୍ନେହରେ କରି ଆଲିଙ୍ଗନ
କହନ୍ତି ମଧୁର ବଚନ ।
ଶାଶୁ ଶ୍ୱଶୁରଙ୍କୁ ସନ୍ତତେ
ସେବା କରିବୁ ଭକ୍ତି ଚିତ୍ତେ ।
ଶ୍ରୀରାମଚନ୍ଦ୍ର ପାଦେ ନିତ୍ୟ
ହୋଇଥିବୁଟି ଅନୁଗତ ।
ପତିବରତା ହୋଇଥିବୁ
ସୁଖରେ ଦିନ କାଳ ନେବୁ ।

ବୋଇଲେ ଶିବ ଉମା ଶୁଣି
ରାମ ପ୍ରୟାଣ କାଳେ ପୁଣି
ଭେରୀ ମୃଦଙ୍ଗ ଯେ ଆନକ
ଶବଦ ଶୁଭିଲା ଅନେକ ।
ସ୍ୱର୍ଗରେ ଦେବତା ରହିଲେ
ଭେରୀ ଦୁନ୍ଦୁଭି ବଜାଇଲେ ।
ଦୁଇ ଶବଦ ଯେ ମିଶିଲା
ଚଉଦବ୍ରହ୍ମାଣ୍ଡ ପୂରିଲା ।
ଅଧ୍ୟାତ୍ମପୁରାଣ ଚରିତ
ଭାଷା ପ୍ରକାରେ କଲି ଗୀତ ।
ଶଙ୍କର କହିଛନ୍ତି ଯାହା
ମୁଁ ଛାର କି କହିବି ତାହା
ଏତ ଆକାଶ ପରକାର
କହିଲି ଯେତେ ମୋ ଗୋଚର ।
ଏଣୁ ସୁଜନମାନେ ମୋର
ସମସ୍ତ ଦୋଷ କ୍ଷମା କର ।
ଏ ରସରେ ଯେ ତତପର
ତାର ସେବକ ହଳଧର
ଏ ଶଏ ଚୌରାଶୋଇ ପଦ
ଅଟଇ ପରମ ମୋକ୍ଷଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର
ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟ

ଶ୍ଳୋକଃ

ଅଥ ଗଚ୍ଛତି ଶ୍ରୀରାମେ ମୈଥିଳାଦ୍ୟୋଜନତ୍ରୟମ୍
ନିମିତ୍ତାନ୍ୟତିଘୋରାଣି ଦଦର୍ଶ ନୃପସତ୍ତମଃ ।

ଶ୍ରୀ ମହାଦେବ ଉବାଚ

ଶଙ୍କର ବୋଇଲେ ପାର୍ବତି ।
ବିଜେ କରନ୍ତେ ରଘୁପତି ।
ମିଥିଳା ଦେଶ ଛାଡ଼ି ସୈନ୍ୟ
ଯାଆନ୍ତେଣ ତିନି ଯୋଜନ ।

ଶ୍ରୀ ଦଶରଥ ଅଶକୁନ
ଦେଖନ୍ତେ ବଶିଷ୍ଠଙ୍କୁ ପୁଣ
ପ୍ରଣାମ କରି ପଚ୍ଛୁରିଲେ
ଅଶୁଭ କାହିଁକି ଦିଶିଲେ ।
ମୁନି ବୋଇଲେ ଭୟ ହେବ
ପୁଣି ତତ୍କାଳ ନାଶ ଯିବ ।
ମୃଗ ଦକ୍ଷିଣେ ଯାଉଛନ୍ତି
ଶୁଭକି ଏ କହୁ ଅଛନ୍ତି ।
ଏମନ୍ତ ସମୟରେ ତହିଁ
ଘୋର ପ୍ରଚଣ୍ଡ ବାତ ବହି ।
ଧୂଳି ଉଡ଼ି ହୋଇଲା ପୂର୍ଣ୍ଣ
ଆଚ୍ଛନ୍ନ ହୋଇଲା ନୟନ ।
ଏଥି ଉତ୍ତାରେ କଥା ପୁଣ
ଶିବ ବୋଲନ୍ତି ଉମା ଶୁଣ ।
ନବୀନ ଘନ ପ୍ରାୟେ କାନ୍ତି
ଜଟା ବକଳ ଧରିଛନ୍ତି ।
ପରଶୁ ଦକ୍ଷିଣେ କନ୍ଧରେ
ବୈଷ୍ଣବୀ ଧନୁ ଧରି କରେ ।
ସାକ୍ଷାତ ମୂରତ ଦିଶଇ
କାଳ ଦେବତା ପ୍ରାୟେ ହୋଇ ।
ସହସ୍ରାର୍ଜ୍ଜୁନ ରାଜନକୁ
ଯେ ସର୍ବ କ୍ଷତ୍ରିୟମାନଙ୍କୁ ।
ବହୁତ ଥର ନାଶ କଲେ
ସେ ପର୍ଶୁରାମ ଦୃଶ୍ୟ ହେଲେ ।
ସମସ୍ତ ଲୋକେ ଦେଖୁଛନ୍ତି
ଦୂରୁ ଆସନ୍ତି ଭୃଗୁପତି ।
କାଳଦେବତା ଆଜ୍ଞା ପାଇ
ମୃତ୍ୟୁ ଦେବତା କି ଆସଇ
ଏରୂପେ ଦଶରଥ ଠାରେ
ମିଳିଲେ, ଅତି କ୍ରୋଧ ଭରେ ।

ଦେଖି ତରସ୍ତ ହୋଇ ରାଜା
ଭୟରେ ପାସୋରିଲା ପୂଜା ।
ବହୁତ କରଣ ପ୍ରଣାମ
ବୋଲଇ ରଖ ରଖ ରାମ ।
ତରସ୍ତେ ବୋଲେ ପୁଣ ପୁଣ
ରଖ ମୋ ପୁତ୍ରଙ୍କର ପ୍ରାଣ ।
ରାଜାଙ୍କୁ ଅନାଦର କଲେ
ଶ୍ରୀରାମ ଛାମୁରେ ମିଳିଲେ ।
ତାହାଙ୍କୁ ଦେଖି କ୍ରୋଧ ହେଲେ
ନିଷ୍ଠୁର ବଚନ କହିଲେ ।
ରେ କ୍ଷତ୍ରିକୁଳର ଅଧମ
ବୃଥାଛୁ ବହି ଅମ୍ଭନାମ ।
ଥିଲେ କ୍ଷତ୍ରିୟ ଅହଂକାର
ଆମ୍ଭ ସଙ୍ଗତେ ଯୁଦ୍ଧ କର ।
ଭାଙ୍ଗି ପୁରୁଣା ଧନୁ ଖଣ୍ଡେ
ଗର୍ବ ତୁ ବହିଅଛୁ ପିଣ୍ଡେ ।
ଆମ୍ଭ ଧନୁରେ ଗୁଣ ଦେଲେ
ତେବେ ଯୁଝିବା ତୋର ତୁଲେ ।
ଯେବେ ନ ଦେବୁ ଏଥି ଗୁଣ
ତେବେ ଆମ୍ଭର ବାକ୍ୟ ଶୁଣ ।
ପୂର୍ବେ ଯେତେକ କ୍ଷତ୍ରୀ ଥିଲେ
ସମସ୍ତେ ଆମ୍ଭ ହସ୍ତେ ମଲେ ।
ଏବେ ହେଁ ସେ ରୂପେ କରିବୁ
ତୁମ୍ଭମାନଙ୍କୁ ସଂହାରିବୁ ।
କହନ୍ତେ ଭୂମି ଯେ କମ୍ପିଲା
କକୁଭ ଅନ୍ଧକାର ହେଲା ।
ତା ଦେଖି ରାମ କ୍ରୋଧ ହେଲେ
କାର୍ମୁକ ଛଡ଼ାଇ ଘେନିଲେ ।
ଗୁଣ ଚଢ଼ାଇ ସେହୁ ବାଣ
ସନ୍ଧାନ କରି ଓଟାରଣ ।

ବୋଇଲେ ଅହେ ଭୃଗୁପତି
ମୋ ଶର ବ୍ୟର୍ଥ ନୁହନ୍ତି ।
ଇହ ପର ତୋ ବେନି ପଥ
କାହାଁକୁ କରିବି କହ ବ୍ୟର୍ଥ ।
ଶୁଣନ୍ତେ ଶ୍ରୀରାମ ବଚନ
ଶୁଖିଣ ଗଲା ତା ବଦନ ।
ପୂର୍ବ କଥା ସେ ସୁମରିଲା
ଶ୍ରୀରାମ ଛାମୁରେ କହିଲା ।
ହେ ରାମ ହେ ରାମ ହେ ଶୁଣ
ତୋତେ ମୁଁ ଜାଣଇ ପୂର୍ବେଣ ।
ଜଗତ ଯେ ସର୍ଜନା ନାଶ
କରଇ ସେ ଯେଉଁ ପୁରୁଷ ।
ପୁରାଣ ପୁରୁଷଟି ତୁହି
ତୋ ତହୁଁ ଆନ କେହି ନାହିଁ ।
ପୂର୍ବେ ମୁଁ ବାଳକାଳେ ଯାଇ
ବିଷ୍ଣୁଙ୍କ ପୂଜିବାର ପାଇଁ ।
ଚକ୍ରତୀର୍ଥରେ ମୁଁ ମିଳିଲି
ବହୁତ ତପସ୍ୟା ଯେ କଲି ।
ସନ୍ତୋଷ ହୋଇ ପୀତାମ୍ବର
ପ୍ରସନ୍ନ ମୁଖପଦ୍ମ ଯାର ।
ଶଙ୍ଖ ରଥାଙ୍ଗ ଗଦା ଧରି
ମୋତେ ବୋଇଲେ ସେହୁ ହରି ।
ତପସ୍ୟା ଫଳିଲା ତୋହର
ମୋ ଅଂଶେ ଯୁକ୍ତ ତୋ ଶରୀର ।
ଯାହା ନିମନ୍ତେ ତପ କଲୁ
ଅମ୍ଭେ ସେ ବିଷୟ ଜାଣିଲୁ ।
ପିତାକୁ ମାରିଛି ଯେ ତୋର
ତୁ ସେ କାର୍ତ୍ତିବୀର୍ଯ୍ୟକୁ ମାର ।
ତହିଁ ଉତ୍ତାରେ ଏକୋଇଶ
ଥର କ୍ଷତ୍ରିୟ କର ନାଶ ।

ଧରଣୀ କଶ୍ୟପଙ୍କୁ ଦେବୁ
ଶାନ୍ତ ସେ ଉତ୍ତାରେ ହୋଇବୁ ।
ପରମ ଶକତିରେ ଯୁକ୍ତ
ହୋଇ ଯେ ଅମ୍ଭେ ହେବୁ ଜାତ ।
ଦାଶରଥି ରାମ ନାମରେ
ହୋଇବୁ ତ୍ରେତୟା ଯୁଗରେ ।
ସେକାଳେ ଅମ୍ଭଙ୍କୁ ଦେଖିବୁ
ଅମ୍ଭ ଅଂଶ ତୋଠାରୁ ନେବୁ ।
ତୁ ପୁଣି ତପ ଆଚରିବୁ
ବ୍ରହ୍ମାର ଦିବସେ ରହିବୁ ।
ଏମନ୍ତ କହି ଭଗବାନ
ସେଠାରୁ ହେଲେ ଅନ୍ତର୍ଦ୍ଧାନ ।
ମୁଁ ସବୁ ସେହି ରୂପେ କଲି
ସେ ବିଷ୍ଣୁ ତୁ ଏବେ ଦେଖିଲି ।
ବ୍ରହ୍ମା ବୋଲରେ ଜାତ ହେଲି
ମୋଠାରୁ ତୁମ୍ଭ ତେଜ ନେଲି ।
ତୋତେ ନୟନେ ମୁଁ ଦେଖିଲି
ଜନ୍ମ ସଫଳ ଆଜ କଲି ।
ବ୍ରହ୍ମାଦି ତୁମ୍ଭଙ୍କୁ ନ ପାନ୍ତି
ପ୍ରକୃତି ପାରେ ତୋର ସ୍ଥିତି ।
ଅଜ୍ଞାନୁ ହୁଅନ୍ତି ସମ୍ଭବ
ଜନ୍ମାଦି ଯେଉଁ ଷଡ଼ଭାବ ।
ସେ ଛଅେ ତୋଠାରେ ନାହାନ୍ତି
ନିର୍ବିକାର ତୁ ରଘୁପତି ।
ତୁ ସବୁଠାରେ ଅଛୁ ରହି
ତୋହର ଗମନାଦି ନାହିଁ ।
ଯେସନ୍ତେ ଅଗ୍ନିରେ ଧୂଆଁ ଥାଇ
ଜଳରେ ଫେନ ଥାଇ ରହି ।
ତେସନ୍ତେ ତୋଠାରେ ମାୟା ଥାଇ
ଜଗତ ସର୍ଜନା କରଇ ।

ମାୟାରେ ଯେ ଆବୃତ ହୋଇ
ସେ ଲୋକ ତୋତେ ନ ଜାଣଇ
ଅବିବେକରେ ସିଦ୍ଧ ହୋଇ
ଯେବଣ ମାୟା ସେ ହୁଅଇ ।
ବିଦ୍ୟା ଅବିଦ୍ୟା ଯାକୁ କହି
ଦୁହିଁକି ବୁଝାଇଛି ସେହି ।
ସେ ଅବିଦ୍ୟାରେ କରି କୃତ
ଯହୁଁ ହୋଇଛି ଦେହ ଜାତ ।
ଯେ ଜ୍ଞାନ ଶକତ ତହିଁରେ
ପ୍ରତିବିମ୍ବିଛି ନିରନ୍ତରେ ।
ତାକୁ ଟି ସମସ୍ତ ଲୋକରେ
ଜୀବ ବୋଲନ୍ତି ସବୁ ନରେ ।
ଶରୀର ପ୍ରାଣ ବୁଦ୍ଧି ମନ
ଯେତେବେଳେ ଏ ଅଭିମାନ ।
ତେତେବେଳେ ସେ ବିଶ୍ୱରଇ
ନିଶ୍ଚୟେ କର୍ତ୍ତା ଭୋକ୍ତା ମୁହିଁ ।
ସଂସାରେ ସୁଖୀ ମୁଁ ଅଟଇ
ଦୁଃଖୀ ମୁଁ ଏମନ୍ତ ବୋଲଇ ।
ଆତ୍ମାର ଯେ ସଂସାର ନାହିଁ
ବୁଦ୍ଧିର ଯେ ଜ୍ଞାନ ନୁହଇ ।
ଅବିବେକରେ ଯୁକ୍ତ ହୋଇ
ସେ ସଂସାରରେ ପ୍ରବର୍ତ୍ତଇ ।
ପ୍ରକୃତି ଚୈତନ୍ୟରେ ଯାଇଁ
ମିଶିଲେ ଚୈତନ୍ୟ ହୁଅଇ ।
ଚୈତନ୍ୟ ପ୍ରକୃତିଙ୍କି ଯେବେ
ଘେନଇ ଜଡ଼ ହୋଇ ତେବେ ।
ଜଳ ଅନଳ ମିଶେ ଯେହ୍ନେ
ପ୍ରକୃତି ଚୈତନ୍ୟ ତେସନେ ।
ତୋ ପାଦ ଭକ୍ତି ଅଲଙ୍ଘନ
ନ ପାଇଁ ଥାଇ ଯେତେ ଦିନ ।
ତାହାର ତେତେ ଦିନ ଯାଏ
ସଂସାର ଦୁଃଖ ଭୋଗ ହୁଏ ।
ସେ ସାଧୁ ସଙ୍ଗ ଭଗତରେ
ଆତ୍ମାକୁ ଉପାସନା କରେ ।
ତେବେ ତା ମାୟା ନାଶ ହୋଇ
ସେ ତୋତେ ଆଶ୍ରୟ କରଇ ।
ଏତେକ ଉତ୍ତାରେ ସେ ଯାଇ
ତାହାକୁ ସଦ୍‌ଗୁରୁ ମିଳଇ ।
ଦିଅଇ ସେ ଗୁରୁ ଦର୍ଶନ
ମହା ବାକ୍ୟ ରୂପ ଯେ ଜ୍ଞାନ ।
ଜ୍ଞାନ ପାଇ ତୋ ପ୍ରସାଦରେ
ମୁକତି ହୁଅନ୍ତି ସେ ନରେ ।
ଯେ ନରେ ହୀନ ଭଗତରେ
ସେ ଶଏ କୋଟି କଳ୍ପାନ୍ତରେ ।
ନ ପାନ୍ତି ଭକ୍ତି ଜ୍ଞାନ ସୁଖ
କେବଳ ଲଭୁଥାନ୍ତି ଦୁଃଖ ।
ଏଣୁ ମୋହର ତୋ ପାଦରେ
ଭଗତି ଜନ୍ମ ଜନ୍ମାନ୍ତରେ ।
ଏହି ରୂପେ ତୋ ଭଗତର
ସଙ୍ଗ ମୋ ହେଉ ନିରନ୍ତର ।
ତୋ ଭକ୍ତ ସାଧୁ ସଙ୍ଗମାନ
ଅବିଦ୍ୟା ନାଶଇ ବନ୍ଧନ ।
ଯେ ତୁମ୍ଭ ପାଦ ପଙ୍କଜରେ
ଭଗତି କରେ ନିରନ୍ତରେ ।
ତୋ ଧର୍ମ ଅମୃତ ସିଞ୍ଚନ୍ତି
ପାପୀଙ୍କି ପବିତ୍ର କରନ୍ତି ।
ପାପୀ ଏମନ୍ତ ହୋଏ ଯହିଁ
ସାଧୁଙ୍କ କି କହିବା ତହିଁ ।
ସମସ୍ତ ଜଗତ ନାୟକ
ଭଗତ ଜନର ପାଳକ ।

ହେ ରାମ କରୁଣାସାଗର
ତୁମ୍ଭଙ୍କୁ ମୋର ନମସ୍କାର
କ୍ଷଣିମା ପାଇଁ ପରଲୋକ ।
ତପସ୍ୟା କରିଛୁ ଯେତେକ
ସେ ଧର୍ମ ସବୁ ଏବେ ମୋର ।
ଚରଣେ ଦେଲି ରଘୁବୀର
ହେ ରାମ କରୁଣାସାଗର
ତୋତେ ସନ୍ତତେ ନମସ୍କାର ।
ଏମନ୍ତ ରୂପେ ପର୍ଶୁରାମ
ସ୍ତୁତି କରନ୍ତି ତୋଷେ ରାମ ।
କରୁଣାମୟ ରଘୁସାଇଁ
ଅନୁଜ୍ଞା ଦେଲେ ପ୍ରସନ୍ନ ହୋଇ ।
ନାହିଁ ସଂଶୟ ମନେ ଯାହା
କରିଛ ମାଗ ଦେବି ତାହା ।
ଅତି ଅନନ୍ଦେ ପର୍ଶୁରାମ
ବୋଲନ୍ତି ଶୁଣ ହେ ଶ୍ରୀରାମ ।
ଯେବେ ତୁ ପ୍ରସାଦ କରିବୁ
ତେବେ ତୋ ଭକ୍ତି ସଙ୍ଗ ଦେବୁ ।
ତୋହର ପାଦପଙ୍କଜରେ
ଭଗତି ହେବ ନିରନ୍ତରେ ।
ଅଭକ୍ତ ଲୋକ ଏହୁ ସ୍ତବ
ପଢିଲେ ତୋ ଭକ୍ତ ଲଭିବ ।
ସେ ଲୋକ ଜ୍ଞାନହିଁ ପାଇବ
ମରଣେ ତୋତେ ସୁମରିବ ।
ଶ୍ରୀରାମ କଲେ ହିଁକାର
ପୁଣି ସେ କଲେ ନମସ୍କାର ।
ବହୁତ ପ୍ରଦକ୍ଷିଣ କଲେ
ଶ୍ରୀରାମ ତାହାଙ୍କୁ ପୂଜିଲେ ।
ଭାର୍ଗବ ଅନୁଜ୍ଞା ମାଗିଲେ
ମହେନ୍ଦ୍ର ପର୍ବତକୁ ଗଲେ ।

ମରଣୁ ଅଇଲା ପରାୟେ
ରାମଙ୍କୁ ଦେଖି ରାଜା ହୋଏ ।
ସମସ୍ତେ ହରଷ ହୋଇଲେ
ଅଯୋଧ୍ୟାରେ ପ୍ରବେଶ ହେଲେ ।
ଗୃହରେ ଭାର୍ଯ୍ୟାମାନ ପାଇ
କ୍ରୀଡ଼ା କଲେ ଅନନ୍ଦ ହୋଇ ।
ବୈକୁଣ୍ଠେ ବିଷ୍ଣୁ ଲକ୍ଷ୍ମୀ ଯେହେ
ରାମ ଜାନକୀ ତୁଲେ ତେହେ ।
ହରଷେ ବିହାର କରନ୍ତି
ଏଥି ଉତ୍ତାରେ ଗୋ ପାର୍ବତୀ ।
ଭରତ ମାମୁଁ ଯୁଧାଜିତ
ଅଯୋଧ୍ୟାରେ ମିଳି ତୁରିତ ।
ଦଶରଥଙ୍କୁ ଦେଖା କଲେ
ରାଜା ଯଥାବିଧି ପୂଜିଲେ ।
ବିନୟେ କହିଲେ ରାଜାଙ୍କୁ
ଭରତେ ସ୍ୱପୁରେ ନେବାକୁ ।
ଏଥକୁ ଅଗମନ ମୋର
ଅନୁଜ୍ଞା ଦିଅ ନୃପବର ।
ସେ ତାହା ସ୍ୱୀକାର କଲେ
ଭରତ ଶତ୍ରୁଘ୍ନ ଗଲେ ।
ପୁଣି ଶିବଙ୍କୁ ଉମା ବୋଲେ
କୌଶଲ୍ୟା ରାମ ସୀତା ତୁଲେ ।
ଯେମନ୍ତ ହୋଇ ଶୋଭା ପାଏ
ଅଦିତି ଇନ୍ଦ୍ର ଶଚୀ ପ୍ରାୟେ ।
ଯେ ପ୍ରଭୁ ସମସ୍ତ ଲୋକର
ବିଖ୍ୟାତ ଗୁଣ ଗଣ ଯାର ।
ଯାହାର କୀର୍ତ୍ତି ସାଧୁଜନେ
ଗାଉ ଅଛନ୍ତି ପ୍ରତିଦିନେ ।
ସବୁ ଦେବତା ସମୂହର
ମଧ୍ୟେ ଅନନ୍ଦମୂର୍ତ୍ତି ଯାର ।

ସେ ରାମ ସୀତା ସଙ୍ଗରେ
ଅଛନ୍ତି ଅଯୋଧ୍ୟାନଗରେ ।
ଯାହାର ନିତ୍ୟଟି ସମ୍ପଦ
ବିକାର ଯାଠାରେ ନାହାନ୍ତି ।
ଯା ଅଇଶ୍ୱର୍ଯ୍ୟ ତୁଟି ନୋହେ
ସେ ନିତ୍ୟେ ମାୟାର ଆଶ୍ରୟେ ।
ମାୟା କାର୍ଯ୍ୟକୁ ଅନୁସରି
ମନୁଷ୍ୟ ପ୍ରାୟେ ରୂପ ଧରି ।
ଏ ରୂପେ ଶୋଭା ପାଉଛନ୍ତି
ଏ କାଣ୍ଡ ହୋଇଲା ସମାପ୍ତି ।
ଅଧ୍ୟାତ୍ମପୁରାଣ ଚରିତ
ଭାଷା ପ୍ରକାଶେ କରି ଗୀତ ।
ଶଙ୍କର କହିଛନ୍ତି ଯାହା
ମୁଁ ସ୍ଥିର କି କହିବି ତାହା ।
ଏ ଅଟେ ଆକାଶ ପ୍ରକାର
କହିଲି ଯେତେ ମୋ ଗୋଚର ।
ଏ ହେତୁ କରି ଦୋଷ ମୋର
ରାମ ଭଗବତେ କ୍ଷମା କର ।
ମୁଁ ଯେ ପାପରେ ହେଲି ଲୀନ
ଶ୍ରୀରାମ ପତିତପାବନ ।
ଏ ହେତୁ ଶରଧା ମୋହର
ସେ ଯେଣୁ କରୁଣାସାଗର ।
ଏଣୁ ଯେ ତା ପାଦେ କିଙ୍କର
ତାକୁ ମୋହର ନମସ୍କାର ।
ଶ୍ରୀରାମଚନ୍ଦ୍ର ବେନି ପାଦ
ହେଉ ମୋ ସମସ୍ତ ସମ୍ପଦ ।
ଅଧ୍ୟାତ୍ମ ପୁରାଣ ଚରିତ
ସୁଜନ ହିତେ କଲି ଗୀତ ।
କହଇ ହଳଧର ଦାସ
ଅମୃତମୟ ରାମ ରସ ।
ସୁଜନେ ପିଅ କର୍ଣ୍ଣଦ୍ୱାରେ
ସଂସାରୁ ତରିବ ସୁଖରେ ।
ଶ୍ରୀରାମ ନାମ ତୁଣ୍ଡେ ଘୋଷ
ତୁଟିବ କଳିର କଲ୍ମଷ ।
ଶଏ ଗୁଳିଶ ହେଲା ପଦ
ଏ ଅଧ୍ୟା ପରମ ଭକ୍ତିଦ ।
ସାତ ଅଧ୍ୟାରେ ସମାପତି
ହୋଇଲା ଆଦିକାଣ୍ଡ ଗୀତ ।
ଏଗାରଶ ତେପନ ପଦ
ଏ କାଣ୍ଡ ସମସ୍ତ କାମଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ-
ଆଦିକାଣ୍ଡେ ନାମ ସପ୍ତମୋଽଧ୍ୟାୟଃ ।

# ଅଯୋଧ୍ୟା କାଣ୍ଡ

## ପ୍ରଥମ ଅଧ୍ୟାୟ



ରତ୍ନମଣ୍ଡପେ ଅଯୋଧ୍ୟାରେ
କଳପ ପାଦପ ମୂଳରେ ।
ଦିବ୍ୟ ମାଣିକ୍ୟ ସିଂହାସନେ
ବିଜେ ହୋଇଣ ବୀରାସନେ ।
ବିକାଶ ଯେ ସ୍ଥଳକମଳ
ସେ ଶୋଭା ନିନ୍ଦେ ପାଦତଳ ।
ପଦ୍ମାଦି ଅଷ୍ଟାଦଶ ଚିହ୍ନ
ଧରି ସେ ଦିଶେ ଶୋଭାବନ ।
ମାଣିକ୍ୟ ମରକତ ଯେହ୍ନେ
ଜଡ଼ିତ ନଖମାନ ତେହ୍ନେ ।
କିଏ ମର୍କତ ରମ୍ଭାତରୁ
ଜଳଟି ହୋଇଅଛି ଉରୁ ।
ମହାଦ୍ର କଣ୍ଠକୁମ୍ଭ ପ୍ରାୟେ
ନିତମ୍ବ ଯୁଗ ଶୋଭାପାଏ ।
କଟିଭାଗ ଡମ୍ବରୁ ମତ
ଉଦରେ ତ୍ରିବଳୀ ଶୋଭିତ ।
ହୃଦୟ ପୃଥୁଳ ବିସ୍ତାର
ଶ୍ରୀବତ୍ସ ଚିହ୍ନେ ମନୋହର ।
ବକ୍ଷ ତମାଳବନ ଠେକ
ରୋମ ଛଳେ କି ଭୃଙ୍ଗରାଜ ।
ଗମନ୍ତି ମଧୁପାନ ଆଶେ
ନାଭି ସରପଦ୍ମକୁ କି ସେ ।
ଚରଣ ଯେଉଁ ମନୋହର
ସେ ନୋହେ ବଚନ ଗୋଚର ।
ଜାନୁ ପର୍ଯ୍ୟନ୍ତେ ବେନି ଭୁଜ
କର ଯୁଗ କି ଶୋଣ କଞ୍ଜ ।

ରଥାଙ୍ଗ ଶଙ୍ଖ ଗଦା ପଦ୍ମ
ଏ ଚିହ୍ନେ ଦିଶଇ ସୁରମ୍ୟ ।
ପୃଥୁଳ ଉଚ୍ଚ ବେନି ଅଂସ
ଶଙ୍ଖ ଆକାର କଣ୍ଠ ଦେଶ ।
ସୁଖଦ ଯେହ୍ନେ ସୁଧାକର
ସୁବାସେ ପଙ୍କଜ ପ୍ରକାର ।
ନିର୍ମଳ ଦର୍ପଣ ଯେସନ
ଏମନ୍ତ ପ୍ରକାରେ ବଦନ ।
ପ୍ରବାଳ ଶ୍ରେଣୀ କି ଅଧର
ଦଶନ ମୁକୁତା ପ୍ରକାର ।
କରୁଣା ରସରେ ସମ୍ପୂର୍ଣ୍ଣ
ବିକାଶ ପଙ୍କଜ ଲୋଚନ ।
ନାସିକା ଅତି ମନୋହର
ସବୁ ନେତ୍ରର କି ସେଁ ଧର ।
ଚିବୁକ ପରମ ରୁଚିର
ଗଣ୍ଡ କି ମର୍କତ ମୁକୁର ।
ହନୁ ବିପୁଳ ମନୋହର
ଭ୍ରୂଲତା ଧନୁର ଆକାର ।
ପାଟଳି ପୁଷ୍ପ କିଏ କର୍ଣ୍ଣ
ଗୁହ୍ନିଲ ମାନେ ବାନ୍ଧେ ମନ ।
କସ୍ତୁରୀ ଲେଖିଲ ସଦୃଶ
ରୁଚିର ଦିଶେ ଦାଢ଼ି ନଶ ।
ଲଲାଟ ଦିଶେ ମନୋହର
କିଏ ଅଷ୍ଟମୀ ନିଶାକର ।
କୁଟିଳ ଅଳକା ନିକର
ପଙ୍କଜରେ କି ମଧୁକର ।

ରକ୍ତକଣ କୁଞ୍ଚିତ କୁନ୍ତଳ
ଶ୍ୟାମଳ ଯେହ୍ନେ ଅଳିକୁଳ ।
ଧରି କେତକୀ ପତ୍ରଜାଳ
ଅତି ରୁଚିର ଦିଶେ ଚୂଳ ।
ବିବିଧ ରତ୍ନେ ଯୁକ୍ତ ହୋଇ
ଶିରେ କିରୀଟ ବିରାଜଇ ।
କର୍ଣ୍ଣରେ ମକର କୁଣ୍ଡଳ
ଭେଦେ ଝଟକେ ଗଣ୍ଡସ୍ଥଳ ।
ଲଲାଟେ ଚନ୍ଦନର ବିନ୍ଦୁ
ବସ୍ତୁ ପ୍ରଦେ କି ପୂର୍ଣ୍ଣଇନ୍ଦୁ ।
ପୀତବସନ କଟିଦେଶେ
ଶମ୍ବର ଘନେ ଶମ୍ପା କି ସେ ।
ମହେନ୍ଦ୍ର ଧନୁ ପ୍ରାୟେ ହୋଇ
ରତନ ଓଢ଼ିଆଣୀ ଶୋହି ।
କିଙ୍କିଣୀଗଣ କି ନକ୍ଷତ୍ର
ଏ ଘେନି ଜାତ କରେ ରବ ।
ଭୁଜରେ କେୟୂର କଙ୍କଣ
କର ଶାଖାରେ ମୁଦିଗଣ ।
ଦିବ୍ୟ ମାଣିକ୍ୟ ଯୁକ୍ତ ହୋଇ
ହୃଦେ ପଦକ ବିରାଜଇ ।
ଆଦିତ୍ୟ ପ୍ରତିବିମ୍ବ କି ସେ
ଯମୁନା ଜଳ ମଧ୍ୟ ଦେଶେ
ତହିଁ ଯେସନ ହଂସକୁଳ
ତେସନ ଦିଶେ ମୋତିମାଳ ।
ସୁବାସ ପୁଷ୍ପମାଳ ଜାଳ
ଘନରେ କି ବଳାକାକୁଳ ।
ସୁନା ପଇତା ମନୋହର
କଟିରେ ହେମସୂତ୍ର ସାର ।
କର୍ପୂର କୁଙ୍କୁମ ଚନ୍ଦନ
ଶ୍ରୀ ଅଙ୍ଗେ ହୋଇଛି ଲେପନ ।

ଦିବ୍ୟ ମଣିରେ ହୋଇ ଯୁତ
ପାଦରେ ନୂପୁର ଶୋଭିତ ।
ନବୀନ ଦୁର୍ବାଦଳ ଶ୍ୟାମ
ରୂପେ ନିନ୍ଦିତ କୋଟି କାମ ।
ତେଜେ କୋଟିଏ ଚଣ୍ଡକର
ପ୍ରିୟ ଦର୍ଶନେ ସୁଧାକର ।
ହୋଇଛି ପ୍ରସନ୍ନ ବଦନ
ମନ୍ଦହାସରେ ସୁଶୋଭନ ।
ବାମ ପାର୍ଶ୍ୱରେ ବଇଦେହୀ
ବିଜୟ କରନ୍ତି ମନୋହ୍ରୀ ।
ଧବଳ ଛତ୍ର ଧରି କରେ
ଲକ୍ଷ୍ମଣ ଅଛନ୍ତି ପଛରେ ।
ଭରତ ଶତ୍ରୁଘନ ବୀର
ଘଟନ୍ତି ଅଳଟ ଚାମର ।
ସୁନା ପରିଘ ଧରି କରେ
ମାରୁତି ଅଛନ୍ତି ଦ୍ୱାରରେ ।
ଶଙ୍ଖ ମହୁରୀ ବୀଣା ତାଳ
ବାଜଇ ବହୁତ ମର୍ଦ୍ଦଳ ।
ହୁଳା ଦହୁଡ଼ି ରତ୍ନଦୀପ
ତେଜେ ସୁନ୍ଦର ଦିଶେ ରୂପ ।
ଗନ୍ଧର୍ବେ ଗାୟନ କରନ୍ତି
ଅପସରୀଏ ନାଚୁଛନ୍ତି ।
ସିଦ୍ଧଚାରଣ ସୁରମୁନି
ମହେନ୍ଦ୍ର ଶିବ ପଦ୍ମଯୋନି ।
ସମସ୍ତେ ଦଣ୍ଡବତ କରି
ଅଙ୍ଗେ ପୁଲକକୁଳ ଧରି ।
ଭକ୍ତିରେ ଗଦଗଦ ହୋନ୍ତି
ହରଷେ ଅଶ୍ରୁ ବରଷନ୍ତି ।
କର ଯୁଗଳ ଦେଇ ଶିରେ
ସ୍ତୁତି କରନ୍ତି ଆନନ୍ଦରେ ।

ସୁବର୍ଣ୍ଣ ବେତମାନ ଧରି
ଛମୁ ଛଡ଼ାନ୍ତି ରକ୍ଷ ହରି ।
ସୁଗ୍ରୀବ ବିଭୀଷଣ ରହି
ଡାକନ୍ତି ମହିମା ଗୋସାଇଁ ।
ଏମନ୍ତ ଶ୍ରୀରାମଙ୍କୁ ମୋର
ଅନୁବାରତେ ନମସ୍କାର ।
ହେ ନାଥ କରୁଣାସାଗର
ମୋ ଅପରାଧ କ୍ଷମାକର ।
ଘୋର କଳିରେ ହେଲି ଜନ୍ମ
ମୁଁ ଶୁଦ୍ର ବର୍ଣ୍ଣରେ ଅଧମ ।
ଏ ଘେନି ଅଜ୍ଞାନ ମୁଁ ହେଲି
ଅନୁବାରତେ ପାପ କଲି ।
ଭ୍ରମ ପ୍ରମାଦେ କି ସ୍ୱପ୍ନରେ
ତୋ ପାଦ ନ ଚିନ୍ତିଲି ଥରେ ।
ସଂସାର ସାଗରରେ ପଡ଼ି
ମରୁଛି ମୋହଜଳେ ବୁଡ଼ି ।
ତୁ ଅଟୁ ପତିତପାବନ
ଦୀନଜନମାନଙ୍କ ଧନ ।
ଏଣୁ କରି ହେ ଦୟାନିଧି
ଦିଅ ମୋତେ ତୋ ପାଦେ ବୁଦ୍ଧି ।
ସୀତା ସହିତେ ରୂପ ତୋର
ମୋ ହୃଦେ ରହୁ ନିରନ୍ତର ।
ଏମନ୍ତ ଅଜ୍ଞା ସ୍ୱାମି ହେଉ
କୋଟିଜନ୍ମରେ ଅନ୍ନ ନୋହୁ ।
ତୋ ପାଦପଦ୍ମେ ଯେ କିଙ୍କର
ତା ସଙ୍ଗ ହେଉ ନିରନ୍ତର ।
ସେହି ଭକତ ଭାବ ମୋର
ତୋ ପାଦେ ରହୁ ରଘୁବୀର ।
ଏମନ୍ତ ଅନୁଗ୍ରହ କର
ହେ ନାଥ କରୁଣାସାଗର ।

ଜାନକୀଯୁକ୍ତ ତୋ ଚରଣ
ହେଉ ମୋ ସନ୍ତତ ସ୍ମରଣ ।
ସହସ୍ର ସହସ୍ର ପ୍ରକାର
ରାତ୍ର ଦିବସ ନିରନ୍ତର ।
ହେଉଛି ଅପରାଧ ମୋର
ତୁମ୍ଭେ ତ କରୁଣାସାଗର ।
ଏଣୁ ମୁଁ ତୋ ଦାସ ବିଚାର
କ୍ଷମାକର ହେ ରାବଣାରି ।
କରି ତୋ ଆଦିକାଣ୍ଡ ଗୀତ
ସମ୍ପୂର୍ଣ୍ଣ ହେଉ ନାହିଁ ଚିତ୍ତ ।
ଏବେ ଅଯୋଧ୍ୟା ଲୀଳାମାନ
କହିବ ହେଉଅଛି ମନ ।
ତହିଁରୁ କିଛି ଅଜ୍ଞା ହେଉ
ବଡ଼ ବେଗରେ ନିର୍ବା ପାଉ ।
ବନ୍ଦଇ ଶଙ୍କର ଗଉରୀ
ତୁମ୍ଭ ଚରଣ ହୃଦେ ଧରି ।
ଶ୍ରୀରାମ ଅଧ୍ୟାତ୍ମ ଚରିତ
ଆଦିକାଣ୍ଡ ତ କଲି ଗୀତ ।
ଏବେ ଅଯୋଧ୍ୟା କାଣ୍ଡ ମୋର
ମନରେ ସ୍ଫୁରୁ ମହେଶ୍ୱର ।
ଏ ରୂପେ ଅନୁଗ୍ରହ କର
ହେ ଅର୍ଦ୍ଧନାରୀଶ୍ୱର ହର ।
ସୁଜନେ ଅଯୋଧ୍ୟା ଚରିତ
ଶୁଣି ନିଶ୍ଚଳ କର ଚିତ୍ତ ।

ଶ୍ଳୋକ

ଏକଦା ସୁଖମାସୀନଂ
ରାମଂ ସ୍ୱାନ୍ତଃପୁରାଜିରେ ।
ସର୍ବାଭରଣସମ୍ପନ୍ନଂ
ରତ୍ନସିଂହାସନେସ୍ଥିତମ୍ ॥

ଶ୍ରୀ ମହାଦେବ ଉବାଚ

ଶିବ ବୋଲନ୍ତି ଗୋ ପାର୍ବତି ।
ଏକଦିନକେ ରଘୁପତି ।
ଅନ୍ତଃପୁରର ଅଗଣାରେ
ରତ୍ନ ସିଂହାସନ ଉପରେ ।
ବସିଣ ଅଛନ୍ତି ସୁଖରେ
କୌସ୍ତୁଭ ଅଛି ହୃଦୟରେ ।
ସମସ୍ତ ଆଭରଣେ ଯୁକ୍ତ
କଟିତଟରେ ପୀତବସ୍ତ୍ର ।
ନୀଳ ଉତ୍ପଳ ପ୍ରାୟେ ଶ୍ୟାମ
ରୂପେ ନିନ୍ଦିତ କୋଟି କାମ ।
ହିରଣ୍ୟ ବେଷ୍ଟ ଗୃହରେ
ଜାନକୀ ବସିଅନ୍ତି ସଧୀରେ ।
ଚର୍ବଣ ଅଦ ରାମ ଦ୍ୟନ୍ତି
ସୀତାଙ୍କୁ ହରଷ କରନ୍ତି ।
ନାରଦ ଏ ସମୟେ ଆସି
ସେହି ସଳଖେ ନଭୁଁ ଖସି ।
ରାମଙ୍କୁ ଦେଖିବା ଇଚ୍ଛାରେ
ମିଳିଲେ ଧରଣୀ ତଳରେ ।
ଶୁଦ୍ଧ ସ୍ଫଟିକ ପ୍ରାୟେ ତେଜ
ନିର୍ମଳ,ଯେହ୍ନେ ଦ୍ୱିଜରାଜ ।
ଜଟା ବକଳ ଧରିଛନ୍ତି
ଉତ୍ତମ ଜ୍ଞାନୀ ସେ ଅଟନ୍ତି ।
ଶ୍ରୀରାମ ଆଗେ ଅତର୍କିତ
ହୋଇ ମିଳନ୍ତି ବ୍ରହ୍ମାସୁତ ।
ଶ୍ରୀରାମ ଜାନକୀ ତୁଳରେ
ଆସନୁ ଉଠିଣ ସତ୍ୱରେ ।
ଭକ୍ତିରେ ଦଣ୍ଡବତ କଲେ
ପ୍ରୀତିରେ ଏମନ୍ତ କହିଲେ ।

ସଂସାର ବିଷୟାସକତ
ହୋଇଛୁଁ ଅମ୍ଭେତ ସନ୍ତତ ।
ଏ ଯେଣୁ ଅମ୍ଭମାନଙ୍କର
ଦୁର୍ଲ୍ଲଭ ତୋତେ ଦେଖିବାର ।
କି ପୂର୍ବଜନ୍ମର ଅର୍ଜିତ
ବହୁତ ଅଛି ମୋ ସୁକୃତ ।
ନୋହିଲେ କିକ ଗୃହୀ ହୋଇ
ସାଧୁର ସଙ୍ଗତ ଲଭଇ ।
ଏ ଯେଣୁ ଦର୍ଶନେ ତୋହର
କୃତାର୍ଥ ହେଲି ମୁନିବର ।
କହ କି କାର୍ଯ୍ୟ ଅଛି ତୋର
କରିବି ସଂଶୟ ନ କର ।
ଶିବ ବୋଲନ୍ତି ଗୋ ଭବାନି
ଏଥୁ ଅନ୍ତରେ ମହାମୁନି
ଭକ୍ତବତ୍ସଳ ଯେ ରାଘବ
ତାହାଙ୍କୁ ବୋଇଲେ ହେ ଦେବ ।
ମନୁଷ୍ୟ ବଚନ ସମାନ
କିପାଇଁ କହ ଏ ବଚନ ।
ମୋହ କରାଉ ଅଛ ବୀର
ଶୁଣିମା ହେଉ ବାଣୀ ମୋର ।
ଅମ୍ଭେ ସଂସାରୀ ବୋଲି ଯାହା
କହିଲ ସତ୍ୟ ଶୁଣ ତାହା ।
ଜଗତ ଆଦ୍ୟ ଯେଉଁ ମାୟା
ସେ ଯେଣୁ ତୁମ୍ଭ ନିଜ ଜାୟା ।
ସେହି ତୋ ସନ୍ନିକରଷରେ
ବ୍ରହ୍ମାଦି ପ୍ରଜା ଜାତ କରେ ।
ତୁମ୍ଭଙ୍କୁ ସେବ ହେ ଗୋସାଇଁ
ତ୍ରିଗୁଣମୟୀ ଯେ ବୋଲାଇ ।
ସେ ମାୟା ସମସ୍ତ କାଳରେ
ଶୋଭା ପାଉଛି ନିରନ୍ତରେ ।

ସେ ମାୟା ପୁଣି ପ୍ରତିପଦନ
ସିତ ଅସିତ ରକ୍ତବର୍ଣ୍ଣ ।
ପ୍ରଜାମାନ କରୁଛନ୍ତି ଜନ୍ମ
ଏ ଯେଣିକର ହେ ଶ୍ରୀରାମ ।
ତ୍ରୈଲୋକ୍ୟ ଯାକ ହେଲା ପୁର
ତହିଁରେ ଗୃହୀ ତୁମ୍ଭେ ବୀର ।
ତୁମ୍ଭେଟି ବିଷ୍ଣୁ ସୀତା ରମା
ତୁମ୍ଭେଟି ଶିବ ସୀତା ଉମା ।
ତୁ ବ୍ରହ୍ମା ବଇଦେହୀ ବାଣୀ
ତୁ ଚନ୍ଦ୍ର ଜାନକୀ ରୋହିଣୀ ।
ତୁ ସୂର୍ଯ୍ୟପ୍ରଭା ବଇଦେହୀ
ତୁ ଇନ୍ଦ୍ର ଶଚୀ ଏ ଅଟଇ ।
ତୁ ଅଗ୍ନି ସୀତା ଅଗ୍ନିପତ୍ନୀ
ତୁ ଯମ ସୀତା ସଞ୍ଜୀବନୀ ।
ହେ ରାମ ନଇର୍ଋତ ତୁହି
ତାମସୀଟି ଏ ବଇଦେହୀ ।
ତୁମ୍ଭେଟି ବରୁଣ ଦେବତା
ଭାର୍ଗବୀ ଅଟଇ ଏ ସୀତା ।
ତୁ ବାତ ସୀତା ସଦାଗତି
ତୁମ୍ଭେ କୁବେର ଏ ସମ୍ପତ୍ତି ।
ହେ ରାମ ରୁଦ୍ର ରୂପ ତୁହି
ରୁଦ୍ରାଣୀ ରୂପୀ ବଇଦେହୀ
ଲୋକରେ ଯେତେକ ବନିତା
ସେ ସବୁ ରୂପଟି ଏ ସୀତା ।
ଯେତେ ଅଛନ୍ତି ପୁଂସ ହୋଇ
ସେ ସବୁ ନିଶ୍ଚେ ଅଟୁ ତୁହି ।
ଏ ଯୋଗେ ତୁମ୍ଭେ ବଇଦେହୀ
ବିନୁ ଜଗତେ କିଛି ନାହିଁ ।
ତୋ ଯେଉଁ ଶକ୍ତି ରଘୁବୀର
ତହିଁରେ କର ଜ୍ଞାନ ତାର ।

ପ୍ରକାଶ ହୁଅଇ ହେ ବୀର
ଅବ୍ୟାକୃତଟି ନାମ ତାର ।
ତାଠାରୁ ହେଲା ମହାତତ୍ତ୍ୱ
ତହୁଁ ହୋଇଲା ସୂତ୍ର ଜାତ ।
ସୂତ୍ରରୁ ଲିଙ୍ଗ ହେଲା ପୁତ୍ର
ସେ ଲିଙ୍ଗ ବ୍ୟବସ୍ଥାକୁ ଶୁଣ ।
ପଞ୍ଚ ଇନ୍ଦ୍ରିୟ ପଞ୍ଚପ୍ରାଣ
ଅର୍ହନ୍ତ୍ରି ବୁଦ୍ଧି ଏ ମିଶିଣ ।
ଏ ରୂପେ ଦ୍ୱାଦଶ ପ୍ରକାର
ଏହାଙ୍କୁ ଲିଙ୍ଗ ବୋଲେ ଧୀର ।
ଏ ଲିଙ୍ଗ ଜାତ ମୃତ୍ୟୁ ହୋଇ
ସୁଖ ଦୁଃଖହିଁ ଏ ଯେନଇ ।
ଏହାକୁ ଜୀବ ବୋଲି କହି
ଜଗତ ସ୍ୱରୂପଟି ଏହି ।
ବଚନେ କହି ଯା ନ ପାରି
ଅନାଦି ଅଟେ ଯେଣୁ କରି ।
ଏମନ୍ତ ଯେ ଅବିଦ୍ୟା ହୋଇ
କାରଣ ଉପାଧି ଟି କହି ।
ଚୈତନ୍ୟର ଯେ ସ୍ଥୂଳ ସୂକ୍ଷ୍ମ
କାରଣ ଏ ରୂପେ ହେ ରାମ ।
ଉପାଧି ତିନ ଗୋଟି ଛନ୍ତି
ଏରୂପେ ପଣ୍ଡିତ କହନ୍ତି ।
ଅବ୍ୟାକୃତ ଠାରୁ କାରଣ
ପର୍ଯ୍ୟନ୍ତେ ଏ ଯେଉଁ ମାନ ।
ଏତେକ ଅଛୁ ଯାହା ତହିଁ
ତାହାକୁ ଜୀବ ବୋଲି କହି ।
ଏମାନେ ଯାହାର ନାହାନ୍ତି
ତାହାଙ୍କୁ ପରମ ବୋଲନ୍ତି ।
ଜାଗ୍ରତ ସ୍ୱପନ ସୁଷୁପ୍ତି
ଏ ରୂପେ ତିନି କଥା ଛନ୍ତି ।

ତହୁଁ ବାହାର ଯେ ଚୈତନ୍ୟ
ସେହି ସ୍ୱରୂପଟି ଆପଣ ।
ଜଗତ ତୁମ୍ଭଠାରେ ଅଛି
ଜାତହିଁ ତୋ ଠାରୁ ହୋଇଛି ।
ପ୍ରାନ୍ତେ ତୋଠାରେ ହୋନ୍ତି ଲୀନ
ଏଣୁ ତୁ ସବୁର କାରଣ ।
ଯେସନେ ନ ଜାଣି ରଜ୍ଜୁ ତତ୍ତ୍ୱେ
ଭ୍ରମରେ ସର୍ପ ବୁଦ୍ଧି କରେ ।
ତହିଁରୁ ଲଭଇ ଭୟକୁ
ସେ ରୂପେ ନ ଜାଣି ଆତ୍ମାକୁ ।
ଥିବା ପର୍ଯ୍ୟନ୍ତେ ଭବ ଭୟେ
ଲଭୁଣ ଥାଇ ସେ କଷ୍ଟସ୍ୱେ ।
ଯେ ପରମାତ୍ମା ମୁଁ ଅଟଇ
ଆତ୍ମାକୁ ଏ ରୂପେ ଜାଣଇଁ ।
ଭୟ ଦୁଃଖରୁ ତେବେ ମୁକ୍ତ—
ହୁଅଇ ତାକୁ ବୋଲି ସତ ।
ସମସ୍ତ ଦେହୀମାନ ଠାରେ
ବୁଦ୍ଧି ଚୈତନ୍ୟ ଶକତରେ ।
କରଣେ ଯହୁଁ ପ୍ରକାଶିଲ
ଏ ଘେନି ସବୁ ସାକ୍ଷୀ ହେଲୁ ।
ଯେମନ୍ତ ଭ୍ରମ ବୁଦ୍ଧି ହୋଇ
ରଜ୍ଜୁକୁ ଉରଗ ମଣଇ ।
ସେହି ରୂପରେ ମନେ ହୁଏ
ତୋତେ ନ ଜାଣିଥିବା [illegible]
ଜଗତ ଅଛି ତୋହଠାରେ
ଏ ରୂପେ ଅଭ୍ୟାସ ଶକ୍ତିରେ ।
ଏଣୁ ଯେ ତୁମ୍ଭଙ୍କୁ ଜାଣଇ
ତା ସବୁ ଭ୍ରମ [illegible]
ଏ ଘେନି କରି [illegible]
ସର୍ବଦା ଜ୍ଞାନକୁ ସାକ୍ଷୀ [illegible]

ଏ ଘେନି ଯେଉଁ ପ୍ରାଣୀ ଶନ୍ତ
ତୁମ୍ଭର ଭକ୍ତିରେ ସଂଯୁକ୍ତ ।
ତୁମ୍ଭର ମହିମାରେ କରି
ଜ୍ଞାନ ହୁଅଇ ତାହାଙ୍କର ।
ତୋ ପାଦେ ଭକ୍ତି ଯାହାଙ୍କର
ମୁକ୍ତ ଲଭଇ ସେହି ନର ।
ତୁମ୍ଭର ଭକ୍ତ ଭକ୍ତ ଭକ୍ତ
ତାହାଙ୍କ ଭକ୍ତ ମୁଁ ସନ୍ତତ ।
ଏ ଘେନି ମୋହ ତୁ ନ କର
ସୁକୃପା କରି ରଘୁବୀର ।
ଯେଣୁ ମୋ ପିତା ପ୍ରଜାପତି
ତୋ ନାଭିପଦ୍ମୁଁ ଜନ୍ମିଛନ୍ତି ।
ଏଣୁ ମୁଁ ନାତି ଭକ୍ତ ତୋର
ଏ ଘେନି ମୋତେ ରକ୍ଷା କର ।
ଏମନ୍ତ କହି ମୁନିବର
ବହୁତ କରି ନମସ୍କାର ।
ଆନନ୍ଦେ ଅଶ୍ରୁକୁ ମୁଞ୍ଚିଲେ
ପୁଣି ଏମନ୍ତ ଜଣାଇଲେ ।
ମୋତେ ତୋଠାକୁ ପ୍ରଜାପତି
ପେଷିଣ ଦେଇ ସେ ଅଛନ୍ତି ।
ରାବଣ ବଧ ହେବା ପାଇଁ
ଜାତ ତୁ ହୋଇଛୁ ଗୋସାଇଁ ।
ଏ ରାଜ୍ୟ ରକ୍ଷାକୁ ଜନକ
[illegible]ବେ ତୋତେ ଅଭିଷେକ ।
ଯେବେ ଏ ରାଜ୍ୟକୁ ଭୁଞ୍ଜିବ
ତେବେ ରାବଣ ନ ମରିବ ।
ପ୍ରତିଜ୍ଞା କରିଛ ଅବଶ୍ୟ
କରିବୁ [illegible] ।
ସତ୍ୟ [illegible] ରଘୁବୀର
ସେ [illegible] ।

ଶଙ୍କର ବୋଇଲେ ପାର୍ବତି ।
ଏମନ୍ତ ଶୁଣି ରଘୁପତି
ମୁନିଙ୍କି ଅନାଇ ହସିଲେ
ମୁଁ ସବୁ ଜାଣଇ ବୋଇଲେ ।
ପୂର୍ବେ ମୁଁ ବୋଲିଅଛି ଯାହା
ଏବେ କହିବି ନିଶ୍ଚେ ତାହା ।
ଯାହାର ଯେମନ୍ତ କାର୍ଯ୍ୟେଣ
କର୍ମ କ୍ଷୟ ହୋଇବ ପୁଣ ।
ସେହି କର୍ମରେ ପୃଥ୍ୱୀ ଭାର—
ହୋଇ ଅଛନ୍ତି ଯେ ଅସୁର ।
ମାରିବି ସେମାନଙ୍କୁ ମୁହିଁ
ଏଥି ସଂଶୟ କିଛି ନାହିଁ ।
ମାରିବା ପାଇଁ ରାବଣକୁ
କାଲି ମୁଁ ଯିବି ଅରଣ୍ୟକୁ ।
ତହିଁରେ ଚଉଦ ବରଷ
ରହିବି ଧରି ମୁନିବେଶ ।
ସୀତା ଛଳେ ସେ ରକ୍ଷବଂଶ
ସମୂଳେ କରିବି ବିନାଶ ।
ଏମନ୍ତ ଶୁଣି ବ୍ରହ୍ମା ସୁତ
ଆନନ୍ଦ ଲଭିଲେ ବହୁତ ।
ତ୍ରିବାର କରି ପ୍ରଦକ୍ଷିଣ
ପ୍ରଣାମ କରି ପୁଣ ପୁଣ ।
ଆଜ୍ଞା ପାଇ ସେ ଶ୍ରୀରାମର
ସ୍ୱର୍ଗକୁ ଗଲେ ମୁନିବର ।
ସମ୍ବାଦ ରାମ ନାରଦର
ଭକ୍ତିରେ ପଢ଼େ ଯେଉଁ ନର ।
କିବା ଶୁଣଇ ସୁମରଇ
ସେ ବଇରାଗେ ମୁକ୍ତ ହୋଇ ।
ଯେଉଁ ମୋକ୍ଷ ନ ପାନ୍ତି ସୁରେ
ସୁଖେ ତା ଲଭନ୍ତି ସେ ନରେ ।
କହଇ ଦୀନ ହଳଧର
ଏ ନୋହେ ଶିବର ଗୋଚର ।
କେବଳ ରାମ ଦୟାନିଧି
କରନ୍ତି ଦୀନ ବାଞ୍ଛା ସିଦ୍ଧି ।
ଏ ଯେତେ କରୁଛି ସାହସ
ସୁଜନେ କ୍ଷମା କର ଦୋଷ ।
ସୀତା ସହିତେ ଶ୍ରୀରାମର
ଚରଣେ ମୋର ନମସ୍କାର ।
ଏ ଶଏ ବୟାଳିଶ ପଦ
ସମସ୍ତ ଲୋକର ମୋକ୍ଷଦ

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଉମାଙ୍କୁ ବୋଇଲେ ବିଶ୍ୱନାଥ
ଏଥି ଉତ୍ତାରେ ଦଶରଥ ।
ବଶିଷ୍ଠ ମୁନିଙ୍କି ଡାକିଲେ
ଏକାନ୍ତେ ବସାଇ କହିଲେ ।
ପୁରର ଲୋକେ ଆଉ ଜନେ
ସମସ୍ତ ମନ୍ତ୍ରୀ ବୃଦ୍ଧମାନେ ।
ସନ୍ତତ ଶ୍ରୀରାମଙ୍କ ମୋର
ପ୍ରଶଂସା କରନ୍ତି ଅପାର ।

ବିଶେଷେ ରାମ ଜ୍ୟେଷ୍ଠ ପୁତ୍ର
ସମସ୍ତ ଗୁଣରେ ସଂଯୁକ୍ତ ।
ମୁଁ ବୁଢି ରାମଙ୍କୁ ଏ ଘେନ
କରିବା ଅଭିଷେକ ମୁନି ।
ଭରତ ଶତ୍ରୁଘ୍ନ ଯାଇ
ମାମୁଁଙ୍କ ଘରେ ଛନ୍ତି ରହି ।
ଏ ଅଭିଷେକ କାଲି କର
ଆଜ୍ଞା ଦିଅ ହେ ମୁନିବର ॥
ଏ କଥା ରାମଙ୍କୁ ଜଣାଅ
ସମସ୍ତ ସମ୍ଭାର ଅଣାଅ ।
ବିବିଧ ପତାକାମାନ
ପୁରରେ ବନ୍ଧାଅ ବନ୍ଦନ ।
ସୁନା ମୁକୁତା ନାନାରତ୍ନେ
ତୋରଣମାନ କର ଯତ୍ନେ ।
ଏଥି ଉତ୍ତାରେ ନରସାଇଁ
କହିଲେ ସୁମନ୍ତଙ୍କୁ ଚାହିଁ ।
ଶ୍ରୀରାମ ଯୁବରାଜ୍ୟ ପାଉ
ଏ ଅଭିଷେକ କାଲି ହେଉ ।
ଏଥି ସମ୍ଭାର ଗୁରୁ ଯାହା
ବୋଲିବେ ବେଗେ କର ତାହା ॥
ଗୁରୁଙ୍କୁ ବୋଲେ ନୃପବର
କି କି ହୋଇବ ଆଜ୍ଞା କର ।
ଶୁଣି ବୋଇଲେ ମୁନୀଶ୍ୱର
ସହସ୍ରେ ଜଳ କୁମ୍ଭ କର ।
ଶାର୍ଦ୍ଦୂଳ ଅଜିନ କୁତାସ୍ତୁ *
ମଣି ମୁକୁତା ମାଳାବସ୍ତୁ ।
ରତ୍ନ ଦଣ୍ଡରେ କର ଯୁକ୍ତ
ନିର୍ମାଣ କର ଶ୍ୱେତଛତ୍ର ।
ବିବିଧ ଛତ୍ର ପୀତ ବସ୍ତ୍ର
ବହୁତ ଭିଆଅ ସୁମନ୍ତ ।
ମୁନି ଶୀକର ଘେନି କ୍ଷଣ
ସଦ୍ମରେ ହୁଅନ୍ତି ପ୍ରବେଶ ।
ନାଚୁଣୀମାନେ ବେଶ୍ୟାକୁଳ
ପ୍ରଭାତେ ଆସିବେ ସକଳ ।
ଗାଅଣେ ନାନା ବାଦ୍ୟକାରେ
ଗାଆନ୍ତୁ ବଜାନ୍ତୁ ସକଳେ ।
ପାଇକ ଅଶ୍ୱ ରଥ ଦନ୍ତୀ
ଆୟୁଧ ଧରି ଏ ସନ୍ତତ ।
ପୁର ବାହାରେ ସିଂହଦ୍ୱାରେ
ଥାଆନ୍ତୁ ଯେ ଯାହା ଠାବରେ ।
ଏ ପୁରେ ଦେବା ଦେବୀମାନେ
ଯେତେ ଅଛନ୍ତି ତାଙ୍କ ସ୍ଥାନେ ।
ବହୁତ ଉପସ୍କର କରି
ପୂଜା କରାଅ ଦଣ୍ଡଧାରୀ ।
ଘେନାଇ ଭେଟି ଦ୍ରବ୍ୟ କୁଳ
ବେଗେ ଆସନ୍ତୁ ମହୀପାଳ ॥
ସୁମନ୍ତକୁ ସେ ରାଜା ଆଗେ
ଏମନ୍ତ କହି ମୁନି ବେଗେ ।
ଦିବ୍ୟ ରଥରେ ବିଜେ କଲେ
ଶ୍ରୀରାମ ନଗରେ ମିଳିଲେ ।
ତିନି ଦୁଆର ବଳି ଗଲେ
ରଥ ସେ ଉତ୍ତାରେ ଡେଙ୍ଗିଲେ ।
ଗୁରୁ ବୋଲିଣ ପ୍ରତିହାରେ
ନ ରୁହାଇଲେ କେଉଁ ଦ୍ୱାରେ ।
ବଶିଷ୍ଠ ହରଷିତ ହୋଇ
ମିଳିଲେ ଅନ୍ତଃପୁରେ ଯାଇ ।

* କୁତାସ୍ତୁ—ଭଳୋଟି

ପ୍ରବେଶ ହେଲେ ଆସି ଗୁରୁ
ଏମନ୍ତ ଶୁଣି ରାମ ଦୂରୁ ।
ସତ୍ୱରେ ଆସନ ତେଜିଲେ
ତାହାଙ୍କ ପାଶ୍ଚେଟି ଆଇଲେ ।
ଭକ୍ତିରେ ପ୍ରଣାମ କରିଣ
ବିନୟୀ ହେଲେ ପୁଣି ପୁଣି
ଦିବ୍ୟ ରତ୍ନ ଆସନ ଦେଇ
ମୁନିଙ୍କି ବସାଇଲେ ତହିଁ ।
ରତ୍ନଝରିରେ ଆଣି ନୀର
ଜାନକୀ ମୁନିଙ୍କ ପୟର ।
ଧୋଇଲେ ଅତି ଆନନ୍ଦରେ
ସେ ଜଳ ସୀତା ସହିତରେ ।
ଶ୍ରୀରାମ ଶିରରେ ଘେନିଲେ
କୃତାର୍ଥ ହେଲି ମୁଁ ବୋଇଲେ ।
ଏମନ୍ତ ଶୁଣି ତପୋବନ୍ତ
ହସି ସେ ବୋଇଲେ ଏମନ୍ତ ।
ତୋ ପାଦ ଜଳ ଶିରେ ଧରି
ଧନ୍ୟ ହୋଇଲେ ତ୍ରିପୁରାରି
ମୋହର ପିତା ବେଦବରି
ତୋ ପାଦତୀର୍ଥ ଗଙ୍ଗାନୀର ।
ସାଦର କରି ସେ ଧଇଲେ,
ଏ ବେନି ନିଷ୍ପାପ ହୋଇଲେ ।
କହିବା ହେଲା ଯାହା ମୋତେ
ଲୋକଙ୍କ ଜାଣିମା ନିମନ୍ତେ ।
ତୁମ୍ଭଙ୍କ ନିଷ୍ଟେ ମୁଁ ଜାଣଇ
ଦେବତାଙ୍କର କାର୍ଯ୍ୟ ପାଇଁ ।
ଭକ୍ତଙ୍କ ଭକ୍ତି ସିଦ୍ଧି ହେବ
ସବଂଶେ ରାକ୍ଷସ ମରିବ ।
ଏଥିକୁ ରମା ତୁଲେ ରାମ
ପୃଥ୍ୱୀରେ ହୋଇଛ ଜନମ ।

ତୁ ପରମାତ୍ମା ମୁଁ ଜାଣଇଁ
ଏ ଅତି ଗୁପତ ଅଟଇ ।
ଦେବତାଙ୍କର କାର୍ଯ୍ୟ ପାଇଁ
ପ୍ରକାଶ ନ କରଇ କାହିଁ ।
ଆପଣ ସବୁ ମାୟା କରି
କରୁ ତ ଅଛ ବିବଣାର ।
ଏ ବେନି ତୋତେ ଅନୁଗତ
ହୋଇ ମୁଁ କରୁଛୁ ସମସ୍ତ ।
ତୁ ଶିଷ୍ୟ ଗୁରୁ ମୁଁ ବୋଲାଇ
ଗୁରୁମାନଙ୍କ ଗୁରୁ ତୁହି ।
ସମସ୍ତ ପିତୃମାନଙ୍କର
ପିତାମହ ତୁ ରଘୁବୀର ।
ସବୁ ଭୂତର ଅନ୍ତର୍ଗତ
ବିଷୟ ଜାଣୁ ତୁ ସମସ୍ତ ।
ତୁମ୍ଭେଟି ନିଷ୍ଟେ ଏ ଜଗତ
କରୁଣି ଅଛ ଜାତ ହତ ।
ଅଛ ସମସ୍ତଠାରେ ରହି
ତୁମ୍ଭଙ୍କୁ କେହି ନ ଜାଣଇ ।
ତୁ ଏବେ ଆପଣା ଇଚ୍ଛାଏ
ବିଶୁଦ୍ଧ ସତ୍ତ୍ୱ ରୂପମୟେ ।
ଯେ କଳେବର ରୂପ ଧରି
ଯୋଗମାୟାର ତୁଲେ କରି ।
ସଙ୍ଗତେ ହୋଇ ଯେହ୍ନେ ନର
ତେସନେ ଶୋଭା ପାଅ ବୀର ।
ହେବାରି ପୁରୋହିତ ମୁହିଁ
ବଡ଼ ଅସାର ତା ଜାଣଇ ।
କେବଳି ବ୍ରହ୍ମା ପୂର୍ବେ ମୋତେ
କହିଣ ଅଛନ୍ତି ଗୁପତେ ।
ପରମ ଆତ୍ମା ଯେ ଅଚ୍ୟୁତ
ସେ ହେବେ ରଘୁକୁଳେ ଜାତ ।

ଏ ପ୍ରଭୁ ଆଶା ଚିତ୍ତେ ବହି
ତୋ ସଙ୍ଗ ଲଭିବାର ପାଇଁ ।
ଅକୃତ୍ୟ ହୋଇଲେ ଗୋସାଇଁ
କରୁଛି ହରଷିତ ହୋଇ ।
ସେ ମନୋରଥ ଏବେ ମୋର
ସୁଫଳ ହେଲା ରଘୁବୀର ।
ସମସ୍ତ ଲୋକଙ୍କୁ ଯେବଣି
ମାୟା ମୋହ କରାଇ ପୁଣି ।
ସେ ମାୟା ତୋହର ଅଧୀନ
ଏଣୁ କର ରଘୁନନ୍ଦନ ।
ସେ ମୋତେ ମୋହ ନ କରାଉ
ଏ ରୂପେ ମୋତେ ଆଜ୍ଞା ହେଉ ।
ମୁଁ ଗୁରୁ ଦକ୍ଷିଣା ମୋହର
ଦେବା ହୋଇଲେ ଏହା କର ।
କହିଲି ଏହା ପ୍ରସଙ୍ଗରେ
ନ କହିବି ମୁଁ ଆନ ଠାରେ ।
ମୋତେ ତୋହ୍ମାକୁ ମହୀପତି
ପଠିଆଇ ଦେଇଅଛନ୍ତି ।
ଯୁବରାଜତ୍ୱ ଦେବେ ତୋତେ
ଏ ଅଭିଷେକ ହେବ ପ୍ରାତେ ।
ଆଜ ଜାନକୀ ସହିତରେ
ଉପାସ କରଣ ଭୂମିରେ ।
ଶୟନ କରିବା ହୋଇବ
ଇନ୍ଦ୍ରିୟମାନଙ୍କୁ ଜିଣିମ ।
ମୁଁ ଏବେ କରୁଛି ପ୍ରୟାଣ
ପ୍ରଭାତେ ଯିବ ତୁମ୍ଭେ ପୁଣ ।
ଏମନ୍ତ କହି ବ୍ରହ୍ମଋଷି
ସେଠାରୁ ଗଲେ ରଥେ ବସି ।
ଶଙ୍କର ବୋଇଲେ ଗଉରି ।
ତହିଁ ଉତ୍ତାରେ ରାବଣାରି ।
ହସି ବୋଇଲେ ଲକ୍ଷ୍ମଣଙ୍କୁ
ଯୁବରାଜରେ ଯେ ଅମ୍ଭଙ୍କୁ ।
କାଲି କରିବେ ଅଭିଷେକ
ହେବ ମୁଁ ନିମିତ୍ତ ମାତ୍ରକ ।
ସେ କାର୍ଯ୍ୟ କରିବ ହେ ବୀର
ଭୋଗହିଁ କରିବ ଅପାର ।
ଯେଉଁ ସକାଶୁ ତୁମ୍ଭେ ପୁଣ
ଅମ୍ଭର ଅଟ ନିଜ ପ୍ରାଣ ।
ତାହାଙ୍କୁ କହିଣ ଏମନ୍ତ
କଲେ ସେ ଅଧିବାସ କୃତ୍ୟ ।
ବଶିଷ୍ଠ ରାଜାଠାରେ ହେଲେ
ସମସ୍ତ ବାରତା କହିଲେ ।
ସେଠାରେ ଶୁଣି କେଉଁ ନରେ
କୌଶଲ୍ୟା ସୁମିତ୍ରା ଆଗରେ ।
କହିଲେ ରାମ ଅଭିଷେକ
ଶୁଣି ସେ ପରମ ଉତ୍ସୁକ ।
ରତ୍ନ ସୁବର୍ଣ୍ଣ ଅଳଙ୍କାର
ବଧାଇ ଦେଲେ ସେ ଅପାର ।
କୌଶଲ୍ୟା ବଡ଼ ସ୍ନେହ ଚିତ୍ତେ
ରାମ କାର୍ଯ୍ୟ ସିଦ୍ଧି ନିମିତ୍ତେ ।
ଲକ୍ଷ୍ମୀଙ୍କି ବଡ଼ ସେବା କଲେ
ମନେ ଏମନ୍ତ ବିଚାରିଲେ ।
ସତ୍ୟ କହନ୍ତି ନରପତି
ବୋଲିବା ନିଶ୍ଚୟ କରନ୍ତି ।
କେବଳ କାମୁକ ରାଜନ
ସେ କଇକେୟୀର ଅଧୀନ ।
ଏ ଯେଣୁ ଏ କଥାରେ ମୋର
ଆଶଙ୍କା ହେଉଛି ଅପାର ।
ଏ ରୂପେ ଆକୁଳ ହୋଇଣ
ଦୁର୍ଗାଙ୍କୁ ପୂଜା କଲେ ପୁଣ ।

ଏହି ସମୟେ ସର୍ବସୁରେ
କହିଲେ ଶାରଦା ଆଗରେ ।
ଲୋକେଶ ବୋଲି ଛନ୍ତି ତୋତେ
ପୃଥ୍ୱୀକୁ ଯାଅ ଯା ତୁରତେ ।
ରାମ ଅଭିଷେକ ସମ୍ଭାର
ବଡ଼ ବେଗରେ ନାଶକର ।
ପ୍ରଥମେ ମନ୍ଥରା ଶରୀରେ
ପଛେ କୈକେୟୀର ଅଙ୍ଗରେ ।
ରହି ସବୁ ବିଘ୍ନ କରିବୁ
ତଦନ୍ତେ ସ୍ୱର୍ଗକୁ ଆସିବୁ ।
ସେ ତାହା ସିଦ୍ଧକାର କଲେ
କୁବୁଜା ଅଙ୍ଗରେ ମିଳିଲେ ।
ମନ୍ଥରା ଆନନ୍ଦ ମନରେ
ଉଠିଲା ଜଗତି ଉପରେ ।
ନଗ୍ରଯାକକୁ ଅନାଇଲା
ମଣ୍ଡିତି ହୋଇଛି ଦେଖିଲା ।
ନାନା ପ୍ରକାର ତୋରଣରେ
ବିଚିତ୍ର ପତାକାମାନରେ ।
ଏରୂପେ ଉତ୍ସବ ବହୁତ
ଦେଖି ବିସ୍ମୟ କରି ଚିତ୍ତ ।
ପଚାରେ ଶ୍ରୀରାମ-ଧାଈକି
ମଣ୍ଡଣି ହୋଇଛି କାହିଁକି ।
କହ କୌଶଲ୍ୟା କାହିଁପାଇଁ
ବଡ ହରଷ ଅଛି ହୋଇ ।
ଉତ୍ସବମାନ ତ କରୁଛି
ବିପ୍ରଙ୍କୁ ରତ୍ନ ଦେଉଅଛି ।
ଶୁଣି ଧାଈ ହରଷ ହୋଇ
କୁଜାକୁ ଏମନ୍ତ କହଇ ।
ରାଜା ରାମଙ୍କୁ ରାଜ୍ୟ ଦେବେ
ପ୍ରଭାତେ ଅଭିଷେକ ହେବେ ।

ଏହି ନିମିତ୍ତରେ ଗୋ ପୁଣି
ପୁର ହୋଇଅଛି ମଣ୍ଡଣି ।
ଶୁଣି ସେ ବଦନ ଶୁଖାଇ
ସେଠାରୁ ବେଗେ ଗଲା ଧାଇଁ ।
ବହୁତ ନିଃଶ୍ୱାସ ପକାଇ
କୈକେୟୀ ଅଗେ ହେଲା ଯାଇଁ ।
ଦେଖିଲା ରତ୍ନ ପଲ୍ୟଙ୍କରେ
ବସି ଅଛନ୍ତି ଏକାନ୍ତରେ ।
କ୍ରୋଧରେ ବୋଇଲା ଗୋ ହ୍ରୋହି
ନଷ୍ଟଯେ ମୂର୍ଖୀ ଅଛୁ ତୁହି ।
ମିଛେହେଁ ସୁହାଗୀ ସୁନ୍ଦର
ବୋଲିଣ କରୁ ଅହଙ୍କାର ।
ଜାଣୁ ନାହୁଁ ଗୋ ବଡ଼ ଭୟେ
ପ୍ରବେଶ ହୋଇଲା ନଷ୍ଟଯେ ।
ନୃପତି କୃପାରେ ରାଘବ
ପ୍ରଭାତେ ଅଭିଷେକ ହେବ ।
ଏମନ୍ତ ଶୁଣି କଇକେୟୀ
ତାଠାରେ ଅତି ପ୍ରୀତି ହୋଇ ।
ବହନ ପଲଙ୍କୁ ଉଠିଲେ
ରତ୍ନ ନୂପୁର ପଟେ ଦେଲେ ।
ବୋଇଲେ ଏତ ସୁଖ କଥା
ଏଥି ପାଇଁକି କମ୍ପା ବ୍ୟଥା ।
ଭରତ ପୁଚ୍ଛାଉଁ ଅଧିକ
ପ୍ରୀତିରେ ବଚନ ଅନେକ ।
କହନ୍ତି ମୋତେ ରଘୁପତି
ମୋ ପ୍ରିୟ କଥା ସେ କରନ୍ତି ।
କୌଶଲ୍ୟାଠାରେ ମୋହଠାରେ
ସେବା କରନ୍ତି ସମାନରେ ।
ଏଥକୁ କିମ୍ପା ତୋର ଭୟେ
ହେଉଛି କହ ତା ନଷ୍ଟଯେ ।

କିନ୍ତୁ କାରଣେ ରାମ ତହିଁ
ମନ୍ଥରା ଦୋଷ ଥାଇ କହି ।
ଯନ୍ତୁଁ ଏ ବଚନ ଶୁଣିଲା
ବିସ୍ମୟ ହୋଇ ସେ କହିଲା ।
ଯେଉଁ ରୂପରେ ଏଥୁ ପୁଣ
ଭୟ ଲଭିବୁ ତାହା ଶୁଣ ।
ସବୁ ଦିନେ ତୋତେ ରାଜନ
କହି ପ୍ରିୟ ବଚନମାନ ।
ତୋ ମନ ସନ୍ତୋଷ କରାନ୍ତି
କାମୀ ମୁଁ ତୋ ବଶ ବୋଲନ୍ତି ।
ସମସ୍ତ କାର୍ଯ୍ୟ ନରପତି
କୌଶଲ୍ୟାଙ୍କର ସେ କରନ୍ତି ।
ଏହି କଥାଟି ମନେ ପୁଣି
ପୂର୍ବହୁଁ ବିଚାର କରଣି ।
ଶତ୍ରୁଘ୍ନ ତୁଟଲ ଭରତକୁ
ପେଷିଲେ ମାମୁଙ୍କ ଘରକୁ ।
ଏବେ ନିଶ୍ଚୟ ସୁମିତ୍ରାର
ହୋଇବ ସୁକାର୍ଯ୍ୟ ଅପାର ।
ଲକ୍ଷ୍ମଣ ଶ୍ରୀରାମ ସଙ୍ଗତେ
ହୋଇଛନ୍ତି ଅନୁଗତ ନିତ୍ୟେ ।
ଏ ଯେଣୁ ରାଜ୍ୟ ସୁଖ ପୁଣି
ଅବଶ୍ୟ ପାଇବ ଲକ୍ଷ୍ମଣ ।
ରାମର କିଙ୍କର ସନ୍ତତ
ନିଶ୍ଚୟ ହେବ ତୋ ଭରତ ।
ରାଜ୍ୟୁଁ ବାହାର କରିଦେବ
କି ଅବା ପ୍ରାଣରେ ମାରିବ ।
ନିଶ୍ଚେ ତୁ ଦାସୀ ପ୍ରାୟେ ହେବୁ
କଉଶଲ୍ୟାଙ୍କୁ ସେବୁଥିବୁ ।
ସପତ୍ନୀଠାରୁ ପରାଭବ
ନୋହି ମରିବା ଭଲ ହେବ ।

ଉପାୟ କର ବେଳ ଥାଉ
କଳଙ୍କ ନ ରହିବ ଆଉ ।
ଏ ଯେଣୁ ଚଉଦ ବରଷ
ଶ୍ରୀରାମ ଧରି ମୁନି ବେଶ ।
ଦଣ୍ଡକ ଅରଣ୍ୟକୁ ଯାଉ
ଭରତ ତୋର ରାଜ୍ୟ ପାଉ ।
କାଲିହିଁ ହେଉ ଅଭିଷେକ
ଯତ୍ନରେ କର ତୁ ଏତେକ ।
ଏ ରୂପେ ଚଉଦ ବରଷ
ଭିତରେ କରି ସବୁ ବଶ ।
ଭରତ ବଳବନ୍ତ ହେବ
ସୁଖେ ଏ ରାଜ୍ୟକୁ ଭୁଞ୍ଜିବ ।
ଏଥକୁ ବିଚାରଇ ଯାହା
କହିବି ଶୁଣ ଏବେ ତାହା ।
ପୂର୍ବେ ଦେବାସୁର ଯୁଦ୍ଧକୁ
ମହେନ୍ଦ୍ର ଆସି ମାଗିଲାକୁ ।
ତାହାଙ୍କ ସହାୟ ନିମିତ୍ତେ
ନୃପତି ସଙ୍ଗେ ଯେଣୁ ତୋତେ ।
ରଥ ଉପରେ ବିଜେ କଲେ
ବହୁତ ସୈନ୍ୟ ସଙ୍ଗେ ନେଲେ ।
ତହିଁରେ ରକ୍ଷଙ୍କ ସଙ୍ଗତେ
ବଡ଼ ଘୋର ଯୁଦ୍ଧ ହୁଅନ୍ତେ ।
ରାଜା ନ ଜାଣନ୍ତେ ଅଖ କିଳା
ସେ କାଳେ ଛିଡ଼ିଣ ପଡ଼ିଲା ।
ତୁ ବଡ଼ ଧଇର୍ଯ୍ୟ ହୋଇଣ
ରଖିବା ପାଇଁ ପତିପ୍ରାଣ ।
ଅଖ ରନ୍ଧ୍ରରେ ଦେଇ ହାତ
ରଖିଲୁ ରକ୍ଷା କରି ରଥ ।
ତହିଁ ଉତ୍ତାରେ ମହୀପାଳ
ନାଶ କରି ସେ ରକ୍ଷକୁଳ

ତୋତେ ବିଦ୍ଧୁତ ହରଷରେ
ଅଶ୍ଳେଷ କରିଣ ସ୍ନେହରେ ।
ବହୁତ ଅସ୍ତ୍ରଫଳ ପାଇଲେ
ସନ୍ତୋଷ ହୋଇ ଅଜ୍ଞା ଦେଲେ ।
ଦେବା ନିଷ୍ଟଯ୍ୟେ ବେନି ବର
ମାଗ ଗୋ ଯେ ଇଚ୍ଛା ତୁମ୍ଭର ।
ଏଥକୁ ତୁ ବୋଇଲୁ ବୀର
ତୁମ୍ଭଠାରେ ଏ ଥାଉ ବର ।
ମାଗିବା ଏହା ଯେଉଁକାଳେ
ଦେବା ହୋଇବ ତେତେବେଳେ ।
ସେ ତାହା ସ୍ୱିକାର କଲେ
ହରଷେ ପୁରକୁ ଅଇଲେ ।
ତୁ ପୁଣି କହିଲୁ ତା ମୋତେ
ଏବେ ମୁଁ ଶତୋଇଲି ତୋତେ ।
ଏବେ ତୁ ବଡ଼ ବେଗ ହୋଇ
କ୍ରୋଧ ମନ୍ଦିରେ ମିଳ ଯାଇ ।
ଅଙ୍ଗୁ ଭୂଷଣ ଫିଙ୍ଗି ଦେଇ
ଭୂମି ତଳରେ ଥାଅ ଶୋଇ ।
ଯେତେବେଳେ ଏ କଥା ମାନ
ସ୍ୱମ୍ମତ କରିବେ ରାଜନ ।
ତୁ ତେତେବେଳ ପର୍ଯ୍ୟନ୍ତେ
ଶୋଇଥିବୁଟି ଏହି ମତେ ।
ଉମାଙ୍କୁ ଶଙ୍କର ବୋଇଲେ
କୈକେୟୀ କୁବୁଜାର ବୋଲେ ।
ସବୁ ତତ୍ତ୍ୱକର ମଣିଲା
ହସି ମନ୍ଥରାକୁ ବୋଇଲା ।
ଭଲ ମନେ କଲୁ ତୁ ମୋତେ
ଏ ବୁଦ୍ଧି ଦଶିଲା କେମନ୍ତେ ।
ଭରତ ଯେବେ ରାଜା ହେବେ
ଶଏ ଗାଁ ଦେବି ତୋତେ ତେବେ ।

ଏମନ୍ତ କହି କୋପଭରେ
ପ୍ରବେଶ ହୋଇ କ୍ରୋଧ ଘରେ ।
ଅଙ୍ଗରୁ ଆଭରଣମାନ
ବାହୁଣ ଦେଇ ସେ ବହନ ।
ପିନ୍ଧିଣ ମଳିଣ ବସନ
ଭୂମିରେ କଲାକ ଶୟନ ।
କୁଜାକୁ ବୋଇଲା ସେ ପୁଣ
ସତ୍ୟ ବଚନ ମୋର ଶୁଣ ।
ରାମବନକୁ ଗିବା ଯାଏ
ଏ ରୂପେ ଶୋଇଲି ନିଷ୍ଟଯ୍ୟେ ।
ଏମନ୍ତ ବଚନ କହିଲେ
ଧରଣୀ ତଳରେ ଶୋଇଲେ ।
ମନ୍ଥରା ଦେଖି ତୋଷ ହେଲା
ଆପଣା ମନ୍ଦିରକୁ ଗଲା ।
ଯେଉଁ ମନୁଷ୍ୟ ଧୀରବନ୍ତ
ଦୟାରେ ହୋଇଥାଇ ଯୁକ୍ତ ।
ଗୁଣ ଅଗ୍ରରେ ନତ ଥାଇ
ବିଦ୍ୟାରେ ବିବେକୀ ଅଟଇ ।
ଏମନ୍ତ ପୁରୁଷହିଁ ଯେବେ
ପାପୀ ସଙ୍ଗ ଲଭଇ ତେବେ ।
ତାହାର ବଚନ ଘେନଇ
କ୍ରମେ ତା ସମାନ ହୁଅଇ ।
ଏଣୁ ମନ୍ଥରା ସଙ୍ଗ ଦୋଷ
କୈକେୟୀ ଜ୍ଞାନ କଲା ନାଶ ।
ଏ ନବ ପ୍ରାଯ୍ୟକ ଅଛନ୍ତି
ମୋ ମନ ମକ୍ଷିକା ଯେସନ ।
ଏଣୁ ନ କର ମୋତେ ରୋଷ
ସୁଜନେ କ୍ଷମାକର ଦୋଷ ।
ମୁଁ ଧ୍ୟାନ ନ ଜାଣଇ କିଛି
ରାମଙ୍କ କୃପାରୁ ଲେଖୁଛି ।

ପତିତ ପାବନ ହଳଧର
ବୋଲେ ଶ୍ରୀରାମ କୃପାକର ।
ଏକଣ ବୟାଅଶୀ ପଦ
ହରୁ ମୋ ସମସ୍ତ ଆପଦ ।

ଇତି ଶ୍ରୀମଦ୍‌ଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ପାର୍ବତ୍ୟୁବାଚ

ପାର୍ବତୀ ବୋଇଲେ ହେ ନାଥ
କେଉଁ ପ୍ରକାରେ ଦଶରଥ ।
ଏ କଥା ସିଦ୍ଧକାର କଲେ
ରାମଙ୍କୁ କି ରୂପେ ଡାକିଲେ ।
କୌଶଲ୍ୟା କେମନ୍ତେ ମୂର୍ଚ୍ଛିଲେ
ପ୍ରଜା କେମନ୍ତେ ବୋଧ ହେଲେ ।
ଏମାନ କହ ମହେଶ୍ୱର
ମୋ ମନ ବ୍ୟଥା ଶାନ୍ତ କର ।
ଶୁଣି ବୋଇଲେ ପଶୁପତି
ଧନ୍ୟ ତୋ ରାମଠାରେ ଭକ୍ତି ।
ଯେଣୁ ଶ୍ରୀରାମର ଚରିତ
ଶୁଣି ତୋ ତୃପ୍ତି ନୋହେ ଚିତ୍ତ ।
ଏବେ ମୁଁ କହୁଅଛି ଯାହା
କୃତାର୍ଥ ଶୁଣି ହୁଅ ତାହା ।
ଏଥୁ ଅନ୍ତରେ ଦିନ ପ୍ରାନ୍ତେ
ରାମ ଅଭିଷେକ ନିମନ୍ତେ ।
ସବୁ ସାମଗ୍ରୀ ମାନ ପାଇଁ
ରାଜା ମନ୍ତ୍ରୀଙ୍କି ଆଜ୍ଞା ଦେଇ ।
ପରମ ଆନନ୍ଦ ମନରେ
ମିଳିଲେ ଯାଇ ଅନ୍ତଃପୁରେ ।
ସେଠାରେ କୈକେୟୀଙ୍କି ତହୁଁ
ଦେଖିଲେ ନାହିଁ ନୃପ ତହୁଁ ।
କି କଥା ବୋଲି ବିସ୍ମୟରେ
ଏମନ୍ତ ଚିନ୍ତିଲେ ମନରେ ।
ଆମ୍ଭେ ଆଇଲେ ମନ୍ଦିରକୁ
ହସି ସେ ଆସଇ ପାଶକୁ ।
ତାହାଙ୍କୁ ଏବେ ମୁଁ କି ପାଇଁ
ଏଠାରେ ଆଜ ଦେଖୁ ନାହିଁ ।
ଏହା ବିଚାରି ଦୁଃଖୀ କଲେ
ଦାସୀମାନଙ୍କୁ ପଚାରିଲେ ।
ସବୁ ଦିନରେ ଯେତେବେଳେ ହୋଇ
କୈକେୟୀ ମୋଠାକୁ ଆସଇ ।
ଏବେ ସେ ରୂପେ କାହିଁପାଇଁ
ଅମ୍ଭ ପାଶକୁ ଆସୁନାହିଁ ।
ସେମାନେ କହିଲେ ସେ ଯାଇ
କ୍ରୋଧ ଘରରେ ଛନ୍ତି ରହି ।
ଆମ୍ଭେ ନ ଜାଣୁ ସେ କାରଣ
ବୁଝିବା ହେଉ ତା ଆପଣ ।
ଏମନ୍ତ ଶୁଣି ନରସାଇଁ
ବଡ଼ ତରସ୍ତ ମନେ ହୋଇ ।
କ୍ରୋଧଘରକୁ ବେଗେ ଗଲେ
କୈକେୟୀ ପାଖରେ ବସିଲେ ।
ଆପଣା କରେ ତା ଶରୀର
ଆଉଁସି ବୋଲେ ନୃପବର ।

ପଲ୍ୟଙ୍କ ତେଜି କାହିଁପାଇଁ
ଭୂମି ତଳରେ ଅଛୁ ଶୋଇ ।
କାହିଁକି ନ କହୁ ବଚନ
ଦୁଃଖ କରାଉଛୁ ମୋ ମନ ।
କ୍ଷମା ସମସ୍ତ ଅଳଙ୍କାର
ଶରୀରୁ କରଛୁ ବାହାର ।
କାହିଁକି ମଳିଣ ବସନ
ଅଙ୍ଗେ କରିଛୁ ପରିଧାନ ।
ମନେ କରିଛୁ ବାଞ୍ଛା ଯାହା
ବେଗେ କହ କରିବ ତାହା ।
କହ ଯେ ତୋ ଅକାର୍ଯ୍ୟ ଥିବ
ସେ ପୁରୁଷ କି ସ୍ତ୍ରିରୀ ହେବ ।
ତେବେହେଁ ତାକୁ ଦଣ୍ଡ ଦେବି
ନୋହିଲେ ବଧହିଁ କରିବି ।
ଯେ ଅବା ଅଛୁ ତୋ ମନରେ
ସେ କଥା କହ ମୋ ଆଗରେ ।
ଅତି ଦୁର୍ଲ୍ଲଭ ହେବ ଯେବେ
କରିବି ଏହିକ୍ଷଣି ତେବେ ।
ଯେମନ୍ତ ବଶ ମୁଁ ତୋହର
ସେ ହୃଦୟ ତ ଜାଣୁ ମୋର ।
ଏଥି ଉତ୍ତାରୁ ଯାହା ମୋତେ
ଦୁଃଖ କରାଉ ଅଛୁ ଏତେ ।
ଏ ଶମ ବିଅର୍ଥ ତୋହର
ପୁଣି ବୋଇଲେ ନୃପବର ।
ତୋହର ପ୍ରିୟ ଯେଉଁ ଜନ
ସେ ଯେବେ ହୋଇଛି ନିର୍ଦ୍ଧନ ।
ତାକୁ କରିବି ଧନବନ୍ତ
ଏ କଥା କହୁଅଛି ସତ୍ୟ ।
ତୋର ଅପ୍ରିୟ ଯେଉଁ ନର
ବହୁତ ଦ୍ରବ୍ୟ ଥିଲେ ତାର ।

କ୍ଷଣେକେ କରିବି ନିର୍ଦ୍ଧନ
ପୁଣିହିଁ କହିଲେ ରାଜନ ।
ତୋ ବୋଲେ ବଧ୍ୟକୁ ଛାଡ଼ିବି
ଅବଧ୍ୟ ଲୋକକୁ ମାରିବି ।
ଆଉ ଅଧିକ କି କହିବି
ପ୍ରାଣ ମାଗିଲେ ତୋତେ ଦେବି ।
ମୋ ପ୍ରାଣୁ ଅଧିକ ଶ୍ରୀରାମ
ପଡ଼ାଉଅଛୁ ତା ନିୟମ ।
ତୁ ନିଷ୍ଠେ ବୋଲିବୁ ଗୋ ଯାହା
ଅବଶ୍ୟ କରିବି ମୁଁ ତାହା ।
କୈକେୟୀ ଶୁଣି ପୋଛି ନେତ୍ର
ତାହାଙ୍କୁ ବୋଇଲେ ଏମନ୍ତ ।
ସତ୍ୟ ସଂକଳ୍ପ ଦଶରଥ
କରୁଛ ବହୁତ ଶପଥ ।
ଏ ଯେଣି ମନୋରଥ ମୋର
ବଡ଼ ବେଗରେ ପୂର୍ଣ୍ଣ କର ।
ଦେବତା ଅସୁର ଯୁଦ୍ଧେଣ
ରଖିଛୁ ତୁମ୍ଭର ପରାଣ ।
ସେ କାଳେ ସନ୍ତୋଷ ହୋଇଲ
ବର ଯୋଡ଼ିଏ ମୋତେ ଦେଲ ।
ତୁମ୍ଭଠାରେ ସେ ଅଛି ମୋର
ଆଜ ତା ଦିଅ ନୃପବର ।
ସେ ଦୁଇ ବରୁଁ ଗୋଟିକରେ
ଏ ଅଭିଷେକ ସମ୍ଭାରରେ ।
ବହନ ଭରତକୁ ମୋର
ରାଜ୍ୟରେ ଯୁବରାଜ କର ।
ଦ୍ୱିତୀୟ ବରେ ମୁନିବେଶ
ହୋଇଣ ଚଉଦ ବରଷ ।
ଜଟା ବଳକ ଧରିଥିବେ
କନ୍ଦମୂଳ ଫଳ ଖାଇବେ ।

ଶ୍ରୀରାମ ଏମନ୍ତ ପ୍ରକାରେ
ବୁଲିବେ ଦଣ୍ଡକ ବନରେ ।
ବୁଲନ୍ତେ ଏମନ୍ତ ପ୍ରକାରେ
ଚଉଦ ବରଷ ଭିତରେ ।
ଇଚ୍ଛା ହୋଇଲେ ତ ଆସିବେ
ନୋହିଲେ ସେହି ବନେ ଥିବେ ।
କାଲି ସକାଳୁ ହେ ନରେନ୍ଦ୍ର
ବନକୁ ଯାଉ ରାମଚନ୍ଦ୍ର ।
ବିଳମ୍ବ କଲେ ଏହିଠାରେ
ମରିବି ତୁମ୍ଭର ଆଗରେ ।
ସେ ଗଲେ ମୋର ପ୍ରୀତି ହେବ ।
ତୁମ୍ଭର ସତ୍ୟହିଁ ରହିବ ।
ଶୁଣି ଝାଙ୍କୋରେ ରୋମମାନ
ଏମନ୍ତ ଦାରୁଣ ବଚନ ।
ଶୁଣନ୍ତେ ବଜ୍ରବାଜି ଯେହ୍ନେ
ବୃକ୍ଷ ପଡ଼ଇ ରାଜା ତେହ୍ନେ ।
ସମସ୍ତ ଅଙ୍ଗ କମ୍ପାଇଲା
ଭୂମିରେ ପଡ଼ି ମୋହଗଲା ।
ପୁଣି କ୍ଷଣକେ ଆଖି ଫେଇ
ବଡ଼ ଭୟରେ ଯୁକ୍ତ ହୋଇ ।
ରୋଦନ କରି ସେ ବହୁତ
ମନରେ ଚିନ୍ତିଲେ ଏମନ୍ତ ।
ଦେଖିଲି ଅସାର ସ୍ୱପନ
କି ଅବା ଭ୍ରମି ହେଲା ମନ ।
କି ଅବା ମାୟା ଅଟେ ଏହି
ଏମନ୍ତ ବିଚାରନ୍ତେ ସେହି ।
ଆଗେ ବାଘୁଣୀ ପ୍ରାୟେ ହୋଇ
ଦେଖିଲେ ଅଛି କଇକେୟୀ ।
ପୁଣି ବହୁତ ଭୟ କଲେ
ତାହାଙ୍କୁ ଏମନ୍ତ କହିଲେ ।
ମୋ ପ୍ରାଣ ନାଶ ଯିବାପାଇଁ
ବଚନ କହୁଛୁ କିମ୍ପାଇଁ ।
କି ଅପରାଧ ରଘୁପତି
ତୋଠାରେ କରିଣ ଅଛନ୍ତି ।
କୌଶଲ୍ୟାଠାରେ ତୋହଠାରେ
ସେବା କରନ୍ତି ସମାନରେ ।
ଏମନ୍ତ ବୋଲି ଶ୍ରୀରାମର
ଗୁଣଗଣି ଯେ ନିରନ୍ତର ।
ମୋ ଆଗେ କହୁ ପ୍ରତିଦିନ
ଏବେ କହୁଛୁ କିମ୍ପା ଅନ ।
ତୋ ପୁଅ ପଛେ ରାଜା ହେଉ
ଶ୍ରୀରାମଚନ୍ଦ୍ର ଘରେ ଥାଉ ।
ମୋତେ ତୁ ଅନୁଗ୍ରହ କର
ଶ୍ରୀରାମ ସକାଶୁ ତୋହର ।
ଅହିତ ହେବ ନାହିଁ କିଛି
ନୟନୁ ଲୁହ ବହୁଅଛି ।
ଏରୂପେ କୈକେୟୀ ପାଦରେ
ତଳେ ପଡ଼ିଲେ ନୃପବର ।
ଏମନ୍ତ ଦେଖି କଇକେୟୀ
ପୁଣି ବୋଇଲେ କ୍ରୋଧ ହୋଇ ।
ଫୁଟି ପଡ଼ିଲା କି ରାଜନ
ସ୍ୱାର୍ଥ କାହିଁକି ବଚନ ।
ଏରୂପେ ଆଜି କହୁଅଛ
ସତ୍ୟ କରିବ ଯେବେ ମିଛ ।
ନରକ ମାର୍ଗକୁ ବହନ
ତେବେ ଯାଅ ଯା ହେ ରାଜନ ।
ପୁଣି ବୋଇଲେ କ୍ରୋଧକରି
ବକଲ କୃଷ୍ଣାଜିନ ଧରି ।
ପ୍ରଭାତ କାଳେ ରାମ ଯେବେ
ନ ଯିବେ ବନକୁ ମୁଁ ତେବେ ୮ ।

ତୁମ୍ଭ ଆଗେ ଉଚ୍ଚୁଟ ହେବ
ଗରଳ ଖାଇ ବା ମରବ ।
ତୁମ୍ଭଙ୍କୁ ବୋଲନ୍ତି ସମସ୍ତେ
ସତ୍ୟ ସଙ୍କଳ୍ପ ବୋଲି ନିତ୍ୟେ ।
ଶ୍ରୀରାମ ରାଣ ପକାଇଲ
ଏଥି ଉତ୍ତରୁ ମିଥ୍ୟା କଲ ।
ପାପୀ ହୋଇଲ ନୃପବର
ଯାଅ ନରକ ଭୋଗକର ।
ଯହୁଁ ସେ ଏମନ୍ତ ଶୁଣିଲେ
ଦୁଃଖ ସିନ୍ଧୁରେ ମଗ୍ନ ହେଲେ ।
ଢଳେ ପଡ଼ିଲେ ମୋହଯାଇ
ମର୍ତ୍ତ୍ୟ ଲୋକର ପ୍ରାୟେ ହୋଇ ।
ରାତ୍ର ବରଷ ପ୍ରାୟେ ଗଲା
ଅରୁଣ ପ୍ରକାଶ ହୋଇଲା ।
ମାଗଧଗାୟକେ ନିକରେ
ଗାୟନ କଲେ ହରଷରେ ।
ଶୁଣି କୈକେୟୀ କ୍ରୋଧ ହେଲେ
ସେମାନ ନିବର୍ତ୍ତାଇ ଦେଲେ ।
ସୂର୍ଯ୍ୟ ଉଦୟ ସମୟରେ
ମିଳିଲେ ମଧ୍ୟଦ୍ୱାରଠାରେ ।
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟମାନେ
ଶୂଦ୍ର ସହିତେ ଚତୁର୍ବର୍ଣ୍ଣେ ।
ମାତଙ୍ଗ ଅଶ୍ୱ କନ୍ୟାବାର
ଛତ୍ର ଚାମର ଉପଚାର ।
ଏମାନ ସେଠାକୁ ଆଣିଲେ
ଗଣିକା ପ୍ରବେଶ ହୋଇଲେ ।
ସମସ୍ତ ରାଜ୍ୟ ପୁରଲୋକେ
ମିଳିଲେ ହୋଇଣ ଉତ୍ସୁକେ ।
ବାଳକ ବୃଦ୍ଧ ସ୍ତ୍ରୀ ପୁରୁଷ
ସମସ୍ତେ ହୋଇଲେ ହରଷ ।
ନିଦ୍ରା ନ ଗଲେ କେହି ରାତେ
ଏମନ୍ତ ରୂପେ ବିଚାରନ୍ତେ ।
ରାମଙ୍କୁ କେତେବେଳ ଠାରେ
ଦେଖିବା ଏମନ୍ତ ବେଶରେ ।
ପୀତବସନ ମନୋହର
ହୃଦେ କୌସ୍ତୁଭ ମଣିହାର ।
ଥିବ ସମସ୍ତ ଆଭରଣ
ମୁକୁଟ କୁଣ୍ଡଳ କଙ୍କଣ ।
ଏଥିରେ ପାଉଥିବେ ଶୋଭା
ଶତ କନ୍ଦର୍ପ ପ୍ରାୟେ ଆଭା ।
ଏରୂପେ ଅଭିଷେକ ହୋଇ
ଗଜର କନ୍ଧରେ ଆରୋହି ।
ଆସୁ ଯେ ଥିବେ ସୀତାକାନ୍ତ
ଲକ୍ଷ୍ମଣ ଧରିଥିବେ ଛତ୍ର ।
ପ୍ରଭାତ ହେବ କେତେବେଳେ
ଏରୂପେ ଦେଖିବା ସକଳେ ।
ସବୁ ପ୍ରଜା ଏ ଉତ୍ସୁକରେ
ଏମନ୍ତ ଚିନ୍ତନ୍ତେ ମନରେ ।
ଯହୁଁ ଆଦିତ୍ୟ ଉଦେ ହେଲେ
ତହୁଁ ଏମନ୍ତ ବିଚାରିଲେ ।
କାହିଁକି ଏତେ ବେଳଯାଏ
ନୃପତି ନକଲେ ବିଜୟେ ।
ଏରୂପ ଚିନ୍ତାମାନ କଲେ
ହରଷ ବିଷାଦ ଲଭିଲେ ।
ସୁମନ୍ତ ଏଥୁ ଅନନ୍ତରେ
ରାଜା ଅଛନ୍ତି ଯେଉଁଠାରେ ।
ଅଳପ ଅଳପ ହୋଇଣ
ଜୟ ଶବଦ ସେ କରିଣ ।
ସେଠାରେ ପ୍ରବେଶ ହୋଇଲେ
ରାଜାଙ୍କୁ ଦରଶନ କଲେ ।

ଦେଖିଲା ସେ ଦୁଃଖିତ ହୋଇ
ପଡ଼ି ଅଛନ୍ତି ତଳେ ଶୋଇ ।
ସୁମନ୍ତ ବୋଲେ କୈକେୟୀଙ୍କି
ମୋ ଦେବ ଏରୂପେ କାହିଁକି ।
ବସିଅଛନ୍ତି ନୃପବର
କହ ମୋ ମନ ଶାନ୍ତ କର ।
ଏମନ୍ତ ଶୁଣି କଇକେୟୀ
କହିଲେ ହରଷିତ ହୋଇ ।
ଶ୍ରୀରାମ ନାମ ଏ ମନ୍ତ୍ରତେ
ବୋଲଣ ଚିନ୍ତା କରି ରାତ୍ରେ ।
ଉନିଦ୍ର ହେଲେ ମହୀପତି
ଏଣୁ ଏ ରୂପେ ବସିଛନ୍ତି ।
ସୁମନ୍ତ ବେଗେ ତୁମ୍ଭେ ଯାଅ
ରାମଙ୍କୁ ଏଠାକୁ ଅଣାଅ ।
ତାହାଙ୍କୁ ଦେଖିବାକୁ ମନ
କରଣ ଅଛନ୍ତି ରାଜନ ।
ସେ ବୋଲେ କେମନ୍ତେ ହେ ଦେବି
ରାଜା ଆଜ୍ଞା ନ ପାଇ ଯିବି ।
ନୃପତି ଶୁଣନ୍ତେ ଏମନ୍ତ
ବୋଇଲେ ଯାଅ ହେ ସୁମନ୍ତ ।
ଦେଖିବି ଶ୍ରୀରାମ ବଦନ
ଘେନି ଆସ ତାଙ୍କୁ ବହନ ।
ଶୁଣି ସୁମନ୍ତ ବେଗେ ଗଲା
ଶ୍ରୀରାମ ମନ୍ଦିରେ ମିଳିଲା ।
ବୋଇଲା ଅହେ ରାମଚନ୍ଦ୍ର
ତୁମ୍ଭଙ୍କୁ ଦେଖିବେ ନରେନ୍ଦ୍ର ।
ଆଜ୍ଞା ଦେଇଛନ୍ତି ମୋ ସଙ୍ଗେ
ଆସିବା ହେଉ ଯିବା ବେଗେ ।
ଶୁଣି ଲକ୍ଷ୍ମଣ ମନ୍ତ୍ରୀ ତୁଲେ
ରଥରେ ଚଢ଼ି ବେଗେ ଗଲେ ।

ମଧ୍ୟ ଦୁଆରେ ରାବଣାରି
ବଶିଷ୍ଠାଦିଙ୍କି ମାନ୍ୟକରି ।
ପିତାଙ୍କ ସମ୍ମୁଖରେ ମିଳିଲେ
ବହନ ନମସ୍କାର କଲେ ।
ରାମଙ୍କୁ ଦେଖି ଦଶରଥ
ଆନନ୍ଦେ ଲମ୍ବାଇଲେ ହାତ ।
ଆଶ୍ଳେଷ କରିବାର ପାଇଁ
ଉଠିଲେ ଅତି ତୋରା ହୋଇ ।
ଆଶ୍ଳେଷ କରି ନ ପାରିଲେ
ଭୂମିରେ ପଡ଼ି ମୋହଗଲେ ।
ଶ୍ରୀରାମ ଦେଖି ଦୁଃଖ କରି
ଅତି ସତ୍ୱରେ ତୋଳା ଧରି ।
ବହୁତ ଆଶ୍ୱାସନା କଲେ
ଆପଣା କୋଳେ ବସାଇଲେ ।
ଅନ୍ତଃପୁରର ନାରୀକୁଳେ
ଉଚ୍ଚେ ରୋଦନମାନ କଲେ ।
ହୃଦରେ କରମାନ ତାଡ଼ି
ଗଡ଼ିଲେ ଭୂମିତଳେ ପଡ଼ି ।
ଯହୁଁ ଏ ଶବଦ ଶୁଣିଲେ
ବଶିଷ୍ଠେ ସେଠାକୁ ଆଇଲେ ।
ରାମ କୈକେୟୀଙ୍କି ମୁଖକୁ
ଚାହିଁଣ ପଚାରିଲେ ତାଙ୍କୁ ।
କହ ମାତ କାହିଁକି ନୃପତି
ଏ ରୂପେ ଶୋକ କରୁଛନ୍ତି ।
ଏମନ୍ତ ଶୁଣି କଇକେୟୀ
ବୋଇଲେ ରାମଙ୍କୁ ସେ ଚାହିଁ ।
ଏ ଦୁଃଖ ଶାନ୍ତକ ଆପଣ
କେବଳ ମାନବ କାରଣ ।
ଅଳପ କଥା ତାଙ୍କ ହିତ
ନଷ୍ଟେ ତା କରିବା ଉଚିତ ।
ଏଣୁ କର ହେ ରଘୁବୀର
ପିତାଙ୍କୁ ସତ୍ୟବାଦୀ କରି ।

ମୋତେ ସନ୍ତୋଷେ ନରପତି
ବର ଯୋଡ଼ିଏ ଦେଇଛନ୍ତି ।
ସେ କଥା ତୁମ୍ଭର ଅଯୁକ୍ତ
ତୁମ୍ଭେ ତ ପଛ ପିତୃଭକ୍ତ ।
ତା କହିବାକୁ ନରପତି
ବହୁତ ଲାଜ ପାଉଛନ୍ତି ।
ସତ୍ୟ ପାଶରେ ପିତା ତୋର
ବନ୍ଧା ହୋଇଛନ୍ତି ତଢ଼ର ।
ପିତାକୁ ନରକୁ ତାରଇ
ପୁତ୍ର ଶବଦ ଅର୍ଥ ଏହି ।
ଶ୍ରୀରାମ ଏ ବଚନ ଶୁଣି
ଶୂଳ ବାଜିଲା ପ୍ରାୟେ ମଣି ।
ବୋଇଲେ କାହିଁକି ଏମନ୍ତ
ମୋତେ କହୁଛ ଏହା ମାତ ।
ପିତାଙ୍କ ପାଇଁ ପ୍ରାଣ ଦେବ
ବିଷ ହୋଇଲେହିଁ ଖାଇବ ।
ସୀତା କୌଶଲ୍ୟା ରାଜ୍ୟ ହେଲେ
ଛାଡ଼ିବ ଏହାଙ୍କର ବୋଲେ ।
ପିତା ନ ବୋଲନ୍ତୁ କାର୍ଯ୍ୟ ତାର
କରଇ ଯେବଣ କୁମର ।
ଉତ୍ତମ ବୋଲି ପୁତ୍ର ଧୀରେ
ତାକୁଟି ବୋଲନ୍ତି ସଂସାରେ ।
ପିତାର ବୋଇଲା ଉତ୍ତାରେ
କାର୍ଯ୍ୟ କରନ୍ତି ଯେଉଁ ନରେ ।
ମଧ୍ୟମ ପୁତ୍ରଟି ଜଗତେ
ତାହାକୁ ବୋଲନ୍ତି ପଣ୍ଡିତେ ।
ନ ଥାଇ ପିତାଠାରେ ଭକ୍ତି
ବୋଇଲା କଥା ନ କରନ୍ତି ।
ପୁତ୍ର ରୂପରେ ମଳ ସେହି
ଏଥି ସଂଶୟ କିଛି ନାହିଁ ।

ଏ ଯେବେ ଯାହା ମହୀପତି
ତୁମ୍ଭ ଆଗରେ କହୁଛନ୍ତି ।
ସେ କଥା କରିବି ନିଶ୍ଚୟେ
ଏ କଥା ନ କର ସଂଶୟେ ।
କହୁଛି ସତ୍ୟ ଏ ମୋହର
ରାମ ନ କହେ ଦୁଇ ଥର ।
ଏମନ୍ତ ଶୁଣି କଇକେୟୀ
ହରଷେ ପୁଲକିତ ହୋଇ ।
ଶ୍ରୀରାମ ମୁଖକୁ ଚାହିଁଲେ
ବିଷୟ କହି ଆରମ୍ଭିଲେ ।
ଭରତ ପ୍ରଥମ ବରରେ
ଏ ଅଭିଷେକ ସମ୍ଭାରରେ ।
ଅବଶ୍ୟ ଅଭିଷେକ ହେବ
ସମସ୍ତ ରାଜ୍ୟ ସେ ଭୁଞ୍ଜିବ ।
ଆର ବରରେ ତୁ ବହନ
ଧରି ବକଳ ଜଟାମାନ ।
ପିତା ଆଜ୍ଞାରେ ସତ ହୁଅ
ଆଜହିଁ ଅରଣ୍ୟକୁ ଯାଅ ।
ଚଉଦ ବରଷ ରହିବ
ଫଳମୂଳାଦି ଖାଇବ ।
ରାଜାଙ୍କର ଏ କାର୍ଯ୍ୟ ଯହୁଁ
ବହନ କରିବାକୁ ହେଉ ।
ତୁମ୍ଭଙ୍କୁ ଏ ରୂପେ ବଚନ
କରିବା ପାଇଁ କର ମନ ।
କହି ନ ପାରି ମହୀପତି
ଲଜ୍ଜେଟି ତୁନି ହୋଇଛନ୍ତି ।

ଶ୍ରୀରାମ ଉବାଚ

ରାମ ବୋଇଲେ କଇକେୟୀ
ଭରତକୁ ମୁଁ ରାଜ୍ୟ ଦେଇ

ରାଜାଙ୍କ ସତ୍ୟ ରକ୍ଷିବାକୁ
ଯାଉଛୁ ଦଣ୍ଡକ ବନକୁ ।
କେବଳ ରାଜା କ ନିମିତ୍ତେ
ନ କହୁଛନ୍ତି ଏହା ମୋତେ ।
ଜାଣିଲି ନାହିଁ ଏ କାରଣ
ଶୁଣନ୍ତେ ରାଜା ଏହା ପୁଣ ।
ଅଗରେ ରାମଙ୍କୁ ଦେଖିଲେ
ଦୁଃଖିତ ହୋଇଣ କହିଲେ ।
ମୁଁ ସ୍ତ୍ରୀର ବଶ ଅଟୁ ହୋଇ
ହୃଦୟ ଭ୍ରମ ହେଉ ଥାଇ ।
ଅସାର ମାର୍ଗେ ପ୍ରବର୍ତ୍ତିଇ
ନଷ୍ଟଚିତ୍ତେ ପାପୀ ମୁଁ ଅଟଇ ।
ଏଣୁ ନ ମାନି ବୋଲ ମୋର
ରାଜ୍ୟରେ ରାଜା ହୁଅ ବୀର
ଏ କଥା କର ତୁ ଅବଶ୍ୟ
ଏଣୁ ନୋହିବ ତୋର ଦୋଷ ।
ଅସତ୍ୟ ଏଥିରୁ ମୋହର
ନୋହିବ ବୋଲି ଦଣ୍ଡଧାରୀ ।
ବହୁତ ଦୁଃଖିତ ହୋଇଲେ
ପୁଣି ଏରୂପେ ଶୋକ କଲେ ।
ହା ରାମ ଜଗନ୍ନାଥ ବୀର
ହା ପ୍ରାଣବଲ୍ଲଭ ମୋହର ।
ସତେ ହେ ଆପଣ ତେଜିବ
ଘୋର ବନକୁ ନିଶ୍ଚେ ଯିବ ।
ଏରୂପେ କହି ଦଣ୍ଡଧାରୀ
ରାମଙ୍କୁ ଆଲିଙ୍ଗନ କରି ।
ବହୁତ ସନ୍ତାପନ୍ତ ହେଲେ
ଅତି ଉଚ୍ଚରେ ଶୋକ କଲେ ।
ଶ୍ରୀରାମ କର ଓଦା କଲେ
ପିତାଙ୍କ ନେତ୍ର ପୋଛି ଦେଲେ ।

କହି ବହୁତ ପ୍ରିୟବାକ୍ୟ
ଆଶ୍ୱାସ କରଣ ଅନେକ !
ବୋଇଲେ କି କାର୍ଯ୍ୟ ଦୁଃଖରୁ
ମୋ ସାନ ଭାଇ ରାଜ୍ୟ କରୁ ।
ପ୍ରତିଜ୍ଞା ମୁଁ ପୂର୍ଣ୍ଣ କରିବି
ପୁଣି ଏ ପୁରକୁ ଆସିବି ।
ରାଜ୍ୟରୁ କୋଟିଏ ଗୁଣରେ
ସୁଖ ହେବ ଥିଲେ ବନରେ ।
ତୁମ୍ଭର ସତ୍ୟହିଁ ରହିବ
ଦେବତାଙ୍କର କାର୍ଯ୍ୟ ହେବ ।
କଇକେୟୀର ହେବ ପ୍ରୀତି
ଏ ଗୁଣମାନେ ବନେ ଛନ୍ତି ।
ବନକୁ ଏଣୁ କରି ଯିବି
ବାହାର ଏହିକ୍ଷଣି ହେବି ।
କୈକେୟୀ ନ କରନ୍ତୁ ଦୁଃଖ
ଏ ଅଭିଷେକ ଦ୍ରବ୍ୟ ରଖ ।
ଏବେ ମୁଁ କୌଶଲ୍ୟାଙ୍କୁ ଯାଇଁ
ବହୁତ ଆଶ୍ୱସନା କହି ।
ମେଲାଣି ତାଙ୍କଠାରୁ ହେବି
ଜାନକୀ ଅଗରେ କହିବି ।
ସେ ଉତ୍ତାରେ ଆସି ତୁମ୍ଭର
ଚରଣେ କରି ନମସ୍କାର ।
ଟିମୁରୁ ମେଲାଣି ହୋଇବି
ବନକୁ ଅତି ସୁଖେ ଯିବି ।
ଏମନ୍ତ କହି ରାମ ପୁଣ
ରାଜାଙ୍କୁ କରି ପ୍ରଦକ୍ଷିଣ ।
ଦେଖିବାପାଇଁ କୌଶଲ୍ୟାଙ୍କୁ
ଗଲେ ତାହାଙ୍କ ମନ୍ଦିରକୁ ।
କୌଶଲ୍ୟା ଏହି ସମୟରେ
ଶ୍ରୀରାମ ଶୁଭ ବାର୍ତ୍ତାରେ ।

ବହୁତ ହୋମ ସେ କରଇ
ବିପ୍ରଙ୍କୁ ଦ୍ରବ୍ୟମାନ ଦେଇ ।
ବିଷ୍ଣୁଙ୍କୁ ପୂଜନ୍ତି ଏକାନ୍ତେ
ବସିଣ ସେ ମଉନ ବ୍ରତେ ।
ଅନ୍ତଃକରଣେ ଯେ ଅଛନ୍ତି
ଯେ ଏକ ଚୈତନ୍ୟ ଅଟନ୍ତି ।
ସର୍ବଘଟରେ ଯେ ଅଭୟେ
ସର୍ବକାଳେ ଯେ ସୁଖମୟେ ।
ଏମନ୍ତ ବିଷ୍ଣୁଙ୍କ ଗର୍ଭରେ
ଧରି ହୃଦୟ ପଙ୍କଜରେ ।
ଯେଣୁ ଭାବନା କରୁଥିଲେ
ରାମ ଆସିବା ନ ଜାଣିଲେ ।
ଅଧ୍ୟାତ୍ମ ପୁରାଣ ଚରିତ
ସର୍ବ ହିତେ କଲ ଗୀତ ।
କହଇ ହଳଧର ଦାସ
ଅମୃତମୟ ରାମ ରସ ।
ସୁଜନେ ପିଅ କର୍ଣ୍ଣ ଦ୍ୱାରେ
ସଂସାର ନାଶିବ ହେଳାରେ ।
ବାର ଉତ୍ତର ଦୁଇଶତ
ପଦ ଏ ଅଧ୍ୟାତ୍ମ ଚରିତ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମାମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଶିବ ବୋଇଲେ ଶୁଣ ଶିବା
ଯାହା ପୁଚ୍ଛିଲ ତା କହିବା ।
ସେ କଥା ଶୁଣ ଏକ ଚିତ୍ତେ
ଏ ରୂପେ ସେ ଧ୍ୟାନ କରନ୍ତେ ।
ସୁମିତ୍ରା ଦେଖି ଶ୍ରୀରାମଙ୍କୁ
ତୋଷ ହୋଇଣ କୌଶଲ୍ୟାଙ୍କୁ ।
ଚେତନା କରାଇଣ ଦେଲେ
ରାମ ଆଇଲେ ଗୋ ବୋଇଲେ ।
କୌଶଲ୍ୟା ଶୁଣି ଆଖି ଫେଇ
ଉଠିଣ ଅତି ତୋଷ ହୋଇ ।
ରାମଙ୍କୁ ଆଲିଙ୍ଗନ କଲେ
କୋଳରେ ଘେନିଣ ବସିଲେ ।
ଅଘ୍ରାଣ କଲେ ପୁଣି ଶିର
ବହେ ହରଷେ ଅଶ୍ରୁଧାର ।
ନୀଳ ଉତ୍ପଳ ପ୍ରାୟେ ବର୍ଣ୍ଣ
ଦିଶୁଛି ରାମ ଅଙ୍ଗଘେନ ।
କୌଶଲ୍ୟା ତା ଆଶିଷ ଦେଇ
ସ୍ନେହରେ ଗଦଗଦ ହୋଇ
ରାମଙ୍କୁ ବୋଇଲେ ଏସନ
ମିଷ୍ଟାନ୍ନ କର ତୁ ଭୋଜନ ।
ଶ୍ରୀରାମ ଶୁଣନ୍ତେ ଏମନ୍ତ
ବୋଇଲେ ନ ଭୁଞ୍ଜିବି ମାତ ।
ଦଣ୍ଡକ ବନେ ହେବ ବାସ
ସେ କାଳ ହୋଇଲା ପ୍ରବେଶ ।
କୈକେୟୀ ବର ଦାନେ କରି
ସତ୍ୟବାଦୀ ଯେ ଦଣ୍ଡଧାରୀ ।
ଭରତଙ୍କୁ ଦେଶ ରାଜ୍ୟ ଦେଲେ
ଆମ୍ଭଙ୍କୁ ବନକୁ ପେଷିଲେ ।

ତହିଁ ମୁଁ ଚଉଦ ବରଷ
ମୁନିମାନଙ୍କ ତୁଲେ ବାସ ।
କରି ଆସିବି ବେଗେ ପୁଣି
ଚିନ୍ତା ନ କରିବ ଆପଣି ।
ଏହା ଶୁଣି ସେ ଦୁଃଖୀ ହୋଇ
ପଡ଼ିଲେ ବେଗେ ମୋହ ଯାଇ ।
ପୁଣି ସେ କେତେବେଳଠାରେ
ଚେତନା ପାଇ ଉଠି ଖରେ ।
ଦୁଃଖସିନ୍ଧୁରେ ମଗ୍ନ ହେଲେ
ବହୁତ ରୋଦନ ସେ କଲେ ।
ବୋଇଲେ ଶୁଣ ହେ ରାଘବ
ବନକୁ ତୁମ୍ଭେ ଯେବେ ଯିବ ।
ତୁମ୍ଭ ସଙ୍ଗରେ ତେବେ ବୀର
ମୋତେ ଘେନି ଗମନ କର ।
ତୋ ବିନୁ ଷଣେ କି ପ୍ରକାରେ
ଜୀବନ ଧରିବି ଶରୀରେ ।
କଅଁଳା ବାଛୁରୀ କି ଗାଈ
ଯେମନ୍ତେ ଛାଡ଼ି ନ ପାରଇ ।
ସେ ରୂପେ ଛାଡ଼ି ତୋତେ ମୁହିଁ
ଦଣ୍ଡେ ହେ ନ ପାରିବି ରହି ।
କୈକେୟୀ ବୋଲ ପଛେ ରହୁ
ଭରତ ଯୁବରାଜ ହେଉ ।
ତୁମ୍ଭଙ୍କୁ କାହିଁକି ନୃପତି
ବନକୁ ପଠାଉଅଛନ୍ତି ।
କଇକେୟୀଙ୍କି ବର ଦେଇ
ସବୁ ଦଅନ୍ତୁ ନରସାଇଁ ।
ସେ ବେନି ଜନଠାରେ ତୋର
କି ଅପରାଧ ଅଛି ବୀର
ତୁମ୍ଭେ ଯେ ପୂର୍ବେ କହୁଥାଅ ।
ଏବେ ତା ମନକର ଚହୁଁଅ ।
ତୋର ଯେ ପିତାମାତା ବେନି
ମଧ୍ୟରେ ଅଧିକ ଜନନୀ ।
ଏ ଘେନି ଯେବେ ଅରଣ୍ୟକୁ
ପିତା ବୋଇଲେ ତୁ ଯିବାକୁ ।
ତେବେ ମୋ ବୋଲେ ଘରେ ଥାଅ
ଦଣ୍ଡକ ବନକୁ ନ ଯାଅ ।
ତାଙ୍କ ବୋଲୁଁ ମୋ ବୋଲବାର
ଉଣା କରିବ ଯେବେ ବୀର ।
ତେବେ ତୋ ଆଗେ ଏହିଠାଏଁ
ଜୀବନ ତେଜିବି ନିଶ୍ଚୟେ ।
ଯହୁଁ ସେ କୌଶଲ୍ୟା ବଚନ
ଲକ୍ଷ୍ମଣ ଶୁଣନ୍ତେ ବହନ ।
କ୍ରୋଧରେ ଓଷ୍ଠ କମ୍ପାଇଲେ
ଏମନ୍ତ ବଚନ କହିଲେ ।
ନୃପତି ହୋଇଛୁ କି ବାଇ
ଚିତ୍ତ ତା ଭ୍ରମ ହୋଇ ଥାଇ ।
କଇକେୟୀର ବଶ ହୋଇ
ଭଲ ମନ୍ଦ ସେ ନ ଜାଣଇ ।
ତାହାଙ୍କୁ ଏହିକ୍ଷଣି ଧରି
ବାନ୍ଧି ରଖିବି ବନ୍ଦୀ କରି ।
ବଧ କରିବି ଭରତକୁ
ମାରିବି ତା ବନ୍ଧୁମାନଙ୍କୁ ।
ସମସ୍ତ ମାତୁଳେ ତାହାର
ଆଜ ଦେଖିବେ ଯମପୁର ।
ମୋ ପରାକ୍ରମ ଦେଖାଇବି
ଲୋକମାନଙ୍କୁ ଦନ୍ତୁ ଥିବ ।
ଏମନ୍ତ ପରକାରେ ମୋତେ
ଆଜହିଁ ଦେଖନ୍ତୁ ସମସ୍ତେ ।
ଏବେ ତୁମ୍ଭେ ମୋ ବୋଲ କର
ଏ ଅଭିଷେକ ହୁଅ ବୀର

ବନ୍ଧନ ଠାକୁ ଶରୀର ବହି
ବୃଦ୍ଧ କଲ ଲୋକଙ୍କୁ ଯାଇ ।
ନିଃଶେଷ କରି ସଂହାରଇ
ଏମନ୍ତ ଶୁଣି ରଘୁସାଇଁ ।
ବନ୍ଧନ ଅଶ୍ଳେଷ କରଣ
ବୋଇଲେ ଶୁଣ ହେ ଲକ୍ଷ୍ମଣ ।
ତୁମ୍ଭେ ସମର୍ଥ ମୋର ହିତ
କହିଲ ଜାଣଇଁ ସମସ୍ତ ।
କେବଳ ସେ କାଳ ଏ ନୋହି
ଯେଉଁ ସଂସାର ଦେଖୁ ଥାଇ ।
ରାଜ୍ୟ ଶରୀର ଏହୁ ଯେବେ
ସତ୍ୟ ହୋଇଣ ଥାନ୍ତା ତେବେ ।
ଶ୍ରମ ସଫଳ ହୋନ୍ତା ତୋର
ମେଘରେ ବିଜୁଳି ପ୍ରକାର ।
ଚଞ୍ଚଳ ଅଟେ ଭୋଗ ମାନ
ତାତଲ ଲୁହାରେ ଯେସନ ।
ଜଳବିନ୍ଦୁ ବେଗେ ଶୁଖଇ
ତେହ୍ନେ ଆୟୁଷ ନାଶ ଯାଇ ।
ଜରଗ ମୁଖେ ଭେକ ଯେହ୍ନେ
ଥିଲେହେଁ ମାଛି ଇଚ୍ଛେ ମନେ ।
ତେହ୍ନେ କାଳରେ ଗ୍ରସ୍ତ ହୋଇ
ଅନିତ୍ୟ ଭୋଗ ଯେ ଅଛଇ ।
ତାହା ଇଚ୍ଛନ୍ତି ନିରନ୍ତର
ଦୁଃଖରେ ମନୁଷ୍ୟ ନିକର ।
ରାତ୍ରି ଦିବସ ଭୋଗ ପାଇଁ
କର୍ମମାନ ସେ କରୁଥାଇ ।
ଦେହରୁ ପୁରୁଷ ତ ଭିନ୍ନେ
ଏଥି ଭିତରୁ ଅଜ୍ଞମାନେ ।
ପୁରୁଷ କି ଭୋଗ କରଇ
ପିତାମାତା ଯେ ଦାରା ଭାଇ ।

ଆଉ ଯେତେକ ଲୋକ ଛନ୍ତି
ସେଯାକ ଏକଠାବ ହୋନ୍ତି ।
ଏ ସବୁ କ୍ଷଣିକ ନଷ୍ଟଯେ
ଜଳକ୍ଷେତ୍ରରେ ହେଲ ପ୍ରାୟେ ।
ନଈସୁଅରେ କାଷ୍ଠ ଯେହ୍ନେ
ଭାସି ମିଳି ଛାଡ଼ନ୍ତି ତେହ୍ନେ ।
ସମ୍ପତ୍ତି ଛାୟାର ସମାନ
ତରଙ୍ଗ ସମ ଯଉବନ ।
ସ୍ତ୍ରୀ ସୁଖ ସ୍ୱପନ ପରାୟେ
ଆୟୁଷ ତ ବହୁତ ନୋହେ ।
ଏମନ୍ତ ହେଲେ ମୁଣ ତହିଁ
ଏତେ ଅଭିମାନ ହୁଅଇ ।
ସଂସାର ସ୍ୱପନ ଯେମନ୍ତ
ସବୁ କାଳରେ ରୋଗଗ୍ରସ୍ତ ।
ଗନ୍ଧର୍ବ ପୁର ପ୍ରାୟେ ହୋଇ
କେବଳ ବିଚାର ଦିଶଇ ।
ଏ ସଂସାରକୁ ଅନୁଗତ
ହୁଅଇ ମୂଢ଼ଲୋକଙ୍କ ଚିତ୍ତ ।
ସୂର୍ଯ୍ୟର ଗତାଗତ ଭାଇ
ନିତ୍ୟେ ଆୟୁଷ କ୍ଷୟେ ଯାଇ ।
ସବୁର ଜରା ମୃତ୍ୟୁ ହୋଇ
ଏହା ପ୍ରତ୍ୟକ୍ଷେ ଦେଖୁଥାଇ ।
ଏଥିଉତ୍ତାରେ ବୁଝି ନାହିଁ
ଏମନ୍ତ ଅଜ୍ଞାନ ଅଛଇ ।
ସେହି ଦିବସ ସେହି ରାତି
ବୋଲି ଅଜ୍ଞାନ ଲୋକ ଭ୍ରାନ୍ତି ।
ମନରେ ଅନୁବ୍ରତ ହୋଇ
ଭୋଗମାନ ସେ ଇଚ୍ଛୁଥାଇ ।
କାଳବେଗଟି ଏ ଅଛଇ
ବୋଲି ତାହାକୁ ନ ଜାଣଇ ।

କାଞ୍ଚା ମାଟିଆ ପାଣି ଯେହ୍ନେ
ଅନବରତେ ଝରେ ତେହ୍ନେ ।
ଅପୂଷ୍ଟ ପ୍ରତି ଦିବସରେ
ଛୁଟି ଯାଉଛୁ ନିରନ୍ତରେ ।
ଶତ୍ରୁମାନଙ୍କ ପ୍ରାୟେ ହୋଇ
ବିବିଧ ରୋଗ ମାନ ତହିଁ ।
ଦେହକୁ ଦୁଃଖ ନିରନ୍ତରେ
ଦେଉଣି ଅଛନ୍ତି ନିର୍ଭରେ ।
ବୃଦ୍ଧ ଅବସ୍ଥା ଅଗେ ଥାଇ
ବାଘୁଣୀ ପରାୟେଁ ତର୍ଜ୍ଜଇ ।
ମୃତ୍ୟୁ ସମୟକୁ ଅନାଇ
ସଙ୍ଗରେ ଗୋଡ଼ାଉଣି ଥାଇ ।
କୃମି ବିଷ୍ଠା ଭସ୍ମ ହୋଇ
ଏମନ୍ତ ଯେ ପୁଣି ଅଟଇ ।
ସେ ଦେହ ବୋଲଇ ମୋହର
ଏମନ୍ତ ମନରେ ବିଚାର ।
ରାଜା ମୁଁ ଏମନ୍ତ ବୋଲଇ
ମନେ ହରଷ ଲଭୁ ଥାଇ ।
ଜୀବନ ଥିବା ଯାଏ ରକ୍ତ
ମାଉଁସ ଚର୍ମ ହାଡ଼ ମୂତ୍ର ।
ବିଷ୍ଠା ରେତରେ ଯୁକ୍ତ ହୋଇ
ଏ ଯେଉଁ ଶରୀର ଅଟଇ ।
ସେ ଦେହ ପୁଣି ବର୍ତ୍ତମାନ
ଅବସ୍ଥା ଲଭେ ଆନ ଆନ ।
ସେହୁ ସବୁ ଦିନେ ନ ଥିବ
ପ୍ରାନ୍ତରେ ନିଶ୍ଚେ ନାଶ ଯିବ ।
ଏମନ୍ତ ଯେ ପୁଣି ସେ ଦେହ
ଆତ୍ମା କି ରୂପେ ହେବ କହ ।
ତୁମ୍ଭେ ଧର ସେ ଶରୀରକୁ
ଲୋକମାନଙ୍କୁ ପୋଡ଼ିବାକୁ ।

ମନରେ କରୁଛ ବିଚାର
ଦେହରେ ଅଭିମାନ ଯାର ।
ହୁଅଇ ତା ଠାରୁ ସମସ୍ତ
ଦୋଷ ସମୂହ ହୋଏ ଜାତ ।
ଯେ ବୁଦ୍ଧି ହୁଅଇ ମୁଁ ଦେହୀ
ଅବିଦ୍ୟା ସେ ବୁଦ୍ଧିକି କହି ।
ମୁଁ ନିଶ୍ଚେ ଚୈତନ୍ୟ ଅଟଇ
ଏ ରୂପେ ଯେଉଁ ବୁଦ୍ଧି ହୋଇ ।
ସେ ବୁଦ୍ଧି ଟିକି ଏ ସଂସାରେ
ବିଦ୍ୟା ବୋଲି ବୋଲନ୍ତି ଧୀରେ ।
ଅବିଦ୍ୟା ସଂସାର କରଇ
ବିଦ୍ୟାଟି ସଂସାର ନାଶଇ ।
ଏ ଘେନି କରି ଯେଉଁ ଜୀବ
ମୁକତ ହେବାକୁ ଇଚ୍ଛିବ ।
ସେ ଲୋକ ସମସ୍ତ କାଳରେ
ଅଭ୍ୟାସ କରିବ ବିଦ୍ୟାରେ ।
ମୋକ୍ଷର କାମ କ୍ରୋଧ ଆଦି
ବଇରୀ ପ୍ରାୟେ ହୋନ୍ତି ବାଦୀ ।
ମୋକ୍ଷକୁ ନାଶିବାର ପାଇଁ
କ୍ରୋଧ ସେ ସମର୍ଥ ହୁଅଇ ।
ଯେଉଁ କ୍ରୋଧକୁ ଦେହେ ବହି
ପୁରୁଷ ପିତା ମାତା ଭାଇ ।
ପୁତ୍ର ସୁହୃଦ ସବୁଙ୍କୁ ହି
ବଧ କରଇ ମୋହ ହୋଇ ।
କ୍ରୋଧ ସକାଶୁ ତାପ ଗଣ
ମନରେ ଲଭଇ ଆପଣ ।
କ୍ରୋଧଟି ବାନ୍ଧ ସଂସାରରେ
ରହି ଧଇର୍ଯ୍ୟ ନାଶ କରେ ।
କ୍ରୋଧ ନିଶ୍ଚେ ଯମ ଅଟଇ
କ୍ରୋଧଟି ବୈତରଣୀ ନଈ ।

ଏ ଘେନ କ୍ରୋଧକୁ ଛାଡ଼ିବ
ସବୁ କାଳେ ଶାନ୍ତ ଭଜିବ ।
ସନ୍ତୋଷ ଯେ ନନ୍ଦନବନ
ଶାନ୍ତିରେ ଦୁଃଖ ନୋହେ ମନ ।
ଏ ଘେନ ଶାନ୍ତ ଭଜ ବୀର
ଆଉ ଶତ୍ରୁ ନୋହିବ ତୋର ।
ଦେହ ଇନ୍ଦ୍ରିୟ ମନ ପ୍ରାଣ
ବୁଦ୍ଧି ଏଥିରେ ହୋଏ ଭିନ୍ନ ।
ଆତ୍ମା ଅଛୁ ସେ ଆପଣାର
ଇଚ୍ଛାରେ ପ୍ରକାଶ ତାହାର ।
କେଉଣି ବିକାରହିଁ ନାହିଁ
ଅକ୍ଷତବନ୍ତ ସେ ନୁହଇ ।
ଯେତେକବେଳ ହେ ଲକ୍ଷ୍ମଣ
ଦେହ ଇନ୍ଦ୍ରିୟ ମନ ପ୍ରାଣ ।
ଏଥିରୁ ଆତ୍ମା ଭିନ୍ନ ହୋଏ ।
ବୋଲି ନ ଜାଣି ଥିବା ଯାଏ ।
ସଂସାର ଦୁଃଖରେ ପୀଡ଼ିତ
ହୋଇ ସେ ହୋଇଥାନ୍ତି ମୃତ ।
ଏ ଘେନ ବିଦ୍ୟାଦିରୁ ଭିନ୍ନ
ବୋଲି ଆତ୍ମାକୁ ମନେ ଘେନ ।
ବାହାରେ ସବୁ କାର୍ଯ୍ୟ କର
ମନରେ ଖେଦକୁ ନ ଧର
କର୍ମ ବଶରେ କର ଯାହା ।
ଦୁଃଖ ସୁଖହି ଅଛି ତାହା ।
ଭୁଞ୍ଜିବ ତା ନିଶ୍ଚିନ୍ତ ହୋଇ
ଅତ୍ୟନ୍ତ ଆସକ୍ତ ନୋହି ।
ସେ ଯେଉଁ କାର୍ଯ୍ୟ ତା କରିବ
ସଂସାରେ ତେବେ ନ ପଡ଼ିବ ।
ବାହାରେ ସବୁ କର୍ମ କର
ଅନ୍ତରେ ଶୁଦ୍ଧ ଭାବ ଧର ।

ଥିଲେ ତୁମ୍ଭଙ୍କୁ କର୍ମ ଗଣ
ଲାଗିବ ନାହିଁ ହେ ଲକ୍ଷ୍ମଣ ।
ମୁଁ ଏବେ କହିଲି ଯେତେକ
ସନ୍ତତେ ଘେନିଣ ଏତେକ ।
ମନେ ଭାବନା କରୁଥିବ
ସଂସାର ଦୁଃଖ ନ ବାଧିବ ।
ବୋଇଲେ କୌଶଲ୍ୟାଙ୍କୁ ପୁଣ ।
ଭୋ ମାତ ମୋ ବଚନ ଶୁଣ ।
ଏତେକ ମୁଁ କହିଲି ଯାହା
ହୃଦେ ସୁମରୁ ଥିବ ତାହା ।
ମୋ ଆସିବାକୁ ଚାହୁଁ ଥିବ
ମନରେ ଦୁଃଖ ନ ଧରିବ ।
ସଂସାରେ ପଡ଼ି ଏକଠାଇଁ
ନିରତେ ନ ଥାନ୍ତି ଯେ କେହି ।
ନଦୀରେ ପଡ଼ି ନାବମାନେ
ଏକଠା ନୁହନ୍ତି ଯେସନେ ।
ଚଉଦ ବରଷ ଯେ ମୋତେ
ଚାରିକ ପ୍ରାୟେ ହେବ ପ୍ରତେ ।
ଦୁଃଖ ଛାଡ଼ିଣି ହୃଷ୍ଟ ଚିତ୍ତ
ହୋଇ ଅନୁଜ୍ଞା ଦିଅ ମାତ
ଏମନ୍ତ ହେଲେ ମୁଁ ବନରେ
ରହିବି ବହୁତ ସୁଖରେ ।
ଏମନ୍ତ କହିଣ ଉଠିଲେ
ତାଙ୍କ ପାଦରେ ପ୍ରଣମିଲେ ।
କୌଶଲ୍ୟା ଟେକାଳିଣ ଧରିଲେ
କୋଳେ ଘେନି କଲ୍ୟାଣ କଲେ ।
ବ୍ରହ୍ମା ଶ୍ରୀ ବିଷ୍ଣୁ ମହେଶ୍ୱର
ଏହାଙ୍କୁ ଆଦି ଯେତେ ସୁର ।
ଗନ୍ଧର୍ବେ ଏହାଙ୍କ ତୁଲ୍ୟରେ
ଚଳନ୍ତେ ବସନ୍ତେ ନିଦ୍ରାରେ ।

ସର୍ବ କାଳରେ ଏ ସମସ୍ତେ
ରକ୍ଷା କରନ୍ତୁ ତୋତେ ନିତ୍ୟେ ।
ଏମନ୍ତ କହି ପୁଣ ପୁଣ
ବହୁ ତ ଆଶ୍ଳେଷ କରଣ
ମସ୍ତକ ଆଘ୍ରାଣ ହିଁ କଲେ
ରାମଙ୍କୁ ମେଲାଣି ସେ ଦେଲେ ।
ଲକ୍ଷ୍ମଣ ଏ ସମୟେ ରାମ
ପାଦରେ କରଣ ପ୍ରଣାମ ।
ହରଷେ ଗଦ ଗଦ ହେଲେ
ଏମନ୍ତ ବଚନ କହିଲେ
ହୃଦୟ ସଂଶୟ ମୋହର
କାଟିବାକୁ ତ ହେଲ ବୀର
ଏବେ ମୁଁ ଯିବି ତୋ ସଙ୍ଗତେ
ସେବିବା ନିମିତ୍ତେ ସନ୍ତତେ ।
ଏ କଥା ଅନୁଗ୍ରହକର ।
ନୋହିଲେ ମରିବି ମୁଁ ବୀର ।
ରାମ ତା ସ୍ୱୀକାର କଲେ
ବିଳମ୍ବ ନ କର ବୋଇଲେ ।
ତହିଁଉତ୍ତାରେ ସୀତା ଆଗେ
କହିବା ପାଇଁ ଗଲେ ବେଗେ ।
ଜାନକୀ ଶ୍ରୀରାମଙ୍କୁ ଦେଖି
ଉଠିଲେ ଆସନ ଉପେକ୍ଷି ।
ସୁବର୍ଣ୍ଣ ପାତ୍ରେ ଘେନ ନୀର ।
ଧୋଇଲେ ଶ୍ରୀରାମ ପୟର ।
ରତ୍ନ ଆସନେ ବସାଇଲେ
ପୁଣି ଏମନ୍ତ ପଚାରିଲେ ।
ତୁମର ଶ୍ୱେତଛତ୍ର ସୈନ୍ୟ
ଗହଣେ ନାହାନ୍ତି ଏମାନ ।
ଅଚଳ କମ୍ପା ଏକା ହୋଇ
କ୍ଷିରେ ମୁକୁଟ କମ୍ପା ନାହିଁ ।

ନୃପତି ଅମାତ୍ୟ ସାମନ୍ତେ
କେହି ତ ନାହାନ୍ତି ସଙ୍ଗତେ ।
ସିଂହଦ୍ୱାରରେ କାହିଁପାଇଁ
ବାଦ୍ୟ ଶବଦ ଶୁଭୁ ନାହିଁ ।
ଏମନ୍ତ ଶୁଣି ରଘୁପତି
ବୋଇଲେ ଆମ୍ଭଙ୍କୁ ନୃପତି ।
ଦଣ୍ଡକ ବନେ ରାଜ୍ୟ ଦେଲେ
ହସିଣ ପୁଣି ସେ ବୋଇଲେ ।
ଆଜହିଁ ଅରଣ୍ୟକୁ ଯିବୁ
ତା ପରିପାଳନା କରିବୁ ।
ସେବା କୌଶଲ୍ୟାଙ୍କୁ କରିବ
ତାଙ୍କର ପାଖେ ତୁମ୍ଭେ ଥିବ ।
ଆମ୍ଭେ ତ ମିଥ୍ୟାବାଦୀ ନୋହୁ
ସୀତା ଶୁଣିଲେ ଏହା ଯହୁଁ ।
ମନରେ ବଡ଼ ଭୟ କଲେ
ପୁଣି ଏମନ୍ତ ପଚାରିଲେ ।
ନୃପତି କାହିଁକି ତୁମ୍ଭଙ୍କୁ
ମେଲାଣି ଦେଲେ ଅରଣ୍ୟକୁ ।
ଏମନ୍ତ ଶୁଣି ରଘୁମଣି
ବୋଇଲେ ଶୁଣ ମୋହ ବାଣୀ ।
ନୃପତି ଅତି ପ୍ରୀତ ହେଲେ
କଇକେୟୀଙ୍କୁ ବର ଦେଲେ ।
ଏ ରାଜ୍ୟ ଦେଲେ ଭରତଙ୍କୁ
ଅରଣ୍ୟ ଦେଲେ ସେ ଆମ୍ଭଙ୍କୁ ।
ଚଉଦ ବରଷ ଯେ ତହିଁ
ମୁଁ ରହିବାକୁ କଇକେୟୀ ।
ମାଗିଲେ ସେ ସତ୍ୟ କରାଇ
ସତ୍ୟବାଦୀ ତ ନରସାଇଁ ।
ଦୟାକୁ ଅଟନ୍ତି ସେ ଯେଣୁ
ସ୍ୱୀକାର ତା କଲେ ତେଣୁ ।

ଏ ଘେନି ବହନ ବନକୁ
ବିଘ୍ନ ନ କର ଗୋ ଯିବାକୁ ।
ଏମନ୍ତ ଶୁଣି ସେ ବୈଦେହୀ
ବୋଲେ ଯିବି ମୁଁ ଅଗ ହୋଇ ।
ଆପଣ ପଛେ ଯିବା ହେବ
ମୋତେ ଛାଡ଼ି ଯିବା ରାଘବ'
ତୁମ୍ଭର ଉଚିତ ନୁହଇ
ଧର୍ମରେ ପତ୍ନୀ ଯେଣୁ ମୁହିଁ ।
ଶ୍ରୀରାମ ବୋଇଲେ କେମନ୍ତେ
ତୁମ୍ଭଙ୍କୁ ନେବି ସଙ୍ଗତେ ।
ବହୁତ ଦୁଷ୍ଟ ଜୀବମାନେ
ଅଛନ୍ତି ଦଣ୍ଡକ ଅରଣ୍ୟେ ।
ଘୋର ରାକ୍ଷସମାନେ ଛନ୍ତି
ମନୁଷ୍ୟ ଭକ୍ଷଣ କରନ୍ତି ।
ବରାହ ସିଂହ ବ୍ୟାଘ୍ରମାନେ
ସନ୍ତତେ ବୁଲୁଥାନ୍ତି ବନେ ।
ଭୋଜନେ କଷାୟ ଅମ୍ଳିଲ ।
ଏ ରୂପେ ମିଳେ ଫଳ ମୂଳ ।
ପିଠା ବ୍ୟଞ୍ଜନ ମିଷ୍ଟ ଅନ୍ନ
ବନରେ ନ ମିଳେ ଏମାନ ।
ତଥାପି ସେ ଫଳମୂଳହି
ସବୁଦିନରେ ନ ମିଳଇ ।
କଣ୍ଟା ଖପର ବାଟେ ଥାଇ
ଚରଣ ତଳେ ବିନ୍ଧ ଯାଇ ।
ତହିଁରେ ମନୁଷ୍ୟ ନ ଦେଖି
କନ୍ଦର ସବୁ ଠାରେ ସର୍ପି ।
ସବୁ ସ୍ଥାନରେ ଘୋର ବନ
ଡାଆଁସ ଝିଙ୍କାରରେ ପୂର୍ଣ୍ଣ ।
କ୍ଲେଶ ବହୁତ ଏ ପ୍ରକାରେ
ଦୋଷୀ ଅଛଇ ସବୁଠାରେ ।

ଖରା ବରଷା ଶୀତ ବାତ
ଅଧିକ ବନେ ବଳବନ୍ତ ।
ଏ ଘେନି ସହି ତା ନୁହଇ
ପ୍ରତିଦିନରେ ଗୁଲୁଥାଇ ।
ତହିଁରେ ଦେଖନ୍ତେ ରାକ୍ଷସ
ପ୍ରାଣକୁ ଛାଡ଼ିବୁ ଅବଶ୍ୟ ।
ଏ ଘେନି ମନ୍ଦିରରେ ରହି
ଆମ୍ଭଙ୍କୁ ଥାଅ ବାଟ ଚାହିଁ ।
ପୂର୍ଣ୍ଣ ହୋଇଲେ ବନବାସ
ଆମ୍ଭଙ୍କୁ ଦେଖିବ ଅବଶ୍ୟ ।
ଏମନ୍ତ ଶୁଣି ବଇଦେହୀ
ଦୁଃଖରେ ଅଧର କମ୍ପାଇ ।
ମନେ ଅଳପ କ୍ରୋଧ କଲେ
ଏମନ୍ତ ବଚନ ବୋଇଲେ ।
ଦୟାଳୁ ଦାନ ପରବୀଣ
ସମସ୍ତ ଧର୍ମ ହିତ ଜାଣ ।
ମୁଁ ପତିବ୍ରତା ଏଣୁ ମୋତେ
ଛାଡ଼ଣ ଯିବାକୁ କେମନ୍ତେ ।
ବିଚାର କରୁଅଛ ମନେ
ତୁମ୍ଭ ପାଖେ ମୁଁ ଥିଲେ ବନେ ।
କେ ଛାର ମୋତେ କ୍ଲେଶ କରିବ
ଅଦ୍ଭୁତ ଶୁଣ ହେ ରାଘବ ।
ତୁମ୍ଭ ଉଚ୍ଛିଷ୍ଟ ଫଳ ମୂଳ
ସଲିଳ ମୋତେ ସୁଧା ତୁଲ୍ୟ ।
ହୋଇବ ମୁଁ ତାହା ଖାଇବି
ଅତି ସନ୍ତୋଷ ହେଉଥିବି ।
ତୁମ୍ଭ ସଙ୍ଗତେ ଥିଲେ କୁଶ ।
କାଷ୍ଠ ପଥର କଣ୍ଟା କାଇଁଶ ।
ଏମାନ ସବୁ ଦେବ ମୋତେ
କୁସୁମ ଶେଯ ପ୍ରାୟ ପ୍ରତେ ।

ତୁମ୍ଭର କାର୍ଯ୍ୟ ମୁଁ କରିବି
ତୁମ୍ଭଙ୍କୁ ଦୁଃଖ ମୁଁ ନ ଦେବି ।
ପୂର୍ବକାଳରେ ଏକ ସନ୍ତ
ଜାଣନ୍ତି ସେ ଜ୍ୟୋତିଷ ଶାସ୍ତ୍ର ।
ସାନ ଦିନରେ ପିତା ଘରେ
କହି ଅଛନ୍ତି ମୋ ଆଗରେ ।
ଭର୍ତ୍ତା ତୁଲରେ ବନବାସ
ତୋହର ହୋଇବ ଅବଶ୍ୟ ।
ସେ ବିପ୍ର ବୋଲ ସତ୍ୟ କରି
ମୋତେ ସଙ୍ଗତେ ନିଅ ବୀର ।
ଏବେ ମୁଁ ଅନ୍ୟ କଥା ପୁଣ
କହିବି ଶୁଣ ତା ଆପଣ ।
ଦଣ୍ଡକ ଅରଣ୍ୟକୁ ମୋତେ
ନେବାର ହୋଇବ ସଙ୍ଗତେ ।
ବିପ୍ରଙ୍କ ଠାରୁ ରାମାୟଣ
ବହୁତ ଶୁଣିଛ ଆପଣ ।
ସୀତାଙ୍କୁ ଛାଡ଼ି ରାମ କାହିଁ
ବନକୁ ଅଛନ୍ତି କି ଯାଇ ।
ଯେବେ ଏ କଥା ନ କରିବ
ନିଶ୍ଚୟେ ନ ଯିବୁ ବୋଲିବ ।
ତେବେ ଏଠାରେ ତୁମ୍ଭ ଆଗେ
ଜୀବନ ଛାଡ଼ିବି ମୁଁ ବେଗେ ।
ଏ ରୂପେ ନିଶ୍ଚୟ ତାଙ୍କର
ଶୁଣି ବୋଇଲେ ରଘୁବୀର ।
ତେବେ ତୁ ବିଳମ୍ବ ନ କର
ଦିଅ ତୁ ମୋ ତୁଲେ ତୋହର ।
ଅରୁନ୍ଧତୀଙ୍କି ଅଣାଇଣ
ଦିଅ ତୋ ସର୍ବ ଆଭରଣ ।
ବ୍ରାହ୍ମଣମାନଙ୍କୁ ବହୁତ
ବହନ ଦିଅ ଧନ ବସ୍ତ୍ର ।
ସତ୍ତ୍ୱରେ ଦିଅ ସମସ୍ତଙ୍କୁ
ବେଗରେ ଯିବା ଅରଣ୍ୟକୁ ।
ଶ୍ରୀରାମ ଏ ବଚନରେ ପୁଣ
ବୋଇଲେ ଶୁଣ ହେ ଲକ୍ଷ୍ମଣ ।
ଉତ୍ତମ ବ୍ରାହ୍ମଣମାନଙ୍କୁ
ବହନ ଅଣାଅ ଏଠାକୁ ।
ଶୁଣି ସେ ଅତି ବେଗେ ଗଲେ
ବିପ୍ରଙ୍କୁ ପରବେଶ କଲେ ।
କୁଟୁମ୍ବବନ୍ତ ଯେ ସଦ୍‌ବୃତ୍ତ
ସମସ୍ତେ ଉତ୍ତମ ପଣ୍ଡିତ ।
ଏମନ୍ତ ବିପ୍ରଙ୍କୁ ବସାଇ
ଶହ'ଶ କର ବୃଦ୍ଧ ଗାଈ ।
ସୁବର୍ଣ୍ଣ ବସ୍ତ୍ର ରତ୍ନହାର
ବହୁତ ଦ୍ରବ୍ୟ ଅଳଙ୍କାର ।
ହରଷ ହୋଇ ଦାନ କଲେ
ପରମ ହରଷ ହୋଇଲେ ।
ଅରୁନ୍ଧତୀଙ୍କି ବଇଦେହୀ
ବହୁତ ଆଭରଣ ଦେଇ ।
ରାମମାତାଙ୍କ ସେବକଙ୍କୁ
ଆପଣା ମନ୍ଦିର ଲୋକଙ୍କୁ ।
ପୁର ରାଜ୍ୟର ବ୍ରାହ୍ମଣଙ୍କୁ
ବୃଦ୍ଧ ବାଳକ ଦରିଦ୍ରଙ୍କୁ ।
ବହୁତ ଧନ ବସ୍ତ୍ର ଦେଲେ
ପରମ ହରଷ ହୋଇଲେ ।
ଲକ୍ଷ୍ମଣ ସୁମିତ୍ରାଙ୍କୁ ନେଇ
ସମର୍ପି କୌଶଲ୍ୟାଙ୍କୁ ଦେଇ ।
କାର୍ମୁକ ଶର ଘେନି ବେଗେ
ପ୍ରବେଶ ହେଲେ ରାମ ଆଗେ ।
ସୀତା ଲକ୍ଷ୍ମଣ ରାମ ତୁଲେ
ରାଜାଙ୍କ ଠାକୁ ବିଜେ କଲେ ।

ସୁମରକତଭ୍ରାନ୍ତେ ଶ୍ୟାମ
ରୂପେ ଅସମ କୋଟିକାମ ।
ଜାନକୀ ଲକ୍ଷ୍ମଣ ସଙ୍ଗତେ
ଏରୂପେ ଗଲେ ରାମ ଯାନ୍ତେ ।
ଦେଖିବାକୁ ସେ ସବୁଲୋକେ
ଉତ୍ସବ ଅଛନ୍ତି ଉତ୍ସୁକେ ।
ତାହାଙ୍କ କଉତୁକେ ଚାହିଁ
ହସିଣ ମନ୍ଦ ମନ୍ଦ ହୋଇ ।
ଆପଣା ତେଜେ ରଘୁପତି
କକୁଭ ଶୋଭା କରୁଛନ୍ତି ।
ଚରଣଗତରେ ପବନ
କରୁ ସେ ଅଛନ୍ତି ଜଗତ ।
ଶ୍ରୀରାମ ଏମନ୍ତ ପ୍ରକାରେ
ମିଳିଲେ ପିତାଙ୍କ ମନ୍ଦରେ ।
ବୋଲଇ ଦୀନ ହଳଧର
ସୁଜନେ ଶୁଣ ମୋ ଉତ୍ତର ।
ବନେ ରାମଙ୍କୁ ଗୋଡ଼ାଇବା
ସେ ପାଦ ଶବ୍ଦରେ ପଡ଼ିବା ।
ବିଷୟୀ ଅଦ ଯେ ଦୂରତ
ଅଛନ୍ତି ହୋଇବ ସେ ହତ ।
ଦୟା କରିବେ ରଘୁପତି
ଅନ୍ତେ ମିଳିବ ସ୍ୱର୍ଗ ଗତି ।
ଦୂଷଣ ଛାଡ଼ଣ ଏ ପଦ
ଏ ଅଧ୍ୟା କାହୁଁ ମୋ ଅପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମାମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ

ଶ୍ରୀମହାଦେବ ଉବାଚ

ଈଶ୍ୱର ବୋଇଲେ ପାର୍ବତି
ଶୁଣିଲ କୌଶଲ୍ୟାର ସ୍ତୁତି ।
ଏ ବେଳ ପ୍ରଜାଙ୍କ ଚରିତ
ଶୁଣ ନିଶ୍ଚଳ କର ଚିତ୍ତ ।
ଜାନକୀ ଲକ୍ଷ୍ମଣ ସଙ୍ଗତେ
ଶ୍ରୀରାମ ଗମନ କରନ୍ତେ ।
ସେ ପୁରଜନେ ରାଜ୍ୟ ଲୋକେ
ଦେଖି ତାହାଙ୍କୁ ଅତି ଶୋକେ ।
ଏକ ଆରକେ କଇକେୟୀ
ବର ହୁଅନ୍ତି କୁହାକୁହି ।
ଅତି କାମୁକ ନରସାଇଁ
କଇକେୟୀର ବଶ ହୋଇ ।
ସ୍ତ୍ରୀଙ୍କ ନିମନ୍ତେ ଶ୍ରୀରାମଙ୍କୁ
ପଠାଇଲେ ଅରଣ୍ୟକୁ ।
ସବୁ ଅବଳରେ ରହିତ
ସମସ୍ତ ଭଲ ଗୁଣେ ଯୁକ୍ତ ।
ଏମନ୍ତ ପୁତ୍ରକୁ ଛାଡ଼ିଲେ
କେମନ୍ତେ ସତ୍ୟବାଦୀ ହେଲେ ।
କୈକେୟୀ ଅତ୍ୟନ୍ତ ଦାରୁଣ
ଜାନକୀ ଶ୍ରୀରାମ ଲକ୍ଷ୍ମଣ ।
ଏହାଙ୍କୁ ଓପ୍ରୋଧ ନ କଲା ।
କାରୂପେ ଏ ବର ମାଗିଲା ।
ଲକ୍ଷ୍ମଣ ରାମ ସୀତା ଯେବେ
ଘୋର ବନକୁ ଯିବେ ତେବେ ।

ସେଠାକୁ ଅମ୍ଭେମାନେ ଯିବା
ଏ ନଗ୍ରେ ଦଣ୍ଡେହେଁ ନ ଥିବା ।
ଏକା ହୋଇ ଏ କଇକେୟୀ
ଏ ପାପପୁରେ ଥାଉ ରହି ।
ଦେଖ ଏ ସୀତାଙ୍କ ପାଦରେ
ଚାଲି ଯାଉଛୁ ଏ ଦାଣ୍ଡରେ ।
କେ ଅଜ ଯାଏ ଜାନକୀଙ୍କି
ନୟନେ ଦେଖି ଥିଲଟିକି ?
ସେ ଏବେ ସବୁରି ମଧ୍ୟରେ
ପ୍ରକାଶ ହୋଇ ଏ ଦାଣ୍ଡରେ ।
ଚାଲି ଯାଉଛୁ ଚରଣରେ
ଏହା ଦେଖିଲୁଁ ଆଖିରେ ।
ଦେଖ ଦେଖ ଏ ରଘୁନାଥ
ନ ଚଢ଼ି ଗଜ ଅଶ୍ୱ ରଥ ।
ଚାଲୁଅଛନ୍ତି ଚରଣରେ
ଦେଖୁ ତ ଥାଇ ନୟନରେ ।
ବେଗେ ଅମ୍ଭର ପ୍ରାଣ ଯାଉ
କଇକେୟୀଙ୍କ ଧିକହେଉ ।
କୈକେୟୀ ନାମରେ ରାକ୍ଷସୀ
ଜଣେ ଜନମ ହେଲା ଆସି ।
ସବୁଲୋକର ନାଶ ପାଇଁ
ଏଥି ସଂଶୟ କିଛି ନାହିଁ ।
ସୀତା ଲକ୍ଷ୍ମଣ ତୁଲେ ରାମ
ପାଦେ ଚାଲି ପାଇବେ ଶ୍ରମ ।
ଏଣୁ ଦଇବ ବଳୀୟାର
ଅତ ଦୁର୍ବଳ କଷ୍ଟେ ନର ।
ଏରୂପେ ସବୁ ସାଧୁମାନେ
ଚିନ୍ତା କରନ୍ତେ ଦୁଃଖ ମନେ ।
ତହିଁରେ ବାମଦେବ ପୁଣ
ମିଳ ବୋଇଲେ ତତ୍ତ୍ୱ ଶୁଣ ।

ଶ୍ରୀରଘୁନାଥ ସୀତା ପାଇଁ
ଦୁଃଖ ନ କର ତୁମ୍ଭେ କେହି ।
ଏ ରାମ ପରମାତ୍ମା ନିଶ୍ଚୟେ
ବିଷ୍ଣୁ ଏ ସବୁରି ଅଦ୍ୟ ଏ ।
ଲକ୍ଷ୍ମୀ ନିଶ୍ଚୟେ ବଇଦେହୀ ।
ଏ ଯୋଗମାୟା ଟି ବୋଲାଇ
ଲକ୍ଷ୍ମଣ ଶେଷ ଯେ ଅନନ୍ତ
ଶ୍ରୀରାମ ସଙ୍ଗତେ ଅଛନ୍ତି ।
ହୋଇଲେ ମାୟା ଗୁଣେ ଯୁକ୍ତ
ଦିଶନ୍ତି ସେ ଆକାରବନ୍ତ ।
ଏ ରାମ ରଜଗୁଣେ ଯାଇ
ସଂଯୁକ୍ତ ହେଲେ ବ୍ରହ୍ମା ହୋଇ ।
ସଂସାର ସର୍ଜନା କରଇ
ସତ୍ତ୍ୱ ଗୁଣକୁ ଯେବେ ପାଇ ।
ଏ ତେବେ ପୁଣ ବିଷ୍ଣୁ ହୋଇ
ସଂସାର ପାଳନା କରଇ ।
ପରାନ୍ତେ ତମୋ ଗୁଣେ ଭର
ଏ ରାମ ରୁଦ୍ର ରୂପ ଧର ।
ଜଗତ ପ୍ରଳୟ କରଇ
ପୂରୁବ କାଳରେଟି ଏହି ।
ଧରି ବିପୁଳ ମତ୍ସ୍ୟ ତନୁ
ଭକ୍ତ ଯେ ବୈବସ୍ୱତ ମନୁ ।
ତାହାଙ୍କୁ ନାବେ ବସାଇଲେ
ପ୍ରଳୟ ଜଳେ ରକ୍ଷା କଲେ ।
ସମୁଦ୍ର ମନ୍ଥନର ବେଳେ
ମନ୍ଦର ପର୍ବତ ସେକାଳେ ।
ସୂତଳ ଲୋକକୁ ସେ ଯେଣୁ
ବୁଡ଼ିଗଲା ଏ ରାମ ତେଣୁ ।
କମଠ ଅବତାର ହେଲେ
ପୃଷ୍ଠରେ ସେ ଗିରି ଧଇଲେ ।

ପ୍ରଳୟକାଳେ ପୃଥ୍ୱୀ ଯହୁଁ
ରସାତଳକୁ ଗଲା ତହୁଁ ।
ବରାହ ମୂର୍ତ୍ତି ଏ ହୋଇଲେ
ଦଶନେ ଧରଣୀ ତୋଳିଲେ ।
ଭକ୍ତ ଯେ ପ୍ରହଲ୍ଲାଦ ତାଙ୍କୁ
ପୂର୍ବରେ ଏ ବର ଦେଲକୁ ।
ନୃସିଂହ ରୂପ ଧରି ଏହୁ
ତ୍ରୈଲୋକ୍ୟ ନାଶୁ ଥିଲା ଯେହୁ ।
ତେଣୁ ହିରଣ୍ୟ କଶିପୁର
ନଖେ ବିଦାରି ତା ଉଦର ।
ଇନ୍ଦ୍ର ଦେବତା ରାଜ୍ୟ ପୁଣି
ତେଣ୍ଡୁ କରି ହେଲା ହରଣି ।
ଅଦିତି ମାଗିଲେ ଏହାଙ୍କୁ
ତାହାଙ୍କ ପୁତ୍ର ହୋଇବାକୁ ।
ତେଣୁ ଏ ବାମନ ହୋଇଲେ
ବଳିଙ୍କୁ ମାଗି ରାଜ୍ୟ ଦେଲେ ।
ଦୁଷ୍ଟ କ୍ଷତ୍ରିୟମାନେ ଯେଣୁ
ଭୂମିର ଭାର ହେଲେ ତେଣୁ ।
ପରଶୁରାମ ରୂପ ବହି
ରଖିଲେ ତାଙ୍କୁ ମାରି ମହୀ ।
ଏଣୁଟି ମହାବିଷ୍ଣୁ ଏହି
ରାମ ରୂପକୁ ଛନ୍ଦ ବହି ।
ରାବଣ ଆଦି ଯେ ରାକ୍ଷସ
ବହୁତ ଏ କରିବେ ଏ ନାଶ ।
ବିଧାତା କରିଛି ଭିଆଣ
ମନୁଷ୍ୟ ସକାଶୁଁ ମରଣ ।
କଷ୍ଟେ ଲଭିବେ ଲଙ୍କାନାଥ
ପୂର୍ବ କାଳରେ ଦଶରଥ ।
ତନୟ କରି ପାଇବାକୁ
ତପେ ଆରାଧନା କଲାକୁ ।
ପୁତ୍ର ରୂପରେ ହେଲେ ଜାତ
ଏ ସେହି ବିଷ୍ଣୁଟି ଶ୍ରୀରାମ ।
ଏବେ ଏ ଲକ୍ଷ୍ମଣ ସଙ୍ଗତେ
ରାବଣ ବିନାଶ ନିମନ୍ତେ ।
ବନକୁ ଯିବେ ଏ ଅଜହିଁ
ହରିମାୟା ଯେ ବଇଦେହୀ ।
ସର୍ଜନା ପାଳନା ସଂହାର
ଏ ସବୁ ନିଷ୍ଟସେଁ ଏହାର ।
ଏ ଘେନି କୈକେୟୀ ନୃପତି
ଏ କାର୍ଯ୍ୟେ କାରଣ କୁହନ୍ତି ।
କାଲି ନାରଦ ଆସିଥିଲେ
ଭୂଭାର ଉଶ୍ୱାସ କହିଲେ ।
ଶ୍ରୀରାମ କହିଲେ ତାହାଙ୍କୁ
କାଲି ମୁଁ ଯିବି ଅରଣ୍ୟକୁ ।
ଏ ଘେନି ରାମ ବିଷୟରେ
ଶୋଚନା ନ କର ମନରେ ।
ଶ୍ରୀରାମ ରାମ ଯେ ବୋଲଇ
ଏରୂପେ ନିତ୍ୟ ଯେ ଜପଇ ।
ତାଙ୍କର କଦାଚିତ ହୋଇ
ମରଣ ଭୟାଦି ନ ଥାଇ ।
ସେ ରାମ ଦୁଃଖ କି ପାଇବ
ଏହା ମନକୁ ନ ଆସିବ ।
ଘୋର କଳିରେ ଏ ହୁଅନ୍ତି
ଶ୍ରୀରାମ ନାମରେ ସେ ମୁକ୍ତି ।
ଆନ ନାମରେ ସେ ଯୁଗରେ
ମୁକତି କୁହନ୍ତି ପାମରେ ।
ମାୟା ମନୁଷ୍ୟ ରୂପ ଧରି
ଲୋକମାନଙ୍କୁ ମୋହ କରି ।
ହୋଇ ସେ ମନୁଷ୍ୟ ସମାନ
କରୁଅଛନ୍ତି ଚେଷ୍ଟାମାନ ।

ଭକ୍ତଙ୍କ ଭଜନ ହୋଇବ
ରାଜା ଅଭୀଷ୍ଟ ସିଦ୍ଧ ହେବ ।
ଦୁଷ୍ଟ ରାବଣ ବଧ ପାଇଁ
ମନୁଷ୍ୟ ଦେହ ଛନ୍ନ ବହି ।
ରହିଲେ ବାମଦେବ କହି
ଶୁଣି ବ୍ରାହ୍ମଣେ ହୃଷ୍ଟ ହୋଇ ।
ହୃଦୟ ଗ୍ରନ୍ଥି ଛିଣ୍ଡାଇଲେ
ମନେ ରାମଙ୍କୁ ଚିନ୍ତା କଲେ ।
ରାମ ସୀତାଙ୍କ ଏ ରହସ୍ୟ
ଯେ ନିତ ଚିନ୍ତଇ ଅବଶ୍ୟ ।
ତାହାର ଶୁଦ୍ଧ ଜ୍ଞାନ ହୋଇ
ଦୃଢ଼ ଭକତି ସେ ଲଭଇ ।
ଏ କଥା ଅତି ଗୋପନୀୟ
ତୁମ୍ଭେମାନେ ତ ରାମପ୍ରିୟ ।
ତୁମ୍ଭଙ୍କୁ କହିଲି ଏ ଘେନ
ଏମନ୍ତ ବୋଲି ଗଲେ ମୁନି ।
ଜାଣିଲେ ସେ ବିପ୍ର ନିକର
ପରମାତ୍ମା ଏ ରଘୁବୀର ।
ରାମ ଲକ୍ଷ୍ମଣ ସୀତା ତୁଲେ
ପିତାଙ୍କ ଗୃହରେ ମିଳିଲେ ।
ଶ୍ରୀରାମ ହସ ହସ ହୋଇ
ବୋଇଲେ କୈକେୟୀଙ୍କି ଚାହିଁ ।
ହେ ମାତ ବନକୁ ଯିବାକୁ
ଅଇଲୁଁ ପିତାଙ୍କ ଗୃହକୁ ।
ଆଜ୍ଞା ଦିଅନ୍ତୁ ନରସାଇଁ
ଏମନ୍ତ ଶୁଣି କଇକେୟୀ ।
ହରଷେ ଉଠି ତୋଷ ହୋଇ
ରାମ ଲକ୍ଷ୍ମଣ ବଇଦେହୀ ।
ତିନିଙ୍କି ବୃକ୍ଷର ବକଳ
ଆଣିଣ ଦେଲେ ତତକାଳ ।

ବସ୍ତ୍ର ଗୁଡ଼ି ବକଳ ପୁଣି
ପିନ୍ଧିଲେ ଶ୍ରୀରାମ ଲକ୍ଷ୍ମଣ ।
ବକଳ ଘେନି ବଇଦେହୀ
ନ ପିନ୍ଧି ଲଜ୍ଜ ଯୁକ୍ତ ହୋଇ ।
ରାମ ମୁଖକୁ ଅନାଇଲେ
ସେ ତାହା କରେଣ ଧଇଲେ ।
ଜାନକୀ କନ୍ଧେ ରଘୁସାଇଁ
ବକଳ ଦେଲେ ଗୁଡ଼ାଇ ।
ଏମନ୍ତ ଦେଖନ୍ତେ ନୟନେ
ଅନ୍ତଃପୁରର ସ୍ତ୍ରିମାନେ ।
ସମସ୍ତେ ସନ୍ତପତ ହେଲେ
ଉଚ୍ଚେ ରୋଦନମାନ କଲେ ।
ବଶିଷ୍ଠ ଶୁଣନ୍ତେ ସେ ଶୋକ
କ୍ରୋଧେ କୈକେୟୀଙ୍କ ଅନେକ ।
ଭର୍ତ୍ସନା ମାନ ସେହୁ କଲେ
ଏମନ୍ତ ବଚନ କହିଲେ ।
ଏଡ଼େକ ଦୁଷ୍ଟା ଅଟୁ ତୁହି
ଏକା କର ତ ରାମ ପାଇଁ ।
ବର ମାଗିଲୁ ନୃପତିଙ୍କି
ବକଳ କପାଁ ଜାନକୀଙ୍କି ।
ଦେଉଛୁ ଲଜ୍ଜ ପାଉ ନାହୁଁ
ନିର୍ଲ୍ଲଜ ତୋତେ ଧିକ ହେଉ ।
ଜାନକୀ ଯେବେ ଭଗତରେ
ଯାଉଛନ୍ତି ଶ୍ରୀରାମ ସଙ୍ଗରେ ।
ତେବେ ସେ ପିନ୍ଧି ଦିବ୍ୟ ବସ୍ତ୍ର
ସବୁ ମଣ୍ଡନେ ହୋଇ ଯୁକ୍ତ ।
ଯାଉ ଶ୍ରୀରାମ ସଙ୍ଗତରେ
ସୁମନ୍ତ୍ରକୁ ଏଥୁଅନ୍ତରେ ।
ବିକଳ ହୋଇ ଦଶରଥ
ବୋଇଲେ ବେଗେ ଆଣ ରଥ ।

ତହିଁରେ ବହନ ଚଢ଼ନ୍ତି
ଏମାନେ ବନକୁ ଯାଆନ୍ତି ।
ଏମନ୍ତ ବୋଲି ନରସାଇଁ
ରାମ ଲକ୍ଷ୍ମଣ ବଇଦେହୀ ।
ତାଙ୍କ ମୁଖକୁ ଚାହିଁଲେ
ଭୂମିରେ ପଡ଼ି ମୋହ ଗଲେ ।
ସୁମନ୍ତ ଭୋଗୀ ହୋଇ ଗଲେ
ଶତାଙ୍ଗ ପରବେଶ କଲେ ।
ଶ୍ରୀରାମ ଅଛନ୍ତି ଅନାଇଁ
ଅଗ ହୋଇଣ ବଇଦେହୀ ।
ବସିଲେ ଶତାଙ୍ଗ ଉପରେ
ଶ୍ରୀରାମ ଏଥୁଅନନ୍ତରେ ।
ରାଜାଙ୍କୁ କରି ପ୍ରଦକ୍ଷିଣ
ରଥରେ ବଜେ କଲେ ପୁଣ ।
ତହିଁରେ ଅସି ଧନୁ ତୂଣ
ରଖିଣ ବସିଲେ ଲକ୍ଷ୍ମଣ ।
ସୁମନ୍ତଙ୍କୁ ଚାହିଁ କହିଲେ
ବେଗେ ବାହି ନିଅ ବୋଇଲେ ।
ଦୁଃଖେ ଡାକଲେ ଦଶରଥ
ସୁମନ୍ତ ରଖ ରଖ ରଥ ।
ଯାଅ ଯାଅ ରାମ ବୋଇଲେ
ତେଣୁ ସେ ବେଗେ ଘେନିଗଲେ ।
ଦୂରକୁ ଗଲେ ରଘୁବୀର
ଏମନ୍ତ ଦେଖି ନୃପବର ।
ତତ୍କାଳ ସେ ମୂର୍ଚ୍ଛିତ ହେଲେ
ଧରଣୀ ତଳରେ ପଡ଼ିଲେ ।
ସ୍ତ୍ରୀ ବାଳକ ଯେ ବୃଦ୍ଧମାନେ
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
ପୁର ରାଜ୍ୟର ଯେତେ ଲୋକେ
ସମସ୍ତେ ଗୋଡ଼ାଇଲେ ଶୋକେ ।
ପଡ଼ନ୍ତି ଗଡ଼ନ୍ତି ଉଠନ୍ତି
ରହ ରହ ବୋଲି ଡାକନ୍ତି ।
ସର୍ବାଙ୍ଗେ ଧରଣି ପୁଲକ
ନୟନୁ ବହଇ ଲୋତକ ।
ଶୋକରେ ଗଦଗଦ ହୋଇ
ବଚନ ନ ପାରନ୍ତି କହି ।
ଏ ରୂପେ ରଥ ପଛପାଖେ
ବେଢ଼ି ଗୋଡ଼ାଇ ଗଲେ ଦୁଃଖେ ।
କୌଶଲ୍ୟା ଆଦି ରାଣୀ ଯେତେ
ଧାଇଁ ଦାସିଦାସ ସମସ୍ତେ ।
ହୃଦରେ କର ମାନ ତାଡ଼ି
କାନ୍ଦିଲେ ଭୂମିତଳେ ପଡ଼ି ।
ସଚେତ ହେଲେ ନରପତି
ସମସ୍ତେ ଗୁଣ ସୁମରନ୍ତି ।
ଶ୍ରୀରାମ ଜାନକୀ ଲକ୍ଷ୍ମଣ
ଏରୂପେ ନାମ ଧରି ପୁଣ ।
ବହୁତ ବେଳ ଶୋକ କଲେ
ସମସ୍ତେ ପୁରକୁ ଆଇଲେ ।
କଉଶଲ୍ୟାର ପରିବାରୀ
ମାନଙ୍କୁ ବୋଲେ ଦଣ୍ଡଧାରୀ ।
ଅଳ୍ପ ଥୋକାଏ କାଳ ମୁହିଁ
ପ୍ରାଣେ ଥାଆନ୍ତି ଦେହ ବହି ।
କେବଳ ରାମ ବିନା ମୋର
ଧରି ନୋହିବ କଳେବର ।
ଏ ଉତ୍ତରେ କଷ୍ଟ କଷ୍ଟରେ
ମିଳିଲେ କୌଶଲ୍ୟା ମନ୍ଦିରେ ।
ହା ରାମ ବୋଲି ଡାକ ଦେଲେ
ଭୂମିରେ ପଡ଼ି ମୋହ ଗଲେ ।
ପୁଣି କ୍ଷଣେକେ ଜ୍ଞାନ ପାଇ
ବସିଲେ ଶୋକେ କ୍ଷୀଣ ହୋଇ ।

ରାମ ତମସା ନଦୀକୂଳ
ମିଳି ସଲିଳ ପାନ କଲେ ।
ତହିଁ ତଳରେ ସୀତା ତୁଲେ
ଶୟନ କଲେ ବୃକ୍ଷମୂଳେ ।
ଧନୁ ଧରି ସୁମନ୍ତ ତୁଲେ
ଲକ୍ଷ୍ମଣ ଜଗିଣ ବସିଲେ ।
ସମସ୍ତ ପୁରଲୋକେ ତହିଁ
ଶ୍ରୀରାମ ନିକଟରେ ରହି ।
ବୋଲନ୍ତି ଯେବେ ଶ୍ରୀରାମଙ୍କୁ
ନେଇ ନୋହିବ ଅଯୋଧ୍ୟାକୁ ।
ତେବେ ଅମ୍ଭେମାନେ ନ ଯିବା
ଏହାଙ୍କ ସଙ୍ଗେ ବନେ ଥିବା ।
ମନେ ଏମନ୍ତେ ନିଷ୍ଟେ କଲେ
ନିଶ୍ଚିନ୍ତ ହୋଇ ନିଦ୍ରା ଗଲେ ।
ଶୁଣି ବିସ୍ମୟ ରାମ ହେଲେ
ମନେ ଏମନ୍ତ ବିଚାରିଲେ ।
ଅମ୍ଭେ ତ ଚଉଦବରଷ
ନ ପୁରୁଁ ନ ଯିବାଂ ଅବଶ୍ୟ ।
ବିଅର୍ଥ କ୍ରିପାଁ ପ୍ରଜାମାନେ
ଦୁଃଖ ପାଇବେ ଘୋରବନେ ।
ଏ ଘେନି ଯିବା ଏ ସମୟେ
ଏମନ୍ତ କରି ସେ ନିଷ୍ଟୟେ ।
ଠାରି ସୁମନ୍ତଙ୍କୁ ଡାକିଣ
ବୋଇଲେ ରଥ ବେଗେ ଅଣ ।
ଏକ୍ଷଣେ ବାହାର ହୋଇବା
ପ୍ରଜାଙ୍କୁ ବଣା କରି ଯିବା ।
ଶୁଣି ସେ ଅତ ତୋଷ ହୋଇ
ଅଶ୍ୱ ଯୋଚିଲା ରଥେ ନେଇ ।
ତିନିହେଁ ରଥରେ ବସିଲେ
ଯେଉଁ ବାଟରେ ଅସିଥିଲେ ।
ସେହି ଦିଗକୁ ଲେଉଟାଇ
ଥୋକାଏ ଦୂର ନେଲେ ବାହି ।
ତହିଁ ଉତ୍ତାରେ ବକ୍ର ହେଲେ
ପଥ ଛାଡ଼ି ଅପଥେ ଗଲେ
ତଦନ୍ତେ କେତେବେଳ ଠାରେ
ଜାଗ୍ରତ ହୋଇ ସବୁ ନରେ ।
ରାମଙ୍କୁ ଯହୁଁ ନ ଦେଖିଲେ
ଶୋକ କରି ସେ ବାହୁଡ଼ିଲେ ।
ରଥ ଚରଣ ଚିହ୍ନ ଗୃହିଁ
ପ୍ରବେଶ ଅଯୋଧ୍ୟାରେ ହୋଇ ।
ରାମଙ୍କୁ ହୃଦେ ନିରନ୍ତରେ
ଚିନ୍ତିଣ ରହିଲେ ମନ୍ଦିରେ ।
ସୁମନ୍ତ ବଢ଼ି ବେଗେ ରଥ
ବାହିଣ ନେଲେ ବହୁ ପଥ ।
ଉତ୍ତମ ରାଜ୍ୟମାନ ତହିଁ
ବାଟେ ବହୁତ ଦେଖି ଯାଇ ।
ସେ ଶୃଙ୍ଗବେର ପୁରଟାରେ
ପ୍ରବେଶ ହେଲେ ଗଙ୍ଗାତୀରେ ।
ଗଙ୍ଗାକୁଁ ଦେଖି ହରଷରେ
ସ୍ତୁତି ବଚନ ମାନଙ୍କରେ ।
ବହୁତ ନମସ୍କାର କଲେ
ପରମ ଅନନ୍ଦ ହୋଇଲେ ।
ସେ ଦିନ ରହିଲେ ସେଠାରେ
ଶିଂଶପା ବୃକ୍ଷର ମୂଳରେ ।
ଏଥୁ ଉତ୍ତାରେ ଗୋ ପାର୍ବତୀ ।
ଗୁହ ନାମେ ଶବର ପତି ।
ରାମଙ୍କ ଅଗମନ ବାଣୀ
ଲୋକମାନଙ୍କ ମୁଖୁଁ ଶୁଣି ।
ପରମ ହରଷ ହୋଇଲା
ମନେ ଏମନ୍ତ ବିଚାରିଲା ।

ମୋହର ସଖା ସେ ଅଟନ୍ତି
ପ୍ରଭୁ ମୋହର ରଘୁପତି ।
ଏହା ବିଚାରି ତତକାଳ
ଘେନାଇ କନ୍ଦ ଫଳମୂଳ ।
ପ୍ରବେଶ ହୋଇ ରାମ ଠାରେ
ଭେଟି ଦ୍ରବ୍ୟ ଥୋଇ ଅଗ୍ରରେ
ବିନୟ ହୋଇ ଯେ ଭକ୍ତିରେ
ପ୍ରଣାମ କଲା ଧରଣୀରେ ।
ଶ୍ରୀରାମ ବେଗେ ତୋଳି ଧରି
ସ୍ନେହରେ ଆଲିଙ୍ଗନ କରି ।
କୁଶଳ ବାର୍ତ୍ତା ପଚାରିଲେ
ଏଥିକି ଶବର କହିଲେ ।
ବୋଇଲେ ଯୋଡ଼ି କର ଦୁଇ
ଧନ୍ୟ ମୁଁ ସୁକୃତୀ ଅଟଇ ।
ଏବେ ମୋ ଶବର ଜନମ
ଆଜି ଅବଧି ହେ ଶ୍ରୀରାମ ।
ନିଶ୍ଚୟ ସମସ୍ତ ଲୋକଙ୍କୁ
ହେଲ ପବିତ୍ର କରିବାକୁ ।
ଯେଣୁ ମୁଁ ତୋ ଅଙ୍ଗ ଛୁଇଁଲି
ଏଣୁ କୃତାର୍ଥ ନିଶ୍ଚେ ହେଲି ।
ଏ ରାଜ୍ୟ ତୁମ୍ଭ ସେବକର
ଏଣୁ ଏ ଅଧୀନ ତୁମ୍ଭର ।
ଏଥେ ଅମ୍ଭମାନଙ୍କ ବୀର
ରହି ପରିପାଳନା କର ।
ଏବେ ଆସିବା ହେଉ ବୀର
ପବିତ୍ର କର ମୋ ମନ୍ଦିର ।
ବହୁତ ଫଳମୂଳ ବହି
ଆଣିଛୁ ମୁଁ ତୁମ୍ଭର ପାଇଁ ।
ଘେନ ତା ମୁଁ ଦାସ ତୁମ୍ଭର
ମୋଠାରେ ଅନୁଗ୍ରହ କର ।

ଶୁଣି ବୋଇଲେ ରଘୁମଣି
ହେ ସଖା ଶୁଣ ମୋର ବାଣୀ
ଚଉଦ ବରଷ ବନରେ
ରହିବୁଁ ନ ଥିବୁ ଗ୍ରାମରେ ।
ଫଳମୂଳାଦି ବିନୁ ଆନ
କରିବୁ ନାହିଁ ତା ଭୋଜନ ।
ତୁମ୍ଭେ ମୋହର ସଖା ଯେଣୁ
ଏ ରାଜ୍ୟ ମୋହର ତ ତେଣୁ ।
ଏମନ୍ତ କହି ହାତେ ତାର
ବେଗେ ଆଣାଇ ବଟ କ୍ଷୀର ।
ଶ୍ରୀରାମ ଲକ୍ଷ୍ମଣ ତୁଲରେ
ଜଟା ମୁକୁଟ କଲେ ଶିରେ ।
ତଦନ୍ତେ ବଇଦେହୀ ତୁଲେ
ସଲିଳ ମାତ୍ର ପାନ କଲେ ।
କୁଶେ ମିଶାଇ ପତ୍ର ଗଣ
ତା ଶଯ୍ୟା କରନ୍ତେ ଲକ୍ଷ୍ମଣ ।
ଯେମନ୍ତେ ପୁରେ ଜଗତରେ
ପଲ୍ୟଙ୍କ ତୁଳୀର ଉପରେ ।
ସୁଖରେ ଶୟନ କରନ୍ତି
ସେ ରୂପେ ଏବେ ରଘୁପତି ।
ଏଥିରେ ବଇଦେହୀ ତୁଲେ
ଅତି ସୁଖେ ଶୟନ କଲେ ।
ସେହି ନିକଟେ ଧନୁବାଣ
ଧରି ସେ ଶବର ଲକ୍ଷ୍ମଣ ।
ଅନିଦ୍ର ହୋଇଣ ବସିଲେ
ବହୁତ କଥାବାର୍ତ୍ତା ହେଲେ ।
ସୁଜନେ ଅଧ୍ୟାତ୍ମ ଚରିତ
ଶୁଣିମା ହେତୁ ଦେଇ ଚିତ୍ତ ।
ପାପୀ ମୁଁ ବୁଦ୍ଧି ମୋ ଅଳପ
ଏ ଘେନି ନ କରିବ ତାପ ।

ମାଗଇ ହଳଧର ଦାସ
କ୍ଷମା କରିବ ଥିଲେ ଦୋଷ ।
ଏଥକୁ ତୁମ୍ଭଙ୍କ ମୋହର
ଅନୁବରତେ ନମସ୍କାର ।
ଜାନକୀ ଶ୍ରୀରାମ ଚରଣ
ସନ୍ତତେ ହେଉ ମୋ ଶରଣ ।

ପାର୍ବତୀ ଯୁକ୍ତ ବିଶ୍ୱନାଥ
ପୂର୍ଣ୍ଣ କରନ୍ତୁ ମନୋରଥ ।
ଦୟା କରିବେ ଉମାକାନ୍ତ
ପୂରଣ ହେବ ମନୋରଥ ।
ଏ ଶଏ ଶତାଣୋଇ ପଦ
କାଟୁ ମୋ ସମସ୍ତ ଆପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ଶ୍ରୀ ପାର୍ବତ୍ୟୁବାଚ

ପୁଣି ପଚାରିଲେ ପାର୍ବତୀ
ଏଥି ଉତ୍ତାରେ ରଘୁପତି ।
କି କଲେ କେଉଁଠାକୁ ଗଲେ
କେଉଁ ସ୍ଥଳରେ ବାସ କଲେ ।
ଏମାନ କହ ବିଶ୍ୱନାଥ
ଶୁଣି ମୁଁ ହୋଇବି କୃତାର୍ଥ ।

ଶ୍ରୀ ମହାଦେବ ଉବାଚ

ଶୁଣି କହିଲେ ସଦାଶିବ
ଜାନକୀ ସହିତେ ରାଘବ ।
କୁଶଶଯ୍ୟାରେ ଛନ୍ତି ଶୋଇ
ଶବର ଦେଖି ଦୁଃଖୀ ହୋଇ ।
ଲୋତକ ଯାଉଅଛି ବହି
ବୋଇଲେ ଲକ୍ଷ୍ମଣଙ୍କୁ ଚାହିଁ ।
ଆପଣା ଗୃହ ଜଗତରେ
ପଲ୍ୟଙ୍କେ ଯେ ତୁଳି ଉପରେ ।
ସୀତା ତୁଳେ ଶୟନ କରେ
ସେ ଏବେ ଶୋଇଲେ କୁଶରେ ।
ନଷ୍ଟେଁ ଶ୍ରୀରାମ ଦୁଃଖପାଇଁ
କାଳ ହୋଇଛି କଇକେୟୀ ।

ସେ ପୁଣି ମନ୍ଥରାର ବୋଲେ
ଏଡ଼େ ପାପରେ ପ୍ରବର୍ତ୍ତିଲେ ।
ଏଥିକି ବୋଇଲେ ଲକ୍ଷ୍ମଣ
ହେ ସଖା ମୋ ବଚନ ଶୁଣ ।
କାହାର ଦୁଃଖ ସୁଖେ ଭାଇ
କେ ଅବା କାରଣ ଅଟଇ ।
ଶତ୍ରୁ ମିତ୍ରହିଁ ମଧ୍ୟସ୍ଥହିଁ
ଯେମନ୍ତ କର୍ମ କରିଥାଇ ।
ସେ କର୍ମ କାଳକୁହିଁ ଗୃହିଁ
ଅସିଣ ପ୍ରବେଶ ହୁଅଇ ।
ସୁଖ ଦୁଃଖର ଦାତା ହୋଇ
କେହୁ ଯେ କାହାର ନୁହଇ ।
ପର ଦେଉଛି ବୋଲି କରି
ତୁଚ୍ଛଲୋକ ବୁଦ୍ଧି ଏପରି ।
ମୁଁ କହୁ ବୋଲଇ ଯେ ଜନ
ବୃଅର୍ଥଟି ଏ ଅଭିମାନ ।
ଯେଣୁ କଲକର୍ମ ସୂତାରେ
ଗୁନ୍ଥା ହୋଇଣଛନ୍ତି ନରେ ।
ଏ ଦେଖ ସେ ଦୁଃଖ ସୁଖହୁ
ଅପଣା କର୍ମବଶେ ଥାଇ ।

ଏଣୁ କର୍ମବଶକୁ ପାଇ
ଯେ ଅସି ପ୍ରବେଶ ହୁଅଇ ।
ସେମାନଙ୍କ ଭୋଗ କରିବ
ନିଶ୍ଚିନ୍ତ ହୋଇ ସୁଖେ ଥିବ ।
କେମନ୍ତେ ସୁଖ ମୋର ହେବ
ଏଥକୁ ଆରତ ନୋହିବ ।
ଏ ସୁଖ ଗଲା ମୋ କାହିଁକି
ଆରତ ନୋହିବ ତହିଁକି ।
ସୁଖରେ ଆନନ୍ଦ ନୋହିବ
ସେ ଗଲେ ଦୁଃଖ ନ କରିବ ।
ଯେଉଁ କାଳରେ ଯେଉଁଠାରେ
ଯା ଠାରୁ ଯେଉଁ କାରଣରେ ।
ସୁଖ ଦୁଃଖକୁ ଯୋଗ ଥାଇ
ସେ ଭୋଗ ଅନ୍ୟଥା ନୁହଇ ।
ସୁଖରେ ଦୁଃଖରେ ନିଷ୍ଟୟେ
ସ୍ୱଅର୍ଥ ହରଷ ବିସ୍ମୟେ ।
ଯାହା ବିଧାତା ଲେଖିଥାଇ
ସେ କଥା ସୁରାସୁର କେହି ।
ଅନ୍ୟଥା କରି ନ ପାରନ୍ତି
ସୃଷ୍ଟିରେ ଯେତେକ ଅଛନ୍ତି ।
ଦୁଃଖ ସୁଖହି ନିରନ୍ତରେ
ବେଢ଼ି ଅଛନ୍ତି ପ୍ରାଣୀଠାରେ ।
ଯେଣୁ ଦୁରିତ ପୁଣ୍ୟ କରି
ଶରୀର ହୋଇଛି ସବୁର ।
ଏ ଯେନ ଦୁଃଖ ସୁଖ ତହିଁ
ଅଛନ୍ତି ନିରନ୍ତରେ ରହି ।
ସୁଖ ଉପରେ ଦୁଃଖ ହୋଇ
ଦୁଃଖ ଉପରୁ ସୁଖ ପାଇ ।
ରାତ୍ର ଦିବସ ଯେହ୍ନେ ହୁଏ
ମିଶିଲା ଜଳ ପଙ୍କ ପ୍ରାୟେ ।

ଏଣୁ ପଣ୍ଡିତେ ଧୈର୍ଯ୍ୟରେ
ସୁଖ ଦୁଃଖରେ ଦୁଇଠାରେ ।
ହରଷ ମୋହକୁ ନ ପାନ୍ତି
ସବୁହିଁ ମାୟା ଏ ଜାଣନ୍ତି ।
ଏରୂପେ ଦୁହେଁ କଥା ହଉଁ
ରାତ୍ର ପ୍ରକାଶ ହେଲା ସହୁଁ ।
ଶ୍ରୀରାମ ଉଠି ସ୍ନାନ କଲେ
ଗୁହ ଶବରକୁ ଆଜ୍ଞା ଦେଲେ ।
ନଉକା ଆଣ ବୋଇଲେ
ଆସି ସେ ରାମଙ୍କୁ କହିଲେ ।
ସୀତା ଲକ୍ଷ୍ମଣ ତୁଲେ ବୀର
ଏଥି ଉପରେ ବିଜେ କର ।
ଜ୍ଞାତିମାନଙ୍କ ତୁଲେ ଥାଇ
ସୁଖେ ମୁଁ ଯେନ ଯିବି ବାହି ।
ଶ୍ରୀରାମ ଶୁଣି ତୋଷ ହୋଇ
ପ୍ରଥମେ ସୀତାଙ୍କୁ ବସାଇ ।
ଶବର କରେ କର ଦେଇ
ଆପଣ ବିଜେ କଲେ ଯାଇ ।
ତୂଣୀ ଖଡ଼ଗ ଧନୁର୍ବାଣ
ରଖିଣ ବସିଲେ ଲକ୍ଷ୍ମଣ ।
ଶବର ଜ୍ଞାତି ମାନ ତୁଲେ
କାତ ଧରିଣ ବାହିନେଲେ ।
ନଦୀ ମଧ୍ୟରେ ବଇଦେହୀ
ବୋଇଲେ ଗଙ୍ଗାଙ୍କୁ ସେ ଚାହିଁ
ଭୋ ଦେବୀ ତୁମ୍ଭଙ୍କୁ ମୋହର
ସନ୍ତତ ହେଉ ନମସ୍କାର ।
ଶ୍ରୀରାମ ଲକ୍ଷ୍ମଣର ତୁଲେ
ବନରୁ ଲେଉଟି ଆଇଲେ ।
ତୁମ୍ଭଙ୍କୁ ପୂଜା ମୁଁ କରିବି
ମଦିରା ମାଂସ ବଳି ଦେବି ।

ଏମନ୍ତେ ପାର ହୋଇଗଲେ
ପ୍ରବେଶ ଆର କୂଳେ ହେଲେ ।
ଶବର ବୋଲେ ଶ୍ରୀରାମଙ୍କୁ
ଆଜ୍ଞା ଦିଅ ମୁଁ ଅରଣ୍ୟକୁ ।
ତୁମ୍ଭର ସଙ୍ଗତରେ ଯିବି
ନୋହିଲେ ଜୀବନ ତେଜିବି ।
ଶୁଣି ବୋଇଲେ ରଘୁବୀର
ହେ ସଖା ଶୁଣ ମୋ ଉତ୍ତର ।
ପୂରିଲେ ଚଉଦ ବରଷ
ମୁଁ ପୁଣି ଆସିବି ଅବଶ୍ୟ ।
କହୁଛି ସତ୍ୟ କରି ମୁହିଁ
ରାମ ବଚନ ମିଥ୍ୟା ନୋହି
ଏମନ୍ତ କହି ଆପଣାର
ଭକ୍ତ ଅଟଇ ଯେ ଶବର ।
ତାହାଙ୍କୁ କରି ଆଲିଙ୍ଗନ
କହିଣ ଆଶ୍ୱାସ ବଚନ ।
ଶାନ୍ତ କରାଇ ନିବର୍ତ୍ତାଇ
ଗଲେ ତାଙ୍କୁ ମେଲାଣି ଦେଇ ।
ଶବର ବହୁତ କଷ୍ଟରେ
ପ୍ରବେଶ ହେଲେ ନିଜ ପୁରେ ।
ଏଥୁ ଉତ୍ତାରେ ରାବଣାରି
ମୃଗ ଗୋଟିଏ ବଧ କରି ।
ଶ୍ରାଦ୍ଧ ହୋମ ବଳି ଦେଇଣ
ଅବଶିଷ୍ଟ କରି ଭୋଜନ ।
ତୃଣଶଯ୍ୟା କରି ଶୋଇଲେ
ସେ ଦିନ ସେଠାରେ ରହିଲେ
ଆରଦିବସ ତହୁଁ ଯାଇ
ଭରଦ୍ୱାଜଙ୍କ ବନେ ହୋଇ ।
ଆଶ୍ରମ ବାହାରେ ରହିଲେ
ମୁନିଙ୍କ ଶିଷ୍ୟଙ୍କୁ ଦେଖିଲେ ।
ତାଙ୍କୁ କହିଲେ ବେଗ ହୋଇ
ମୁନିଙ୍କ ଆଗେ କହ ଯାଇ ।
ଦାଶରଥି ରାମ ଏଠାରେ
ଜାନକୀ ଲକ୍ଷ୍ମଣ ତୁଳରେ ।
ଆସି ପ୍ରବେଶ ହୋଇଛନ୍ତି
ଆଶ୍ରମ ବାହାରେ ଅଛନ୍ତି ।
ଶିଷ୍ୟ ମୁନିଙ୍କ ଠାରେ ହେଲା
ପ୍ରଣାମ କରି ସେ କହିଲା
ରାମ ଲକ୍ଷ୍ମଣ ବଇଦେହୀ
ବନ ବାହାରେ ଛନ୍ତି ରହି ।
ମୋତେ ସେ ଦେଲେ ପଠାଇ
ତୁମ୍ଭଙ୍କୁ ଜଣାଇବା ପାଇଁ ।
ଶୁଣି ତତ୍କାଳ ମହାମୁନି ।
ଉଠି ସେ ପାଦ୍ୟ ଅର୍ଘ୍ୟ ଘେନି
ତାହାଙ୍କୁ ପୂଜିବାର ପାଇଁ
ସେଠାକୁ ଗଲେ ତୋଷ ହୋଇ
ରାମଙ୍କୁ ଦେଖି ଆନନ୍ଦରେ
ଜାନକୀ ଲକ୍ଷ୍ମଣ ତୁଳରେ ।
ଯଥା ବିଧିରେ ପୂଜା କଲେ
ଏମନ୍ତ ବଚନ କହିଲେ
ଆସିବା ହେତୁ ରଘୁବୀର
ତୁମ୍ଭ ଚରଣ ରଜେ ମୋର ।
ପବିତ୍ର ପର୍ଣ୍ଣକୁଟୀ କରି
ଏମନ୍ତ ବୋଲି ମୁନିବର ।
ତିନିଙ୍କି ସେଠାକୁ ଆଣିଲେ
ପୁଣି ଭକ୍ତିରେ ପୂଜା କଲେ ।
କହିଲେ ଦର୍ଶନେ ତୁମ୍ଭର
ତପସ୍ୟା ପୂର୍ଣ୍ଣ ହେଲା ମୋର ।
ଯେତେକ କଥା ଗଲା ତୋର
ଯେତେକ ହୋଇବ ଉପର ।

୭

ସେମାନ ସବୁ ମୁଁ ଜାଣଇଁ
ପରମ ଆତ୍ମା ଅଟୁ ତୁହି ।
ମାୟାରେ ଯେଉଁ କାର୍ଯ୍ୟପାଇଁ
ମନୁଷ୍ୟ ଦେହ ଅଛୁ ବହି ।
ବ୍ରହ୍ମା ବୋଲରେ ଯହିଁପାଇଁ
ଅବତାର ଯେ ଅଛୁ ହୋଇ ।
ଅଇଲ ଅରଣ୍ୟକୁ ଯାହା
କରିବ ଯେଉଁମାନ ତାହା ।
ସବୁ ତୋ ଚରଣ ସେବାରେ
ଜାଣଇଁ ମୁଁ ଜ୍ଞାନଦୃଷ୍ଟିରେ ।
କି କହିବି ହେ ରଘୁନାଥ
ଆଜ ମୁଁ ହୋଇଲି କୃତାର୍ଥ ।
ତୁ ପରମାତ୍ମା ଅଜ ତୋତେ
ଦେଖିଲି ଯେଣୁ କରି ନେତ୍ରେ ।
ଜାନକୀ ଲକ୍ଷ୍ମଣଙ୍କ ତୁଲେ
ଶ୍ରୀରାମ ନମି ତା କହିଲେ ।
ତୋ ମୁନି ତୋ ପ୍ରସାଦୁଁ କରି
ଯହିଁ ଅମ୍ଭେ ବଞ୍ଚୁ ତୁମ୍ଭରି ।
ଏମନ୍ତ ରୂପେ କଥା ହୋଇ
ରାତ୍ରକ ସେହିଠାରେ ରହି ।
ସେଠାରୁ ଗଲେ ପ୍ରଭାତରେ
ମିଳିଲେ ଯମୁନା ତଟରେ ।
ଋଷି ବାଳକେ ଭେଳା ଦେଲେ
ତହିଁରେ ନଦୀ ପାରି ହେଲେ ।
ଗଲେ ସେ କହିଥିଲା ବାଟେ
ପ୍ରବେଶ ହେଲେ ଚିତ୍ରକୂଟେ
ତହିଁରେ ବାଲ୍ମୀକି ଆଶ୍ରମ
ଏ ରୂପେ ଦେଖିଲେ ଶ୍ରୀରାମ ।
ବହୁତ ଋଷିମାନେ ପୂର୍ଣ୍ଣ
ହୋଇ ସେ କରୁଛନ୍ତି ଧ୍ୟାନ ।

ମୃଗ ଯେ ଚଢ଼େଇ ତହିଁରେ
ଅଛନ୍ତି ବିବିଧ ପ୍ରକାରେ ।
ସର୍ବଦା ଫଳମୂଳମାନେ
ସମ୍ପୂର୍ଣ୍ଣ ହୋଇଛନ୍ତି ବନେ ।
ସେଠାରେ ବାଲ୍ମୀକି ଋଷି
ମୃଗଚର୍ମାସନରେ ଛନ୍ତି ବସି ।
ଦେଖି ଲକ୍ଷ୍ମଣ ସୀତା ତୁଲେ
ଶ୍ରୀରାମ ନମସ୍କାର କଲେ ।
ସେ ଋଷି କରି ଦରଶନ
ଜାଣିଲେ ଏ ରମାରମଣ ।
ଲୋକରେ ସୁନ୍ଦର ଅଟନ୍ତି
ସୀତା ଲକ୍ଷ୍ମଣ ତୁଲେ ଛନ୍ତି ।
ଜଟାମୁକୁଟରେ ସୁନ୍ଦର
କନ୍ଦର୍ପ ପରାୟେ ଆକାର ।
ବିକାଶ ପଦ୍ମ ପ୍ରାୟେ ନେତ୍ର
ଏରୂପେ ଦେଖି ତପୋବୃଦ୍ଧ
ହୋଇଲେ ପରମ ବିସ୍ମୟେ
ହରଷେ ଅଶ୍ରୁଜଳ ବହେ ।
ନେତ୍ରେ ପଲକ ପଡୁନାହିଁ
ଉଠି ସେ ଅତି ତୋଷ ହୋଇ ।
ଯେ ପରମାନନ୍ଦ ମୂରତି
ଜଗତେ ଯେ ପୂଜ୍ୟ ଅଟନ୍ତି ।
ଏମନ୍ତ ଶ୍ରୀରଘୁନନ୍ଦନ
ତାହାଙ୍କୁ କରି ଆଲିଙ୍ଗନ ।
ପୂଜିଲେ ଷଡ଼ଅର୍ଘ୍ୟ ଦେଇ
ଭକ୍ତିରେ ଗଦ ଗଦ ହୋଇ ।
ଉତ୍ତମ ଫଳମୂଳମାନ
ବହନ କରାଇ ଭୋଜନ ।
ବସାନ୍ତେ ସେ ତାଙ୍କୁ ସୁଖରେ
ଶ୍ରୀରାମ ଏଥୁ ଅନନ୍ତରେ ।

କରଯୋଡ଼ଣ ବିନୟରେ
କହିଲେ ମୁନିଙ୍କ ଅଗରେ ।
ପିଅର ଅନୁଜ୍ଞା ଦେଲକୁ
ଅଇଲୁ ଦଣ୍ଡକବନକୁ ।
ଏହା ତ ସବୁ ଜାଣ ତୁମ୍ଭେ
ଆଜ ତା କ କହିବୁ ଅମ୍ଭେ ।
ଜାନକୀ ତୁଲେ ଧନାକେତେ
ସୁଖେ ରହିବା ପାଇଁ ମୋତେ ।
ସ୍ଥାନ କହ ହେ ମୁନିବର
ସେଠାରେ କରିବି ମନ୍ଦର ।
ଶୁଣି ସେ ଶ୍ରୀରାମ ବଚନ
ହସି କହିଲେ ତପୋଧନ ।
ସମସ୍ତ ଲୋକମାନଙ୍କର
ସ୍ଥାନ ତୁ ଅଟୁ ରଘୁବୀର ।
ସମସ୍ତ ଭୂତମାନେ ତୋର
ନିଶ୍ଚୟେ ଅଟନ୍ତି ମନ୍ଦର ।
ଏଥି ଯା କହିଲ ହେ ବୀର
ସମାନ ସ୍ଥାନ ଏ ତୁମ୍ଭର ।
ବିଶେଷେ ଜାନକୀ ସଙ୍ଗତେ
ରହିବା ପାଇଁ ଧନାକେତେ ।
ପଚାରିବାକୁ ହେଲା ଯାହା
କହିବି ଏବେ ଶୁଣ ତାହା ।
ସମଦରଶୀ ଶାନ୍ତ ତୋତେ
କାହାକୁ ହିଂସା ନାହିଁ ଚିତ୍ତେ ।
ତୋତେ ଭଜନ୍ତି ଯେଉଁ ନର
ତାଙ୍କ ହୃଦୟ ତୋ ମନ୍ଦର ।
ଧର୍ମ ଅଧର୍ମ ନ ବିଚାରି
ତୁମ୍ଭଙ୍କୁ ମାତ୍ର ରାବଣାରି ।
ଭଜନ୍ତି ଯେ ଅନୁବରତ
ସେ ଲୋକମାନଙ୍କର ଚିତ୍ତ ।
ଜାନକୀ ସହିତେ ତୁମ୍ଭର
ଅଟଇ ନିୟତ ମନ୍ଦର ।
ଯେ ନିତ୍ୟେ ତୋ ମନ୍ତ୍ର ଜପଇ
ତୋତେ ଶରଣ ପଶିଥାଇ ।
ବିଷୟୀ ଶ୍ରଦ୍ଧା ନୋହେ ଯାର
ତାଙ୍କ ହୃଦୟ ତୁମ୍ଭ ଘର ।
ଯେ ଅହଙ୍କାର ନ କରଇ
ରାଗ ଶତ୍ରୁ ଭାବ ନ ଥାଇ ।
ଢେଲା ସୁବର୍ଣ୍ଣ ଦୁଇଠାଇଁ
ବୁଦ୍ଧି ହୁଅଇ ସମ ହୋଇ ।
ତାଙ୍କ ହୃଦୟ ତୋ ମନ୍ଦର
ତହିଁରେ ରହ ରଘୁବୀର ।
ତୋଠାରେ ମନ ବୁଦ୍ଧି ଦେଇ
ସଦାକାଳରେ ତୁଷ୍ଟ ହୋଇ ।
ସମସ୍ତ କର୍ମ ତୋହ ଠାଇଁ
ଯେ ନିବେଦନ କରିଥାଇ ।
ସେ ଜନ ମନଟି ତୁମ୍ଭର
ନିଶ୍ଚୟେ ଅଟଇ ମନ୍ଦର ।
ଯେ ଲୋକ ସମ୍ପତ୍ତିକି ପାଇ
ପରକୁ ଦୁଃଖ ନ ଦିଅଇ ।
ଆପଣ ହରଷ ନୁହଇ
ସବୁହିଁ ମାୟା ଯେ ଜାଣଇ ।
ଏ ଘେନି ଚରଣେ ତୁମ୍ଭର
ସନ୍ତତ ଭଜଇ ସେ ନର ।
ଯେ ଜନ୍ମ ଆଦି ଛ'ବିକାର
ଜାଣିଲ ଏ ନୋହେ ଆତ୍ମାର ।
ଏ ଛଅ ଅଟନ୍ତି ଦେହର
ଏ ରୂପେ ଜାଣେ ଯେଉଁ ନର ।
କ୍ଷୁଧା ତୃଷାରେ ଯେଉଁ ପ୍ରାସ
ଏ ପ୍ରାଣ ବୁଦ୍ଧିର ଅବଶ ।

ଏମନ୍ତ ଭକ୍ତ ଯେ ଜାଣଇ
ସଂସାର ଧର୍ମ ଛାଡ଼ି ଥାଇ ।
ଏମନ୍ତ ଲୋକମାନଙ୍କର
ହୃଦୟେ ଅଟେ ଯେ ତୁମ୍ଭର ।
ସବୁ ଲୋକ ଅନ୍ତଃକରଣ
ମଧ୍ୟରେ ରହିଛ ଆପଣ ।
ଚୈତନ୍ୟ ସ୍ୱରୂପକୁ ବହି
ସଦା କାଳରେ ଅଛ ରହି ।
ଅବିନାଶୀହିଁ ଅଟୁ ତୁହି
ତୋହର ଆଦ୍ୟ ପ୍ରାନ୍ତ ନାହିଁ ।
ତୋ ବିନୁ ପଦାର୍ଥ ନାହାନ୍ତି
ସମସ୍ତେ ତୁମ୍ଭଙ୍କୁ ସେବନ୍ତି ।
ଏ ରୂପେ ତୋତେ ଯେଉଁ ନର
ହୃଦେ ଦେଖନ୍ତି ନିରନ୍ତର ।
ଜାନକୀ ତୁଲେ ରଘୁବୀର
ତାଙ୍କ ହୃଦୟେ ବାସ ତୋର ।
ଯେଉଁ ଲୋକ ତୁମ୍ଭର ଶନ୍ତ୍ୱାରେ
ଅଭ୍ୟାସ କରେ ନିରନ୍ତରେ ।
ନିଷ୍ଠା ତୋ ଚରଣ ସେବାରେ
ତୁମ୍ଭର ନାମ କୀର୍ତ୍ତନରେ ।
ନିଷ୍ପାପ ଅଟେ ଯେଉଁ ନର
ତାଙ୍କ ମନଟି ତୁମ୍ଭ ଘର ।
ତୋ ନାମ ମହିମା ରାଘବ
କେ ଅବା କହଣ ପାରିବ ।
ଯେଉଁ ମହିମା ନାମ ଧ୍ୟାୟି
ହୋଇଲି ବ୍ରହ୍ମ ଋଷି ମୁହିଁ ।
ପୂର୍ବେ ମୁଁ ଶବର ପଲ୍ଲୀରେ
ବଢ଼ିଲି ତାଙ୍କର କୁଳରେ ।
ଜାତରେ ମାହକ ବ୍ରାହ୍ମଣ
କଲି ଶବର ଆଚରଣ ।
ଶବରଣୀଙ୍କ ବଶ୍ୟ ହେଲି
ବହୁତ ପୁତ୍ର ଜାତ କଲି ।
ଚୋରଙ୍କ ସଙ୍ଗେ ସଙ୍ଗ ହୋଇ
ରାହାରେ ଅଣେଇଁ ଚୋରାଇ ।
ଧନୁ ମାର୍ଗଣ ଧରି କରେ
ବାଟ ଜଗଇ ଦିବସରେ ।
ପ୍ରାଣ ହରଇ ପ୍ରାଣୀଙ୍କର
ଆଣଇ ଦ୍ରବ୍ୟ ତାହାଙ୍କର ।
ଏମନ୍ତେ ଏକଦିନେ ପୁଣ
ରହିଥିଲି ବାଟ ଜଗିଣ ।
ଅନଳ ପ୍ରାୟେ ତେଜମୟେ
ସପତ ଋଷି ଏ ସମୟେ ।
ପ୍ରବେଶ ହେଲେ ଦେଖି ମୁହିଁ
ତାଙ୍କ ସାମଗ୍ରୀ ନେବା ପାଇଁ ।
ରହ ରହ ବୋଲି ଡାକିଲି
ତାଙ୍କ ଉପରକୁ ଧାଇଁଲି ।
ସେମାନେ ମୋତେ ଅନାଇଲେ
କାହିଁକି ଆସୁଛୁ ବୋଇଲେ ।
ଏଥକୁ ତାଙ୍କୁ ମୁଁ କହିଲି
ତୁମ୍ଭ ସାମଗ୍ରୀ ନେବି ବୋଲି ।
ଭାରଯା ପୁତ୍ରମାନେ ମୋର
ମନ୍ଦିରେ ଅଛନ୍ତି ଅପାର ।
କ୍ଷୁଧାରେ ହେଉଥିବେ ଦହି
ତାଙ୍କୁ ପୋଷିବି ଏହା ନେଇ ।
ନିତ ଏ ରୂପେ ତାଙ୍କ ପାଇଁ
ବନ ପର୍ବତେ ବୁଲୁଥାଇ ।
ଏମନ୍ତ ମୋହଠାରୁ ଶୁଣି
ମୋତେ ବୋଇଲେ ସେହୁ ପୁଣି ।
ଏବେ କୁଟୁମ୍ବଠାରୁ ଯାଇ
ପଚାର ଆସ ବେଗ ହୋଇ ।

ବୋଲିବୁ ଯେତେ ପାପ ମୋର
ହେଉଛୁ ଏଥିରେ ତୁମ୍ଭର ।
ଭାଗ ହୋଇବ କି ନୋହିବ
ଏମନ୍ତ ବିଚାର କହିବ ।
ଏ ରୂପେ ସବୁ କୁଟୁମ୍ବଙ୍କୁ
ପଚାରି ଆସିବୁ ଏଠାକୁ ।
ଏଠାରେ ତୋ ଆସିବା ଯାଏ
ରହିଥିବୁଁ ଅମ୍ଭେ ନିଶ୍ଚୟେ ।
ତାହା ମୁଁ ଶୁଣି ବେଗେ ଗଲି
ସବୁଙ୍କୁ ଡାକି ପଚାରିଲି ।
ବୋଇଲେ ସେ ପାପ ତୁମ୍ଭର
ଦ୍ରବ୍ୟରେ ସମ୍ବନ୍ଧ ଆମ୍ଭର ।
ତାହା ଶୁଣି ବୈରାଗୀ ହେଲି
ବିଚାର ତାଙ୍କ ଠାକୁ ଗଲି ।
ଯହୁଁ ସେ ଋଷିମାନଙ୍କର
ଦର୍ଶନ ହୋଇଲା ମୋହର ।
ତହିଁରେ ନିର୍ମଳ ତୃମା ଯେଣୁ
ଅନ୍ତଃକରଣ ହେଲା ତେଣୁ ।
ପକାଇ ଦେଇ ଧନୁଶର
ପାଦରେ ପଡ଼ିଲି ତାଙ୍କର ।
ବୋଇଲି ନରକରୁଁ ମୋତେ
ରକ୍ଷାକର ହେ ତପୋବନ୍ତେ ।
ଏମନ୍ତ ଶୁଣି ମୁନିମାନେ
ମୋତେ ବୋଇଲେ ତୋଷମନେ
ଉଠ ଉଠ ତୋ ଭଲ ହେଉ
ସାଧୁ ସଙ୍ଗ ବ୍ୟର୍ଥ ନୋହୁ ।
କହିବା କଥା ତତ୍ତ୍ୱ ତୋତେ
ତୁ ମୋକ୍ଷ ହୋଇବୁ ଯେମନ୍ତେ ।
ଏମନ୍ତ କହି ପୁଣି ମୋତେ
ବିଚାର କଲେ ତାଙ୍କ ଚିତ୍ତେ ।

ଏ ବଡ଼ ଦୁଃଶୀଳ ଅଟଇ
ସାଧୁ ସଙ୍ଗକୁ ଯୋଗ୍ୟ ନୋହି ।
ତଥାପି ଆମଠାରେ ଯେଣୁ
ଶରଣ ପଶିଲା ଏ ତେଣୁ ।
ଏହାକୁ ମୋକ୍ଷମାର୍ଗ ଦେବା
ନରକୁ ଉଦ୍ଧାର କରିବା ।
ଏମନ୍ତ ବୋଲି ହେ ଶ୍ରୀରାମ
ବିପରୀତ କରି ତୋ ନାମ ।
ଉପଦେଶ ସେ ମୋତେ ଦେଲେ
ତୁ ମରା ଜପୁଥା ବୋଇଲେ ।
କହିଲେ ଏକମନା ହେବୁ
ସଦାକାଳରେ ଜପୁଥିବୁ ।
ଏଠାରେ ଥିବୁଟି ନିଶ୍ଚୟେ
ଅମ୍ଭର ଆସିବାର ଯାଏଁ ।
ଗଲେ ସେମାନେ ଏହା କହି
ମୁଁ ପୁଣି ସେହିଠାରେ ରହି ।
ସେ ରୂପେ ବସି ଜପ କଲି
ବାହାର ଚେଷ୍ଟା ପାସୋରିଲି ।
ବହୁତ କାଳ ଯହୁଁ ଗଲା
ମୋ ଦେହ ଉଇ ହୁଙ୍କା ହେଲା ।
ସହସ୍ରେ ଯୁଗର ଉତ୍ତାରେ
ସେ ଋଷି ଆସିଣ ସେଠାରେ ।
ବାହାର ହୁଅ ବୋଲି ମୋତେ
ଯହୁଁ ସେ ଡାକିଲେ ସମସ୍ତେ ।
ଶୁଣି ମୁଁ କୁହୁଡ଼ିରୁ ଯେହ୍ନେ
ରବି ବାହାର ହୁଏ ତେହ୍ନେ ।
ବେଗେ ମୁଁ ବାହାର ହୋଇଲି
ତାହାଙ୍କୁ ନମସ୍କାର କଲି ।
ଏ ରୂପେ ଦେଖି କରି ମୋତେ
ସନ୍ତୋଷେ ବୋଇଲେ ସମସ୍ତେ ।

ବଲ୍ମୀକରୁ ଜାତ ଯହୁଁ
ବାଲ୍ମୀକି ନାମ ତୋର ହେଉ ।
ଏ ରୂପେ ମୋତେ ଆଜ୍ଞା ଦେଲେ
ଦେବଲୋକକୁ ସୁଖେ ଗଲେ ।
ଏଣୁ ନାମ ପ୍ରଭୁଙ୍କୁଁ ତୋର
ହେଲି ମୁଁ ଏମନ୍ତ ପ୍ରକାର ।
ଏବେ ପ୍ରତ୍ୟକ୍ଷେ ଦେଖି ତୋତେ
ଜାନକୀ ଲକ୍ଷ୍ମଣ ସହିତେ ।
ମୁକତ ହୋଇଲି ନିଶ୍ଚୟେ
ନାହିଁ ଏ କଥାରେ ସଂଶୟେ ।
ଏବେ ଆସିବା ହେଉ ବୀର
ସ୍ଥାନ ଦେଖାଇ ଦେବି ତୋର ।
ଏମନ୍ତ କହି ମହାମୁନି
ଲକ୍ଷ୍ମଣ ଶିଷ୍ୟମାନ ଘେନି ।
ପର୍ବତ ଗଙ୍ଗା ମଧ୍ୟେ ହେଲେ
ଶାଳା ଯୋଡ଼ାଏ ତୋଳାଇଲେ ।
ତହିଁ ମଧ୍ୟରୁ ଏକ ଶାଳା
ପୂର୍ବ ପଶ୍ଚିମ ହୋଇ ହେଲା ।
ଦ୍ୱିତୀୟ ଉତ୍ତର ଦକ୍ଷିଣ
ଏ ରୂପେ କଲେ ନିରମାଣ ।
ରାମ ଲକ୍ଷ୍ମଣ ବଇଦେହୀ
ରହିଲେ ଅତି ସୁଖେ ତହିଁ ।
ବାଲ୍ମୀକି ପ୍ରତ୍ୟହ ପୂଜନ୍ତି
ଏମନ୍ତ ହୋଇ ରଘୁପତି ।

ମୁନିମାନଙ୍କ ସଙ୍ଗତରେ
ରହିଲେ ପରମ ସୁଖରେ ।
ମହେନ୍ଦ୍ର ଶଚୀ ସଙ୍ଗତରେ
ଦେବତାମାନଙ୍କ ତୁଲରେ ।
ବିହାର କରଇ ସ୍ୱର୍ଗରେ
ରହିଲେ ଏ ସେହି ପ୍ରକାରେ ।
ବୋଲଇ ହଳଧର ଦାସ
ସୁଜନ ଜନେ ବେଗେ ଆସ ।
ଶିବକଣ୍ଠର କନ୍ଦରାରେ
ପଞ୍ଚକୁଟୀରେ ଗଙ୍ଗାତୀରେ ।
ପରମ ସୁଖ ଶୋଭା ହର
ଜଟା ବକଳ ବ୍ୟାଜେ ଧର ।
ପଳାଇ ଯାଇ ରଘୁପତି
ତହିଁ ଭିତରେ ଲୁଚିଛନ୍ତି ।
ମନ ଦୂତକୁ ପଠାଇ
ତାହାଙ୍କୁ ଅଣିମା ଧରାଇ ।
ହୃଦେ ବନ୍ଦ କରି ରଖିବା
କି ରୂପେ ଯିବ ତା ଦେଖିବା ।
ଜାନକୀ ଯୁତ ଶ୍ରୀରାମର
ଚରଣ ପଙ୍କଜେ ମୋହର ।
ଭକତି ନିରନ୍ତରେ ହେଉ
କୋଟି ଜନ୍ମରେ ଆନ ନୋହୁ ।
ବଂଶଉତ୍ତର ବେନି ଶତ
ପଦ ଏ ହରୁ ସବୁ ଶତ୍ରୁ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ପାର୍ବତୀ ବୋଲେ ବିଶ୍ୱନାଥ
କି କଲେ ପୁଣି ଦଶରଥ ।
ଭରତ କି ରୂପେ ଆଇଲେ
ଏମାନ ଶୁଣି କି ବୋଇଲେ ।
ଏ କଥା କହ ମହେଶ୍ୱର
ମୋ ମନ ବ୍ୟଥା ବେଗେ ହର ।
ଶୁଣି କହିଲେ ତ୍ରିପୁରାରି
ଶ୍ରୀରାମ ଗଙ୍ଗା ହୋନ୍ତେ ପାର ।
ସୁମନ୍ତ ରଥରେ ବସିଲେ
ଦୁଃଖେ ପୁରକୁ ଲେଉଟିଲେ ।
ନୟନୁ ଲୁହ ବହୁଅଛି
ବସ୍ତ୍ରେ ବଦନ ଘୋଡ଼ାଇଛି ।
ଏ ରୂପେ ମିଳି ଅଯୋଧ୍ୟାରେ
ରାଜାଙ୍କ ଗୃହ ସିଂହଦ୍ୱାରେ ।
ସେ ଅନ୍ତଃପୁର ମଧ୍ୟେ ହେଲା
ଜୟ ଶବଦେ ସ୍ତୁତି କଲା ।
ରାଜାଙ୍କୁ ଦେଖି ନୟନରେ
ଦଣ୍ଡ ପ୍ରଣାମ କଲା ଥରେ ।
ସୁମନ୍ତଙ୍କୁ ରାଜା ଦେଖିଲେ
ଅଜ୍ଞାନ ହୋଇ ପଚାରିଲେ ।
ସୀତା ଲକ୍ଷ୍ମଣ ରଘୁପତି
କେଉଁ ସ୍ଥଳରେ ରହିଛନ୍ତି ।
ତୁମ୍ଭେ ଛାଡ଼ିଲ କେଉଁଠାରେ
ପାପୀ ମୁଁ ମୋହର ଆଗରେ ।
କି କହିବାକୁ କହିଛନ୍ତି
ସେ କଥା କହ ବେଗେ ମନ୍ତ୍ରୀ ।
ଏମନ୍ତ ତାଙ୍କୁ ପଚାରିଲେ
ପୁଣି ରାମଙ୍କୁ ଚିନ୍ତା କଲେ ।

ହା ଗୁଣନିଧି ରଘୁବୀର
ହା ରାମଚନ୍ଦ୍ର ପ୍ରାଣ ମୋର ।
ହା ପ୍ରିୟବାଦିନୀ ଜାନକି
ତୁମ୍ଭଙ୍କୁ ସତେ ଦେଖିବି କି ।
ଦୁଃଖ ସମୁଦ୍ରେ ବୁଡ଼ି ମୁହିଁ
ମରୁଛି ଦେଖୁ ନାହିଁ କେହି ।
ଏ ରୂପେ ବହୁତ କାନ୍ଦିଲେ
ଖେଦ ଜଳଧିରେ ବୁଡ଼ିଲେ ।
ଏମନ୍ତ ଦେଖି ମନ୍ତ୍ରୀବର
କହଇ ଯୋଡ଼ି ବେନି କର ।
ରାମ ଲକ୍ଷ୍ମଣ ବଇଦେହୀ
ତିନିଙ୍କି ରଥରେ ବସାଇ ।
ଏଠାରୁ ବାହାର ତ ହେଲି
ବହୁତ ଦୂର ପଥ ଗଲି ।
ଶୃଙ୍ଗବେର ପୁର ନିକଟେ
ପ୍ରବେଶ ହେଲି ଗଙ୍ଗା ତଟେ ।
ଗୁହ ଶବର ଆସି ହେଲେ
ବହୁତ ଫଳ ମୂଳ ଦେଲେ ।
ଶ୍ରୀରାମ ହାତେ ତା ଛୁଇଁଲେ
ସେମାନ ବାହୁଡ଼ାଇ ଦେଲେ ।
ଶବର ହାତେ ବଟ କ୍ଷୀର
ଆଣାଇ କଲେ ଜଟା ଭାର ।
କେବଳ ଜଳପାନ କଲେ
କୁଶ ପତ୍ର ପାଡ଼ି ଶୋଇଲେ ।
ଶଯ୍ୟାରୁ ଉଠିଣ ପ୍ରଭାତେ
ଶ୍ରୀରାମ ଆଜ୍ଞା ଦେଲେ ମୋତେ ।
ରାଜାଙ୍କ ସମ୍ମୁଖରେ କହିବ
ମୋ ପାଇଁ ଶୋକ ନ କରିବ ।

ଅଯୋଧ୍ୟା ପୂଚ୍ଛାଉଁ ମୋହର
ବଚନେ ସୁଖ ହେବ ଅପାର ।
କଉଶଲ୍ୟାଙ୍କୁ ଜଣାଇବ
ମୋ ପାଇଁ ଶୋକ ନ କରିବ ।
ବୃଦ୍ଧ ଚନ୍ତାର୍ଥୀ ଯେ ନୃପତି
ତାଙ୍କୁ କରାଉଥିବ ଶାନ୍ତି ।
ରାଜା କୌଶଲ୍ୟା ସୁମିତ୍ରାଙ୍କୁ
ଆଉ ଯେ ମାତାମାନେ ତାଙ୍କୁ ।
ସବୁର ପାଦେ ନିରନ୍ତର
କରୁଅଛି ମୁଁ ନମସ୍କାର ।
ଏଥି ଉତ୍ତାରେ ବଇଦେହୀ
ଶୋକରେ ଗଦ ଗଦ ହୋଇ ।
ଲୋତକ ଯାଉଥିଲା ବହି
ରାମଙ୍କୁ କହିଲେ ଅନାଇ ।
କଉଶଲ୍ୟାଙ୍କ ପାଦେ ନିତ୍ୟ
କହିବ ମୋର ଦଣ୍ଡବତ ।
ରାଜୀ ସୁମିତ୍ରା କଇକେୟୀ
ଯେତେ ଅଛନ୍ତି ମହାଦେଈ ।
ସବୁର ଚରଣେ ମୋହର
କହିବା ହେବ ନମସ୍କାର ।
ଏତେ କହି ସେ ଶୋକ କଲେ
ମୁଖ ତଳକୁ ପୋତି ଦେଲେ ।
ଲକ୍ଷ୍ମଣ କିଛି ନ କହିଲେ
ଅଧୋବଦନ ହୋଇଥିଲେ ।
ତିନେହେଁ କରୁଥିଲେ ଶୋକ
ବହି ଯାଉଥିଲା ଲୋତକ ।
ଏ ରୂପେ ନାବରେ ବସିଲେ
ଗଙ୍ଗା ସେପାର ହୋଇ ଗଲେ ।
ଅଦୃଶ୍ୟ ହେଲା ଯାଏ ଥିଲା
ଦୁଃଖିତ ହୋଇ ଲେଉଟିଲା ।

ଏମନ୍ତ ଶୁଣନ୍ତେ କୌଶଲ୍ୟା
କାନ୍ଦଣ ରାଜାଙ୍କୁ କହିଲା ।
ସୁଭଗା ଭାର୍ଯ୍ୟା କଇକେୟୀ
ତାହାଙ୍କୁ ଯେବେ ବର ଦେଇ ।
ସମସ୍ତ ରାଜ୍ୟ ସମର୍ପିଲ
ଏ କଥା ତୁମ୍ଭେ ଭଲ କଲ ।
ମୋହ ପୁତ୍ରକୁ କାହିଁ ପାଇଁ
ବନକୁ ଦେଲ ପଠାଇ ।
ଆପଣା ସ୍ୱଏଁ ତ କରିଛ
ଏବେ କାହିଁକି କାନ୍ଦୁଅଛ ।
ନୃପତି ଶୁଣି ଏ ବଚନ
ବ୍ରଣରେ ଅନଳ ଯେସନ ।
ଲାଗଇ ସେ ପ୍ରକାର ହୋଇ
ଲୋତକ ଯାଉଅଛି ବହି ।
ଏମନ୍ତ ହୋଇ ସେ ରୁହିଲେ
ଦୁଃଖେ କୌଶଲ୍ୟାଙ୍କୁ କହିଲେ ।
ମୁହିଁତ ମରୁଛି ଦୁଃଖରେ
ତୁ କିପାଁ ଏ ଦୁଃଖ ଉପରେ ।
ଦୁଃଖ ଦେଉଅଛୁ ପୁଣ
ଯାହା କହିବା ତାହା ଶୁଣ ।
ଏହି ଶୋକରେ ଗୋ ଅବଶ୍ୟ
ପ୍ରାଣ ହୋଇବ ମୋର ନାଶ ।
ତପସ୍ୱୀ ଜଣେ କ୍ରୋଧ ବହି
ଦାରୁଣ ଶାପ ଅଛି ଦେଇ ।
ପୂର୍ବେ ଆମ୍ଭ ଯୁବାକାଳରେ
ମୃଗୟା ନିମିତ୍ତେ ରାତ୍ରରେ ।
ଧନୁ ଧରି ବନକୁ ଗଲୁଁ
ନଦୀ କୂଳରେ ବୁଲୁ ଥିଲୁ ।
ଏମନ୍ତେ ଏକ ଋଷି ପୁତ୍ର
ତା ପିତା ଜନନୀ ତୃଷାର୍ତ୍ତ ।

ହେଲାକୁ ଜଳ ନେବା ପାଇଁ
କୁମ୍ଭ ଘେନି ବାହାର ହୋଇ ।
ଅର୍ଦ୍ଧ ରାତ୍ରରେ ଅନ୍ଧକାରେ
ପ୍ରବେଶ ହୋଇ ନଦୀ ତୀରେ ।
ଜଳରେ କୁମ୍ଭ ବୁଡ଼ାଇଲା
ତହୁଁ ଯେ ଶବଦ ଶୁଭିଲା ।
ମାତଙ୍ଗ ଜଳ ପାନ ପ୍ରାୟେ
ତାହା ମୁଁ ମଣିଲି ନିଶ୍ଚୟେ ।
ଏଣୁ ଶବଦ ଭେଦୀ ଶର
କରନ୍ତେ ସେଠାକୁ ପ୍ରହାର ।
ମନୁଷ୍ୟ ଶବଦ ଶୁଭିଲା
ମଲି ମୁଁ ଏମନ୍ତ ବୋଇଲା ।
ପୁଣି ବୋଇଲା କାହାଠାଇଁ
ଅପରାଧ ତ କରି ନାହିଁ ।
ମୋତେ କି ନିମିତ୍ତେ ମାଇଲା
ଏଥୁଁ କି କାର୍ଯ୍ୟ ତାର ହେଲା ।
ମୋ ପିତା ମାତା ଜଳ ପାଇଁ
ମୋତେ ଯେ ଥିବେ ବାଟ ଚାହିଁ ।
ଏମନ୍ତ ଶୁଣି ତ୍ରସ୍ତ ହୋଇ
ମୁଁ ମନ୍ଦ ମନ୍ଦ ହୋଇ ଯାଇ ।
ସେ ଋଷି ପୁତ୍ର ପାଶେ ହେଲି
ଏମନ୍ତ ବଚନ କହିଲି ।
ମୁଁ ଦଶରଥ ରଜା ମୋତେ
ନ ଜାଣି ବଧିଲି ମୁଁ ତୋତେ ।
କହି ମୁଁ ଗଦ ଗଦ ହେଲି
ତାହାର ଚରଣେ ପଡ଼ିଲି ।
ସେ ମୋତେ ବୋଇଲେ ହେ ବୀର
ଏ ବ୍ରହ୍ମହତ୍ୟା ନୋହେ ତୋର ।
ଭୟ ନ କର ଏଣୁ କିଛି
ବୈଶ୍ୟ ମୁଁ ତପସ୍ୟା କରୁଛି ।

ପୀଡ଼ିତ ହୋଇ ତୃଷାଗ୍ନିରେ
ମୋ ପିତା ମାତା ଛନ୍ତି ଘରେ ।
ବହନ ଏବେ ତୁମ୍ଭେ ଯାଅ
ତାହାଙ୍କୁ ନେଇ ଜଳ ଦିଅ ।
ନୋହିଲେ କ୍ରୋଧ ହେବେ ଯେବେ
ଭସ୍ମ ହେବଟି ତୁମ୍ଭେ ତେବେ ।
ଏବେ ତାହାଙ୍କୁ ଦେଇ ନୀର
ବହନ କରି ନମସ୍କାର ।
ମୋତେ ମାରିବା କଥା ବେଗେ
କହିବା ହେଉ ତାଙ୍କ ଆଗେ ।
ମୋଠାରୁ କାଢ଼ ଏବେ ଶର
ପ୍ରାଣ ଛାଡ଼ିବ ବେଗେ ମୋର ।
ଏ ରୂପେ ଶୁଣି ତା ଉତ୍ତର
ତାହା ଦେହରୁ କାଢ଼ି ଶର ।
ଜଳ କଳଶ ମୁଁ ଘେନିଲି
ତା ପିତା ମାତାଠାକୁ ଗଲି ।
ଦେଖିଲି ଦୁହେଁ ବଡ଼ ବୃଦ୍ଧ
ବିଶେଷେ ଅଟନ୍ତି ସେ ଅନ୍ଧ ।
କ୍ଷୁଧା ତୃଷାରେ ପୀଡ଼ା ପାଇ
ହେଉ ଅଛନ୍ତି କୁହାକୁହି ।
ପୁତ୍ର ଯେ ଜଳ ପାଇଁ ଗଲା
ଏତେ ବିଳମ୍ବ କିପାଁ କଲା ।
ଆମ୍ଭ ଦୁହିଁଙ୍କର ତ କେହି
ତା ବିନୁ ଅନ୍ୟ ଗତି ନାହିଁ ।
ଆମ୍ଭେ ତ ଦୁଃଖୀ ବଡ଼ ବୃଦ୍ଧ
ବିଶେଷେ ହୋଇ ଥାଇ ଅନ୍ଧ ।
ଏବେ ଯେ ତୃଷାରେ ଆମ୍ଭର
ପୀଡ଼ିତ ହେଉଛି ଶରୀର ।
ନିତ୍ୟ ତ ଆମ୍ଭ ବେନିଠାଇଁ
ସେହି ତ ଭକ୍ତି କରିଥାଇ ।

ଏବେ ଏମନ୍ତ କହାଁ କଲ
ଅମ୍ଭଙ୍କୁ ଛାଡ଼ି ପଳାଇଲ ।
ଏମନ୍ତ ସମୟେ ସେ ମୁନି
ଶୁଣି ମୋ ଚରଣର ଧ୍ୱନି ।
ମୋତେ ବୋଇଲେ ଅହେ ସୁତ
ବିଳମ୍ବ କଲ ତ ବହୁତ ।
ବେଗେ ଅମ୍ଭଙ୍କୁ ଜଳ ଦିଅ
ତୁମ୍ଭେ ମଧାଏ ଜଳ ପିଅ ।
ତନୟ ପ୍ରାୟେ ବୁଝି ମୋତେ
ପ୍ରୀତିରେ ଏମନ୍ତ କହନ୍ତେ ।
ପାଖକୁ ଯାଇ କରଯୋଡ଼ି
ବିନୟ ହୋଇ ପାଦେ ପଡ଼ି ।
କହିଲି ମୁଁ ପୁତ୍ର ନୁହଇ
ଅଯୋଧ୍ୟା ରଜା ମୁଁ ଅଟଇ ।
ମୋହର ଦଶରଥ ନାମ
ମୁଁ ବଡ଼ ପାପିଷ୍ଠ ଅଧମ ।
ରାତ୍ରରେ ମୃଗୟା ଅଇଲି
ନଦୀ କୂଳରେ ଲୁଚିଥିଲି ।
ହାତୀର ଧ୍ୱନି ପ୍ରାୟେ ମୀରେ
ଶୁଣି ଶବଦଭେଦୀ ଶରେ ।
ବିନ୍ଧନ୍ତେ ଶବଦ ଶୁଭିଲା
ମଲି ମଲି ବୋଲି ବୋଇଲା ।
ଏମନ୍ତ ଶୁଣି ମୁଁ ଭୟରେ
ପ୍ରବେଶ ହୋଇଲି ସେଠାରେ ।
ଦେଖିଲି ଜଟା ଫିଟି ଅଛି
ବାଳକ ତପସ୍ୱୀ ପଡ଼ିଛି ।
ଭୟରେ ତା ପାଦେ ପଡ଼ିଲି
ରଖ ରଖ ବୋଲି ବୋଇଲି ।
ସେ ମୁନି ଆଜ୍ଞା ଦେଲେ ମୋତେ
ଏ ବ୍ରହ୍ମ ହତ୍ୟା ବୋଲି ଚିତ୍ତେ ।

ଏଥିରେ ଭୟ ତୁ ନ ପାଅ
ମୋ ପିତା ମାତାଠାକୁ ଯାଅ ।
ଜଳ କଳଶ ଦେଇ ତାଙ୍କୁ
ମାଗ ଜୀବନ ରଖିବାକୁ ।
ଏମନ୍ତ ଶୁଣି ମୁଁ ଅଇଲି
ତୁମ୍ଭଙ୍କ ଶରଣ ପଶିଲି ।
ଦୟାଳୁ ତୁମ୍ଭେ ମୁନିବର
ଏ ଘେନି ମୋତେ ରକ୍ଷା କର ।
ସେ ଦୁହେଁ ଶୁଣନ୍ତେ ଏମନ୍ତ
ବିଳାପ କରିଲେ ବହୁତ ।
ମୋତେ ବୋଇଲେ ପୁତ୍ରଠାକୁ
ଘେନି ଯା ବହନ ଅମ୍ଭଙ୍କୁ ।
ମୁଁ ସେ ଦୁହିଁଙ୍କି ଘେନିଗଲି
ପ୍ରବେଶ ପୁତ୍ରଠାରେ ହେଲି ।
ଦୁହେଁ ପୁତ୍ରକୁ ଅଉଁସିଲେ
ପୁଣି ଏ ରୂପେ ଶୋକ କଲେ ।
ହା ପୁତ୍ର ହା ପୁତ୍ର ହେ ପୁତ୍ର
ବିଳମ୍ବ କଲ ତ ବହୁତ ।
ଅମ୍ଭଙ୍କୁ ଜଳ ଦେବୁ ଟିକି
ଏ ରୂପେ ଶୋଇଲୁ କାହିଁକି ।
ଏ ରୂପେ ବହୁ ଶୋକ କଲେ
ମୋତେ ସେ ଉତ୍ସ୍ୱରେ କହିଲେ ।
ଅନଳ ଜାଳ ହେ ରାଜନ
ଶୁଣି ମୁଁ କଲି ହୁତାଶନ ।
ତନହେଁ ତହିଁରେ ପଡ଼ିଲେ
ପ୍ରାଣ ଛାଡ଼ିଣ ସ୍ୱର୍ଗ ଗଲେ ।
ପଡ଼ିବା ବେଳେ ପିତା ତାର
କ୍ରୋଧରେ ବୋଇଲା ତୋହର ।
ମୋହ ବୋଲରେ ଏହି ରୂପେ
ମୃତ୍ୟୁ ହେବ ପୁତ୍ର ସନ୍ତାପେ ।

ସେ ଶାପ ଏବେଟି କୌଶଲ୍ୟା
ନିଷ୍ଟୟେ ପ୍ରବେଶ ହୋଇଲା ।
ଏମନ୍ତ କହି ନରସାଇଁ
ରୋଦନ କଲେ ଆର୍ତ୍ତି ହୋଇ ।
ହେ ପୁତ୍ର ହେ ରାମ ମୋହର
ହେ ଗୁଣ ସମୁଦ୍ର ହେ ବୀର ।
ହା ହା ଲକ୍ଷ୍ମଣ ହା ଜାନକୀ
ସତେ ତୁମ୍ଭଙ୍କୁ ଦେଖିବି କି ।
କୈକେୟୀ ସକାଶୁ ତୁମ୍ଭର
ବିଚ୍ଛେଦେ ଛାଡ଼ୁଛି ଶରୀର ।
ଏ ରୂପେ ଚିନ୍ତା କରୁଥିଲେ
ପ୍ରାଣ ଛାଡ଼ିଣ ସ୍ୱର୍ଗ ଗଲେ ।
କୌଶଲ୍ୟା ସୁମିତ୍ରାଙ୍କୁ ଘେନି
ରାଜାଙ୍କର ଯେତେ କାମିନୀ ।
ଧାଈ ଅଦ୍ଧ ଯେତେକ ଦାସୀ
ସମସ୍ତେ ଏକଠାବେ ବସି ।
ହୃଦରେ କରମାନ ତାଡ଼ି
କାନ୍ଦିଲେ ଭୂମି ତଳେ ପଡ଼ି ।
ହା ସ୍ୱାମି ହା ପ୍ରଭୁ ମୋ ନାଥ
ଛାଡ଼ିଗଲ ହେ ଦଶରଥ ।
ବହୁତ ବେଳ ଏ ପ୍ରକାରେ
ରୋଦନ କଲେ ଉଚ୍ଚସ୍ୱରେ ।
ଏମନ୍ତେ ପ୍ରଭାତ କାଳରେ
ବଶିଷ୍ଠେ ମନ୍ତ୍ରୀଙ୍କ ତୁଳରେ ।
ଅନ୍ତଃପୁରେ ପ୍ରବେଶ ହୋଇ
ସେମାନଙ୍କୁ ଶାନ୍ତ କରାଇ ।
ତଇଲ ଦ୍ରୋଣୀରେ ରାଜାଙ୍କୁ
ରଖାଇ କହିଲେ ଦୂତଙ୍କୁ ।
ତୁରଙ୍ଗ ଚଢ଼ି ବେଗେ ଯାଇ
ଯୁଧାଜିତଙ୍କ ପୁରେ ହୋଇ ।
ଭରତ ଶତ୍ରୁଘନ ଆଗେ
କହିବ ଆସିବାକୁ ବେଗେ ।
ବୋଲିବ ମୋହର ଆଜ୍ଞାରେ
ବାହାର ହୋଇଣ ସତ୍ୱରେ ।
ପ୍ରବେଶ ଅଯୋଧ୍ୟାରେ ହେବେ
ପିତାଙ୍କୁ ମାତାଙ୍କୁ ଦେଖିବେ ।
ଏମନ୍ତ ଶୁଣି ଦୂତେ ଯାଇଁ
ବେଗେ ସେ କଟକରେ ହୋଇ ।
ଯୁଧାଜିତଙ୍କ ଆଗେ ହେଲେ
ପ୍ରଣାମ କରି ଜଣାଇଲେ ।
ବଶିଷ୍ଠ ମୁନି ଆଜ୍ଞା ଦେଇ
ଆମ୍ଭଙ୍କୁ ଦେଲେ ପଠାଇ ।
ଶତ୍ରୁଘ୍ନ ତୁଲେ ଭରତଙ୍କୁ
ବହନ ନେବୁ ଅଯୋଧ୍ୟାକୁ ।
ଭରତ ଶୁଣି ଭୟ ପାଇ
ଅତିଅନ୍ତ ତରସ୍ତ ହୋଇ ।
ମେଲାଣି ମାଗିଣ ଅଜାଙ୍କୁ
ବାହାର ହେଲେ ଅଯୋଧ୍ୟାକୁ ।
ମନରେ କରନ୍ତି ବିଚାର
ରାଜାର କି ଅବା ରାମର ।
କି ଦୁଃଖ ହୋଇଛି ନିଷ୍ଟୟେ
ଏଣୁ ମନରେ ହୋଏ ଭୟେ ।
ଏ ରୂପେ ବାଟେ ଚିନ୍ତା କଲେ
ନଗ୍ରରେ ପ୍ରବେଶ ହୋଇଲେ ।
ଅଶୋଭା ପାଉଛି କଟକ
ଗହଳ ନୋହୁଛନ୍ତି ଲୋକ ।
ଉତ୍ସବମାନ ହେଉ ନାହିଁ
ଏମନ୍ତ ଦେଖି ଦୁଃଖୀ ହୋଇ ।
ବହୁତ ଚିନ୍ତା ପୁଣି କଲେ
ପ୍ରବେଶ ରାଜପୁରେ ହେଲେ ।

ଦେଖିଲେ ରାଜଲକ୍ଷ୍ମୀ ନାହିଁ
ଏକାନ୍ତ ହୋଇ କଇକେୟୀ ।
ଆସନେ ବସିଛି ଦେଖିଲେ
ତାହାଙ୍କୁ ନମସ୍କାର କଲେ ।
ଦେଖି ସେ ଉଠିଲେ ବହନ
ସ୍ନେହରେ କଲେ ଆଲିଙ୍ଗନ ।
କୋଳରେ ଘେନି ସେ ବସିଲେ
ମସ୍ତକ ଶୁଙ୍ଘି ପଚାରିଲେ
ତୋର କୁଶଳ ଟିକି ମୋତେ
କହ ଦେଖିଲି ଭାଗ୍ୟେ ତୋତେ ।
ମୋ ପିତାମାତା କୁଶଳରେ
ସୁଖେ ଅଛନ୍ତି ଟିକି ପୁରେ ।
ଶୁଣି ଭରତ ଦୁଃଖୀ ହୋଇ
ପୁଛିଲେ ମାତାଙ୍କୁ ସେ ଗୁହିଁ ।
ପିତା ଅଛନ୍ତି କେଉଁ ଠାଇଁ
ତୁମ୍ଭେ ତ ଅଛ ଏକା ହୋଇ ।
ତୁମ୍ଭ ବିନା ତ ନରସାଇଁ
ନ ଥାନ୍ତି ଦନେ ଆନ ଠାଇଁ ।
ମୁଁ ଆଜ କପାଁ ଦେଖୁ ନାହିଁ
କହ ସେ ଛନ୍ତି କେଉଁଠାଇଁ ।
ତାହାଙ୍କୁ ନ ଦେଖି ଅପାର
ହେଉଛି ଭୟ ଦୁଃଖ ଘୋର ।
ମାଏ କହିଲେ ଛାଡ଼ ଶୋକ
ତୁରଙ୍ଗମେଧ କଲା ଲୋକ ।
ଲଭନ୍ତି ଯେଉଁ ଦିବ୍ୟଗତି
ସେ ଗତି ପାଇଲେ ନୃପତି ।
ଶୁଣି ଭରତ ଶୋକ କଲେ
ଧରଣୀ ତଳରେ ପଡ଼ିଲେ ।
ବୋଇଲେ ମୋତେ ନରସାଇଁ
ଏ ଦୁଃଖ ସମୁଦ୍ରେ ପକାଇ ।
ଛାଡ଼ିଣ କେଉଁଠାକୁ ଗଲେ
ରାମଙ୍କୁ ସମର୍ପି ନ ଦେଲେ ।
ପିତାଙ୍କ ଗୁଣ ସୁମରିଲେ
ପୁଣି ବହୁତ ଶୋକ କଲେ ।
ଫିଟି ପଡ଼ିଛି ବାଳମାନ
ଭୂମିରେ ହୋଇଛି ଶୟନ ।
ଏ ରୂପେ ଦେଖି କଇକେୟୀ
ତୋଳି ନୟନ ଝୋଟିଛି ଦୋଇ ।
କହିଲେ ଆଶ୍ୱାସନା ଦେଇ
ବସିବା ହେଉ ଧୈର୍ଯ୍ୟ ହୋଇ ।
ମୁଁ ସବୁ କାର୍ଯ୍ୟମାନ ତୋର
ଭଲ କରିଛି ବାବୁ ମୋର ।
ଭରତ ପଚାରିଲେ ମାତା
ଦେହ ଛାଡ଼ିବା ବେଳେ ପିତା ।
କି ବୋଲିଥିଲେ ତାହା ବେଗେ
କହିବା ହେଉ ମୋର ଆଗେ ।
ଏମନ୍ତ ଶୁଣି କଇକେୟୀ
କହିଲେ ସେ ନିର୍ଭୟ ହୋଇ ।
ହେ ରାମ ହେ ରାମ ହେ ବୀର
ହା ସୀତା ଲକ୍ଷ୍ମଣ ମୋହର ।
ଏରୂପେ ପୁନଃପୁନଃ କରି
ବହୁତ କାନ୍ଦି ଦଣ୍ଡଧାରୀ ।
ଦେହକୁ ଛାଡ଼ି ସ୍ୱର୍ଗ ଗଲେ
ଏଣୁ ଭରତ ପଚାରିଲେ ।
ଶ୍ରୀରାମ ଲକ୍ଷ୍ମଣ ଜାନକୀ
ସେଠାରେ ନ ଥିଲେ କାହିଁକି ।

କୈକେୟୀବାଚ

ପୁଣି କହିଲେ ମାଏ ତାଙ୍କୁ
ରାମ ଯୁବରାଜ ହେବାକୁ ।

ସମ୍ଭାର କଲେ ନରସାଇଁ
ମୁଁ ବିଘ୍ନ କଲି ତୁମ୍ଭ ପାଇଁ ।
ପୂର୍ବରେ ମୋତେ ତୋଷ ହୋଇ
ବର ଯୋଡ଼ିଏ ଥିଲେ ଦେଇ ।
ମାଗିଲି ସେ ବରୁ ଗୋଟିକେ
ତୁ ପ୍ରଭୁ ହେବୁ ରାଜ୍ୟଯାକେ ।
ପୁଣି ମାଗିଲି ଆର ବରେ
ଶ୍ରୀରାମ ଦଣ୍ଡକ ବନରେ ।
ରହିବେ ଚଉଦ ବରଷ
ଧରଣ ଥିବେ ମୁନି ବେଶ ।
ତୁମ୍ଭଙ୍କୁ ରାଜ୍ୟ ଦେଲେ ତେଣୁ
ନୃପତି ସତ୍ୟବାଦୀ ଯେଣୁ ।
ଏହୁ ସକାଶୁ ଶ୍ରୀରାମଙ୍କୁ
ପଠିଆଇଲେ ଅରଣ୍ୟକୁ ।
ସୀତା ପତିବ୍ରତା ଧର୍ମରେ
ଗଲେ ସେ ଶ୍ରୀରାମ ସଙ୍ଗରେ ।
ଭ୍ରାତୃବତ୍ସଳ ସ୍ନେହ ବହି
ଗୋଡ଼ାଇ ଗଲେ ଲକ୍ଷ୍ମଣହିଁ ।
ସେ ତିନିଙ୍କ ଗଲା ଉତ୍ତାରେ
ରାଜାହିଁ ତାହାଙ୍କ ଚିନ୍ତାରେ ।
ଶ୍ରୀରାମ ରାମ ବୋଲୁଥିଲେ
ଦେହ ଛାଡ଼ି ସ୍ୱର୍ଗକୁ ଗଲେ ।
ଏମନ୍ତ ଶୁଣନ୍ତେ ଭରତ
କୁଳଶଘାତ ବୃକ୍ଷମତ ।
ତତ୍କାଳ ମୂର୍ଚ୍ଛିତ ହୋଇଲେ
ଧରଣୀ ଉପରେ ପଡ଼ିଲେ ।
ତାହାଙ୍କୁ ଦେଖି ଦୁଃଖୀ ହୋଇ
ପୁଣି କହିଲେ କଇକେୟୀ ।
କି କାର୍ଯ୍ୟ ହେବଟି ଶୋକରୁ
ଏ ରାଜ୍ୟ ପାଇଲ ଉତ୍ତାରୁ ।

ଏବେ କାହିଁକି ଦୁଃଖ ତୋର
ନିଶ୍ଚିନ୍ତେ ରାଜ୍ୟ ଭୋଗ କର ।
ଶୁଣି କ୍ରୋଧେ ଜଳି ଭରତ
ମାତାଙ୍କୁ ବୋଇଲେ ଏମନ୍ତ ।
ଭର୍ତ୍ତା ବଧ ତୁ କଲୁ ଯହୁଁ
ଏଣୁ କହିବା ଯୋଗ୍ୟ ନୋହୁ ।
ତୋ ଗର୍ଭୁ ଜାତ ଯାହା ହେଲି
ଏଣୁ ମୁଁ ପାତକୀ ହୋଇଲି ।
ଏ ଘେନି ଅଗ୍ନିରେ ପଡ଼ିବି
କି ଅବା ବିଷ ମୁଁ ଖାଇବି ।
କି ଅବା ତୋଟି କାଟି ଦେବି
କି ରୂପେ ଯମଠାକୁ ଯିବି ।
ଏମନ୍ତ ନାସ୍ତିକ ତୁ ହେଲୁ
ସାକ୍ଷାତେ ଭର୍ତ୍ତା ବଧ କଲୁ ।
ଏ ଫଳ ନିଶ୍ଚୟ ଲଭିବୁ
କୁମ୍ଭୀପାକ ନର୍କକୁ ଯିବୁ ।
ଏ ରୂପେ ନିନ୍ଦା ତାଙ୍କୁ କଲେ
କୌଶଲ୍ୟା ପୁରକୁ ସେ ଗଲେ ।
କୌଶଲ୍ୟା ତାହାଙ୍କୁ ଦେଖିଲେ
ରୋଦନ ଉଚ୍ଚ ସ୍ୱରେ କଲେ ।
ଭରତ ତାଙ୍କ ପାଦତଳେ
ପଡ଼ି ବହୁତ ଶୋକ କଲେ ।
କୌଶଲ୍ୟା ତୋଳିଣ ଧଇଲେ
ସ୍ନେହରେ ଆଲିଙ୍ଗନ କଲେ ।
ସେ କୃଶ ହୋଇଣ ଚିନ୍ତାରେ
ନିଶ୍ୱାସ ଛାଡ଼ୁଛନ୍ତି ଖରେ ।
ଦୁଃଖେ ବଦନ ଶୁଖି ଅଛି
ନୟନୁ ଲୁହ ବହୁଅଛି ।
କୌଶଲ୍ୟା ହୋଇ ଏ ପ୍ରକାରେ
କହିଲେ ଭରତ ଆଗରେ ।

ତୁମ୍ଭେ ତ ଦୂରେ ଥିଲ ଯାଇ
ଏମନ୍ତ କଲେ କଇକେୟୀ ।
ମାୟେ ଯେତେକ ଚେଷ୍ଟା କଲେ
ଶୁଣିଲଟି କି ତାହା ଭଲେ ।
ମୋ ପୁତ୍ର ବକଳ ପିନ୍ଧିଲେ
ଜଟା ମୁକୁଟ ଶିରେ କଲେ ।
ଶୋକ-ଜଳେ ବୁଡ଼ାଇ ମୋତେ
ଲକ୍ଷ୍ମଣ ଜାନକୀ ସହିତେ ।
ଲକ୍ଷ୍ମଣଙ୍କୁହିଁ ସଙ୍ଗେ ନେଲେ
ଦଣ୍ଡକ ଅରଣ୍ୟକୁ ଗଲେ ।
ହେ ରାମ ରଘୁବଂଶ ନାଥ
ଗଲ ମୋତେ କରି ଅନାଥ ।
ପରମ ଆତ୍ମା ତୁ ଅଚ୍ୟୁତ
ହୋଇଲୁ ମୋ ଉଦରୁ ଜାତ ।
ଏମନ୍ତ ହେଲେହେଁ ମୋହର
ଦୁଃଖ ନାଶ ନ ଗଲା ବୀର ।
ଏଣୁ ବିଧାତା ଅତିଅନ୍ତ
ନିଷ୍ଠେଁ ଅଟଇ ବଳବନ୍ତ ।
ଏମନ୍ତ ପ୍ରକାରେ ମୋହର
ମନରେ ହେଉଛି ବିଚାର ।
କୌଶଲ୍ୟା ଏମନ୍ତେ ବହୁତ
କାନ୍ଦିବା ଦେଖିଣ ଭରତ ।
ଧରି ତାଙ୍କ ବେନି ଚରଣ
ବୋଇଲେ ମୋ ବଚନ ଶୁଣ ।
ରାମ ଅଭିଷେକ ନିମନ୍ତେ
କେକେୟୀ ବିଘ୍ନ କଲେ ଯେତେ ।
ଅଭି ମାନ ସେ କଲେ ଯାହା
ମୁଁ ଯେବେ ଜାଣିଥିବି ତାହା ।
ନୋହିଲେ ମାତାଙ୍କୁ ମୁଁ ଯେବେ
ଏମାନ କହିଥିବି ତେବେ ।

ଶଏ ବ୍ରହ୍ମହତ୍ୟା ଜନ୍ମର
ପାତକ ହୋଇବ ମୋହର ।
ଅରୁନ୍ଧତୀଙ୍କି ବଶିଷ୍ଠଙ୍କୁ
ତହିଁ ସଙ୍ଗତରେ ତୁମ୍ଭଙ୍କୁ ।
ହାଣିଲା ଦୋଷ ମୁଁ ପାଇବି
ଯେବେ ଏ କଥା ଜାଣିଥିବି ।
ନିୟମ କରି ଏ ପ୍ରକାରେ
ରୋଦନ କଲେ ଉଚ୍ଚସ୍ୱରେ ।
ଦେଖି କୌଶଲ୍ୟା ସନ୍ତୋଷରେ
ଆଶ୍ଳେଷ କରି ସ୍ନେହଭରେ ।
ବୋଇଲେ ଶୁଣ ହେ ଭରତ ।
ଏହା ମୁଁ ଜାଣଇ ସମସ୍ତ ।
ଏବେ ବାବୁ ଶୋକ ନ କର
ପ୍ରାଣୁ ଅଧିକ ତୁ ମୋହର ।
ଏହି ସମୟରେ ତ ପୁଣି
ଭରତ ଆସିବାର ଶୁଣି ।
ବଶିଷ୍ଠ ମନ୍ତ୍ରୀଙ୍କ ତୁଲରେ
ପ୍ରବେଶ ହୋଇଲେ ସେଠାରେ ।
କାନ୍ଦୁଣି ଥିଲେ ଯେ ଭରତ
ତାହାଙ୍କୁ ଦେଖି ତପୋବନ୍ତ ।
କହିଲେ ଆଦର କରିଣ
ରାଜା ତ ବୃଦ୍ଧ ଜ୍ଞାନୀ ପୁଣ ।
ପୃଥ୍ୱୀ ସୁଖହିଁ କଲେ ଭୋଗ
ଅଶ୍ୱମେଧାଦି ଯେତେ ଯାଗ ।
ସବୁ କରି ଦକ୍ଷିଣା ଦେଇ
ପୂଜି କରି ବିପ୍ରଙ୍କୁ ପାଇ ।
ପ୍ରାନ୍ତେ ପୁଣି ସ୍ୱର୍ଗକୁ ଗଲେ
ଇନ୍ଦ୍ର ଅର୍ଦ୍ଧାସନେ ବସିଲେ ।
ଏ ଯେଣୁ ଶୋଚ୍ୟ ସେ ନୁହନ୍ତ
ମୁକତି ଯୋଗ୍ୟ ସେ ଅଟନ୍ତି ।

ବ୍ୟର୍ଥ ତାହାଙ୍କ ନିମନ୍ତେ
ଶୋକ କରୁଛ କପି ଏତେ ।
ନିତ୍ୟ ଅବିନାଶୀ ଅଟଇ
ଶୁଦ୍ଧ ଜନ୍ମ ନାଶାଦି ନାହିଁ ।
ଆତ୍ମା ତ ଏମନ୍ତ ପ୍ରକାର
ଜଡ଼ ତ ଅଟଇ ଶରୀର ।
ବିଶେଷେ ଅଶୁଦ୍ଧ ଅଟଇ
ନିତ୍ୟେଁ ପୁଣି ନାଶ ହୁଅଇ ।
ଏମନ୍ତ ଯେବେ ବିଚାରିବ
ଶୋକ କାହିଁକି ଆଉ ହେବ ।
ପିତା ମାତାଦି ପୁତ୍ର ଭ୍ରାଇ
ଯେବେ ତାଙ୍କର ମୃତ୍ୟୁ ହୋଇ ।
ତେବେ ବ୍ୟର୍ଥ ତାଙ୍କପାଇଁ
କଳେବରକୁ ଦୁଃଖ ଦେଇ ।
ଶୋକ କରନ୍ତି ଯେଉଁ ନରେ
ମୂଢ଼ ଅଟନ୍ତି ସେ ସଂସାରେ ।
ଅସାର ଅଟେ ଯେ ସଂସାର
ଏଥୁଁ ଯେ ବନ୍ଧୁମାନଙ୍କର ।
ବିଚ୍ଛେଦମାନ ହେଉଥାଇ
ସେ କଥା ଜ୍ଞାନୀ ଯେ ଅଟଇ—
ତାର ବୈରାଗ୍ୟ ଜନ୍ମ ହୋଇ
ଶାନ୍ତି ସୁଖ ତାକୁ ଦିଅଇ ।
ଯେତେବେଳରୁ ଦେହ ପାଇ
ମନୁଷ୍ୟ ଜନମ ହୁଅଇ ।
ତେତେବେଳୁଁ ତାହା ଠାଇଁ
ମୃତ୍ୟୁ ସଙ୍ଗେ ଥାଇ ଗୋଡ଼ାଇ ।
ଏ ଘେନି ଯେ ଜନ୍ମ ହୁଅଇ
ତା ମୃତ୍ୟୁ ଅନ୍ୟଥା ନୁହଇ ।
ଆପଣା କର୍ମ ବଶପାଇଁ
ଜନ୍ମେ ଜନ୍ମେ ମୃତ୍ୟୁ ଲଭଇ ।

ପଣ୍ଡିତଁ ଲୋକ ଏହା ଯେବେ
ଜାଣିବ କପି ଆଉ ତେବେ ।
ବାନ୍ଧବମାନଙ୍କ ନିମନ୍ତେ
ଶୋଚନା କରିବାଟି ଚତେ ।
ବ୍ରହ୍ମାଣ୍ଡ କୋଟି କୋଟି ହୋଇ
ନାଶ ଗଲେଣି କେତେ ତହିଁ ।
ସଂସାରମାନେ ହୋଇ ଜାତ
ବିନାଶ ହେଲେଣି ବହୁତ ।
ସମୁଦ୍ର ଶୁଖିଯାନ୍ତି ପୁଣ
ଏଥୁଁ ଉତ୍ତରେ ଯେଉଁ ପ୍ରାଣ ।
କ୍ଷଣିକ ଅଟେ ତାହାଠାଇଁ
ମୁହାଁସ ହୋଇବ କପାଇଁ ।
ଚଞ୍ଚଳ ଅଟେ ଯେଉଁ ପଦ
ତହିଁର ଅଗ୍ରରେ ଯେମନ୍ତ ।
ଲାଗି ସଲିଳ ବିନ୍ଦୁ ଥାଇ
ତତ୍କାଳ ଅନ୍ୟଥା ହୁଅଇ ।
ତାହା ପ୍ରାୟେ କ୍ଷଣକେ ନାଶ
ହୁଅଇ ଯେବଣ ଆୟୁଷ ।
ତାହାର ଯିବାପାଇଁ ପୁଣ
ଶଙ୍କା କପି କର ଆପଣ ।
ଜୀବ ପୂର୍ବ ଜନ୍ମକୁ ପାଇ
ଯେମନ୍ତ କର୍ମ କରିଥାଇ ।
ସେରୂପ ଶରୀର ଲଭଇ
ତହିଁ ଯେଉଁ କର୍ମ କରଇ ।
ପୁଣି ତେମନ୍ତ ପରକାର
କରି ଲଭଇ କଳେବର ।
ଏ ଘେନ ସବୁକାଳେ ପୁଣ
ଦେହ ବିଶୁଦ୍ଧ ନୋହେ ପୁଣ ।
ପୁରୁଣା ହୋଇଲେ ଯେମନ୍ତ
ତେଜଣ ପିନ୍ଧି ନୂଆବସ୍ତ୍ର ।

ସେହି ପ୍ରକାରେ ଦେହୀ ପୁଣ
ଜୀର୍ଣ୍ଣ କଳେବର ଛାଡ଼ଇ ।
ଘେନଇ ସେ ଆନ ଶରୀର
ଏଥକୁ ଶୋକ କପାଁ କର ।
ଆତ୍ମାର ନାଶେଁ ଜନ୍ମ ନାହିଁ
ମୃତ୍ୟୁ ବୃଦ୍ଧଇ ନ ବଢ଼ଇ ।
ତାହାର ଷଡ଼ ଭାବ ନାହିଁ
ଜ୍ଞାନ ସ୍ୱରୂପ ସେ ଅଟଇ ।
ନିତ୍ୟ ଆନନ୍ଦ ରୂପ ସେହି
ବୁଦ୍ଧ୍ୟାଦିଙ୍କ ସାକ୍ଷୀ ଅଟଇ ।
ସବୁଠାରୁ ସେ ଭିନ୍ନ ହୋଇ
ଏକ ସେ କାହିଁ ନ ମିଶଇ ।
ସମାନ ଅଟେ ସବୁ ସ୍ଥଳେ
ସବୁଦ୍ୱାରେ ଛନ୍ତି ନିଶ୍ଚଳେ ।
ଆତ୍ମାକୁ ଏ ପ୍ରକାରେ ଜାଣି
କିମ୍ପା କର ଶୋକ ଘେନି ।
ତୈଳ ଦ୍ରୋଣୀରେ ପିତାଙ୍କର
ରକ୍ଷା ହୋଇଅଛି ଶରୀର ।
ମନ୍ତ୍ରୀମାନଙ୍କ ତୁଲେ ଯାଇ
ତହିଁରୁ ବାହାର କରାଇ ।
ଅମ୍ଭମାନଙ୍କ ତୁଲେ ବୀର
ବେଗେ ସେ କର୍ମମାନ କର ।
ଏମନ୍ତ ଗୁରୁଙ୍କ ବଚନ
ଶୁଣିଣ ଭରତ ବହନ ।
ଅଜ୍ଞାନ ମୋହ ସେ ଛାଡ଼ିଲେ
ଯଥା ବିଧିରେ କର୍ମ କଲେ ।
ଅଗ୍ନିହୋତ୍ରୀଙ୍କର ଯେମନ୍ତ
ହୋଏ ସେରୂପେ ବିଧିମନ୍ତ ।
କରି ପିତାଙ୍କ ଅପଘନ
ଦହନ କରାଇ ବହନ ।

ପୁଣି ସେ ଏକାଦଶ ଦିନେ
ସହସ୍ର ସହସ୍ର ବିପ୍ରଗଣେ ।
ଭୋଜନ ଦେଇ ନାନାଦାନ
ଏରୂପେ ଗାଈ ଗ୍ରାମମାନ ।
ରତ୍ନ ବସ୍ତ୍ର ସହିତେ ଦେଇ
ବିଶେଷେ ସନ୍ତୋଷ କରାଇ ।
ଗୁରୁ ଶତ୍ରୁଘ୍ନ ସବୁ ମୁନି-
ମାନଙ୍କ ସଙ୍ଗତରେ ଘେନି ।
ମନେ ରାମଙ୍କୁ ଚିନ୍ତା କଲେ
ବସି ଏମନ୍ତ ବିଚାରିଲେ ।
ରାମ ଲକ୍ଷ୍ମଣ ସୀତା ତୁଲେ
ଦଣ୍ଡକ ବନକୁ ଯେ ଗଲେ ।
ମାତା ତ ରାକ୍ଷସୀ ପରାୟେ
କରାଇ ଅଛି ମହାଭୟେ ।
ତାଙ୍କୁ ତ ଦେଖିଲେ ମୋହର
ପୋଡ଼ିଣ ଉଠଇ ଶରୀର ।
ଏଣୁ ରାଜ୍ୟ ନିଶ୍ଚେଁ ତେଜିବି
ଦଣ୍ଡକ ଅରଣ୍ୟକୁ ଯିବି ।
ମନ୍ଦହାସରେ ମନୋହର
ଏମନ୍ତ ମୁଖଚନ୍ଦ୍ର ଯାର ।
ସେ ଶ୍ରୀରାମଙ୍କ ନିରନ୍ତରେ
ନିତ୍ୟେ ଜାନକୀ ସହିତରେ ।
ବନରେ ସେବା କରୁଥିବି
ସମସ୍ତ ଦୁଃଖ ପାସୋରିବି ।
ଏମନ୍ତ ବିଚାରି ଭରତ
ଅତିଦୁଃଖେ ନେଲେ ସେ ରାତ୍ର ।
ଏ ମେରୁ ପର୍ବତ ଯେସନ
ମୋ ମନ ସୋଦରଙ୍କୁ ହୀନ ।
ଏ ଘେନ ଯେତେ ମୁଁ ବୁଝିଲି
ସେ ପ୍ରକାରେ ପ୍ରକାଶ କଲି ।

ଏଣୁକରି ରାମ କଙ୍କରେ
କ୍ଷମା କରିବ ମୋହଠାରେ ।
ମନ ବଚନ ସଦାବେଳ
ଚିନ୍ତୁ ଶ୍ରୀରାମ ପାଦତଳ ।
ଭରତ ଭୁଲେ ଶ୍ରୀରାମର
ଚରଣ ଚିନ୍ତେ ହଳଧର ।
ଏ ଅଧ୍ୟା ପଦ ତନ୍ନଶତ
ନାଶୁ ମୋ ସମସ୍ତ ଦୁଷ୍କୃତ ।

ଇତି ଶ୍ରୀମଦଧ୍ୟାତ୍ମ୍ୟ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

ପୁଣି ପାର୍ବତୀ ପଚାରିଲେ
ଭରତ କି ପ୍ରକାରେ ଗଲେ ।
ସେ କଥା କହ ମହେଶ୍ୱର
ବୋଲି ଯୋଡ଼ିଲେ ବେନିକର ।
ହରଷ ହୋଇଣ ତ୍ରିନେତ୍ର
ତାହାଙ୍କୁ କହିଲେ ଏମନ୍ତ ।

ଶ୍ରୀ ମହାଦେବ ଉବାଚ

ବଶିଷ୍ଠେ ପ୍ରଭାତ କାଳରେ
ମୁନିମାନଙ୍କ ସଙ୍ଗତରେ ।
ସମସ୍ତ ମନ୍ତ୍ରୀ ପୁରବାସୀ
ଘେନି ରାଜସଭାରେ ଅସି ।
ଦିବ୍ୟ ଅସନରେ ବସିଲେ
ବ୍ରହ୍ମା ପ୍ରାୟେ ଶୋଭା ପାଇଲେ ।
ଶତ୍ରୁଘ୍ନ ଭୁଲେ ଭରତଙ୍କୁ
ଘେନାଇ ଅସିଣ ସେଠାକୁ ।
ଦେଶ କାଳରେ ଯେ ଉଚିତ
ସମସ୍ତ ଲୋକର ସମ୍ମତ ।
ଏମନ୍ତ ପ୍ରକାରେ ବଚନ
କହିଲେ ତାଙ୍କୁ ତପୋଧନ ।
ରାଜାଙ୍କଠାରୁ ତୁମ୍ଭପାଇଁ
ରାଜ୍ୟ ମାଗିଲେ କଇକେୟୀ ।
ନୃପତି ସତ୍ୟବାଦୀ ଯେଣୁ
ତୁମ୍ଭଙ୍କୁ ରାଜ୍ୟ ଦେଲେ ତେଣୁ ।
ଏ ଘେନି ପିତାଙ୍କ ଆଜ୍ଞାରେ
ମନ୍ତ୍ରୀମାନେ ଅଜ ରାଜ୍ୟରେ ।
ବିଧିପୂର୍ବକ ବେଦମନ୍ତ୍ରେ
କରନ୍ତୁ ଅଭିଷେକ ତୋତେ ।
ତରସ୍ତ ହୋଇଣ ଭରତ
ବୋଇଲେ ଶୁଣ ତପୋବନ୍ତ ।
ଏ ରାଜ୍ୟ ଅଟେ ଶ୍ରୀରାମର
ଅମ୍ଭେମାନେ ତାଙ୍କ କଙ୍କର ।
ଶ୍ରୀରାମ ଅଟେ ମହାରାଜା
ସମସ୍ତେ ତାହାଙ୍କ ପରଜା ।
ଏବେ ମୁଁ ତୁମ୍ଭେ ସର୍ବମୁନି
ପୁରରାଜ୍ୟ ଲୋକଙ୍କୁ ଘେନି ।
କୌଶଲ୍ୟାଅଦି ମାତା ଯେତେ
କୈକେୟୀ ବାହାରେ ସମସ୍ତେ ।
ପଞ୍ଚବଟେ ରାମଠାକୁ ଯିବା
ତାହାଙ୍କୁ ବନ୍ୟକୁ ଅଣିବା ।

ଜନନୀ ମାନଙ୍କ ବୋଲଇ
ଏମନ୍ତ ପେଣ୍ଡି କଇକେୟୀ ।
ମାରନ୍ତି ଏହିକ୍ଷଣି ତାଙ୍କୁ
କେବଳ ଡରୁଛନ୍ତି ରାମଙ୍କୁ ।
ସ୍ତ୍ରୀହତ୍ୟା କଲି ବୋଲିବେ
ମୋତେ ସେ ନିଶ୍ଚୟେ ତେଜିବେ ।
ତୁମ୍ଭେମାନେ ଅସ ନ ଅସ
ମୁଁ କାଲି ପ୍ରଭାତୁ ଅବଶ୍ୟ ।
ଶତ୍ରୁଘ୍ନ ତୁଲେ ଚାଲି ଯିବ
ଦଣ୍ଡକ ଅରଣ୍ୟେ ମିଳିବୁ ।
ରାମଚନ୍ଦ୍ର ଯେମନ୍ତ ହୋଇ
ବନେ ଅଛନ୍ତି ଦୁଃଖ ସହି ।
ସେ ରୂପେ ବାକଳ ପିନ୍ଧିବୁ
ଶିରେ ଜଟାମାନ କରିବୁ ।
ଫଳ ମୂଳ ପତ୍ର ଖାଇବୁ
ଧରଣୀ ତଳରେ ଶୋଇବୁ ।
ଶ୍ରୀରାମ ଆସିବାର ଯାଏଁ
ସେ ରୂପେ କରିବୁ ନିଶ୍ଚୟେ ।
ଏମନ୍ତ ବୋଲି ତୁନି ହେଲେ
ସମସ୍ତେ ସାଧୁ ସାଧୁ କଲେ ।
ବହୁତ ହରଷ ହୋଇଣ
ପ୍ରଶଂସା କଲେ ପୁଣ ପୁଣ ।
ଏମନ୍ତ ହୁଅନ୍ତେ ପ୍ରଭାତ
ବାହାର ହୁଅନ୍ତେ ଭରତ ।
ତାଙ୍କ ପଛେ ସୁମନ୍ତ୍ର ତୁଲେ
ବହୁତ ସେନାପତି ଗଲେ ।
ରଥ ଗଜ ଅଶ୍ୱ ପାଇକ
ସେମାନେ ଘେନିଣ ଅନେକ ।
କୌଶଲ୍ୟା ଆଦି ରାଣୀ ଯେତେ
ବଶିଷ୍ଠାଦି ମୁନି ସମସ୍ତେ ।
ଭରତ ପଛେ ପାଖେ ଆଗେ
ବେଢ଼ି ଗୋଡ଼ାଇ ଗଲେ ବେଗେ ।
ଶୃଙ୍ଗବେର ପୁର ନିକଟେ
ପ୍ରବେଶ ହେଲେ ଗଙ୍ଗା ତଟେ ।
ଗୁହ ନାମେ ଶବରବର
ଶୁଣି ଭରତ ଆସିବାର ।
ମନେ ବଡ଼ ଆଶଙ୍କା କଲା
ମନ୍ତ୍ରୀଙ୍କି ଡାକିଣ କହିଲା ।
ବହୁତ ସୈନ୍ୟ ଘେନିଣ ତ
ଆସିଣ ଅଛନ୍ତି ଭରତ ।
ନ ପୁଣି ରାମଚନ୍ଦ୍ର ତହିଁ
ଅସଙ୍ଗତ ଏ ବିଚାରଇ ।
ଏଣୁ ଅମ୍ଭେ ସେଠାକୁ ଯିବା
ମନ ତାହାଙ୍କର ଜାଣିବା ।
ଶୁଦ୍ଧ ହୃଦୟ ହେବ ଯେବେ
ଗଙ୍ଗା ପାର କରିବା ତେବେ ।
ନଉକା ବହୁତ ଭିଆଇ
ଆୟୁଧମାନ କରେ ନେଇ
ସମସ୍ତେ ରହି ଏ ପ୍ରକାରେ
ଚାହୁଁଥିବେ ସବୁ ବାଟରେ ।
ଏ ରୂପେ କହିଣ ଶବର
ଭେଟି ଦ୍ରବ୍ୟ ଘେନି ଅପାର ।
ବହୁତ ଜ୍ଞାତି ଛନ୍ତି ସଙ୍ଗେ
ମିଳି ଭରତଙ୍କର ଆଗେ ।
ଭେଟି ଦ୍ରବ୍ୟମାନ ଥୋଇଲା
ତାହାଙ୍କୁ ଏ ରୂପେ ଦେଖିଲା ।
ଶତ୍ରୁଘ୍ନ ତୁଲେ ବସିଛନ୍ତି
ନବଘନ ପ୍ରାୟେ ଦିଶନ୍ତି ।
ବକଳ କଟି ପ୍ରଦେଶରେ
ଜଟାମୁକୁଟ ଅଛି ଶିରେ ।

ବେଢିଅଛନ୍ତି ମନ୍ତ୍ରୀମାନେ
ରାମଙ୍କ ଚିନ୍ତା କରି ମନେ ।
ଶ୍ରୀରାମ ରାମ ବୋଲୁଛନ୍ତି
ଏହା ଦେଖି ଶବରପତି ।
ଆପଣାର ନାମ କହିଲା
ତଳେ ଦଣ୍ଡପ୍ରଣାମ କଲା ।
ଭରତ ବେଗେ ଟେକି ଧରି
ଅତିଅନ୍ତ ଆଦର କରି ।
ସ୍ନେହରେ ଆଲିଙ୍ଗନ କଲେ
କୁଶଳ ବାର୍ତ୍ତା ପଚାରିଲେ ।
ପୁଣି ବୋଇଲେ ଅହେ ଭାଇ
ରାମ ସଙ୍ଗେ ଥିଲ ଏଠାଇଁ ।
ରାମ ତୁମ୍ଭଙ୍କ ସ୍ନେହଭରେ
ଭିଡ଼ି ଲଗାଇଲେ ହୃଦରେ ।
ବଡ଼ ସୁକୃତ କରିଥିଲ
ଆପଣ କୃତକାର୍ଯ୍ୟ ହେଲ ।
ରାମ ଲକ୍ଷ୍ମଣ ଜାନକୀଙ୍କି
କଥା କହିବା ହେଲୁଟିକି ।
ଏବେ ଶ୍ରୀରାମ ବଇଦେହୀ
ଯେଉଁ ସ୍ଥଳରେ ଥିଲେ ଶୋଇ ।
ତା ମୋତେ ବହନ ଦେଖାଅ
ତୁମ୍ଭେ ରାମର ବଡ଼ ପ୍ରିୟ ।
ତୁମ୍ଭେ ନିଶ୍ଚୟ ଭାଗ୍ୟବନ୍ତ
ଯେଣୁ ରାମର ପ୍ରିୟଭକ୍ତ ।
ରାମଙ୍କ ଏମନ୍ତ କହିଣ
ବହୁତ ସ୍ତୁତି କରି ପୁଣି ।
ନେତ୍ରୁ ବହୁଛି ଅଶ୍ରୁଧାର
କରିତର ଧରିଣ କର ।
ରାମ ଶୋଇ ଯେଉଁ ସ୍ଥଳରେ
ଯାଇଥିଲେ ହେଲେ ସେଠାରେ ।

କୁଶ ଶଯ୍ୟା ଅଛି ସେଠାଇଁ
ଜାନକୀ ଆଭରଣ ତହିଁ ।
ବନ୍ଧୁମାନେ ଛନ୍ତି ଦେଖିଲେ
ଦୁଃଖରେ ସନ୍ତାପିତ ହେଲେ ।
ବହୁତ ପୁଣି ଶୋକ କଲେ
ଶବରଙ୍କୁ ଗୁହିଁ କହିଲେ ।
ହେ ସଖା ଯେଉଁ ବଇଦେହୀ
ଅତି ସୁକୁମାରୀ ଅଟଇ ।
ନବରେ ଜଗତ ଉପରେ
ପଲ୍ୟଙ୍କେ ଯେ ଦିବ୍ୟ ତୁଳୀରେ ।
ଶୟନ ରାମ ତୁଲେ କରେ
ସେ ଶୋଇଥିଲା ଏ ଶଯ୍ୟାରେ ।
ମୋହ ସକାଶୁ ବଇଦେହୀ
ଏବେ ଏ ରୂପେ ଦୁଃଖ ସହି ।
ଶ୍ରୀରାମ ତୁଲେ ଏ କୁଶରେ
ବୃକ୍ଷମୂଳେ ଶୟନ କରେ ।
ପାପ ସମୂହେ ଯୁକ୍ତ ହୋଇ
ପାପୀ ଅଟଇ କଇକେୟୀ ।
ତା ଗର୍ଭୁ ଜାତ ହେଲି ଯହୁଁ
ଏ କେଣେ ମୋତେ ଧିକ ହେଉ ।
ରାମ ପରମାତ୍ମା ଅଟନ୍ତି
ମୋ ପାଇଁ ଦୁଃଖ ସହୁଛନ୍ତି ।
ଲକ୍ଷ୍ମଣ ପୁଣ୍ୟ କରିଥିଲା
ତା ଜନ୍ମ ସଫଳ ହୋଇଲା ।
ଏଣୁ ଶ୍ରୀରାମଙ୍କ ବନରେ
ସେବା କରୁଛି ହରଷରେ ।
ରାମ କିଙ୍କରର କିଙ୍କର
ହେବି ଯେବେ ଦାସ ତାଙ୍କର ।
ସେ କାଳେ ଜନମ ମୋହର
ସଫଳ ହେବ ହେ ଶବର ।

ପୁଣି ବୋଇଲେ ଅହେ ଭାଇ
ରାମ ଅଛନ୍ତି କେଉଁଠାଇଁ ?
ଜାଣିମା ହୋଇଅଛୁ ଯେବେ
କହୁଣ ଦେବା ହେଉ ତେବେ ।
ବେଗେ ଯାଉଛୁ ମୁଁ ସେଠାକୁ
ରାମଙ୍କୁ ଘେନି ଆସିବାକୁ ।
ଶବର ଏ ବଚନ ଶୁଣି
ତାଙ୍କ ବିଶୁଦ୍ଧ ମନ ଜାଣି ।
ସ୍ନେହେ ବୋଇଲା ହେ ଭରତ
ଆପଣ ବଡ଼ ପୁଣ୍ୟବନ୍ତ ।
ଏଣୁ ଶ୍ରୀରାମ ସୀତାଠାଇଁ
ଏ ରୂପେ ଅଛୁ ଭକ୍ତ ହୋଇ ।
ଅତ ବିଚିତ୍ର ଚିତ୍ରକୂଟେ
ମନ୍ଦାକିନୀ ନଦୀର ତଟେ ।
ତପସ୍ୱୀ ଜନଙ୍କ ଆଶ୍ରମ
ସେଠାରେ ଅଛନ୍ତି ଶ୍ରୀରାମ ।
ଜାନକୀ ଲକ୍ଷ୍ମଣ ତୁଲରେ
ବିଜେ କରିଛନ୍ତି ସୁଖରେ ।
ବେଗେ ତହିଁକି ଏବେ ଯିବା
ଆସ ଜାହ୍ନବୀ ପାରି ହେବା ।
ଏମନ୍ତ କହି ବେଗେ ଗଲା
ନାବ ପାଞ୍ଚଶ ଅଣାଇଲା ।
ତହିଁରେ ଯେ ରାଜ ନଉକା
ଆପଣ ଆଣିଲା ତା ଏକା ।
କୌଶଲ୍ୟା ଶତ୍ରୁଘ୍ନ ତୁଲରେ
ଭରତ ତହିଁ ବିଜେ କଲେ ।
ଗୁରୁ ସୁମିତ୍ରା କଇକେୟୀ
ଆଉ ସମସ୍ତ ମହାଦେଈ ।
ସମସ୍ତ ମନ୍ତ୍ରୀ ସବୁ ସୈନ୍ୟ
ନାବମାନଙ୍କରେ ବହନ ।

ବସିଣ ପାରି ହୋଇ ଗଲେ
ଭରଦ୍ୱାଜ ଆଶ୍ରମେ ହେଲେ ।
ସବୁ ସୈନ୍ୟ ରଖି ଦୂରରେ
ଭରତ ଶତ୍ରୁଘ୍ନ ତୁଲରେ ।
ଆଶ୍ରମେ ପ୍ରବେଶ ହୋଇଲେ
ମୁନିଙ୍କ ସମ୍ମୁଖରେ ମିଳିଲେ ।
ଜଳନ୍ତା ଅଗ୍ନି ପ୍ରାୟେ ତେଜ
ବସି ଅଛନ୍ତି ଭରଦ୍ୱାଜ ।
ଦେଖି ଶତ୍ରୁଘନ ଭରତ
ବନ୍ଦନ କଲେ ଦଣ୍ଡବତ ।
ମୁନି ତାହାଙ୍କୁ ପୂଜା କଲେ
କୁଶଳ ବାର୍ତ୍ତା ପଚାରିଲେ ।
ଜଟା ବକଳ ଭରତର
ଧରିବା ଦେଖି ମୁନିବର ।
ବୋଇଲେ ରାଜ୍ୟ ତ ପାଇଲ
ଜଟା ବକଳ କିପାଁ କଲ ।
ବନସ୍ତ ଋଷିଙ୍କର ସ୍ଥଳ
ଏଥକୁ କାହିଁକି ଆଇଲ ।
ଏମନ୍ତ ଶୁଣିଣ ଭରତ
ଲୋତକ ବହୁଛି ବହୁତ ।
କରଯୋଡ଼ି କରି ନୁଆଇଁ
କହିଲେ ସେ ବିନୟ ହୋଇ ।
ସବୁରି ହୃଦୟେ ଆପଣ
ଥାଅ ଏଘେନି ସବୁ ଜାଣ ।
ତଥାପି ଯାହା ପଚାରିଲ
ଏ କଥା ଅନୁଗ୍ରହ କଲ ।
ରାମ ରାଜା ନୋହିବା ପାଇଁ
ଯେତେକ କଲେ କଇକେୟୀ ।
ତାହା ମୁଁ ନ ଜାଣଇ ପୁଣ
ଏଥକୁ ତୋ ପାଦ ପ୍ରମାଣ ।

ଏମନ୍ତ କହି ଅଣ୍ଠି ହୋଇ
ତାହାଙ୍କ ପାଦଯୁଗ ଛୁଇଁ ।
ବୋଇଲେ ଶୁଣ ତପୋଧନ
ଶୁଦ୍ଧ କି ଅଶୁଦ୍ଧ ମୋ ମନ ।
ରାମ ଥାନ୍ତେ ହେ ଭରଦ୍ୱାଜ
ମୋହର ରାଜ୍ୟରେ କି କାର୍ଯ୍ୟ ।
ଯେଣୁ କରି ସେ ଶ୍ରୀରାମର
ସବୁ କାଳରେ ମୁଁ କିଙ୍କର ।
ଏଣୁ ତାଙ୍କ ପାଦେ ପଡ଼ିଣ
ରାଜ୍ୟ କରିବି ସମର୍ପଣ ।
ରାମଙ୍କୁ ବଶିଷ୍ଠାଦିଙ୍କରେ
ଅଭିଷେକ ଏହି ବନରେ ।
କରି ରାଜ୍ୟକୁ ଘେନି ଯିବି
ଦାସ ପ୍ରାୟେ ସେବା କରିବି ।
ଭରତଠାରୁ ଏ ବଚନ
ଶୁଣିଣ ତୋଷେ ତପୋଧନ ।
ବହନ ଆଲିଙ୍ଗନ କଲେ
ସ୍ନେହରେ ମସ୍ତକ ଶୁଙ୍ଘିଲେ ।
ବହୁତ ବିସ୍ମୟ ହୋଇଲେ
ପ୍ରଶଂସା କରିଣ କହିଲେ ।
ଜ୍ଞାନ ଚକ୍ଷୁରେ କରି ପୁଣି
ପୂର୍ବେ ଏ ମାନ ଅଛୁ ଶୁଣି ।
ଏବେ ତୁ ବିଳାପ ନକର
ଲକ୍ଷ୍ମଣ ପୁଚ୍ଛାଇଁ ରାମର ।
ତୁମ୍ଭେ ଯେଣୁ ଅଟ ଭଗତ
ଏ ଘେନି କରି ହେ ଭରତ ।
ବସ୍ତୁରୁଛୁ ସୈନ୍ୟ ସହିତେ
ପୂଜା କରିବି ଆଜ ତୋତେ ।
ଆଜକ ଏଠାରେ ରହିବ
କାଲି ଶ୍ରୀରାମଠାରୁ ଯିବ ।

ଭରତ ବୋଇଲେ ଯେମନ୍ତ
ବୋଇଲ କରିବି ତେମନ୍ତ ।
ମୁନି କରିଣ ଆଚମନ
ହୋମ ଘରେ ମିଳି ବହନ ।
ମଉନ ହୋଇଣ ବସିଲେ
କାମଧେନୁକୁ ଚିନ୍ତା କଲେ ।
ସେ ବେଗେ ପ୍ରବେଶ ହୋଇଲା
ସମସ୍ତ ଭୋଗମାନ ଦେଲା ।
ଶାସ୍ତ୍ର ପ୍ରମାଣେ ଅଗ ପୁଣ୍ଣ
ବଶିଷ୍ଠଙ୍କୁ ପୂଜା କରିଣ ।
ଭରତଙ୍କୁ ସମସ୍ତ ସୈନ୍ୟ
ତୁଲେ ପୂଜିଲେ ତପୋଧନ ।
ଯେ ଯାହା ମତେ ବାଞ୍ଛା କଲେ
ସେମାନ ସମସ୍ତ ଲଭିଲେ ।
ସ୍ୱର୍ଗ ପ୍ରାୟେ ସେ ଆଶ୍ରମରେ
ରାଜକ ରହିଲେ ସୁଖରେ ।
ସେ ଦିନ ପ୍ରଭାତ କାଳରେ
ଭରତ ଶତ୍ରୁଘ୍ନ ତୁଲରେ ।
ମୁନିଙ୍କି ନମସ୍କାର କଲେ
ତାହାଙ୍କୁ ଅନୁଜ୍ଞା ମାଗିଲେ ।
ଚିତ୍ରକୂଟେ ପ୍ରବେଶ ହୋଇ
ଦୂରେ ସବୁ ସୈନ୍ୟ ରହାଇ ।
ଶବର ଶତ୍ରୁଘ୍ନ ସୁମନ୍ତ
ତିନିଙ୍କ ତୁଲରେ ଭରତ ।
ରାମଙ୍କୁ ଦେଖିବାକୁ ଗଲେ
ପର୍ବତ ଉପରେ ଉଠିଲେ ।
ମୁନିମାନଙ୍କ ଆଶ୍ରମରେ
ବୁଲିଲେ ବହୁତ ଶ୍ରମରେ ।
କାହିଁ ରାମଙ୍କୁ ନ ଦେଖିଲେ
ଦୁଃଖିତ ହୋଇ ଲେଉଟିଲେ ।

ବାଟେ ଅସନ୍ତେ ବିଚାରଲେ
ମୁନିମାନଙ୍କୁ ପଚାରଲେ ।
ରାମ ଲକ୍ଷ୍ମଣ ବଇଦେହୀ
କେଉଁ ଠାବରେ ଛନ୍ତି ରହି ।
ଏମନ୍ତ ଶୁଣି ଏକ ଋଷି
କହିଲେ ଭରତଙ୍କୁ ହସି ।
ଏ ଚିତ୍ରକୂଟ ପଶ୍ଚିମରେ
ଗଙ୍ଗାର ଉତ୍ତର ତଟରେ ।
ବନମାନଙ୍କରେ ମଣ୍ଡିତ
ବିଜନ ଅଟେ ଅତିଅନ୍ତ ।
ପନସ କଦଳୀ ଯେ ତହିଁ
ଅଛନ୍ତି ଫୁଲ ଫଳ ବହି ।
ଚମ୍ପକ କୋବିଦାର କୂଳ
ବହୁତ ପୁନ୍ନାଗ ବକୁଳ ।
ଏଥିରେ ହୋଇଛି ଶୋଭନ
ଯେସନ୍ତେ ଇନ୍ଦ୍ର ନନ୍ଦନବନ ।
ରାମ ମନ୍ଦିର ଅଛି ତହିଁ
ଦେଖିବା ହେଉ ବେଗେ ଯାଇ ।
ଏମନ୍ତ ଶୁଣିଣ ଭରତ
ହରଷ ହୋଇ ଅତିଅନ୍ତ ।
ଶବର ମନ୍ତ୍ରୀ ଶତ୍ରୁଘନ
ସଙ୍ଗତେ ଘେନିଣ ବହନ ।
ସେଠାରେ ପ୍ରବେଶ ହୋଇଲେ
ଶ୍ରୀରାମ ଆଶ୍ରମ ଦେଖିଲେ ।
ତେଜ ହୋଇଛି ଅତିଅନ୍ତ
ଚୂତ ଅଛନ୍ତି ତପୋବନ୍ତ ।
ବକଳ ଅଜିନ ନିକରେ
ଲମ୍ବିଛନ୍ତି ବୃକ୍ଷ ଶାଖାରେ ।
ରାମରେ କର ସେହୁ ସ୍ଥାନ
ହୋଇଛି ପରମ ଶୋଭନ ।
ଏମନ୍ତ ରାମ ଆଶ୍ରମରେ
ଭରତ ମିଳିଲେ ସତ୍ୱରେ ।
ବୋଲଇ ହଳଧର ଦାସ
ସୁଜନମାନେ ବେଗେ ଆସ ।
ଚିତ୍ରକୂଟକୁ ମନ ମାନ
ପେଷିଣ ଦେବା ହେ ବହନ ।
ଗୋଡ଼ାଇ ଭରତ ପଛରେ
ଗହନ ନିକୁଞ୍ଜ ବନରେ ।
ଜଳଦ ଶ୍ୟାମଳ ସୁନ୍ଦର
ଜଟା ବକଳ ଧନୁର୍ଦ୍ଧର ।
ଏମନ୍ତ ରାମଙ୍କୁ ଦେଖିବା
ଏ ଜନ୍ମ ସଫଳ କରିବା ।
ଏ ଶଏ ଏକଷଠି ପଦ
ସମସ୍ତ ଜନଙ୍କ ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅଯୋଧ୍ୟାକାଣ୍ଡେ ନାମ ଅଷ୍ଟମୋଽଧ୍ୟାୟଃ ।

## ନବମ ଅଧ୍ୟାୟ

ଉମା ବୋଲେ ନୀଳଲୋହିତ
ଶ୍ରୀରାମ ସଙ୍ଗତେ ଭରତ ।
କେଉଁ ପ୍ରକାରେ ଭେଟ ହେଲେ ।
କେମନ୍ତ ଲେଉଟି ଅଇଲେ ।
ରହିଲେ ଆସି କେଉଁଠାରେ
ରାଜ୍ୟ ବୁଝିଲେ କି ପ୍ରକାରେ ।
ଚିତ୍ରକୂଟୁଁ ରଘୁନନ୍ଦନ
କେଉଁଠାକୁ କଲେ ଗମନ ।

ଏମାନ କହ ମହେଶ୍ୱର
ଜନ୍ମ ସଫଳ ମୋର କର ।
ଶୁଣି ଆନନ୍ଦେ ପଶୁପତି
ହସି ବୋଇଲେ ଗୋ ପାର୍ବତି ।

ଶ୍ରୀ ମହାଦେବ ଉବାଚ

ତହିଁ ଉତ୍ତାରେଣ ଭରତ
ହରଷ ହୋଇଣ ବହୁତ ।
ଆଶ୍ରମ ନିକଟରେ ଯାଇ
ଦେଖିଲେ ରାମ ବଇଦେହୀ ।
ଦୁହିଙ୍କ ପାଦଚିହ୍ନ ସ୍ଥାନ
ହୋଇଛୁ ପବିତ୍ର ଶୋଭନ ।
ପୃଥ୍ୱୀର ମଙ୍ଗଳଦାୟକ
ହରନ୍ତି ସମସ୍ତ ପାତକ ।
ବଜ୍ର ଅଙ୍କୁଶ ପଦ୍ମ ଧ୍ୱଜ
ଏ ଆଦି ଚିହ୍ନେ ଦିଶେ ତେଜ ।
ଏ ରୂପେ ରାମ ପାଦଚିହ୍ନ
ଦେଖି ଭରତ ଶତ୍ରୁଘନ ।
ତହିଁ ପରମ ଆନନ୍ଦରେ
ଲୋଡ଼ି ଗଡ଼ିଲେ ଧରଣୀରେ ।
ବୋଲୁଛନ୍ତି ମୁଁ ଭାଗ୍ୟବନ୍ତ
ରାମ ପାଦରେ ଯେ ଚିହ୍ନିତ ।
ଏମନ୍ତ ଭୂମି ମୁଁ ଦେଖିଲି
କେତେ ସୁକୃତ କରିଥିଲି ।
ଯେଉଁ ପାଦରଜକୁ ମନେ
ବ୍ରହ୍ମା ଆଦି ଦେବତାମାନେ ।
ଖୋଜୁ ଅଛନ୍ତି ନିରନ୍ତରେ
ବେଦମାନଙ୍କ ସହିତରେ ।
ଏମନ୍ତ ପ୍ରକାରେ ଅଦ୍ଭୁତ
ଯେ ପ୍ରେମରସମଜ୍ଜାମୃତ ।

ତହିଁରେ ମଜ୍ଜନ ହୋଇଛୁ
ହୃଦେ ରାମଙ୍କୁ ଭଜୁଅଛୁ ।
ଅଶ୍ରୁଧାରମାନ ହୃଦରେ
ବହି ଯାଉଛୁ ଆନନ୍ଦରେ ।
ଏ ରୂପେ ମନ୍ଦ ମନ୍ଦ ହୋଇ
ରାମ ଆଶ୍ରମ ପାଖେ ଯାଇ ।
ଉଟଜକୁ ପ୍ରବେଶ ହୋଇଲେ
ଏ ରୂପେ ରାମଙ୍କୁ ଦେଖିଲେ ।
ନବୀନ ଦୂର୍ବାଦଳ ଶ୍ୟାମ
ରୂପେ ନିନ୍ଦିତ କୋଟି କାମ ।
କର୍ଣ୍ଣ ଯାଏ ବେନି ନୟନ
ପ୍ରସନ୍ନ ହୋଇଛୁ ବଦନ ।
ଆଦିତ୍ୟ ସମ ତେଜ ପୁଞ୍ଜ
ବାସୁକି ପ୍ରାୟେ ବେନିଭୁଜ ।
ବଳକଳ କଟି ପ୍ରଦେଶରେ
ଜଟା ମୁକୁଟ ଅଛୁ ଶିରେ ।
ମୃଗ ଛାଲରେ ବସିଛନ୍ତି
ସୀତାଙ୍କୁ ଆନନ୍ଦ କରାନ୍ତି ।
ଆଗରେ ବସିଣ ଲକ୍ଷ୍ମଣ
ଜାନୁରେ ରଖିଣ ଚରଣ ।
ମାର୍ଜନା କରୁଛନ୍ତି କରେ
ଭରତ ଏହି ସମୟରେ ।
ଦେଖି ହୃଦ୍‌ରା ହୋଇ ଅତ୍ୟନ୍ତ
ଶୋକ ହରଷେ ହୋଇ ଯୁକ୍ତ ।
ପଡ଼ିଲେ ଚରଣ ଧରିଣ
ଶ୍ରୀରାମ ଏମନ୍ତ ଦେଖିଣ ।
ତାହାଙ୍କୁ ବେଗେ ତୋଳି ଧରି
ସ୍ନେହରେ ଆଲିଙ୍ଗନ କରି ।
ଆନନ୍ଦେ ଅଶ୍ରୁଧାରମାନ
ଭରତ ଉପରେ ବହନ ।

ପୁଣି ପୁଣି କରି ସିଞ୍ଚିଲେ
ବହୁତ ଆଲିଙ୍ଗନ କଲେ ।
ଏଥୁ ଉତ୍ତାରେ ମାତାମାନେ
ତୃଷାରେ ଗାଈକୁଳ ଯେହ୍ନେ ।
ସତ୍ୱରେ ଅସନ୍ତ ଜଳକୁ
ତେହ୍ନେ ରାମକୁ ଦେଖିବାକୁ ।
ସମସ୍ତେ ଶୋକ ହରଷରେ
ମିଳିଲେ ଅତି ଉତ୍ସୁକରେ ।
ରାମ କୌଶଲ୍ୟାଙ୍କୁ ଦେଖିଲେ
ତାଙ୍କ ଚରଣେ ପ୍ରଣମିଲେ ।
ଲୁହ ପଡ଼ୁଛି ହୃଦୟରେ
କୌଶଲ୍ୟା ଏମନ୍ତ ପ୍ରକାରେ ।
ରାମଙ୍କୁ ତୋଳିଣ ଧରିଲେ
ସ୍ନେହରେ ଆଲିଙ୍ଗନ କଲେ ।
ରାମ ସବୁ ମାତାମାନଙ୍କୁ
ପ୍ରଣାମ କରି ବଶିଷ୍ଠଙ୍କୁ ।
ଦେଖି ଦଣ୍ଡ ପ୍ରଣାମ କଲେ
ଧନ୍ୟ ମୁଁ ହୋଇଲି ବୋଇଲେ ।
ଶତ୍ରୁଘ୍ନ ତୁଲିରେ ଭରତ
ସୀତାଙ୍କୁ କଲେ ଦଣ୍ଡବତ ।
ଶତ୍ରୁଘ୍ନ ଲକ୍ଷ୍ମଣ ପାଦରେ
ଦଣ୍ଡ ପ୍ରଣାମ କରି ଥରେ ।
ଭରତ ପାଦ ତଳେ ପୁଣି
ନମସ୍କାର କଲେ ଲକ୍ଷ୍ମଣ ।
କୌଶଲ୍ୟା ସୁମିତ୍ରା କୈକେୟୀ
ଆଉ ଯେତେକ ମହାଦେଈ ।
ସମସ୍ତଙ୍କର ପାଦତଳେ
ସୀତା ଲକ୍ଷ୍ମଣ ନଇଁଗଲେ ।
ସମସ୍ତେ ସୀତାଙ୍କୁ ବେଢ଼ିଣ
ସ୍ନେହରେ କଲେ ଆଲିଙ୍ଗନ ।

ବଶିଷ୍ଠଙ୍କୁ ପ୍ରଣାମ ପୁଣି
କଲେ ବଇଦେହୀ ଲକ୍ଷ୍ମଣ ।
ପୁର ରାଜ୍ୟର ସବୁ ଜନେ
ରାମଙ୍କୁ ଦେଖିଣ ନୟନେ ।
ଘନ ଦେଖି ଚାତକ ଯେହ୍ନେ
ଆନନ୍ଦ ହୋଇଲେ ତେସନେ ।
ରାମ ସବୁଙ୍କୁ ବସାଇଲେ
ଗୁରୁଙ୍କୁ ଗୃହିଁ ପଚାରିଲେ ।
ପିତା କୁଶଳେ ଛନ୍ତି ଟିକି
ମୋତେ ସେ କି କହିଛନ୍ତି କି ?
ଏମନ୍ତ ଶୁଣି ବୋଲେ ଗୁରୁ
ପିତା ତୁମ୍ଭର ବଚ୍ଛେଦରୁ ।
ବହୁତ ସନ୍ତାପନ୍ତ ହୋନ୍ତେ
ତୁମ୍ଭଙ୍କୁ ସେ ଚିନ୍ତା କରନ୍ତେ ।
ହେ ରାମ ହେ ଲକ୍ଷ୍ମଣ ସୀତା
ଏମନ୍ତ ବୋଲି ବୋଲି ପିତା ।
ଦେହ ଛାଡ଼ି ସ୍ୱର୍ଗକୁ ଗଲେ
ରାମ ଯହୁଁ ଏହା ଶୁଣିଲେ ।
କର୍ଣ୍ଣେ ଶୂଳ ବାଜିଲେ ଯେହ୍ନେ
ଗୁରୁ ବଚନେ ହୋଇ ତେହ୍ନେ ।
ହା କଷ୍ଟରେ ମୁଁ ନାଶଗଲି
ପଡ଼ିଲେ ଏତେ ମାତ୍ର ବୋଲି ।
ପୁଣି ସୀତା ଲକ୍ଷ୍ମଣ ତୁଲେ
ଚେତନା ପାଇ ଶୋକ କଲେ ।
ହେ ତାତ ମୋତେ ଛାଡ଼ି ପୁଣି
କେଉଁଠାକୁ ଗଲ ଆପଣି ।
ଅନାଥ ହେଲି ତୁମ୍ଭ ବିନା
କେ ମୋତେ କରିବ ପାଳନା ?
ଜାନକୀ ଲକ୍ଷ୍ମଣ ସଙ୍ଗତେ
ଏରୂପେ ରୋଦନ କରନ୍ତେ ।

କୌଶଲ୍ୟାଦି ମାତା ସହିତେ
ପୁର ରାଜ୍ୟର ଲୋକ ଯେତେ ।
ବିଳାପ କଲେ ହୋଇ ଦୁଃଖୀ
ବଶିଷ୍ଠେ ସେ ରୋଦନ ଦେଖି ।
ଜ୍ଞାନ-ଶାସ୍ତ୍ରମାନ କହିଲେ
ରାମଙ୍କୁ ଶାନ୍ତ କରାଇଲେ ।
ସମସ୍ତେ ଏଥୁ ଅନନ୍ତରେ
ଯାଇ ସେ ମନ୍ଦାକିନୀ ତୀରେ ।
ବିଳାପ ତେଜି କରି ସ୍ନାନ
ରାଜାଙ୍କୁ କରି ଜଳଦାନ ।
ପୁଇଁଗୁଦଅ ଗୁଣ୍ଡି କଲେ
ରାମ ପିତାଙ୍କୁ ପିଣ୍ଡ ଦେଲେ ।
ମୁଁ ଯାହା କରୁଅଛି ଆହାର
ତାହା ଦେଲି ତୋତେ ନୃପବର ।
ଏମନ୍ତ ବଚନ କହିଲେ
ଦୁଃଖେ ମନ୍ଦିରକୁ ଆଇଲେ ।
ବହୁତ କରନ୍ତି ରୋଦନ
ଉପବାସ କଲେ ସେ ଦିନ ।
ପ୍ରଭାତେ ମନ୍ଦାକିନୀ ତୀରେ
ସ୍ନାନ କରି ଆସି ସତ୍ୱରେ ।
ଶ୍ରୀରାମଚନ୍ଦ୍ର ବସିଥିଲେ
ସେଠାରେ ଭରତ ମିଳିଲେ ।
କର ଯୋଡ଼ି ରାମଙ୍କୁ ଚାହିଁ
ବୋଇଲେ ଅଭିଷେକ ହୋଇ ।
ପିତୃ ପିତାମହଙ୍କ ପୁର
ପରିପାଳନା କରି ବୀର ।
ପିଅର ମୋହର ଯେମନ୍ତ
ଆପଣହିଁ ଅଛ ତେମନ୍ତ ।
ପ୍ରଜା ପରିପାଳନ ରାମ
ରଘୁବଂଶର ବଡ଼ ଧର୍ମ ।

ଏ ଯେଣୁ ହେ ରଘୁନନ୍ଦନ
କରି ବହୁତ ଯାଗମାନ ।
ବଂଶ ରକ୍ଷା ନିମନ୍ତେ ପୁଣ
ପୁତ୍ରମାନ ଜାତ କରିଣ ।
ରାଜ୍ୟେ ଅଭିଷେକ କରିବ
ତେବେ ତପୋବନକୁ ଯିବ ।
ବନରେ ବାସ କରିବାର
ଏ କାଳ ନୁହଇ ତୁମ୍ଭର ।
ମୋ ମାତା ଅପରାଧ ଯାହା
କ୍ଷମ ଛାଡ଼ିବା ହେଉ ତାହା ।
ଅମ୍ଭମାନଙ୍କୁ ନିରନ୍ତର
ରକ୍ଷା କରିବା ହେଉ ବୀର ।
ଏମନ୍ତ କହି ଶୋକକର
ଶ୍ରୀରାମ ପାଦ ଶିରେ ଧରି ।
ବିନୟ ହୋଇ ସେ ଭରତ
ଭୂମିରେ କଲେ ଦଣ୍ଡବତ ।
ଶ୍ରୀରାମ ବେଗେ ତୋଳି କରେ
ବସାଇ ଆପଣା କୋଳରେ ।
ଅଳପ ଅଳପ କରିଣ
କହିଲେ ସ୍ନେହରେ ଏସନ ।
ହେ ବତ୍ସ ! କହିଲ ଯେମନ୍ତ
ସେ କଥା ଅଟଇ ତେମନ୍ତ ।
କହିବା ଶୁଣ ତା ତୁମ୍ଭଙ୍କୁ
ପିଅର ବୋଇଲେ ଆମ୍ଭଙ୍କୁ ।
ଦଣ୍ଡକ ବନରେ ଅବଶ୍ୟ
ରହିବ ଚଉଦ ବରଷ ।
ପଛେ ଆସିବ ଅଯୋଧ୍ୟାକୁ
ରାଜ୍ୟ ମୁଁ ଦେଲି ଭରତଙ୍କୁ ।
ଏଣୁ ତୁମ୍ଭଙ୍କୁ ହେ ଭରତ !
ନୃପତି ରାଜ୍ୟ କଲେ ଦତ୍ତ ।

ଅମ୍ଭଙ୍କୁ ବନେ ଦେଲେ ବାସ
ଏ ଘେନି ଦୁହେଁ ତ ଅବଶ୍ୟ ।
ଯତ୍ନେ କର ତାଙ୍କ ବୋଲ ତ
ରଖିବା ଅଟଇ ଉଚିତ ।
ନ କରି ପିତାଙ୍କ ବଚନ
ଆପଣା ସ୍ୱଏଁ କାର୍ଯ୍ୟମାନ ।
କରନ୍ତି ଯେ ପୁଣ ନିଶ୍ଚୟେ
ଜୀଇଁଥିଲେ ସେ ମଲା ପ୍ରାୟେ ।
ଯେଉଁ କାଳେଣ ନାଶ ଯାଇ
ନରକ ଭୋଗ ସେ କରଇ ।
ଏଣୁ ପିତାଙ୍କ ବୋଲେ ବୀର
ରାଜ୍ୟ ପାଳନା ତୁମ୍ଭେ କର ।
ଏ ଘେନି ରାଜ୍ୟକୁ ନ ଫିରୁ
ଅମ୍ଭେ ବନ ରକ୍ଷା କରିବୁ ।
ଏଥକୁ କହିଲେ ଭରତ
ପିତା ତ କାମୁକ ଉନ୍ମତ୍ତ ।
ଭ୍ରାନ୍ତହୃଦୟ ସ୍ତ୍ରୀବଶ୍ୟତ
ଏଥୁ ସେ କପାଁ ହେବେ ସତ୍ୟ ।
ପଣ୍ଡିତ ଲୋକ ଏହା ତତ୍ତ୍ୱ
ତର ଘେନିବା ଅନୁଚିତ ।
ରାମ ବୋଇଲେ ସେ ନୃପତି
କାମୁକ ମୂଢ଼ ସେ ନୁହନ୍ତି ।
ଏ କଥା ସ୍ତ୍ରୀବଶ ହୋଇ
ବୋଲି ନାହାନ୍ତି ନରସାଇଁ ।
କଇକେୟୀଙ୍କି ପୂର୍ବେ ଯାହା
ଦେବାକୁ କହିଥିଲେ ତାହା ।
ମିଥ୍ୟା ନୋହିବା ପାଇଁ ଦେଲେ
ସତ୍ୟ ବଚନ ରକ୍ଷା କଲେ ।
ନରକ ପୁଛାହୁଁ ନୃପତି
ମିଥ୍ୟାକୁ ବହୁତ ଡରନ୍ତି ।

ମୁଁ କଇକେୟୀଙ୍କ ଅଗରେ
ଚଉଦ ବରଷ ବନରେ ।
ବୋଲିଛୁ ରହିବାର ପାଇଁ
ରଘୁବଂଶରେ ଜାତ ହୋଇ ।
କେମନ୍ତେ ମିଥ୍ୟା ଏବେ ତାହା
କରିବି ବୋଲି ଅଛୁ ଯାହା ।
ଏଥକୁ କହିଲେ ଭରତ
ଯେବେ ଏ କଥା କଲ ସତ୍ୟ ।
ତେବେ ସେ ବନ ମୋତେ ଦିଅ
ତୁମ୍ଭେ ମୋ ଠାରୁ ରାଜ୍ୟ ନିଅ ।
ଏଥକୁ ଶ୍ରୀରାମ କହିଲେ
ପିତା ତୁମ୍ଭଙ୍କୁ ରାଜ୍ୟ ଦେଲେ ।
ଅମ୍ଭଙ୍କୁ ଦେଇଛନ୍ତି ବନ
ଏହା ଯେବେ କରିବା ଆନ ।
ତେବେହେଁ ଦୁହେଁ ତ ଅବଶ୍ୟ
ଲଭିବା ମିଥ୍ୟା କଲା ଦୋଷ ।
ଏଥକୁ ବୋଇଲେ ଭରତ
ତେବେ ମୁଁ ଲକ୍ଷ୍ମଣ ଯେମନ୍ତ ।
ଅଛନ୍ତି ସେ ରୂପେ ରହିବି
ବନରେ ସେବା କରୁଥିବି ।
ନୋହିଲେ କରି ଅନଶନ
ଏଠାରେ ତେଜିବି ଜୀବନ ।
ଏରୂପେ ନିଷ୍ଠେ ହୃଦେ ଧରି
ପୂର୍ବଦିଗକୁ ମୁଖ କରି ।
ବସିଲେ କୁଶ ଆସନରେ
ନିର୍ବନ୍ଧ ଦେଖି ଏ ପ୍ରକାରେ ।
ଶ୍ରୀରାମ ବିସ୍ମୟ ହୋଇଲେ
ଗୁରୁଙ୍କ ଚକ୍ଷୁ ଠାରି ଦେଲେ ।
ଏଣୁ ସେ ଭରତକୁ ନେଇ
କହିଲେ ଏକାନ୍ତେ ବସାଇ ।

ହେ ବତ୍ସ ଗୂଢ଼ କଥା ଶୁଣ
ରାମ ଅଟନ୍ତି ନାରାୟଣ ।
ରାବଣ ବଧ ହୋଇବାକୁ
ବ୍ରହ୍ମା ଏହାଙ୍କ ମାଗିଲେକୁ ।
ଦଶରଥର ହୋଇ ସୁତ
କୌଶଲ୍ୟାଠାରେ ହେଲେ ଜାତ ।
ଯୋଗମାୟାଟି ମିଥିଳାରେ
ଜନ୍ମିଲେ ସୀତାସ୍ୱା ନାମରେ ।
ଶେଷ ଟି ଲକ୍ଷ୍ମଣ ରୂପରେ
ଜନ୍ମିଲେ ସୁମିତ୍ରା ଉଦରେ ।
ସନ୍ତତ ରାମ ସଙ୍ଗତରେ
ଗୋଡ଼ାଇଛନ୍ତି ନିରନ୍ତରେ ।
ଦଶକନ୍ଧର ବଧ ପାଇଁ
ଯାଉଅଛନ୍ତି ନଷ୍ଟେ ହୋଇ ।
ନୃପତି ଯାହା ତୁଷ୍ଟ ହେଲେ
କଇକେୟୀଙ୍କି ବର ଦେଲେ ।
କୈକେୟୀ ପଛେ ଯେତିମାନ
କହିଲେ ନିଷ୍ଠୁର ବଚନ ।
ଏହା ଦେବତା ସବୁ କଲେ
ନୋହିଲେ କୈକେୟୀ କି ବୋଲେ ?
ଏଡ଼େ ନିଷ୍ଠୁର କଥା କଲେ
ମନେ ହରଷ ଲଭୁଥିଲେ ।
ଏ ଘେନି ରହ ତୁ ତାହାଙ୍କ
ନ କର ପୁରକୁ ଦେବାକୁ ।
ସୈନ୍ୟ ମନ୍ତ୍ରୀମାନଙ୍କ ନିଅ
ବାହୁଡ଼ି ଅଯୋଧ୍ୟାକୁ ଯାଅ ।
ସବଂଶ କରି ରାବଣକୁ
ମାରି ଏ ଆସିବେ ପୁରକୁ ।
ଏମନ୍ତ ଶୁଣନ୍ତେ ଭରତ
ବିସ୍ମୟ ହୋଇ ଅତିଅନ୍ତ ।
ହରଷେ ବିକାଶ ଲୋଚନ
ହୋଇଛନ୍ତି ଭଟି ସେ ବଦନ ।
ଶ୍ରୀରାମ ନିକଟକୁ ଗଲେ
ଏମନ୍ତ ବଚନ କହିଲେ ।
ରାଜ୍ୟ ନିମନ୍ତେ ମୋରେ ରାଜେନ୍ଦ୍ର
ପାଦୁକା ଦିଅ ରାମଚନ୍ଦ୍ର ।
ତୁମ୍ଭଙ୍କ ତୋ ଆସିବା ଯାଏଁ
ସେବା କରିବି ମୁଁ ନିଷ୍ଠାୟେ ।
ଏମନ୍ତ ପ୍ରକାରେ ସେ କହି
ପାଦୁକା ଯୋଡ଼ିଏ ଯେ ନେଇ ।
ଶ୍ରୀରାମ ପାଦରେ ଖଞ୍ଜିଲେ
ସେ ତାହା ଭରତଙ୍କୁ ଦେଲେ ।
ରତନମାନରେ ଜଡ଼ିତ
ଏମନ୍ତ ପାଦୁକା ଭରତ ।
ଘେନି ହରଷେ ହୋଇ ଯୁକ୍ତ
ବହୁତ କରି ଦଣ୍ଡବତ ।
ଭକ୍ତିରେ ଗଦ ଗଦ ହେଲେ
ଏମନ୍ତ ବଚନ କହିଲେ ।
ଚଉଦ ବରଷ ଉତ୍ତାରେ
ଯେବେ ପ୍ରଥମ ଦିବସରେ ।
ତୁମ୍ଭେ ନ ଆସିବ ପୁରକୁ
ତେବେ ପଶିବି ଅନଳକୁ ।
ରାମ ତା ସିଜକାର କଲେ
ପ୍ରବୋଧି ତାହାଙ୍କ କହିଲେ ।
ଭରତ ଗୁରୁ ଶତ୍ରୁଘନ
ସମସ୍ତ ମାତା ମନ୍ତ୍ରୀ ସୈନ୍ୟ ।
ସବୁରି ତୁଲେ ଯୁକ୍ତ ହେଲେ
ଲେଉଟିବାକୁ ମନ କଲେ ।
ନେତ୍ରୁ ନାଉଛୁ ଲୁହ ବହି
କୈକେୟୀ କୃତାଞ୍ଜଳି ହୋଇ ।

ରଘୁନାଥଙ୍କୁ ଏକାନ୍ତରେ
କହିଲେ ଏମନ୍ତ ପ୍ରକାରେ ।
ମୁଁ ଯାହା ଦୁଷ୍ଟ ବୁଦ୍ଧି କଲି
ତୁମ୍ଭ ଅଭିଷେକ ଭାଙ୍ଗିଲି ।
ତାହା ମୋ ଅଯତ୍ନେ ନ କଲି
ତୁମ୍ଭ ମାୟାରେ ମୋହ ହେଲି ।
ସେ ଦୋଷ କ୍ଷମା କର ମୋର
ସାଧୁମାନେ କ୍ଷମାସାଗର ।
ପରମଆତ୍ମା ତୁ ସାକ୍ଷାତ
ତୁ ବିଷ୍ଣୁ ତୁ ନଚେଷ୍ଟ ଅଚ୍ୟୁତ ।
ମାୟାରେ ମନୁଷ୍ୟ ହୋଇଛ
ଜଗତ ମୋହ କରୁଅଛ ।
ସମସ୍ତ ଲୋକ ତୋ ମାୟାରେ
ସୃଷ୍ଟିରେ ଭଲ ମନ୍ଦ କରେ ।
ଜଗତ ଅଧୀନ ତୁମ୍ଭର
ବଶ ନୁହଇ ଆପଣାର ।
ଏ ହେନ କରି ହେ ରାଘବ
ମନୁଷ୍ୟ କି କାର୍ଯ୍ୟ କରିବ ।
ନାଟୁଣୀ କୁଣ୍ଢାଇ ଯେମନ୍ତ
ନାଟୁଆ ବୋଲେ କରେ ନୃତ୍ୟ ।
ମାୟା ନାଚୁଣୀ ତୋ ବୋଲରେ
ନାଚଇ ବହୁତ ରୂପରେ ।
ଦେବତାଙ୍କ କାର୍ଯ୍ୟ ନିମିତ୍ତେ
ମନ କରିଣ ତୁମ୍ଭେ ମୋତେ ।
ଯେଣୁ ଆଜ୍ଞା ଦେଲ ଆପଣ
ତେଣୁ ମୁଁ କଲି ଦୁଷ୍ଟପଣ ।
ତୁ ଦେବଙ୍କର ଅଗୋଚର
ଆଜ ମୁଁ ଜାଣିଲି ହେ ବୀର ।
ହେ ଜଗନ୍ନାଥ ହେ ଅନନ୍ତ
ତୁମ୍ଭଙ୍କୁ ମାଗୁଛି ଏମନ୍ତ ।
ମୋତେ ଆପଣ ରକ୍ଷା କର
ତୋତେ କରୁଛି ନମସ୍କାର ।
ତୋତେ ହେଲି ଶରଣାପନ୍ନ
ତୋଠାରେ ଅଛି ଯେତେ ଜ୍ଞାନ ।
ଖଡ଼ଗ ସେ ହେଉ ତହିଁରେ
ଯେବଣ ସ୍ନେହ ପୁତ୍ରାଦରେ ।
ଏ ପାଶ ବନ୍ଧନ ମୋହର
କାଟିବା ହେଉ ରଘୁବୀର ।
ଶ୍ରୀରାମ ଏ ବଚନ ଶୁଣି
ହସି କହିଲେ ତାଙ୍କୁ ପୁଣି ।
ଯାହା କହିଲ କଇକେୟୀ
ସେ ସତ୍ୟ ମିଥ୍ୟା ତ ନୁହଇ ।
ଦଣ୍ଡକବନକୁ ଆସିବି
ଦେବଙ୍କ କାର୍ଯ୍ୟ ଯେ କରିବି ।
ଏଥିପାଇଁ ମୁଁ ତୁମ୍ଭଠାକୁ
ପଠିଥିଲି ଶାରଦାଙ୍କୁ ।
ସେ ତୁମ୍ଭ ମୁଖୁଁ ଜାତ ହେଲେ
ମୋ ଅଭିଷେକ ବନ୍ଧ କଲେ ।
ଏ ହେନ ଏଥେ କଇକେୟୀ
ତୁମ୍ଭର କିଛି ଦୋଷ ନାହିଁ ।
ଏ ବେଳ ଯାଅ ଯା ମନ୍ଦିରେ
ରାତ୍ର ଦିବସ ହୃଦୟରେ ।
ମୋତେ ଭାବନା କରୁଥିବ
ସବୁଠାରୁ ସ୍ନେହ ଛାଡ଼ିବ ।
ପୁଣି ମୋହର ଭକତରେ
ମୋକ୍ଷ ହୋଇବ ନିକଟରେ ।
ମୁଁ ସମଦୃଷ୍ଟି ସବୁଠାଇଁ
ମୋହର ଶତ୍ରୁ ମିତ୍ର ନାହିଁ ।
କଳପ ତରୁ ପ୍ରାୟେ ମୁହିଁ
ଯେ ମୋତେ ଯେମନ୍ତ ଭଜଇ ।

ତହିଁକି ଅନୁରୂପ ହୋଇ
ମୁଁ ପୁଣି ତାହାକୁ ଭଜଇ ।
ଯେ ପୁଣି ମୋହର ମାୟାରେ
ମୋହିତ ଅଛନ୍ତି ସେ ନରେ ।
ମନୁଷ୍ୟ ଅକୃତ ଅଟଇ
ଏମନ୍ତ ମୁଁ ଯେ ମୋହ ଠାଇଁ ।
ଏ ରୂପେ ବିଚାର କରନ୍ତି
ମୁଁ ଦୁଃଖ ପାଉଛି ବୋଲନ୍ତି ।
ତତ୍ତ୍ୱ କାରଣ ସେହୁ ଜନେ
କେବେହେଁ ନ ଘେନନ୍ତି ମନେ ।
ନିଶ୍ଚୟେ ମୋହର ବିଷୟ
ନାଶ କରଇ ଭବଭୟ ।
ଏ ଜ୍ଞାନ ବହୁତ ଭାଗ୍ୟରେ
ହେଲା ତୁମ୍ଭର ଅମ୍ଭଠାରେ ।
ସ୍ମରଣ ମୋତେ ଏଣୁ କର
ମନ୍ଦିରେ ଥାଅ ହୃଦେ ଧର ।
କର୍ମମାନେ ଅଜ ତୁମ୍ଭଙ୍କୁ
ଯୋଗ୍ୟ ନୋହିବେ ଛୁଇଁମାକୁ ।
ଏମନ୍ତ କହିଣ ତାହାକୁ
ମେଲାଣି ଦେଲେ ଅଯୋଧ୍ୟାକୁ ।
କୈକେୟୀ ଆନନ୍ଦାଶ୍ରୁ ଧରି
ରାମଙ୍କୁ ପ୍ରଦକ୍ଷିଣ କରି ।
ଶତଶ ଦଣ୍ଡବତ କଲେ
ହରଷେ ମନ୍ଦିରକୁ ଗଲେ ।
ଏଥୁ ଉତ୍ତାରେ ସେ ଭରତ
ରାମଙ୍କ ଚିନ୍ତଣ ସନ୍ତତ ।
ସବୁରି ତୁଲେ ଦୁଃଖେ ଯାଇ
ପ୍ରବେଶ ନିଜ ରାଜ୍ୟେ ହୋଇ ।
ସବୁଙ୍କୁ ରଖି ଅଯୋଧ୍ୟାରେ
ମିଳିଲେ ସେ ନନ୍ଦୀଗ୍ରାମରେ ।

ରାମ ପାଦୁକା ବେନି ନେଇ
ସିଂହାସନରେ ସେ ବସାଇ ।
ଫୁଲ ଚନ୍ଦନ ଅକ୍ଷତରେ
ଦ୍ୱିଜ ଉପଚାର ମାନରେ ।
ପ୍ରତ୍ୟହ ପୂଜା ସେ କରନ୍ତି
ରାଜକାର୍ଯ୍ୟାଦିକ ଜଣାନ୍ତି ।
ଆପଣ ଫଳ ମୂଳ ଖାନ୍ତି
ଜଟା ବକଳ ଧରିଥାନ୍ତି ।
ଶୟନ କରନ୍ତି ସେ ମହୀ
ବ୍ରହ୍ମଚାରୀଙ୍କ ଦୀକ୍ଷା ବହି ।
ଶ୍ରୀରାମ ଆସିବା ସତତେ
ଚିନ୍ତି ଗାରି କାଟନ୍ତି ନିତ୍ୟେ ।
ମନ ସମର୍ପି ରାମଠାରେ
ଏ ରୂପେ ଶତ୍ରୁଘନ ତୁଲେ ।
ଦୁଃଖିତ ହୋଇ ସେ ରହିଲେ
ବ୍ରହ୍ମଋଷି ପ୍ରାୟେ ଦିଶିଲେ ।
ଏଥୁ ଅନ୍ତରେ ଗୋ ପାର୍ବତି
ଚିତ୍ରକୂଟରେ ରଘୁପତି ।
ଜାନକୀ ଲକ୍ଷ୍ମଣ ତୁଲରେ
ଥୋକାଏ ଦିନ ସୁଖେ ନେଲେ ।
ତାହାଙ୍କୁ ସେ ମୁନି ସମସ୍ତେ
ଆଦର କରିଥାନ୍ତି ନିତ୍ୟେ ।
ରାମ ଲକ୍ଷ୍ମଣ ବଇଦେହୀ
ଚିତ୍ରକୂଟରେ ଛନ୍ତି ରହି ।
ଏମନ୍ତ ଜାଣି ପୁରଲୋକେ
ଦେଖିବା ବୋଲି ଯେ ଉତ୍ସୁକେ ।
ପ୍ରତି ଦିବସରେ ଆସନ୍ତି
ତାହାଙ୍କୁ ଦର୍ଶନ କରନ୍ତି ।
ଲୋକଗହଳ ରାମ ଦେଖି
ବିହନ ସେ ସ୍ଥାନ ଉପେକ୍ଷି ।

ଦଣ୍ଡକ ଅରଣ୍ୟକୁ ଗଲେ
କାର୍ଯ୍ୟହିଁ ଅଛୁ ଚିନ୍ତାକଲେ ।
ସୀତା ଲକ୍ଷ୍ମଣ ସହିତରେ
ସୁଖଦ ସମସ୍ତ ଋତୁରେ ।
ବ୍ରଜାନ ଅତ୍ରିଙ୍କ ଆଶ୍ରମ
ତହିଁ ପ୍ରବେଶ ହେଲେ ରାମ ।
ଅରଣ୍ୟ ଶୋଭା କରି ଋଷି
ମୃଗ ଅଙ୍ଗନେ ଛନ୍ତି ବସି ।
ଏ ରୂପେ ଅତ୍ରିଙ୍କି ଦେଖିଲେ
ପ୍ରଣାମ କରି ଜଣାଇଲେ ।
ରାମ ମୁଁ ଚରଣେ ତୁମ୍ଭର
କରୁଛି ମୁନି ନମସ୍କାର ।
ପିତାଙ୍କ ଆଜ୍ଞା ଶିରେ ଘେନି
ବନକୁ ଆଇଲି ହେ ମୁନି ।
ବନବାସନ୍ତୁ ତପୋଧନ
ତୁମ୍ଭଙ୍କୁ ଦେଖି ହେଲି ଧନ୍ୟ ।
ନିଶ୍ଚୟେ ବିଷ୍ଣୁ ରଘୁପତି
ଏମନ୍ତ ଜାଣି ଚେତେ ଅତ୍ରି ।
ବଡ଼ ଭକ୍ତିରେ ହୋଇ ଯୁତ
ଫଳାଦି ଦେଇଣ ବହୁତ ।
ପୂଜାକରି ସେ ବସାଇଲେ
ଏମନ୍ତ ବଚନ କହିଲେ ।
ଆମ୍ଭର ଅଛନ୍ତି ଯେ ଜାୟା
ନାମ ତାଙ୍କର ଅନସୂୟା ।
ବଡ଼ ବୃଦ୍ଧା ସେ ଘରେ ଅଛି
ବହୁତ ତପସ୍ୟା କରୁଛି ।
ଅପାର ଧର୍ମ ସେ ଜାଣଇ
ତାହାଙ୍କୁ ଦେଖ ବଇଦେହୀ ।
ସୀତାଙ୍କୁ ବୋଲେ ରଘୁସାଇଁ
ଯାଅ ତାହାଙ୍କୁ ଭେଟ ହୋଇ ।

ଚରଣେ ପ୍ରଣାମ କରିବ
ଏଠାକୁ ବହନ ଆସିବ ।
ସୀତା ଶ୍ରୀରାମ ବୋଲେ ଗଲେ
ତାହାଙ୍କୁ ନମସ୍କାର କଲେ ।
ସେ ଅନସୂୟା ଦେଖି ତାଙ୍କୁ
ହରଷ ହୋଇଣ ପାଖକୁ ।
ଆଦର କରିଣ ଡାକିଲେ
ସ୍ନେହରେ ଆଲିଙ୍ଗନ କଲେ ।
ବିଶ୍ୱକର୍ମା ଯେ ପୂର୍ବକାଳେ
ଅନସୂୟାଙ୍କୁ ଦେଇଥିଲେ ।
ସେ ଏବେ ଏ ବେନିକୁଣ୍ଡଳ
ଅମଳ ଦୁକୂଳ ଯୁଗଳ ।
ଉତ୍ତମ ଅଙ୍ଗରାଗ ତୁଲେ
ସୀତାଙ୍କୁ ଦେଇଣ କହିଲେ ।
ଏ ସବାଶୁ ଗୋ ବଇଦେହି
ତୋତେ ଶୋଭା ଛାଡ଼ିବ ନାହିଁ ।
ପତିବ୍ରତା ଧର୍ମରେ ଥିବୁ
ଶ୍ରୀରାମ ପାଖ ନ ଛାଡ଼ିବୁ ।
ରାମ କୁଶଳେ ତୋ ତୁଲରେ
ପ୍ରବେଶ ହେବେ ଅଯୋଧ୍ୟାରେ ।
ଏଥୁ ଉତ୍ତରେ ମୁନିପୁଣି
ଶ୍ରୀରାମ ଜାନକୀ ଲକ୍ଷ୍ମଣ ।
ତିନିଙ୍କି ଭୋଜନ କରାଇ
ସୁଖରେ ଆସନେ ବସାଇ ।
କର ଯୁଗଳ ସେ ଯୋଡ଼ିଲେ
ରାମଙ୍କୁ ଏମନ୍ତ କହିଲେ ।
ତୁମ୍ଭେ ଏ ଚଉଦ ଭୁବନ
ନିଶ୍ଚୟ କରିଣ ବିଧାନ ।
ହୋଇ ଦେବତା ପଶୁ ନର
ଏ ରୂପେ ତାହା ରକ୍ଷାକର ।

ସେ ଦେହ ଗୁଣମାନ ତୋତେ
ଛୁଅନ୍ତି ନାହିଁ କଦାଚତେ ।
ସବୁଙ୍କୁ ଯେ ଭୟ କରାଇ
ସେ ମାୟା ତୁମ୍ଭଙ୍କୁ ଡରଇ ।
ଶୁଣିମା ହେଉ ସୁଜ୍ଜନରେ
ଏ କାଣ୍ଡ ପୂରିଲା ଶୁଭରେ ।
ବୋଲଇ ଦୀନ ହଳଧର
ସୁଜନେ ଶୁଣ ମୋ ଉତ୍ତର ।
ଜନ ଗହଳେ ରାବଣାର
ତେଜିଲେ ଚିତ୍ରକୂଟ ଗିରି ।
ଗଲେ ଅତ୍ରିଙ୍କ ଆଶ୍ରମକୁ
ମନ ପେଷିବା ରାମଠାକୁ ।
ସେ ଗଲେ ଏ ଗୋଡ଼ାଇଥିବ
ବୁଝିବା କାହିଁ ସେ ଲଭିବ ।
ଏ ଅଟେ ଯେହ୍ନେ ହିମାଳୟ
ଅଣୁରୁ କ୍ଷୁଦ୍ର ମୋ ହୃଦୟ ।
ଏ ସେନ୍ନ ଯେତେକ ବୁଝିଲି
ତେତେକ ପ୍ରକାଶ ମୁଁ କଲି ।
ଏ ସେନି କରି ଦୋଷ ମୋର
ରାମ କିଙ୍କରେ କ୍ଷମା କର ।
ଦୁଇଶ ପଞ୍ଚାବନ ପଦ
ଏ ଅଧ୍ୟା ସବୁରି ମୋକ୍ଷଦ ।
ଶତାବନ ଊଣିଶ ଶତ
ଏ କାଣ୍ଡ ନ ଅଧ୍ୟାରେ ପ୍ରାନ୍ତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ ଅଯୋଧ୍ୟାକାଣ୍ଡେ
ନାମ ନବମୋଽଧ୍ୟାୟଃ ।'

# ଆରଣ୍ୟକ କାଣ୍ଡ



## ପ୍ରଥମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ରାଜେ ଅତ୍ରିଙ୍କ ଆଶ୍ରମରେ
ବିକାଶ କୁସୁମ ବନରେ ।
ଉଦେ ହୋଇଛି ସୁଧାକର
ସୁବାସ ଫୁଲମାନଙ୍କର ।
ମନ୍ଦ ମରୁତ ଘେନି ଗନ୍ଧ
ସିଞ୍ଚେ ମରନ୍ଦ ବିନ୍ଦୁବୃନ୍ଦ ।
ତହିଁ ମାଧବୀ ଲତାତଳେ
ବକୁଳ ମହୀରୁହ ମଳେ ।
ରୁଚିର ସ୍ଫଟିକ ବେଦୀରେ
ଅଛନ୍ତି ଶ୍ରୀରାମ ସୁଖରେ ।
ରଜତ ଗିରି ମଧ୍ୟ ଦେଶେ
ସୁମରକତ ଶୃଙ୍ଗ କି ସେ ।
ଧରି ଅଛନ୍ତି କୃଷ୍ଣାଜିନ
କର୍ଣ୍ଣ ଯାଏଁ ବେନି ନୟନ ।
ପଙ୍କଜମାଳା ହୃଦୟରେ
ଜଟାମୁକୁଟ ଅଛି ଶିରେ ।
ଅଧର ବେନି କର ପାଦ
ବିମ୍ବ ପ୍ରବାଳ କୋକନଦ ।
ପରାୟେ ଦଶନ୍ତି ଶୋଭନ
ରୂପ ନିନ୍ଦେ କୋଟି ମଦନ ।
ସହସ୍ର ସୂର୍ଯ୍ୟ ପ୍ରାୟେ ତେଜ
ଆଜାନୁ ଲମ୍ବେ ବେନିଭୁଜ ।

କୋଦଣ୍ଡ ଏକ ଦିବ୍ୟ ଶର
କର ଯୁଗଳେ ମନୋହର ।
ପ୍ରସନ୍ନ ହୋଇଛି ବଦନ
ମନ୍ଦହାସରେ ସୁଶୋଭନ ।
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ଗାତ୍ର
ପିନ୍ଧି ସେ ଅମଳାନ ବସ୍ତ୍ର ।
କର୍ଣ୍ଣେ କୁଣ୍ଡଳ ଅଙ୍ଗରାଗ
ଛଳେ ପ୍ରକାଶି ଅନୁରାଗ ।
ଏମନ୍ତ ରୂପେ ବଇଦେହୀ
ବାମ ପାର୍ଶ୍ୱେ ଛନ୍ତି ରହି ।
କେତକୀ ପୁଷ୍ପ ଅଳଙ୍କାରେ
ଭୂଷି ଅଛନ୍ତି ହରଷରେ ।
ସନ୍ଧ୍ୟାରେ ବଳାକ ଉଡ଼ନ୍ତ
ଇନ୍ଦ୍ରଧନୁରେ ହୋଇଯୁତ ।
କୈଳାସ ଶିଖେ ନବଘନ
ପ୍ରାୟେ ସେ ଦିଶଇ ଶୋଭନ ।
ଦକ୍ଷିଣ ପାଖରେ ଲକ୍ଷ୍ମଣ
ସଳଖି ରଖିଛନ୍ତି ବାଣ ।
ପୁରତେ ଅତ୍ରି ମହାଋଷି
ମୃଗ ଅଜିନେ ଛନ୍ତି ବସି ।
ସର୍ବାଙ୍ଗେ ହୋଇଛି ପୁଲକ
ହରଷ ବଶରେ ଲୋତକ ।

ହୃଦରେ ଯାଉଅଛୁ ବହି
ଅନିମିଷ ନୟନେ ଗୃହିଁ ।
ଗଦ୍‌ଗଦ ହୋଇଣ ଭକ୍ତିରେ
ସ୍ତୁତି କରନ୍ତି ଆନନ୍ଦରେ ।
ରୋହିଣୀ ଶୁକ୍ର ଗୁରୁ ତୁଲେ
ଚନ୍ଦ୍ର ଆକାଶେ ଉଦେ ହେଲେ ।
ସେ ପ୍ରତିବିମ୍ବ ଯେହ୍ନେ ହୋଇ
କ୍ଷୀରସିନ୍ଧୁରେ ଶୋଭା ପାଇ ।
ସେ ରୂପେ ସ୍ଫଟିକ ବେଦୀରେ
ପୁଷ୍ପବନରେ ଚନ୍ଦ୍ରକରେ ।
ସୀତା ଲକ୍ଷ୍ମଣ ଅନି ତୁଲେ
ଶ୍ରୀରାମଚନ୍ଦ୍ର ତେହ୍ନେ ହେଲେ ।
ସେ ମୁନି ଜାନକୀ ଲକ୍ଷ୍ମଣ
ତୁଲେ ହେ ସ୍ୱାମି ତୋ ଚରଣ ।
ମୋ ହୃଦେ ନିରନ୍ତର ରହୁ
ଏମନ୍ତ ରୂପେ ଅଜ୍ଞା ହେଉ ।
ତୋ ଦାସ ଦାସର କିଙ୍କର
ହେବାକୁ ଶରଧୀ ମୋହର ।
ଧର୍ମ ଅଧର୍ମ ନ ବିଗୃହ
ତୁମ୍ଭଙ୍କ ମାତ୍ର ରାବଣାରି
ଭଜୁଥିବି ଅନବରତେ
ଏମନ୍ତ ଅଜ୍ଞା ହେଉ ମୋତେ ।
ତୁମ୍ଭର ଅଧ୍ୟାତ୍ମ ଚରିତ
ଅଯୋଧ୍ୟାକାଣ୍ଡ କଲି ଗୀତ ।
ଏବେ ଅରଣ୍ୟଲୀଳାମାନ
କହିବି ହେଉଅଛୁ ମନ ।
ହେ ନାଥ କରୁଣାସାଗର
ଏ ମନୋରଥ ପୂର୍ଣ୍ଣକର ।
ଗଉରୀ ତୁଲେ ହେ ଶଙ୍କର
ତୋ ପାଦେ ହେଉ ନମସ୍କାର ।

ଶ୍ରୀରାମ ଦଣ୍ଡକ ବନରେ
ଲୀଳା କଲେ ଯେଉଁ ପ୍ରକାରେ ।
ସେମାନ ତୁମ୍ଭ ମହିମାରେ
ବହନ ସ୍ଫୁରୁ ମୋ ମନରେ ।
ଅରଣ୍ୟକାଣ୍ଡର ଚରିତ
ଶୁଣ ସୁଜନେ ଦେଇ ଚିତ୍ତ ।
ପାର୍ବତୀ ବୋଲେ ମହେଶ୍ୱର
ଦଣ୍ଡକବନେ ରଘୁବୀର ।
କେମନ୍ତ ସ୍ଥାନେ ସେ ରହିଲେ
କାହିଁ କିରୂପେ ଲୀଳା କଲେ ।
ସେମାନ ସବୁ ଗଙ୍ଗାଧର
କହ କୃତାର୍ଥ ବେଗେ କର ।
ଶୁଣି କହିଲେ ତ୍ରିପୁରାରି
ଅତ୍ରି ଆଶ୍ରମେ ରାବଣାରି ।
ସେ ନିଶି ରହିଲେ ସୁଖରେ
ସ୍ନାନ କରଣ ପ୍ରଭାତରେ ।
ଅତ୍ରିଙ୍କି ଚାହିଁ ରଘୁବୀର
କହିଲେ ଯୋଡ଼ି ବେନିକର ।
ମୁନିମାନରେ ଯେ ସମ୍ପୂର୍ଣ୍ଣ
ଏମନ୍ତ ଦଣ୍ଡକଅରଣ୍ୟ ।
ତହିଁକି ଯିବି ତପୋଧନ
ସେ ମାର୍ଗ କହ ହେ ବହନ ।
ଶିଷ୍ୟମାନଙ୍କୁ ଅଜ୍ଞାକର
ଏମନ୍ତ ଶୁଣି ମୁନିବର ।
ହସି କହିଲେ ଶ୍ରୀରାମଙ୍କୁ
ମାର୍ଗ ତ ସମସ୍ତ ଜନଙ୍କୁ ।
ଆପଣ ଅଛ ପ୍ରବର୍ତ୍ତାଇ
ତୁମ୍ଭଙ୍କୁ କେ ପାରଇ କହି ।
ତଥାପି ନରଚେଷ୍ଟା ଯେଣୁ
କହିବା ହେଉଅଛୁ ତେଣୁ ।

୮

ସଙ୍ଗତେ ଶିଷ୍ୟମାନେ ଯିବେ
ମାର୍ଗ କହିଦେଇ ଆସିବେ ।
ଏମନ୍ତ ପ୍ରକାରେ କହିଲେ
ପାଞ୍ଚୋଟି କୋଶେ ଦୂର ଗଲେ ।
ତାହାଙ୍କୁ ପୁଣି ସ୍ତବଣ କରି
ଭକ୍ତିରେ ନମସ୍କାର କରି ।
ନିବର୍ତ୍ତାଇ ମେଲାଣି ଦେଲେ
ମୁନି ଆଶ୍ରମକୁ ଆଇଲେ ।
ରାମ ସେଠାରୁ କୋଶେ ଗଲେ
ବଡ଼ ନଦୀଟିଏ ଦେଖିଲେ ।
ପଚାରି ସେ ମୁନି ପୁତ୍ରଙ୍କୁ
ଏ ନଦୀ ପାର ହୋଇବାକୁ ।
କି ଉପାୟ ଅଛି କି ନାହିଁ
ଶୁଣି ସେ ରାମଙ୍କୁ ଅନାଇଁ ।
ହସି କହିଲେ ହେ ରାଘବ
ଆଣିଛୁ ଅଛି ଏକ ନାବ ।
ଏମନ୍ତ କହି ବେଗେ ଯାଇ
ସେଠାକୁ ନଉକା ଆଣାଇ ।
ରାମ ଲକ୍ଷ୍ମଣ ବଇଦେହୀ
ତନଙ୍କି ତହିଁରେ ବସାଇ ।
ସେ ନଦୀ ପାର କରି ଦେଇ
ମେଲାଣି ରାମଠାରୁ ହୋଇ ।
ସେମାନେ ଲେଉଟି ଆଇଲେ
ଏକ ଅରଣ୍ୟେ ରାମ ହେଲେ ।
ରାକ୍ଷସ ମୃଗ ସିଂହକୁଳ
ବହୁତ ହିଂସ୍ରା ଶାର୍ଦ୍ଦୁଳ ।
ଦେଖିଲେ ଛନ୍ତି ପୂର୍ଣ୍ଣ ହୋଇ
କହିଲେ ଲକ୍ଷ୍ମଣଙ୍କୁ ଚାହିଁ ।
ଏଠାରୁ ହୁଅ ତୁ ସଯତ
ନ ଛାଡ଼ିବଟି ମୋ ସଙ୍ଗତ ।

ବେଗେ ଧନୁରେ ଦିଅ ଗୁଣ
ହସ୍ତରେ ଧରିଥାଅ ବାଣ ।
ମୁଁ ହୋଇଥିବି ଅଗ୍ରତରେ
ଆପଣ ଥିବ ମୋ ପଛରେ ।
ଜୀବ ପରମ ମଧ୍ୟେ ଯେସନ୍ତେ
ମାୟା ରହଇ ସୀତା ତେସନ୍ତେ ।
ଥିବେ ଆମ୍ଭ ତୁମ୍ଭ ମଧ୍ୟରେ
ତୁମ୍ଭେ ନୟନ ସବୁଠାରେ ।
ନିରତେ ଥିବଟି ପକାଇ
ଦଣ୍ଡକବନ ଶୁଣିଥାଇ ।
ଭୟ ରାକ୍ଷସ ମାନଙ୍କର
ସଞ୍ଚାର ହୁଅଇ ଅପାର ।
ଏମନ୍ତ କହି ଛ' କୋଶରେ
ମିଳିଲେ ପୁଷ୍କରଣୀ ତୀରେ ।
ଦେଖିଲେ ସୁଶୀତଳ ଜଳ
କୁମୁଦ ପଙ୍କଜ ଉତ୍ପଳ ।
ଏଥିରେ ହୋଇଛୁ ସମ୍ପୂର୍ଣ୍ଣ
ତହିଁରେ କରି ଜଳପାନ ।
ବୃକ୍ଷ ଛାଇରେ ବିଜେ କଲେ
ରାକ୍ଷସ ଗୋଟାଏ ଦେଖିଲେ ।
ଗର୍ଜନ କରି ଆସୁଅଛି
ସବୁଙ୍କୁ ତ୍ରାସ କରାଉଛି ।
ଦନ୍ତ ଲଙ୍ଗଳ ଈଶ ପ୍ରାୟେ
ଦେଖିଲେ ହୁଏ ମହାଭୟେ ।
ବହୁତ ମନୁଷ୍ୟ ଶୂଳରେ
ଗୁନ୍ଥି ଘେନିଛି ବାମ କରେ ।
ଗଜ ସିଂହ ମହିଷ ମାନ
ଅନେକ କରୁଛି ଭୋଜନ ।
ଶ୍ରୀରାମ ଦେଖିଲେ ଏସନ
କୋଦଣ୍ଡେ ଚଢ଼ାଇଲେ ଗୁଣ ।

ବୋଇଲେ ଲକ୍ଷ୍ମଣଙ୍କୁ ବୀର
ଦେଖ ରାକ୍ଷସ ଆସିବାର ।
ଆହେ ଭାଇ ଏ ବଇଦେହୀ
ମୋ ପ୍ରାଣବଲ୍ଲଭୀ ଅଟଇ ।
ରାକ୍ଷସ ଏକ ମୁଖୀ ହୋଇ
ଆସୁଛି ଏହାଙ୍କୁ ଅନାଇଁ ।
ଏ ବେଳ ବେଗେ ସଜ ହୁଅ
ଧନୁରେ ଗୁଣ ଦେଇ ରହ ।
ବୋଇଲେ ସେ ସୀତାଙ୍କୁ ଗୁହିଁ
ଭୟ ନ କର ବଇଦେହୀ ।
ଏରୂପେ ଦୁହିଁଙ୍କୁ କହିଣ
ରହିଲେ ଧରି ଧନୁବାଣ ।
ରାକ୍ଷସ ତାଙ୍କୁ ଗୁହିଁଲା
ଅଟ୍ଟହାସ କରି କହିଲା ।
କାର୍ମୁକ ତୂଣୀର ଧରିଛ
ଜଟା ବକଲ ଧରିଅଛ
ହୋଇ ତ ଅଛ ମୁନି ପ୍ରାୟେ
ଘେନିଛ ସଙ୍ଗେ ସ୍ତ୍ରୀରାହାଏ
ଦିଶୁଛ ପରମ ସୁନ୍ଦର
ମୋ ମୁଖେ ଆହାର ପ୍ରକାର ।
ହୋଇଛ ପ୍ରବେଶ ହୋଇଲ
ବନକୁ କି କାର୍ଯ୍ୟେ ଆଇଲ ।
ତୁମ୍ଭେ ତିନିହେଁ କି କି ହୁଅ
କେ ତୁମ୍ଭେ ନାମ କସ କହ ।
ଶୁଣି ସେ ରାକ୍ଷସ ଉତ୍ତର
ହସି କହିଲେ ରଘୁବୀର ।
ମୋ ନାମ ରାମ ବୋଲି ଜାଣ
ଏ ମୋ ଭ୍ରାତା ନାମ ଲକ୍ଷ୍ମଣ ।
ଏ ସ୍ତ୍ରୀ ମୋହର ବନିତା
ନାମ ଏହାର ଅଟେ ସୀତା ।

ଆଇଲୁ ପିତା ବୋଇଲକୁ
ତୁମ୍ଭମାନଙ୍କୁ ମାରିବାକୁ ।
ଶୁଣି ସେ ମୁଖ ବିସ୍ତାରିଲା
ଉଚ୍ଚରେ ହସିଣ କହିଲା ।
ସବୁ ଲୋକରେ ଖ୍ୟାତ ମୁହିଁ
ବିରାଧ ବୋଲି ଜାଣ ନାହିଁ ।
ମୁନିମାନେଟି ମୋ ଭୟରେ
ଏ ବନ ଛାଡ଼ି ଦେଶାନ୍ତରେ ।
ସମସ୍ତେ ପଳାଇଣ ଗଲେ
ଗୋଟିଏ ରହି ନ ପାରିଲେ ।
ଥିବାକୁ ଜୀବନ ନିକର
ଶରଧା ହୋଇଲେ ତୁମ୍ଭର ।
ଆୟୁଧ ବହନ ପକାଅ
ସୀତାଙ୍କୁ ଛାଡ଼ିଣ ପଳାଅ ।
ନୋହିଲେ ଖାଇବି ତୁମ୍ଭଙ୍କୁ
ଏମନ୍ତ କହି ସେ ସୀତାଙ୍କୁ ।
ଧରିବାକୁ ଆସନ୍ତେ ଧାଇଁ
ରାମ ହସିଲା ପ୍ରାୟେ ହୋଇ ।
ବାହୁ ଯୁଗଳ ମୂଳୁ ତାର
କାଟିଲେ ବାନ୍ଧ ବେନି ଶର ।
କ୍ରୋଧେ ସେ ମୁଖ ବିସ୍ତାରିଲା
ଗର୍ଜି ରାମଠାକୁ ଧାଇଁଲା ।
ସେ ପୁଣି ବାନ୍ଧ ବେନି ବାଣ
କାଟିଲେ ତା ଦୁଇ ଚରଣ ।
ଉରଗ ଗତି ପ୍ରାୟେ ହୋଇ
ଧାଇଁଲା ସେ ଗିଳିବାପାଇଁ ।
ବିସ୍ତାର କରି ସେ ବଦନ
ଗର୍ଜନେ ପୂରୁଛି ସେ ବନ ।
ଏମନ୍ତ ଦେଖି ରଘୁବୀର
ବିନ୍ଧିଲେ ଅର୍ଦ୍ଧଚନ୍ଦ୍ର ଶର ।

ରକତେ ଜରଜର ହୋଇ
ଶିର ଛିଣ୍ଡି ତଳେ ପଡ଼ିଲା ।
ଜାନକୀ ରାମଙ୍କୁ ବନ୍ଦନ
ସ୍ନେହରେ କରି ଆଲିଙ୍ଗନ ।
ବହୁତ ହରଷ ଲଭିଲେ
ପ୍ରଶଂସା ପୁଣି ପୁଣି କଲେ ।
ଦୁନ୍ଦୁଭିମାନ ଆକାଶରେ
ଆନନ୍ଦେ ବଜାଇଲେ ସୁରେ ।
ସ୍ୱର୍ଗରେ ଗନ୍ଧର୍ବ କିନ୍ନରେ
ଗାୟନ କଲେ ଉଚ୍ଚ ସ୍ୱରେ ।
ଅପସରାଏ ନୃତ୍ୟ କଲେ
ଦେବେ କୁସୁମ ବରଷିଲେ ।
ବିରାଧ ଏଥୁଅନ୍ତେ ପୁଣି
ଛାଡ଼ି ଶରୀର ଧରଣି ।
ସମସ୍ତ ଆଭରଣେ ଯୁତ
ପିନ୍ଧିଣ ଅମଳାନ ବସ୍ତ୍ର ।
ଏରୂପେ ଆକାଶରେ ରହି
ଦିଶିଲା ସୂର୍ଯ୍ୟ ପ୍ରାୟେ ହୋଇ ।
ଭକ୍ତ ଦୁଃଖକୁ ନିବାରନ୍ତି
ଏମନ୍ତ ଯେଉଁ ରଘୁପତି ।
ତାଙ୍କୁ ପୁଣି ପୁଣି ବହୁତ
କରି ଅଷ୍ଟାଙ୍ଗ ଦଣ୍ଡବତ ।
ବୋଇଲା ଆହେ ରଘୁବୀର
ମୁଁ ହୋଇଥିଲି ବିଦ୍ୟାଧର ।
କିଛି କାରଣେ କ୍ରୋଧ ହେଲେ
ଦୁର୍ବାସା ଶାପ ଦେଇ ଥିଲେ ।
ସେ ଘୋର ଶାପୁଁ ଏବେ ପୁଣି
ରକ୍ଷିବା ହୋଇଲ ଆପଣ ।
ଏ ବେଳ ଆଜଠାରୁ ତୋର
ଚରଣାରବିନ୍ଦେ ମୋହର ।

ସନ୍ତତେ ସ୍ମରଣ ଯେ ଥାଉ
ଏ ରୂପେ ଆଜ୍ଞା ମୋତେ ହେଉ ।
ଅନବରତେ ମୋ ବଚନ
କରୁ ତୋ ନାମ ସଂକୀର୍ତ୍ତନ ।
ବେନି କର୍ଣ୍ଣ ତୋ କଥାମୃତ
ପାନ କରନ୍ତୁ ଅନୁବ୍ରତ ।
ଚରଣପଙ୍କଜେ ଭ୍ରମର
ସେବା କରୁ ମୋ ବେନି କର ।
ତୁମ୍ଭ ଚରଣ ଯୁଗେ ନିତ୍ୟ
ମୋ ଶିର କରୁ ଦଣ୍ଡବତ ।
ତୁ ଭଗବାନ ରଘୁପତି
ତୁହି ନିର୍ମଳ ଜ୍ଞାନ ମୂର୍ତ୍ତି ।
ତୁ ଆତ୍ମାରାମ ରଘୁବୀର
ତୁ ସୀତା ଯୁକ୍ତ ନିରନ୍ତର ।
ଏମନ୍ତ ଯେ ତୁ ତୋତେ ମୋର
ଅନବରତେ ନମସ୍କାର ।
ଶରଣାପନ୍ନ ହେଲି ତୋତେ
ହେ ନାଥ ରକ୍ଷା କର ମୋତେ ।
ଦେବଲୋକଙ୍କୁ ତୋ ଆଜ୍ଞାରେ
ଯିବି ମୁଁ ତୋ ମାୟା ସେଠାରେ
କେବେହେଁ ଛୁଇଁ ନ ପାରିବ
ଅନୁଜ୍ଞା ଦିଅ ହେ ରାଘବ ।
ଶ୍ରୀରାମ ଶୁଣି ପ୍ରୀତ ହେଲେ
ଏରୂପେ ତାଙ୍କୁ ବର ଦେଲେ ।
ବୋଇଲେ ବିଦ୍ୟାଧର ଶୁଣ
ମୋ ଦରଶନରୁ ଆପଣ ।
ହେଳାରେ ମାୟାକୁ ଜିଣିଲ
ତହୁଁ ମୁକ୍ତିକୁ ଲଭିଲ ।
ସବୁ ଲୋକରେ ସବୁ ପାଇ
ମୋ ଭକ୍ତ କାହିଁ ନ ମିଳଇ ।

ଯେବେ ମୋ ଭଗତ ହୁଅଇ
ମୁକ୍ତ ସେ ଅବଶ୍ୟ ଲଭଇ ।
ମୋ ଠାରେ ଭକ୍ତ ଅଛୁ ଯେଣୁ
ପରମ ପଦକୁ ତୁ ଏଣୁ ।
ଯାଅ ବୋଲିଣ ଆଜ୍ଞା ଦେଲେ
ପ୍ରଣାମ କରି ସେହୁ ଗଲେ ।
ବିରାଧ ଯେଉଁ ରୂପେ ମଲା
ବିଦ୍ୟାଧରତ୍ୱ ଯା ଲଭିଲା ।
ଶ୍ରୀରାମ ଅନୁଗ୍ରହ କଲେ
ଯାହାକୁ ଯାହା ବର ଦେଲେ ।
ଏହା ଯେ ଗାୟନ କରଇ
ସମସ୍ତ କାର୍ଯ୍ୟ ସେ ଲଭଇ ।

ବୋଲଇ ଦୀନ ହଳଧର
ସୁଜନେ ଶୁଣ ମୋ ଉତ୍ତର ।
ଏ ରସେ ଯେବେ ଚିତ୍ତ ଦେବ
ବିରାଧ ପ୍ରାୟେ ମୋକ୍ଷ ହେବ ।
ଯେଣୁ କରି ସେ ରାମଚନ୍ଦ୍ର
ଅଟନ୍ତି କରୁଣା-ସମୁଦ୍ର
ହେ ରାମ ପତିତ ପାବନ
ଦୀନ-ଦରିଦ୍ର-ଜନ-ଧନ ।
ତୋତେ ସତତ ନମସ୍କାର
କରୁଛି ମୁହିଁ ବାରମ୍ବାର ।
ଏ ଶଏ ଚଉବନ ପଦ
କାଟୁ ମୋ ସମସ୍ତ ଆପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅରଣ୍ୟକକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଏଥୁ ଉତ୍ତାରେ ତ୍ରିପୁରାରି
ହସି ବୋଇଲେ ଗୋ ଗଉରି ।
ବିରାଧ ସ୍ୱର୍ଗକୁ ତ ଗଲେ
ରାମ ସେଠାରୁ ବିଜେ କଲେ ।
ଲକ୍ଷ୍ମଣ ବଇଦେହୀ ତୁଲେ
ଶରଭଙ୍ଗ ଆଶ୍ରମେ ହେଲେ ।
ଜାନକୀ ଲକ୍ଷ୍ମଣ ତୁଲରେ
ରାମଙ୍କୁ ଦେଖି ମୁନି ଖରେ ।
ଉଠିଲେ ସଂଭ୍ରମ ହୋଇ
ପାଛୋଟି ଆସି ଘେନି ଯାଇ ।
ସେ କୁଶ ଆସନେ ବସାଇ
ବହୁତ ଫଳ ମୂଳ ଦେଇ ।

ବିଧି ପ୍ରମାଣେ ପୂଜା କରି
ହରଷେ ନେତ୍ରୁ ଅଶ୍ରୁ ଝରି ।
ଭକ୍ତବତ୍ସଳ ରଘୁବୀର
ତାଙ୍କୁ କହିଲେ ଯୋଡ଼ି କର ।
ଅନେକ କାଳୁଁ ରାବଣାରି
ବହୁତ ତପସ୍ୟା ମୁଁ କରି ।
ଏଠାରେ ରହିଅଛୁ ତୋତେ-
ଦର୍ଶନ କରିବା ନିମିତ୍ତେ ।
ନିଶ୍ଚୟେ ଆଜି ତପ ମୋର
ସିଦ୍ଧ ହୋଇଲା ରଘୁବୀର ।
ସବୁ ପୁଣ୍ୟ ଦେଇ ତୁମ୍ଭଙ୍କୁ
ଯାଉଛି ମୁକ୍ତିର ମାର୍ଗକୁ ।

ବିଶୁଦ୍ଧ ମନେ ଏହା କହ
ଫଳରେ ବିରକତ ହୋଇ ।
ସମସ୍ତ ତପ ଫଳ ପାନ
ରାମଙ୍କ କରି ସମର୍ପଣ ।
ତାହାଙ୍କ ବଇଦେହୀ ତୁଲେ
ଅପଣା ଚିତ୍ତେ ସେ ରଖିଲେ ।
ନବୀନ ଦୂର୍ବାଦଳ ବର୍ଣ୍ଣ
ପଙ୍କଜ ପଲାଶ ନୟନ ।
ବଳକ କଟି ପ୍ରଦେଶରେ
ଜଟା ମୁକୁଟ ଅଛି ଶିରେ ।
ସଙ୍ଗତେ ଜାନକୀ ଲକ୍ଷ୍ମଣ
ଏରୂପେ ଧ୍ୟାନ ସେ କରଣ ।
ଏମନ୍ତ ବିଚାରିଲେ ପୁଣ
ମନରେ କେବଳ ସ୍ମରଣ ।
କରନ୍ତେ କାମଧେନୁ ହେବ
ଦୟା ଏ ପ୍ରକାରେ କରିବ ।
ଏମନ୍ତ ଶ୍ରୀରାମ ବାହାରେ
ଅଭ କେ ଅଛି ଜଗତରେ ।
ଅନକୁ ନ ଭଜି ଏହାଙ୍କୁ
ମନରେ ସ୍ମରଣ କଲକୁ ।
ଜାଣି ତା ଅନୁଗ୍ରହ କଲେ
ଅପଣା ଇଚ୍ଛାୟେ ଅଇଲେ ।
ଏବେ ମୋ ଶରୀର ଦହିବ
ବ୍ରହ୍ମ ଲୋକକୁ ବେଗେ ଯିବି ।
ଏମନ୍ତ ଦେଖି ରଘୁବୀର
ମେଘରେ ବିଜୁଳି ପ୍ରକାର ।
ବାମ ଅଙ୍ଗରେ ବଇଦେହୀ
ସଦାକାଳରେ ଅଛି ରହି ।
ଏମନ୍ତ ଯେ ଅଯୋଧ୍ୟା ପତି
ରାମ ସେ ମୋ ହୃଦରେ ସ୍ଥିତି ।
ସଦାକାଳରେ ରହି ଥାଉ
କେବେହେଁ ଅନ୍ୟଥା ଏ ନୋହୁ ।
ବହୁତ ବୋଲି ଏହି ମତେ
ଧ୍ୟାୟିଣ ଶ୍ରୀରାମ ପୁରତେ ।
ବେଗେ ଲଗାଇ ହୁତାଶନ
କଳେବର କରି ଦହନ ।
ସେ ଦିବ୍ୟ ଶରୀର ବହିଲେ
ବ୍ରହ୍ମଲୋକକୁ ସୁଖେ ଗଲେ ।
ତହିଁ ଉତ୍ତାରେ ବହୁ ଋଷି
ସର୍ବେ ଦଣ୍ଡକ ବନବାସୀ ।
ରଘୁନାଥଙ୍କୁ ଦେଖିବାକୁ
ସତ୍ୱରେ ଅଇଲେ ସେଠାକୁ ।
ସୀତା ଲକ୍ଷ୍ମଣ ତୁଲେ ରାମ
ସେମାନଙ୍କୁ କଲେ ପ୍ରଣାମ ।
ଯେଣୁ କରି ସେ ରଘୁପତି
ମନୁଷ୍ୟ ଚେଷ୍ଟା କରିଛନ୍ତି ।
ଧରି ଅଛନ୍ତି ଧନୁବାଣ
ଏମନ୍ତ ଦେଖି ମୁନିଗଣ ।
ରାମଙ୍କୁ ଆଶୀର୍ବାଦ କଲେ
ସମସ୍ତେ ଏମନ୍ତ କହିଲେ ।
ଭୂମିର ଭାର ନାଶ ପାଇଁ
ବ୍ରହ୍ମା ମାଗିଲେ ପୂର୍ବେ ଯାଇଁ ।
ତୁମ୍ଭେ ଜନ୍ମିଲ ସେ ନିମିତ୍ତେ
ଏରୂପେ ଜାଣୁଁ ଅମ୍ଭେ ଯେତେ ।
ତୁ ବିଷ୍ଣୁ ଲକ୍ଷ୍ମୀ ବଇଦେହୀ
ଶେଷ ସ୍ୱରୂପ ଲକ୍ଷ୍ମଣହିଁ
ଭରତ ଶତ୍ରୁଘ୍ନ ବୀର
ଶଙ୍ଖ ରଥାଙ୍ଗଟି ତୁମ୍ଭର
କଣ୍ଟେ ଏମନ୍ତ କରି ତୋତେ
ଜାଣିଣ ଅଛୁ ତ ସମସ୍ତେ ।

ଏ ହେତୁ ଅସ୍ମମାନଙ୍କର
ଦୁଃଖ ପ୍ରଥମେ ନାଶ କର ।
ତପସ୍ୱୀମାନଙ୍କ ଆଶ୍ରମ
ଦେଖିବା ହେତୁ ଆସ ରାମ ।
ଦେଖିଲେ ଅସ୍ମଠାରେ ଦେବ
ଦୟାକୁ ଚିତ୍ତରେ ବହିବ ।
ଏମନ୍ତ ଶୁଣି ରଘୁବୀର
ବିନୟ ହୋଇ ଯୋଡ଼ିକର ।
ସେମାନଙ୍କ ସଙ୍ଗତେ ଗଲେ
ବହୁତ ଆଶ୍ରମ ଦେଖିଲେ ।
ଶୁକଳ ହୋଇ ମୁଣ୍ଡମାନେ
ପଡ଼ି ଅଛନ୍ତି ସବୁ ବନେ ।
ଯହୁଁ ସେ ଏମନ୍ତ ଦେଖିଲେ
ମୁନିମାନଙ୍କୁ ପଚ୍ଚାରିଲେ ।
ଏରୂପେ ଅସ୍ଥି ଶିରମାନ
କାହାର କହ ତପୋଧନ ।
ପଡ଼ିଣଅଛି ସବୁ ସ୍ଥଳେ
କହିବା ହେତୁ ତା ମୋ ଆଗେ ।
ଏଥକୁ କହିଲେ ସକଳେ
ତପସ୍ୱୀମାନେ ଯେତେବେଳେ ।
ସମାଧିରେ ଦେଇଣ ମନ
ହୁଅନ୍ତି ଅଣଅବଧାନ ।
ରାକ୍ଷସେ ଏ ଛିଦ୍ର ଚାହିଁଣ
ସେମାନଙ୍କୁ ନାଶ କରଣ ।
ରକତ ମାଂସ ଖାଇଯାନ୍ତି
ତାଙ୍କ ଶିର ଏ ରହେ ପତି ।
ସଭୟ ସଦୀନ ଜନ୍ତର
ଋଷିମାନଙ୍କଠାରୁ ବୀର ।
ଶୁଣି ରାକ୍ଷସ ବଧ ପାଇଁ
ପ୍ରତିଜ୍ଞା କଲେ ରଘୁସାଇଁ ।

ଏମନ୍ତ ଶୁଣି ମୁନିମାନେ
ପୂଜିଲେ ସେ ହରଷ ମନେ ।
ରାମ ସେ ଆଶ୍ରମମାନରେ
ସୀତା ଲକ୍ଷ୍ମଣ ସଙ୍ଗତରେ ।
ତହିଁ କେତେ ଦିନ ରହିଲେ
ଏରୂପେ କେତେ କାଳ ନେଲେ ।
ଏମନ୍ତେ ସବୁ ଆଶ୍ରମରେ
ବୁଲନ୍ତେ ଏକ ଅବସରେ ।
ଛ ଋତୁ ଗୁଣ ଅଛି ବହି
ସନ୍ତତ ସୁଖକୁ ଦିଅଇ ।
ଏମନ୍ତ ସୁତୀକ୍ଷଣ ମୁନି
ବନେ ସୀତା ଲକ୍ଷ୍ମଣ ଘେନି ।
ଶ୍ରୀରାମ ପ୍ରବେଶ ହୋଇଲେ
ଯହୁଁ ସେ ଏମନ୍ତ ଶୁଣିଲେ ।
ଶିଷ୍ୟ ଅଗସ୍ତ୍ୟ ମୁନିଙ୍କର
ଶ୍ରୀରାମ ପାଦେ ତତପର ।
ଭକ୍ତିରେ ଆନନ୍ଦ ଲୋତକ
ହୃଦରେ ପଡ଼ୁଛି ଅନେକ ।
ଏରୂପେ ରାମଠାରେ ହେଲେ
ଯଥା ବିଧିରେ ପୂଜା କଲେ ।

ସୁତୀକ୍ଷଣ ଉବାଚ

ବୋଇଲେ ଅହେ ସୀତାପତି
ବ୍ରହ୍ମା ସହିତେ ପଶୁପତି ।
ତୁମ୍ଭ ଶ୍ରୀଚରଣେ ସନ୍ତତେ
ସେବା କରୁଣଛନ୍ତି ନିତ୍ୟେ ।
ଏ ହେତୁ ଜାଣି ମୁଁ ଏମନ୍ତ
ଜପ କରୁଥାଇ ତୋ ମନ୍ତ ।
ହେଲା ସଂସାର ସମୁଦ୍ରକୁ
ନିଷ୍ଟେ ତୋ ପାଦ ତାରିବାକୁ ।

ତୁମ୍ଭେ ଏମନ୍ତ ଅଟ ବୀର
ଦାସର ଦାସ ମୁଁ ତୁମ୍ଭର ।
ନିଶ୍ଚୟେ ସମସ୍ତ ଲୋକର
ଆପଣ ଅଟ ଅଗୋଚର ।
ଏମନ୍ତ ହେଲେ ରାବଣାର
ତୁମ୍ଭ ମାୟାରେ ଯେଣୁ କର ।
ମନ୍ଦିର ଧନ ଦ୍ରବ୍ୟ ପୁତ୍ର
ପିତା ମାତା ଭ୍ରାତା କଳତ୍ର ।
ଏ ଅନ୍ଧ କୂପ ମୁଁ ଏଥିରେ
ବୁଡ଼ି ରହିଛି ନିରନ୍ତରେ ।
ମାଂସ ରକତ ଦୁଇ ଠାଇଁ
ସମ୍ଭୂତ ଏ ଦେହ ଅଟଇ ।
ଅଜ୍ଞାନ ପାଶ ହେଲା ସେହୁ
ତହିଁରେ ମୋ ହୃଦୟ ଯହୁଁ ।
ଆସକ୍ତ ହେଲାକୁ ସନ୍ତତେ
ଏଥୁଁ ଉଦ୍ଧରିବାକୁ ମୋତେ ।
ଶୀଘ୍ରେ ଅନୁଗ୍ରହ କଲ
ଆପଣା ଇଚ୍ଛାଏଁ ଆଇଲ ।
ତୁମ୍ଭେ ସମସ୍ତ ହୃଦୟରେ
ବାସ କରିଛ ନିରନ୍ତରେ ।
ବିମୁଖ ଯେ ତୁମ୍ଭ ମନ୍ତ୍ରରେ
ମାୟା ବିସ୍ତାର ତାହାଠାରେ ।
ଯେ ତୋ ମନ୍ତ୍ର ସାଧନ ପର
ମାୟା ନ ଛୁଏଁ ତା ଶରୀର ।
ତୁ କଳ୍ପବୃକ୍ଷ ପ୍ରାୟେ ହୋଇ
ସେବାକୁ ହୋଇ ଫଳ ଦେଇ ।
ସର୍ଜନା ପାଳନା ସଂହାର
ଏ ତିନି କଥା ଜଗତର ।
ହେବାକୁ କେବଳ ଆପଣ
ଏକା ହୋଇଅଛି କାରଣ ।

ତ୍ରିଗୁଣମୟୀ ହୋଇ ତୋର
ଯେ ମାୟା ତହିଁରେ ଯାହାର ।
ବୁଦ୍ଧି ଭରମ ହୋଇଥାଇ
ତୁ ବ୍ରହ୍ମା ବିଷ୍ଣୁ ଶିବ ହୋଇ ।
ସେ ଲୋକମାନଙ୍କ ହୃଦରେ
ଅଭ୍ୟାସ ନାନା ପରକାରେ ।
ଯେସନେ ଆଦିତ୍ୟ ଏକ ହୋଇଲେ
ବହୁତ ଜଳପାତ୍ର ଥିଲେ ।
ପ୍ରକାଶ ହୋଇ ସବୁଠାଇଁ
ଅନେକ ହୋଇଣ ଦିଶଇ ।
ମାୟାରୁ ଅନ୍ତର ଆପଣ
ଦେଖିଲି ତୁମ୍ଭର ଚରଣ
ଚକ୍ଷୁରେ ରୂପରେ ଗୋଚର
ନୋହୁ ତୁ ଅସନ୍ତ ଲୋକର ।
ତୋ ମନ୍ତ୍ରେ ହୋଇ ଥାଇ ଯାର
ହୃଦୟ ପ୍ରସନ୍ନ ହେ ବୀର ।
ସେ ଲୋକମାନଙ୍କ ବନ୍ଧନ
ନିଶ୍ଚୟେ ହେଉ ତୁ ପ୍ରସନ୍ନ
ତୁମ୍ଭେ ଅରୂପୀ ହେଲେ ବୀର
ମୁଁ ରୂପ ଦେଖୁଛି ତୁମ୍ଭର
ଯେଣୁ ମାୟାକୁ ଅନୁସରି
ମନୁଷ୍ୟ ବେଶ ଅଛ ଧରି ।
ଲାବଣ୍ୟ କୋଟି କନ୍ଦର୍ପର
କରେ ଶୋଭିତ ଧନୁଶର ।
ଯେ ହୃଦୟରେ ଦୟା ବହି ।
ଆରକ୍ତ ହୋଇଛନ୍ତି ରହି
ମନ୍ଦହାସରେ ମନୋହର
ହୋଇଛି ମୁଖପଦ୍ମ ଯାର ।
କଟିଦେଶରେ ପରିଧାନ
କରିଅଛନ୍ତି କୃଷ୍ଣାଜିନ ।

ଲକ୍ଷ୍ମଣରେ କର ଯାହାର
ସେବତ ହୋଇଛୁ ପୟର ।
ନୀଳ ଉତ୍ପଳ ପ୍ରାୟେ କାନ୍ତ
ସୀତାରେ ସହିତ ଅଛନ୍ତ ।
ଅନନ୍ତ ଗୁଣଗଣ ଯାର
ଭାଗ୍ୟରୂପ ଯେ ସାଧୁଙ୍କର ।
ଏମନ୍ତ ଶ୍ରୀରାମଙ୍କୁ ମୋର
ଅନବରତେ ନମସ୍କାର ।
ତୋ ରୂପ ନିଶ୍ଚେଁ ମୁଁ ଜାଣଇ
କାଳକୁ ଅଧ ଯେ ଅଟଇ ।
ଉପାଧିମାନ ଯେ ତୁମ୍ଭର
ନିଶ୍ଚେଁ ନାହାନ୍ତ ରଘୁବୀର
ନିବଡ଼ ଚୈତନ୍ୟ ଯେ ତହିଁ
ତୁମ୍ଭର ପ୍ରକାଶ ହୁଅଇ ।
ପ୍ରତ୍ୟକ୍ଷ ନୟନେ ମୋହର
ଦିଶୁଛୁ ଯେଉଁ ରୂପ ତୋର ।
ମୋ ହୃଦେ ଏ ସନ୍ତତ ହୋଇ
ରହୁ ମୁଁ ଆନ ଲୋଡ଼ୁ ନାହିଁ ।
ଏରୂପେ କରନ୍ତେ ସେ ସ୍ତୁତ
ହସି କହିଲେ ରଘୁପତ ।
ମୋ ଉପାସନାରେ ସନ୍ତତ ।
ନିର୍ମଳ ହୋଇଅଛୁ ଚିତ୍ତ
ଏରୂପେ ଜାଣି ମୁଁ ତୁମ୍ଭଙ୍କୁ ।
ଅଇଲି ଦର୍ଶନ ଦେବାକୁ ।
ତୁମ୍ଭର ମୋ ବାହାରେ ଆଉ
କରୁଛ କାର୍ଯ୍ୟ ନାହିଁ ଯହୁଁ ।
ମୋ ମନ୍ତ୍ର ଯେ ଜପ କରନ୍ତ
କାହିଁ ଅପେକ୍ଷା ନ କରନ୍ତ ।
ସେମାନେଟି ଅନବରତେ
ଦର୍ଶନ କରୁଥାନ୍ତ ମୋତେ ।

ତୁମ୍ଭର ହେଲା ଯେଉଁ ସ୍ତବ
ଏହା ଯେ ସନ୍ତତେ ପଢ଼ିବ ।
ସେ ପ୍ରିୟ ହୋଇବ ମୋହର
ମୋହର ଚରଣେ ତାହାର ।
ନିଶ୍ଚଳ ହୋଇ ଭକ୍ତ ହେବ
ନିର୍ମଳ ଜ୍ଞାନହିଁ ଲଭିବ ।
ତୁମ୍ଭେ ମୋତେ ଶାନ୍ତ ସତତ
ହୋଇଛ ସବୁଠାରୁ ମୁକ୍ତ ।
ଦେହାନ୍ତେ ସାଯୁଜ୍ୟ ମୋହର
ଲଭିବ ସଂଶୟ ନ କର ।
ତୁମ୍ଭର ଗୁରୁ ଅଗସ୍ତ୍ୟଙ୍କୁ
ଇଚ୍ଛା ହେଉଛୁ ଦେଖିବାକୁ ।
ତାହାଙ୍କଠାରେ କେତେଦିନ
ରହିବା ହେଉଅଛୁ ମନ ।
ମୁନି ବୋଇଲେ ହେ ରାଘବ
କାଲି ପ୍ରଭାତେଁ ଯିବା ହେବ ।
ତାଙ୍କୁ ନିକଟେ ଦେଖିନାହିଁ
ଏଣୁ ତୋ ସଙ୍ଗେ ଯିବି ମୁହିଁ ।
ସୀତା ଲକ୍ଷ୍ମଣ ସୁତୀକ୍ଷଣ
ତୁଲେ ଶ୍ରୀରାମ ପ୍ରାତେ ପୁଣ ।
ଦେଖିବା ପାଇଁ ଅଗସ୍ତ୍ୟଙ୍କୁ
ଗଲେ ତାହାଙ୍କ ଭ୍ରାତ ଠାକୁ ।
ବୋଲଇ ଦୀନ ହଳଧର
ଜାନକୀଯୁକ୍ତ ରଘୁବୀର ।
ପଙ୍କଜଚରଣକୁ ମୋର
ଅନବରତେ ନମସ୍କାର ।
ଏତେକ ମାଗୁଣି ମୋହର
ଅଶେଷ ଜନ୍ମ ଦୁଃଖହର ।
ଅଧା ଶରେ ତରଣ ପଦ
ହରୁ ମୋ ସମସ୍ତ ଅପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅରଣ୍ୟକକାଣ୍ଡେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ପଶୁପତି
ଏହି ଉତ୍ତରେ ଗୋ ପାର୍ବତୀ ।
ସୀତା ଲକ୍ଷ୍ମଣ ସୁତୀକ୍ଷଣ
ରାମ ଏ ତିନିଙ୍କି ଘେନିଣ
ଅଗସ୍ତ୍ୟ ଭ୍ରାଇଙ୍କ ବନରେ
ମିଳିଲେ ମଧ୍ୟାହ୍ନ କାଳରେ ।
ସେ ଦେଖି ହରଷ ହୋଇଲେ
ଯଥାବିଧିରେ ପୂଜା କଲେ ।
ସୁପକ୍ୱ ଫଳ ମୂଳ ଖାଇ
ସେ ରାତ୍ର ସେହିଠାରେ ରହି ।
ଆର ଦିବସ ପ୍ରାତଃକାଳେ
ସ୍ନାନ କରି ଗୁରୁହେଁ ଗଲେ ।
ଅଗସ୍ତ୍ୟ ମୁନିଙ୍କ ଆଶ୍ରମ
ଏରୂପେ ଦେଖିଲେ ଶ୍ରୀରାମ ।
ଷଡ଼ଋତୁର ଫୁଲ ଫଳେ
ତହିଁ ଅଛନ୍ତି ସଦାକାଳେ ।
ବିବିଧ ମୃଗ ପକ୍ଷୀମାନେ
କ୍ରୀଡ଼ା କରନ୍ତି ସେ ଅରଣ୍ୟେ ।
ହୋ'ଇଛି ପରମ ଶୋଭନ
ଯେସନେ ଇନ୍ଦ୍ର ନନ୍ଦନବନ ।
ତହିଁରେ ବ୍ରହ୍ମଋଷିମାନେ
ବହୁତ ବସିଛନ୍ତି ଧ୍ୟାନେ ।
ସର୍ବଦାରେ ଦେବଋଷି
ସମ୍ପୂର୍ଣ୍ଣ ହୋଇଛନ୍ତି ବସି ।

ଏଥିରେ ପାଉଅଛି ଶୋଭା
ଯେମନ୍ତ ପ୍ରଜାପତି ସଭା ।
ଶ୍ରୀରାମ ବାହାରେ ରହିଲେ
ସୁତୀକ୍ଷଣଙ୍କୁ ଆଜ୍ଞା ଦେଲେ ।
ଘେନି ଜାନକୀ ଲକ୍ଷ୍ମଣଙ୍କୁ
କହ ମୋ ଅଇଲି ଗୁରୁଙ୍କୁ ।
ଶୁଣି ସେ ଆଶ୍ରମକୁ ଗଲେ
ଦୂରୁଁ ଅଗସ୍ତ୍ୟଙ୍କୁ ଦେଖିଲେ ।
ବହୁତ ରାମଭକ୍ତ ଋଷି
ଗୁରୁ ପାଛୁଣେ ଛନ୍ତି ବସି ।
ଶିଷ୍ୟମାନଙ୍କୁ ଉପୋଧନ
ରାମ ମନ୍ତ୍ରର ଅର୍ଥମାନ ।
କହନ୍ତି ଦେଖିଣ ଏମନ୍ତ
ସତ୍ୱରେ କରି ଦଣ୍ଡବତ ।
କନ୍ଧ ନୁଆଇଁ ନମ୍ର ହେଲେ
କର ଯୋଡ଼ିଣ ସେ କହିଲେ ।
ତୁମ୍ଭ ଦର୍ଶନକୁ ହେ ମୁନି
ସୀତା ଲକ୍ଷ୍ମଣ ସଙ୍ଗେ ଘେନି ।
କର ଯୋଡ଼ିଣ ଏ ଆଶ୍ରମ
ବାହାରେ ଦାଶରଥି ନାମ ।
ରହି ସେ ମୋତେ ଆଜ୍ଞାଦେଲେ
କହ ମୋ ଅଇଲି ବୋଇଲେ ।
ଶୁଣି ସେ ବୋଇଲେ ଅଗସ୍ତି
ଯେଉଁ ରାମ ମୋ ହୃଦେ ଛନ୍ତି ।

ତାହାଙ୍କ ଅଣ ଯା ବହନ
ପବିତ୍ର ହେଉ ମୋର ବନ ।
ତାହାଙ୍କ ଦରଶନ ପାଇଁ
ଧ୍ୟାନ କରିଅଛୁ ଏଠାଇଁ ।
ଏମନ୍ତ କହି ଉଠି ମୁନି
ସର୍ବଋଷିଙ୍କି ସଙ୍ଗେ ଘେନି ।
ପ୍ରବେଶ ରାମଠାରେ ହେଲେ
ଭକ୍ତିରେ ଏମନ୍ତ କହିଲେ ।

### ଅଗସ୍ତ୍ୟ ଉବାଚ

ଆସିବା ହେଉ ବେଗେ ରାମ
ପବିତ୍ର କର ମୋ ଆଶ୍ରମ ।
ମୁଁ ଆଜ ବହୁତ ଭାଗ୍ୟରେ
ସଙ୍ଗତ ହେଲି ତୋ ସଙ୍ଗରେ ।
ଉତ୍ତମ ଅତିଥି ମିଳିଲ
ଦିନ ସଫଳ ଆଜ ହେଲ ।
ଏ ରୂପେ ଅଗସ୍ତ୍ୟ କହନ୍ତେ
ଜାନକୀ ଲକ୍ଷ୍ମଣ ସହିତେ ।
ହରଷ ରାମ ଦେଖି ହେଲେ
ଦୂରରୁ ଦଣ୍ଡବତ କଲେ ।
ଅତି ସତ୍ୱରେ ତପୋବନ୍ତ
ଅତି ଭକ୍ତିରେ ହୋଇ ଯୁତ ।
ଆନନ୍ଦେ ଅଶ୍ରୁଜଳମାନ
ବହୁନ୍ତି କଲେ ଆଲିଙ୍ଗନ ।
ଶ୍ରୀରାମ ସ୍ପରଶରେ କରି
ପୁଲକ କୁଳ ଅଙ୍ଗେ ଧରି ।
ଶ୍ରୀରାମ ଶ୍ରୀକର ଧରିଲେ
ଆଶ୍ରମେ ପ୍ରବେଶ ହୋଇଲେ ।
ଆସନେ ବସାଇ ବହୁତ
ପୂଜା କରିଣ ତପୋବନ୍ତ ।

ବନ ସମ୍ଭବୀ ଭକ୍ଷ୍ୟମାନ
ବହୁତ କରାଇ ଭୋଜନ ।
ଏକାନ୍ତ ସୁଖରେ ବସାଇ
କହିଲେ କୃତାଞ୍ଜଳି ହୋଇ ।
ତୁ ଆସିବାକୁ ମୁଁ ଏଠାଇଁ
ରହିଣ ଅଛୁ ବାଟ ଚାହିଁ ।
କ୍ଷୀର ସମୁଦ୍ରେ ବ୍ରହ୍ମା ତୋତେ
ଭୂଭାର ନାଶର ନିମନ୍ତେ ।
ରାବଣ ବଧ ହେବା ପାଇଁ
ମାଗିଲେ ଯେଉଁଦିନ ଯାଇ ।
ସେ ଦିନୁ ତପସ୍ୟା ମୁଁ କରି
ତୁମ୍ଭଙ୍କୁ ହୃଦୟରେ ଧରି ।
ମୁନିଙ୍କ କୁଳରେ ଏଠାଇଁ
ରହିଛୁ ଦେଖିବାର ପାଇଁ ।
ସୃଷ୍ଟି ପୂର୍ବରୁ ଅଛୁ ରହି
ଉପାଧିରେ ରହିତ ହୋଇ ।
ମାୟା ତୁମ୍ଭଙ୍କୁ ଆଶ୍ରେ କରି
ପ୍ରକାଶ ହେଲ ରାବଣାରି ।
ଯେଉଁ ମାୟାକୁ ଋଷି ପ୍ରଭୃତି
ତୁମ୍ଭର ଶକତି ବୋଲନ୍ତି ।
ନିର୍ଗୁଣ ଯେ ତୁ ତୋତେ ଯେବେ
ଶକ୍ତି ଆବୃତ କରେ ତେବେ ।
ସେହି ମାୟାକୁଟି ବେଦାନ୍ତ
ଅବ୍ୟାକୃତ ବୋଲି ବୋଲନ୍ତି ।
କେ ମୂଳ ପ୍ରକୃତି ବୋଲଇ
କେ ମାୟା ବୋଲି ତା କହଇ ।
କେ ତାକୁ ଅବିଦ୍ୟା ବୋଲନ୍ତି
କେହୁ ଯେ ବୋଲନ୍ତି ସଂସ୍କୃତି ।
କେ ବନ୍ଧ ବୋଲଇ ହେ ବୀର
ଏ ଆଦି ବହୁତ ପ୍ରକାର ।

କର ତୋ ମାୟାରେ ପଣ୍ଡିତେ
ବଖାଣ କରନ୍ତି ଜଗତେ ।
ତୁମ୍ଭରେ ମାୟା ଲୋଳ ହେଲା
ମହତ୍ତତ୍ତ୍ୱ ସେ ଜାତ କଲା ।
ହେ ରାମ ସେ ମହତ୍ତତ୍ତ୍ୱରୁ
ଚଞ୍ଚଳ ତୋ ସଙ୍ଗୁଁ ହୋଇ ।
ଜନମ କଲା ଅହଙ୍କାର
ହୁଅଇ ସେ ତିନି ପ୍ରକାର ।
ସାତ୍ତ୍ୱିକ ରାଜସ ତାମସ
ଏ ରୂପେ ତା ନାମ ପ୍ରକାଶ ।
ତାମସ ଅହଙ୍କାରୁ ସୂକ୍ଷ୍ମ
ହୋଇ ତନ୍ମାତ୍ର ହେଲା ଜନ୍ମ ।
ହୋଇଲେ ତହୁଁ ସ୍ଥୂଳ ଜାତ
ତହିଁରୁ ପଞ୍ଚ ମହାଭୂତ ।
ରାଜସ ଅହଙ୍କାରୁ ପୁଣି
ଜନ୍ମିଲେ ଏ ଇନ୍ଦ୍ରିୟଗଣ ।
ସାତ୍ତ୍ୱିକ ଅହଙ୍କାରୁ ପୁଣ
ଜନ୍ମିଲେ ମନ ଦେବ ଶୁଣ ।
ଏ ସମସ୍ତଙ୍କ ଠାରୁ ଜାତ
ହେଲା ଯେ ତାକୁ ବୋଲି ସୂକ୍ଷ୍ମ ।
କେବଳ ପଞ୍ଚମହାଭୂତ
ତହୁଁ ବିରାଟ ହେଲା ଜାତ ।
ବିରାଟ ଠାରୁ ହେ ଶ୍ରୀରାମ
ଜନ୍ମିଲେ ସ୍ଥାବର ଜଙ୍ଗମ ।
ତହୁଁ ଦେବ ନର ସକଳେ
କାଳକ୍ରମରେ କର ହେଲେ ।
ତୁ ରଜ ଗୁଣେ ହୋଇ ଯୁତ
ସର୍ଜନା କରନ୍ତ ଜଗତ ।
ବ୍ରହ୍ମା ବୋଲନ୍ତି ତୋତେ ନରେ
ସଂଯୁତ ହୋଇଣ ସତ୍ତ୍ୱରେ ।

ତୁ ତାହା ପାଳନା କରନ୍ତେ
ବିଷ୍ଣୁ ବୋଲନ୍ତି ତେଣୁ ତୋତେ ।
ତମ ଗୁଣରେ ହୋଇ ଯୁତ
ପ୍ରଳୟ କରନ୍ତେ ଜଗତ ।
ରୁଦ୍ର ବୋଲନ୍ତି ପୁଣି ତୋତେ
ସଂସାରେ ବୋଲନ୍ତି ସମସ୍ତେ ।
ଜାଗ୍ରତ ସ୍ୱପନ ସୁଷୁପ୍ତି
ବୁଦ୍ଧିରୁ ଗୁଣ ଏ ଅଛନ୍ତି ।
ସେ ଗୁଣମାନଙ୍କରୁ ଭିନ୍ନ
ହୋଇଛ ହେ ରଘୁନନ୍ଦନ ।
ଏଣୁ କେବଳ ଏହାଙ୍କର
ସାକ୍ଷୀ ତୁ ଅଟୁ ରଘୁବୀର ।
ସୃଷ୍ଟି ସର୍ଜନା କରିବାକୁ
ମନରେ କର ଯେ ମାୟାକୁ ।
ସମ୍ମତ କରିଣ ଅବଶ୍ୟ
ଗୁଣବନ୍ତର ପ୍ରାୟେ ଦିଶ ।
ତୋର ଅବିଦ୍ୟା ବିଦ୍ୟା ହୋଇ
ମାୟା ଯେ ଦ୍ୱିରୂପ ହୁଅଇ ।
ଯେମନ୍ତ ପ୍ରାଣୀଙ୍କର ଚିତ୍ତ
ପ୍ରବୃତ୍ତ ମାର୍ଗେ ଅନୁଗତ ।
ଅନୁବରତେ ହୋଇ ଥାଇ
ଅବିଦ୍ୟା ରହି ବଶ ସେହୁ ।
ନିବୃତ୍ତି ମାର୍ଗକୁ ଯେ ନିତ୍ୟ
ଆଶ୍ରୟ କରନ୍ତି ସନ୍ତତ ।
ବେଦାନ୍ତ ଅର୍ଥେ ବିଚରନ୍ତି
ତୋ ଭକ୍ତିରେ ନିଷ୍ଠା ଅଛନ୍ତି ।
ତାହାଙ୍କୁ ବିଦ୍ୟା ବଶ ହୋଇ
ଏଥି ସଂଶୟ କିଛି ନାହିଁ ।
ଅବିଦ୍ୟା ବଶ ଯେଉଁ ନର
ସଂସାର ବଢ଼ଇ ତାଙ୍କର ।

ବିଦ୍ୟା ଯେ ଅଭ୍ୟାସ କରନ୍ତି
ନିତ୍ୟ ମୁକ୍ତିଟି ସେ ଅଟନ୍ତି ।
ତୋଠାରେ ନିରନ୍ତର ଭକ୍ତି
କରି ଯେ ତୋ ମନ୍ତ୍ର ଜପନ୍ତି ।
ବିଦ୍ୟା ପ୍ରକାଶ ହୁଏ ତାର
କେବେହେଁ ନୁହଇ ଅନର ।
ଏ ଯେଣୁ ତୁମ୍ଭର ଯେ ଭକ୍ତ
ସେ ଲୋକ ସବୁବେଳେ ମୁକ୍ତ ।
ତୋଠାରେ ଭକ୍ତି ଯାର ନାହିଁ
ସ୍ୱପନେ ମୋକ୍ଷ ସେ ନୁହଇ ।
ବହୁତ କହି କି ହୋଇବ
ସିଦ୍ଧାନ୍ତ ଶୁଣ ହେ ରାଘବ ।
ସାଧୁମାନଙ୍କର ସଙ୍ଗତ
ମୋକ୍ଷର କାରଣ ଅଟନ୍ତି
ସେ ସାଧୁମାନଙ୍କ ଲକ୍ଷଣ
କହିବା ଶୁଣ ତା ଆପଣ ।
ସମାନ ଶତ୍ରୁ ସବୁ ଠାଇଁ
କିଛି କାମନା ନ କରଇ ।
ଇନ୍ଦ୍ରିୟମାନ ଜିଣିଥାଇ
ସଦାକାଳରେ ଶାନ୍ତ ହୋଇ ।
ଶୁଭ ଅଶୁଭ ଦୁଇ ଠାଇ
ସମାନ ବୁଦ୍ଧି ହୋଇ ଥାଇ ।
କର୍ମଫଳକୁ ଛାଡ଼ି ଥାଇ
ଦୁର୍ବୃତ୍ତ ସଙ୍ଗ ନ କରଇ ।
ବ୍ରହ୍ମରେ ତତପର ହୋଇ
ଅଷ୍ଟାଙ୍ଗ ଯୋଗ ସାଧୁଥାଇ ।
ଯାହା ତାହା ପଦାର୍ଥ ପାଇ
ବଡ଼ ସନ୍ତୋଷ ଯେ ହୁଅଇ ।
ଏମନ୍ତ ସାଧୁ ସଙ୍ଗ ଯେବେ
ହୁଅଇ ସେ ଲୋକର ତେବେ ।

ତୋ କଥା ଶ୍ରବଣରେ ପ୍ରୀତି
ନିଶ୍ଚେ ହୁଅଇ ରଘୁପତି ।
ତଦନ୍ତେ ତରଣେ ତୁମ୍ଭର
ଭକ୍ତି ହୁଅଇ ସେ ଲୋକର ।
ତୁମ୍ଭର ଭକ୍ତି ହେଲେ ଜାତ
ବଡ଼ ନିର୍ମଳ ଜ୍ଞାନେ ଯୁକ୍ତ ।
ସେ ଲୋକ ଅବଶ୍ୟ ହୁଅଇ
ମୁକ୍ତିର ମାର୍ଗ ଏ ଅଟଇ ।
ଏଣୁ ଯେ ଚତୁର ଅଟନ୍ତି
ଏ ରୂପେ ସେ ଅଶେ କରନ୍ତି ।
ଏ ଯେଣୁ ଚରଣେ ତୁମ୍ଭର
ପ୍ରେମ ଲକ୍ଷଣ ଭକ୍ତି ମୋର ।
ସଦାକାଳରେ ହେବ ନିତ୍ୟେ
ଏ ରୂପେ ଆଜ୍ଞା ହେଉ ମୋତେ ।
ତୋ ଭକ୍ତଠାରେ ହେ ରାଘବ
କ୍ଷଣେକେ ସଙ୍ଗ ମୋର ହେବ ।
ଅଜ ତୋ ଦର୍ଶନେ ଶ୍ରୀରାମ
ସଫଳ ହେଲା ଯାଗ ଜନ୍ମ ।
ବହୁ ତପସ୍ୟା ଯେ ଗୋସାଇଁ
କଲି ମୁଁ ଅନମନା ହୋଇ ।
ସେ ଫଳ ଅଜ ମୁଁ ପାଇଲି
ତୋ ପାଦପଦ୍ମ ସେବା କଲି ।
ହେ ରାମ ବଇଦେହୀ ତୁଲେ
ଥାଅ ମୋ ହୃଦେ ସଦାବେଳେ ।
ଗୁଲନ୍ତେ ବସନ୍ତେ ଶୁଅନ୍ତେ
ସୁମରୁ ଥିବି ତୋତେ ନିତ୍ୟେ ।
ଏମନ୍ତ ପ୍ରକାରେ ଅଗସ୍ତି
ରଘୁନାଥଙ୍କୁ କରି ସ୍ତୁତି ।
ପୂର୍ବେ ଶ୍ରୀରାମ ନିମନ୍ତେଣ
ଧନୁ ଖଣ୍ଡା ଅକ୍ଷୟ ତୂଣ ।

ଇନ୍ଦ୍ର ଭଣାଇ ଯାଇଥିଲେ
ମୁନି ତା ଦେଇଣ କହିଲେ ।
ରାକ୍ଷସମାନେ ପୃଥ୍ୱୀ ଭାର
ହୋଇ ଅଛନ୍ତି ତାଙ୍କୁ ମାର ।
ଯହିଁର ପାଇଁ ମାୟାନର
ହୋଇଛ ସେ କାର୍ଯ୍ୟକୁ କର ।
ଏଠାରୁ ଦୁଇ ଯୋଜନରେ
ଗୋଦାବରୀ ନଦୀ ତଟରେ ।
ଅଛି ଯେ ଉତ୍ତମ ଆଶ୍ରମ
ପଞ୍ଚବଟୀ ବୋଲି ତା ନାମ ।
ସେଠାରେ ରହିଣ ରାଘବ
ଶେଷ କାଳ ଥୋକାକ ନେବ ।
ସେଠାରେ ସୁର ମାନଙ୍କର
ସମସ୍ତ କାର୍ଯ୍ୟମାନ କର ।
ତତ୍ତ୍ୱାର୍ଥ ମୁନିମାନଙ୍କର
ଶୁଣି ହରଷେ ରଘୁବୀର ।
ଅଗସ୍ତିଙ୍କି ଆଜ୍ଞା ମାଗିଲେ
ତାଙ୍କ କହିଲା ମାର୍ଗେ ଗଲେ ।
ମାଗଇ ଦୀନ ହଳଧର
ହେ ରାମ କରୁଣାସାଗର ।
ଜାନକୀ ଲକ୍ଷ୍ମଣ ସହିତେ
ସନ୍ତତେ ଚିନ୍ତୁଥିବି ଚିତ୍ତେ ।
ଶଏ ପଢଣ ପଦ ଗୀତ
ହରଇ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅରଣ୍ୟକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଭବ ବୋଲନ୍ତି ଗୋ ଭବାନି !
ସୀତା ଲକ୍ଷ୍ମଣ ସଙ୍ଗେ ଘେନି ।
ଅଗସ୍ତ୍ୟଙ୍କ ଠାରୁ ଗମନ
କରନ୍ତେ ଶ୍ରୀ ରଘୁନନ୍ଦନ ।
ଶଇଳ ଶୃଙ୍ଗଟି ଯେସନ
ସେ ରୂପେ ଦେଖେ ଅପଘନ ।
ଜଟାୟୁ ଏମନ୍ତ ପ୍ରକାରେ
ବସିଣ ଅଛନ୍ତି ମାର୍ଗରେ ।
ଅତ୍ୟନ୍ତ ବୃଦ୍ଧ ସେ ଅଟନ୍ତି
ତାହାଙ୍କୁ ଦେଖି ରଘୁପତି ।
ବହୁତ ବସ୍ମୟକୁ ପାଇ
କହନ୍ତେ ଲକ୍ଷ୍ମଣକୁ ଚାହିଁ ।
ଋଷିମାନଙ୍କୁ କରି ନାଶ
ମୋ ଆଗେ ପଡ଼ିଲା ରାକ୍ଷସ ।
ବହନ ଆଣ ଧନୁଶର
ଜୀବନ ହରିବି ଏହାର ।
ଶୁଣି ଜଟାୟୁ ଭୟ କଲେ
ରାମଙ୍କୁ ଏମନ୍ତ କହିଲେ ।
ମାରିବା ନୋହୁ ମୋତେ ବୀର
ସଖା ମୁଁ ଦଶରଥଙ୍କର ।
ଗୃଧ୍ର ମୁଁ ଜଟାୟୁ ମୋ ନାମ
ତୋ କାର୍ଯ୍ୟ କରିବି ଶ୍ରୀରାମ ।
ତୁମ୍ଭେ ଲକ୍ଷ୍ମଣ ମୃଗୟାକୁ
ଗଲେ ଜଗିଥିବ ସୀତାଙ୍କୁ ।

ଶ୍ରୀରାମ ଏମନ୍ତ ଶୁଣିଲେ
ସ୍ନେହରେ ତାହାଙ୍କୁ କହିଲେ ।
ହେ ଗୃଧ୍ରରାଜ ମହାଶୟ
ତୁମ୍ଭେ ମୋହର ମାନ୍ୟପ୍ରିୟ ।
ଅସି ନିକଟେ ରହିଥିବ
ମୋହର ପ୍ରୀତିକି କରିବ ।
ଏମନ୍ତ କହି ରଘୁବୀର
ତାହାଙ୍କୁ ଆଲିଙ୍ଗନ କରି ।
ବଇଦେହୀ ଲକ୍ଷ୍ମଣ ତୁଲେ
ପଞ୍ଚବଟୀ ବନକୁ ଗଲେ ।
ଗୌତମୀ ସରିତର କୂଳେ
ଲକ୍ଷ୍ମଣ ମନ୍ଦିର ତୋଳିଲେ ।
ଦ୍ରାକ୍ଷ ନାରିକେଳ ଅମ୍ବ
କଦଳୀ ପନସ କଦମ୍ବ ।
ଏ ଆଦି ବୃକ୍ଷରେ ସଂପୂର୍ଣ୍ଣ
ପବିତ୍ର ଶୋଭନ ବିପିନ ।
ଏମନ୍ତ ପ୍ରକାର ସ୍ଥଳରେ
ଗୌତମୀ ଉତ୍ତର ତୀରରେ ।
ସ୍ୱର୍ଗେ ଦେବତା ପ୍ରାୟେ ହୋଇ
ସୀତାଙ୍କୁ ଆନନ୍ଦ କରାଇ ।
ଶ୍ରୀରାମ ଲକ୍ଷ୍ମଣ ତୁଲରେ
ରହିଲେ ପରମ ସୁଖରେ ।
କନ୍ଦମୂଳାଦି ଫଳମାନ
ଲକ୍ଷ୍ମଣ ଦେଇ ପ୍ରତିଦିନ ।
ଶ୍ରୀରାମଙ୍କୁ ସେ ସେବା କରି
ରାତ୍ରେ ଜଗନ୍ତ ଧନୁ ଧରି ।
ତନ୍ନହେଁ ପ୍ରଭାତ କାଳରେ
ସ୍ନାନ କରନ୍ତି ଗୌତମୀରେ ।
ରାମ ଲକ୍ଷ୍ମଣ ମଧ୍ୟେ ଥାଇ
ଅସ ଯା ହୋନ୍ତି ବଇଦେହୀ ।
ଲକ୍ଷ୍ମଣ ସଲିଲ ଆଣନ୍ତି
ରାମଙ୍କୁ ସେବା କରିଥାନ୍ତି ।
ତନ୍ନହେଁ ଏମନ୍ତ ପ୍ରକାରେ
ରହିଲେ ପରମ ସୁଖରେ ।
ଏକ ଦିନକେ ରଘୁପତି
ସୁଖରେ ବିଜେ କରିଛନ୍ତି ।
ତାହାଙ୍କୁ କରି ନମସ୍କାର
ବିନୟ ହୋଇ ଯୋଡ଼ିକର ।
ଲକ୍ଷ୍ମଣ ହୋଇ ଭକ୍ତି ଯୁକ୍ତ
ପୁଚ୍ଛିଲେ ତାହାଙ୍କୁ ଏମନ୍ତ ।
ହେ ରାମ ରଘୁକୁଳ ପତି
ମୋକ୍ଷର ନିଷ୍ଠା ଯେଉଁ ଗତି ।
ସେ କଥା ଶ୍ରୀମୁଖୁ ତୁମ୍ଭର
ଶ୍ରଦ୍ଧା ଯେ ଶୁଣିବାକୁ ମୋର ।
[illegible] ଅନୁଗ୍ରହ ଚିତ୍ତେ
ଥିଲେ ସଂକ୍ଷେପେ କହ ମୋତେ ।
ଭକ୍ତି ବୈରାଗ୍ୟେ ବଢ଼ିଥିବ
ବିଜ୍ଞାନେ ସହିତ ହୋଇବ ।
ଏମନ୍ତ ଯେଉଁ ଜ୍ଞାନ ବୀର
ତାହା ଶ୍ରୀମୁଖେ ଆଜ୍ଞା କର ।
ଏରୂପେ କହିବାକୁ କେହି
ତୁମ୍ଭ ବାହାରେ ଅନ୍ୟ ନାହିଁ ।

### ଶ୍ରୀରାମ ଉବାଚ

ଶ୍ରୀରାମ ଶୁଣି ଏହା ପୁଣ
ବୋଇଲେ ଅହେ ବତ୍ସ ଶୁଣ ।
ଗୁହ୍ୟରୁ ଗୁହ୍ୟ ଅଟେ ଏହୁ
ଜାଣିଲ ମାନବକରେ ଯହୁଁ ।
ସମସ୍ତ ଭ୍ରମ ମାନ ଯାଇ
ତତ୍କାଳ ବିନାଶ କରଇ ।

ମାୟାର ସ୍ୱରୂପ ଅଦ୍ୟରେ
କହିବା ପୁଣି ସେ ତତ୍ତ୍ୱରେ ।
ନିର୍ମଳ ଜ୍ଞାନର ସାଧନ
ପୁଣି ସେ ତତ୍ତ୍ୱରେ ବିଜ୍ଞାନ ।
ସହିତ ଭକ୍ତି ଜ୍ଞାନ ପୁଣ
କହିବା ଶୁଣ ହେ ଲକ୍ଷ୍ମଣ ।
ଏତେକ ଯେବେ ବିଚାରିବ
ତେବେ ପରମାନନ୍ଦ ହେବ ।
ଯାହା ଜାଣିଲେ ସଂସାରର
ଭୟରୁ ମୁକ୍ତ ହୁଏ ନର ।
ଶରୀରେ ଆତ୍ମା ବୁଦ୍ଧି ଯାହା
ହୁଅଇ ମାୟା ବୋଲି ତାହା ।
ସେ ମାୟା କରଇ ସଂସାର
ବନ୍ଧୁ ସେ ଥାଇ ନିରନ୍ତର ।
ସେ ମାୟା ବେନି ରୂପ ହୋଇ
ବିକ୍ଷେପ ଆବରଣ ଯେହି ।
ବିକ୍ଷେପଲିଙ୍ଗ ଠାରୁ ବ୍ରହ୍ମ
ପର୍ଯ୍ୟନ୍ତେ ସବୁ ସ୍ଥୂଳ ସୂକ୍ଷ୍ମ ।
ଭେଦ କରଣି ଏ ଜଗତ
କରଇ ସଦାକାଳେ ଜାତ ।
ଆବରଣ ଆବୃତ୍ତ ହୋଇ
ସବୁ ଜ୍ଞାନ ଘୋଡ଼ାଇ ଥାଇ ।
ଜଗତକୁ ମାୟାରେ କରି
ଈଶ୍ୱର ତହିଁରେ ବିସ୍ତରି ।
ଯେମନ୍ତ ଭ୍ରମ ବୁଦ୍ଧି ହୋଇ
ରଜ୍ଜୁକୁ ଉରଗ ମଣଇ ।
ବିବେକ ଯେବେ ଜାତ ହୋଇ
ତେବେ କେହି କିଛି ନୁହଇ ।
ଯେତେକ ଦେଖଇ ଶୁଣଇ
ଯାହା ମନରେ ସୁମରଇ ।

ସ୍ୱପନ ମନୋରଥ ପ୍ରାୟେ
ମିଥ୍ୟା ଅଟନ୍ତି ଏ ସଭିଏଁ ।
ସଂସାର ବୃକ୍ଷ ହେଲା ତାର
ମୂଳ ଅଟଇ ଏ ଶରୀର ।
ପୁତ୍ର କଳତ୍ର ତହିଁ ହୋଏ
ନିବିଡ଼ ଡାଳର ପରାୟେ ।
ବିଲକ୍ଷଣ ହୋଇଣ ପୁଣ
ତହିଁରେ ସ୍ଥିଅଇ ଆପଣ ।
ଦଶ ଇନ୍ଦ୍ରିୟ ପଞ୍ଚଭୂତ
ଅହନ୍ତା ବୁଦ୍ଧି ତନମାତ୍ର ।
ଚୈତନ୍ୟ ସକାଶୁଁ ସମ୍ଭବ
ହୁଅଇ ଯେଉଁ ପ୍ରତିବିମ୍ବ ।
ମନ ମାୟାରେ ହୋଇ ଯୁକ୍ତ
ଏତେକ ବୋଲଇ ସେ କ୍ଷେତ୍ର
ଏତେକେଟି ଦେହ ହୁଅଇ
ଜୀବ ଏଥିରୁ ଭିନ୍ନ ଭାଇ ।
ସେ ଜୀବ ଜାଣିବାକୁ ବୀର
ସାଧନ କହିବା ତହିଁର ।
ଜୀବ ପରମ ହୋଇ ଦୁହେଁ
ଅଟନ୍ତି ସେ ଏକ କଥାଏ ।
କେବଳ ମାତ୍ର ଭିନ୍ନ ହୋଇ
ବେନି ନାମକୁ ଛନ୍ତି ବହି ।
ଅହନ୍ତା ହିଂସାକୁ ଛାଡ଼ିବ
ପର ନିନ୍ଦିଲେ ତା ସହିବ ।
ସରଳ ହେବ ସବୁଠାରେ
ମନ ବଚନ କର୍ତ୍ତବ୍ୟରେ ।
ଉତ୍ତମ ଗୁରୁ ଚରଣରେ
ସେବା କରିବ ନିରନ୍ତରେ ।
ଅନ୍ତେ ବାହାରେ ଦୁଇ ଠାଇଁ
ଶୁଦ୍ଧ ଭାବକୁ ଥିବ ବହି ।

କରିବ ସଦକର୍ମ ମାନ
ମନ ବଚନ ଅପଘନ ।
ତନଙ୍କି ବଶ କରି ଥିବ
ବିଷୟ ଚେଷ୍ଟା ନ କରିବ ।
ଜନ୍ମ ଜରା ମୃତ୍ୟୁର ତତ୍ତ୍ୱ
ବିଚାର କରିବ ତା ନିତ୍ୟ ।
କାହିଁରେ ଆସକ୍ତ ନୋହିବ
ଗର୍ବକୁ ଯତ୍ନରେ ଛାଡ଼ିବ ।
କଳତ୍ର ପୁତ୍ର ଭ୍ରାତ ଧନେ
ସ୍ନେହ କରିବ ନାହିଁ ମନେ ।
ଇଷ୍ଟ ଅନିଷ୍ଟ ଯେବେ ହେବ
ଚିତ୍ତ ସମାନ କରିଥିବ ।
ମୋ ଠାରେ ଭକତି କରିବ
ସର୍ବତ୍ର ସମବୁଦ୍ଧି ହେବ
ନିର୍ଜନ ଶୁଦ୍ଧ ହୋଇଥିବ
ଏମନ୍ତ ସ୍ଥାନରେ ରହିବ ।
ପ୍ରାକୃତ ଜନର ସଙ୍ଗତେ
ପ୍ରୀତି ନୋହିବ କଦାଚିତେ ।
ଆତ୍ମା ଜ୍ଞାନରେ ଅନୁବ୍ରତେ
ଉଦ୍ୟମ କରୁଥିବ ନିତ୍ୟେ ।
ବେଦାନ୍ତ ଅର୍ଥ ପ୍ରତିଦିନେ
ବିଚାର କରୁଥିବ ମନେ ।
ଏତେକ କଲେ ଜ୍ଞାନ ପାଇ
ନ କଲେ ଅଜ୍ଞାନ ହୁଅଇ ।
ଶରୀର ଅହଙ୍କାର ମନ
ବୁଦ୍ଧି ପ୍ରାଣ ଆଦିରୁ ଭିନ୍ନ ।
ହୋଇ ଚୈତନ୍ୟ ଅଛି ରହି
ନିର୍ମଳ ସେ ନ ଲିପ୍ତେ କାହିଁ ।
ଯହିଁରେ ଚିହ୍ନଇ ଆତ୍ମାକୁ
ଜ୍ଞାନ ବୋଲନ୍ତି ବୋଲି ତାକୁ ।

ତହିଁରେ ପ୍ରତ୍ୟକ୍ଷ ଆତ୍ମାକୁ
କରୁଛି ଅନୁଭବ ତାକୁ ।
ସମସ୍ତ କାଳରେ ବେଦାନ୍ତ
ବିଜ୍ଞାନ ବୋଲି ସେ କହନ୍ତି ।
ଆତ୍ମା ଯେ ସମସ୍ତ କାଳରେ
ପୂର୍ଣ୍ଣ ହୋଇଛି ସବୁଠାରେ ।
ଆନନ୍ଦ ସ୍ୱରୂପ ଚୈତନ୍ୟ
ବୁଦ୍ଧ୍ୟାଦି ଉପାଧିରେ ହୀନ ।
ଯେଉଁ ସକାଶୁଁ ହେ ଲକ୍ଷ୍ମଣ ।
ନାହିଁ ତା ଜନମ ମରଣ ।
ଆତ୍ମା ଆପଣା ପ୍ରକାଶରେ
ଦେହାଦିଙ୍କ ପ୍ରକାଶ କରେ ।
ଜାହିଁରେ ସେ ମିଶଇ ନାହିଁ
ସମସ୍ତ ଠାରେ ବ୍ୟାପି ଥାଇ ।
ବିଜ୍ଞନେ କରଣ ଏମନ୍ତ
ଜାଣି ହୁଅଇ ନଷ୍ଟେ ଭ୍ରାତ ।
ସଦଗୁରୁର ମୁଖୁ ଉଚେଲ
ଶାସ୍ତ୍ରର ଉପଦେଶ କଲେ ।
ଜୀବ ପରମ ଦୁଇ ଠାଇଁ
ଜ୍ଞାନ ପ୍ରକାଶ ଯେବେ ହୋଇ ।
ଅବିଦ୍ୟାମାନ ସେ କାଳରେ
କାର୍ଯ୍ୟର କାରଣ ତୁଲରେ ।
ପରମଟାରେ ଲୀନ ହୋଇ
ସେ ଅବସ୍ଥାକୁ ମୁକ୍ତ କହି ।
ଆତ୍ମାକୁ ମୁକ୍ତ ହୋଇବାର
ବୋଲିବା ଅଟେ ଉପଚାର ।
ଜ୍ଞାନ ବିଜ୍ଞାନ ଯେ ବୈରାଗ୍ୟ
ଏଥିରେ କରଣ ସଂଯୋଗ ।
ମୋକ୍ଷର ସ୍ୱରୂପ ଲକ୍ଷଣ
ତୁମ୍ଭଙ୍କୁ କହିଲି ଲକ୍ଷ୍ମଣ ।

କେବଳ ଭକ୍ତ ମୋହଠାରେଁ
ଯେମନ୍ତ ପ୍ରାଣୀର ନ ଥାଇ ।
ତାଙ୍କୁ ଏ ଦୁର୍ଲ୍ଲଭ ଅଟଇ
ଯେସନେ ଚକ୍ଷୁ ଥିଲା ଲୋକହିଁ ।
ରାତ୍ରରେ ବାଟ ନ ଦିଶଇ
ପ୍ରଦୀପ ଜଳିଲେ ଦିଶଇ ।
ଏଣୁ ମୋ ଭକ୍ତ ଯାର ଥାଇ
ତା ଅତ୍ମା ପ୍ରକାଶ ହୁଅଇ ।
ମୋ ଭକ୍ତ ସାଧନର ଗୁଣ ।
କିଛୁ କହିବା ତାହା ଶୁଣ ।
ସନ୍ତତ ସାଧୁ ସଙ୍ଗ ହେବ ।
ତାହାଙ୍କୁ ସେବା କରୁଥିବ ।
ଏକାଦଶ୍ୟାଦି ଉପବାସ
ମୋ ପର୍ବମାନରେ ହରଷ ।
ତଥା ଶ୍ରବଣହିଁ ମୋହର
ମୋହର କଥା କହିବାର ।
ସବୁ କାଳରେ ଏ କଥାରେ
ପ୍ରୀତ କରିବ ନିରନ୍ତରେ ।
ମୋହ ପୂଜାରେ ନିଷ୍ଠା ହେବ
ମୋ ନାମ କୀର୍ତ୍ତନ କରିବ ।
ଏତେ କଥାରେ ଅନୁବ୍ରତ
ହୁଅଇ ଯେଉଁ ଲୋକ ଯୁକ୍ତ ।
ସେମାନଙ୍କର ମୋହ ଠାରେଁ
ନିଶ୍ଚଳ ଭଗତ ହୁଅଇ ।
ଯେ ପୁଣି ମୋ ଭକ୍ତ ଲଭଇ
ତାହାର ଅଉ କି ନୁହଇ ।
ଲଭଇ ଯେ ମୋ ଭକ୍ତିଯୋଗ
ସେ ଜ୍ଞାନ ବିଜ୍ଞାନ ବୈରାଗ୍ୟ ।
ଏତେକ ବଡ଼ ବେଗେ ପାଇ
ମୁକ୍ତିକି ଅକ୍ଲେଶେ ଲଭଇ ।
ତୁମ୍ଭେ କରିଥିବା ପ୍ରଶ୍ନକୁ
ଏତେକ କହିଲି ତୁମ୍ଭଙ୍କୁ ।
ମନ ଦେଲେ ଏ ବିଷୟରେ
ମୁକ୍ତ ହୁଅଇ ଅକ୍ଲେଶରେ ।
ମୋ ଭକ୍ତ ଯାହାର ନ ଥିବ
ତାହାକୁ ଏହା ନ କହିବ ।
ଯେ ମୋର ଭକ୍ତ ହୋଇଥିବ
ତାକୁ ଡାକି ଯତ୍ନେ କହିବ ।
ଯେ ଶ୍ରଦ୍ଧା ଭକ୍ତ କରିଥାଇ
ଯେ ପୁଣି ଏ କଥା ପଢ଼ଇ ।
ଅଜ୍ଞାନ ଅନ୍ଧକାର ନାଶ
ତାହାର ହୁଅଇ ଅବଶ୍ୟ ।
ମୋହର ଯେଉଁମାନେ ଭକ୍ତ
ନିର୍ମଳାନ୍ତଃକରଣ ଶାନ୍ତ ।
ତତ୍ପର ମୋ ସେବାରେ ହୋନ୍ତି
ନିର୍ମଳ ଜ୍ଞାନ ହୋଇଥାନ୍ତି ।
ଏମନ୍ତ ଭଗତ ତୁଲରେ
ସଙ୍ଗ କରନ୍ତି ଯେଉଁ ନରେ ।
ତାଙ୍କ ସେବାରେ ପ୍ରତିଦିନ
ଆନନ୍ଦ ହୁଏ ଯେଉଁ ଜନ ।
ତାଙ୍କର ହାତେ ଥାଇ ମୁକ୍ତି
ସେ ମୋତେ ସନ୍ତତେ ଦେଖନ୍ତି ।
ଏ କଥା ଅନ୍ୟଥା ନୁହଇ
ଏଥି ସଂଶୟ କିଛି ନାହିଁ ।
ବୋଲଇ ହଳଧର ଦାସ
ସୁଜନ ଜନେ ଏଥେ ରସ ।
ଭଗତ ଜନ୍ମ ଜନ୍ମାନ୍ତରେ
ଅଞ୍ଜ ହେଉ ତୋ ଚରଣରେ ।
ଏ ଶଏ ଏକତିଶ ପଦ
ଅଟଇ ଭକ୍ତିଦ ମୋକ୍ଷଦ ।୧୩୧।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ ଅରଣ୍ୟକାଣ୍ଡେ
ନାମ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ପଶୁପତି
ଏହି କାଳରେ ଗୋ ପାର୍ବତି ।
ନିଜ ସଦନ ଜନସ୍ଥାନେ
ନିର୍ଭୟେ ବୁଲୁଥାଇ ବନେ ।
ରାକ୍ଷସୀ ସୂର୍ପଣଖା ହୋଇ
ସେ କାମରୂପିଣୀ ଅଟଇ ।
ଦିନେ ସେ ଗୌତମୀର ତଟେ
ସେ ପଞ୍ଚବଟୀର ନିକଟେ ।
ନିଶ୍ଚିନ୍ତ ହୋଇ ବୁଲୁଥିଲା
ରାମ ପାଦଚିହ୍ନ ଦେଖିଲା ।
ଧ୍ୱଜ ବଜ୍ର ପଦ୍ମ ଅଙ୍କୁଶ
ଏ ଆଦି ଚିହ୍ନରେ ସୁଦୃଶ୍ୟ ।
ଏ ଯେନି ଦଶୁଛି ରୁଚିର
ଏ ରୂପେ ପାଦର ସୁନ୍ଦର ।
ଦେଖି ସେ କାମେ ଅର୍ତ୍ତି ହୋଇ
ସେ ପାଦଚିହ୍ନକୁ ଗୋଡ଼ାଇ ।
ଅତି ଉତ୍ସୁକେ ବେଗେ ଗଲା
ରାମର ଆଶ୍ରମେ ମିଳିଲା ।
ଦେଖିଲା ବସିଛନ୍ତି ରାମ
ରୂପ ନିନ୍ଦୁଛି କୋଟି କାମ ।
ଜାନକୀ ଅଛନ୍ତି ପାଖରେ
ଏ ରୂପେ ଦେଖି ସେ କାମରେ ।
ମୋହରେ ଗଦ ଗଦ ହେଲା
ରାମଙ୍କୁ ଏମନ୍ତ କହିଲା ।
କେ ତୁମ୍ଭେ କାହାର କୁମର
କେଉଁ ରାଜ୍ୟରେ ତୁମ୍ଭ ଘର ।
କି କାର୍ଯ୍ୟେ ଏଥକୁ ଆଇଲ
ଆଶ୍ରମେ କିପାଇଁ ରହିଲ ।
ଜଟା ବକଳ ତ ଧରିଛ
କହ କି କାର୍ଯ୍ୟ କରୁଅଛ ।
ରାକ୍ଷସୀ ଅଟଇ ମୁଁ ବୀର
ନାମ ସୂର୍ପଣଖା ମୋହର ।
ତିନି ଲୋକରେ ଖ୍ୟାତ ବୀର
ରାକ୍ଷସ ଇନ୍ଦ୍ର ଦଶଶିର ।
ତାଙ୍କର କନିଷ୍ଠା ଭଗିନୀ
ଅଟଇ ମୁଁ କାମରୂପିଣୀ ।
ଅନୁର ଭାଇ ଏ ମୋହର
ଅଛି ତାହାର ନାମ ଖର ।
ତା ତୁଲେ ମୁଁ ସଙ୍ଗତ ହୋଇ
ଏ ଜନସ୍ଥାନେ ଅଛି ରହି ।
ରାବଣ ଦେଇଅଛି ମୋତେ
ଏ ସ୍ଥାନ ରହିବା ନିମନ୍ତେ ।
ଏଣୁ ତପସ୍ୱୀ ମାନ ଖାଇ
ବନ ମଧ୍ୟରେ ବୁଲୁଥାଇ ।
କେ ତୁମ୍ଭେମାନେ ତାହା ବେଗେ
କହିବା ହେଉ ମୋର ଆଗେ ।
ଶୁଣି ସେ ରାକ୍ଷସୀ ବଚନ
କହିଲେ ଶ୍ରୀରଘୁନନ୍ଦନ ।

ଅଯୋଧ୍ୟା ରାଜାଙ୍କ କୁମର
ଶ୍ରୀରାମ ବୋଲି ନାମ ମୋର ।
ଜନକରାଜ ସୁତା ସୀତା
ବଡ଼ ସୁନ୍ଦରୀ ଏ ମୋ କାନ୍ତା ।
ଲକ୍ଷ୍ମଣ ସାନ ଭାଇ ମୋର
ସେହୁ ପରମ ମନୋହର ।
ଏମନ୍ତ କହୁ ରାବଣାର
ତାକୁ ବୋଇଲେ ଗୋ ସୁନ୍ଦର !
ତୋହର କି କାର୍ଯ୍ୟ ମୋଠାରେ
ଅଛୁ କି କହ ତା ସତ୍ୱରେ ।
ଯହୁଁ ସେ ଏମନ୍ତ ଶୁଣିଲା
କାମାର୍ତ୍ତେ ଏମନ୍ତ କହିଲା ।
ଶ୍ରୀରାମ ଅସ ମୋ ସଙ୍ଗତେ
ରମିବ ଏ ବନ ପର୍ବତେ ।
କାମାର୍ତ୍ତେ ଦହୁ ମୁଁ ହେଉଛି
ତୁମ୍ଭଙ୍କୁ ପାରୁନାହିଁ ମୁଞ୍ଚି ।
ଏମନ୍ତ ଶୁଣି ରଘୁସାଇଁ
ସୀତାଙ୍କୁ ନେତ୍ର କୋଣେ ଚାହିଁ ।
ମନ୍ଦ ମନ୍ଦ ହୋଇ ହସିଲେ
ରାକ୍ଷସୀକି ଚାହିଁ କହିଲେ ।
ବନିତା ଅଛି ତ ମୋହର
ବିଶେଷେ ପରମସୁନ୍ଦରୀ ।
ସପତ୍ନୀ ଠାରେ ଦୁଃଖ ସହୁ
ରହିବୁ କି ପ୍ରକାରେ ହୋଇ ।
ଲକ୍ଷ୍ମଣ ବାହାରେ ଅଛନ୍ତି
ଅମ୍ଭର କନିଷ୍ଠ ଅଟନ୍ତି ।
ବିଶେଷେ ସେ ଅତି ସୁନ୍ଦର
ତୋ ଅନୁରୂପେ ହେବେ ବର ।
ସେଠାକୁ ଯାଅ ମୋର ବୋଲେ
ବିହାର କର ତାଙ୍କ ତୁଲେ ।

ଶୁଣି ରାକ୍ଷସୀ ବେଗେ ଗଲା
ଲକ୍ଷ୍ମଣ ସମ୍ମୁଖେ ମିଳିଲା ।
ହସି କହିଲା ହେ ସୁନ୍ଦର
ଭାଇଙ୍କ ଆଜ୍ଞାରେ ହେ ବୀର ।
ଆପଣ ହୋଇ ମୋର ପତି
ଆସ ବେଗେ କର ସୁରତି ।
ଏମନ୍ତ ଶୁଣନ୍ତେ ଲକ୍ଷ୍ମଣ
ହସି କହିଲେ ତାକୁ ପୁଣ ।
ରାମର ଦାସ ମୁଁ ଅଟଇ
ଦାସୀ ହୋଇବୁ କିନା ତୁହି ।
ଏଥି ବହୁତ ଦୁଃଖୀ ହୋଇ
ଅଛି କି ଅଛୁ କିଛି କାହିଁ ।
ସବୁର ପତି ରଘୁପତି
ବିଶେଷେ ରାଜା ସେ ଅଟନ୍ତି ।
ଏ ଘେନି ଯାଇଣ ସେଠାକୁ
ବେଗେ ଭଜିବା ହେଉ ତାଙ୍କୁ ।
ଶୁଣି ରାକ୍ଷସୀ କ୍ରୋଧ ହେଲା
ରାମଠାରେ ମିଳି କହିଲା ।
ଏତେ ଚଞ୍ଚଳ ତୁମ୍ଭ ଚିତ୍ତ
ବୁଲଉ ଅଛ କି ନିମିତ୍ତ ।
ଏବେ ଦେଖିବ ତୁମ୍ଭ ଆଗେ
ସୀତାକୁ ଖାଇବି ମୁଁ ବେଗେ ।
ଏମନ୍ତ ବୋଲି କ୍ରୋଧ ହେଲା
ଜାନକୀ ଠାକୁ ସେ ଧାଇଁଲା ।
ଲକ୍ଷ୍ମଣ ଶ୍ରୀରାମ ଆଜ୍ଞାରେ
ସକ୍ରୋଧ ହୋଇ ଉଠି ଖରେ ।
ଖଡ଼ଗ ଘେନି ସେ ବହନ
କାଟିଲେ ତା ନାସିକା କର୍ଣ୍ଣ ।
ଘୋର ଶବଦ ସେହୁ କଲା
ବେଗେ ସେଠାରୁ ପଳାଇଲା ।

ରକତେ ଜର୍ଜର ହୋଇଛୁ
ଉଚ୍ଚେ ରୋଦନ କରୁଅଛୁ ।
ଏମନ୍ତ ହୋଇ ବଡ଼ ବେଗେ
ପଡ଼ିଲା ଯାଇଁ ଖର ଆଗେ ।
ସେ ଦେଖି ବିସ୍ମୟ ହୋଇଲା
ବଡ଼ ବେଗରେ ପଚାରିଲା ।
କେତେ ଏମନ୍ତ କେ ଗୋ କଲା
ମୃତ୍ୟୁ ମୁଖରେ କେ ମିଳିଲା ।
ବିଳମ୍ବ ନ କର ମୋ ଆଗେ
ତାହାକୁ କହ ଦଅ ବେଗେ ।
ମାରିବି ତାହାକୁ ଜାଣିଲେ
କାଳ ଦେବତା ସମ ହେଲେ ।
ରାକ୍ଷସୀ ଶୁଣି ଏହା ପୁଣି
ବୋଲଇ ଜାନକୀ ଲକ୍ଷ୍ମଣ ।
ସହିତେ ଶ୍ରୀ ରଘୁନନ୍ଦନ
ନିର୍ଭୟ କରି ଏହୁ ବନ ।
ନିଶ୍ଚିନ୍ତ ହୋଇ ଆନନ୍ଦରେ
ଅଛନ୍ତି ଗୋଦାବରୀ ତୀରେ ।
ସେ ରାମ ଭାଇଙ୍କି କହିଲେ
ମୋ ନାସା କର୍ଣ୍ଣ ସେ କାଟିଲେ ।
ରାକ୍ଷସ କୁଳେ ଯେବେ ଜାତ
ହୋଇଛ ଯେବେ ଶୂରବନ୍ତ ।
ତେବେ ସେ ବେନି ଭାଇ ମାରି
ରକତ ପିଇବି ତାଙ୍କରି ।
ଭୋଜନ କରିବି ମୁଁ ମାଂସ
ନୋହିଲେ ଏଠାରେ ଅବଶ୍ୟ ।
ତୁମ୍ଭ ଆଗରେ ପ୍ରାଣ ଦେବି
ଯମ ଲୋକକୁ ନିଶ୍ଚେ ଯିବି ।
ଶୁଣି ସେ ଅଧର କମ୍ପାଇ
କ୍ରୋଧବଶେ ଅଜ୍ଞାନ ହୋଇ ।

ରାମଙ୍କୁ କରିବାକୁ ନାଶ
ଚଉଦସହସ୍ର ରାକ୍ଷସ ।
ଆଗ ସେ ପଠିଆଇ ତାଙ୍କୁ
ଘେନି ଦୂଷଣ ତ୍ରିଶିରାକୁ ।
ନାନା ଆୟୁଧ ଧରି କରେ
ରଥରେ ଖର ଗଲା ଖରେ ।
ତାହାଙ୍କ କୋଳାହଳ ମାନ
ଶୁଣନ୍ତେ ଶ୍ରୀରଘୁନନ୍ଦନ ।
ବୋଇଲେ ଲକ୍ଷ୍ମଣଙ୍କୁ ଭ୍ରାତ
ଗୋଳ ତ ଶୁଭୁଛି ବହୁତ ।
ଏଣୁ ମୁଁ ଜାଣୁଛି ଅବଶ୍ୟ
ଆସୁଣି ଅଛନ୍ତି ରାକ୍ଷସ ।
ତାଙ୍କ ସଙ୍ଗତେ ଆଜ ମୋର
ଘୋର ସମର ହେବ ବୀର ।
ସୀତାଙ୍କୁ ଘେନି ତୁମ୍ଭେ ଯାଅ
ଗିରି କନ୍ଦରା ମଧ୍ୟେ ଥାଅ ।
ନିଶ୍ଚୟେ ଆଜ ମୁଁ ରାକ୍ଷସ
ମାନଙ୍କୁ କରିବି ବିନାଶ ।
ପଚାଉ ଅଛୁ ଆମ୍ଭ ରଣ
ତୁ କିଛି ନ କହ ଲକ୍ଷ୍ମଣ ।
ସେ ତାହା ସିଜକାର କଲେ
ସୀତାଙ୍କୁ କନ୍ଦରକୁ ନେଲେ ।
ତହିଁ ଉତ୍ତାରେ ରାବଣାରି
ହୃଦେ ବସନ ବାନ୍ଧି କରି ।
କାନ୍ଧେ ଭିଡ଼ି ଅକ୍ଷୟ ତୂଣ
ବହିଲେ ଧରି ଧନୁବାଣ ।
ଏଥୁ ଅନ୍ତରେ ରକ୍ଷକୁଳ
ଘେନି ଆୟୁଧ ତରୁ ଶିଳ ।
ଉଳୁଗି ଦେଇଁ କେ ଅସ୍ତ୍ର
କେ ଶିରି ମାରି କେ ନାଚନ୍ତି ।

ହସନ୍ତି ଗର୍ଜନ୍ତି ତର୍ଜନ୍ତି
ପାଦ ଘାତରେ କମ୍ପେ କ୍ଷିତ ।
ଏରୂପେ ଶ୍ରୀରାମ ସମ୍ମୁଖରେ
ପ୍ରବେଶ ହୋଇ କ୍ରୋଧଭରେ ।
ବୃକ୍ଷ ପାଷାଣ ନାନା ଶସ୍ତ୍ର
ପ୍ରହାର କଲେକ ବହୁତ ।
ଏମନ୍ତ ଦେଖି ରଘୁବୀର
ଦୂରରୁ ବନ୍ଧ ତୀକ୍ଷ୍ଣ ଶର ।
ସବୁ ତା ତଳ ପ୍ରାୟେ କର
କାଟି ପକାଇ ରାବଣାର ।
ସହସ୍ର ସହସ୍ର ମାର୍ଗଣ
ପ୍ରହାର କର ପୁଣ ପୁଣ ।
ଖର ଦୂଷଣ ତ୍ରିଶିରାଙ୍କୁ
ଚଉଦ ସହସ୍ର ଯାକଙ୍କୁ ।
ମାରିଲେ ଦ' ଘଡ଼ି ଭିତରେ
ଲକ୍ଷ୍ମଣ ଏଥୁ ଅନନ୍ତରେ ।
କନ୍ଦରାରୁ ବାହାର ହୋଇ
ସୀତାଙ୍କୁ ରାମଠାରେ ଦେଇ ।
ଦେଖିଲେ ରାକ୍ଷସ ଣିକରେ
ମରି ପଡ଼ିଛନ୍ତି କ୍ଷିତରେ ।
ବହୁତ ବିସ୍ମିତ ହୋଇଲେ
ଶ୍ରୀରାମ ପାଦେ ପ୍ରଣମିଲେ ।
ସୀତାଙ୍କୁ ରାମ ହରଷରେ
ଅଶ୍ଳେଷ କରଣ ସନ୍ତୋରେ ।
ଅଯୂଧ ଶିଦ୍ଧ ଦେହେ ଦେଖି
ପୋଛିଲେ କରେ ହୋଇ ଦୁଃଖୀ ।
ସମସ୍ତ ରାକ୍ଷସ ମରାଇ
ସେଠାରୁ ସୁର୍ପଣଖା ଯାଇ ।
ଲଙ୍କାର ସଭାର ମଧ୍ୟରେ
ପଡ଼ିଲା ରାବଣ ସମ୍ମୁଖରେ ।

ତାହାଙ୍କୁ ସଭ୍ୟ କରଣ
ଦେଖନ୍ତେ ପରୁରେ ରାବଣ ।
ଉଠ ଉଠ ଗୋ ମୋହ ଅଗେ
ଏହା କେ କଲା କହ ବେଗେ ।
ଇନ୍ଦ୍ର କ ଯମ କ ବରୁଣ
କରଣ ଥିଲେ ବୈଶ୍ରବଣ ।
କହ ତାକୁ ବେଗେ ଅଣିବି
କ୍ଷଣକେ ମୁଁ ଭସ୍ମ କରିବି ।
ସେ ସୂର୍ପଣଖା କ୍ରୋଧଭରେ
କହିଲା ରାବଣ ସମ୍ମୁରେ ।
ସମସ୍ତ ଠାରେ ତ ରାଜନ
ହୋଇଲ ଅଣ ଅବଧାନ ।
ମଦ୍ୟ ପାନରେ ଅସକତ
ସ୍ତ୍ରୀବଶ ହୋଇଲ ସନ୍ତତ ।
ଏ ଯେଣୁ ମୂଢ଼ ଅଟ ବୀର
ମନରେ ଏମନ୍ତ ବିଚାର ।
ସମସ୍ତ ରାଜ୍ୟ ଯାକେ ମୋର
ଭଲ ହେଉଛି ନିରନ୍ତର
ତୁମ୍ଭର ଚର ଚକ୍ଷୁ ନାହିଁ ।
ରାଜା ବୋଲାଅ କାହିଁପାଇଁ
ଖର ଦୂଷଣ ତ୍ରିଶିରାଙ୍କୁ
ଚଉଦ ସସ୍ର ରାକ୍ଷସଙ୍କୁ ।
ସବୁ କ୍ଷଣକେ ରାମ ମାରି
ନିର୍ଭୟ ଜନସ୍ଥାନ କରି ।
ମୁନିମାନଙ୍କୁ ସମର୍ପିଲେ
ସେମାନେ ନିଷ୍ଟିନ୍ତେ ରହିଲେ ।
ଅପଣ ଏତେତ ଅଜ୍ଞାନ
ତା ଏତେ ବଳମ୍ଭେ ନ ଜାଣ ।
ମୁଁ କହିଲୁଁ ଯେ ଏମାନ
ଜାଣିମା ହୋଇଲ ରାଜନ ।

ରାବଣ ଉବାଚ

ଶୁଣି ବୋଇଲେ ଦଶଶିର
ରାମ କେ କି ନିମିତ୍ତେ ମୋର ।
ଚଉଦ ସହସ୍ର ରାକ୍ଷସ
ନିଃଶେଷ କରି କଲା ନାଶ ।
ଏମାନ ଅଉ ଥରେ ବେଗେ
ବୁଝାଇ କହ ମୋର ଆଗେ ।
ସମୂଳ କରି ତାକୁ ନାଶ
ଜାଣିଲେ କରିବି ଅବଶ୍ୟ ।
ଏଥକୁ ସୂର୍ପଣଖା ପୁଣି
ବୋଇଲା ଶୁଣ ହେ ରାବଣ ।

ସୂର୍ପଣଖୋବାଚ

ଜନସ୍ଥାନରୁ ଆସି ଦିନେ
ବୁଲନ୍ତେ ପଞ୍ଚବଟୀ ବନେ ।
ତହିଁରେ ଗୌତମୀର ତୀରେ
ମୁନିମାନଙ୍କ ଆଶ୍ରମରେ ।
ଦେଖିଲି ଅଛନ୍ତି ଶ୍ରୀରାମ
ସୁମରକତ ସମ ଶ୍ୟାମ
ପଙ୍କଜ ପ୍ରାୟେ ନେତ୍ର ତାର
ଜଟା ବଳ୍କଳ ଧନୁର୍ଦ୍ଧର ।
ଅନୁଜ ନାମ ତା ଲକ୍ଷ୍ମଣ
ସେହି ଧରନ୍ତି ଧନୁର୍ବାଣ ।
ରାମର ଭାର୍ଯ୍ୟା ବଇଦେହୀ
ସାକ୍ଷାତ ଲକ୍ଷ୍ମୀ ସେ ଅଟଇ ।
ଯେମନ୍ତ ଦଶୁଅଛି ସୀତା
ତା କୋଟି ଅଂଶରେ ବନିତା ।
ନର ନାଗ ଦେବ ଗନ୍ଧର୍ବ
ଏହାଙ୍କ ମଧ୍ୟରେ କେ ଦେବ ।
ତିନି ଭୁବନେ ଜଣେ କେହୁ
ଦେଖି ମୁଁ ନାହିଁ ଶୁଣି ନାହିଁ ।
ତାକୁ ମୁଁ ତୁମ୍ଭଙ୍କୁ ଦେବାକୁ
ସେଠାକୁ ଗଲି ଆଣିବାକୁ ।
ଶ୍ରୀରାମ ଆଜ୍ଞାରେ ଲକ୍ଷ୍ମଣ
ଛେଦିଲା ମୋ ନାସା ଶ୍ରବଣ ।
କାନ୍ଦି ମୁଁ ଅତି ଦୁଃଖୀ ହୋଇ
କହିଲି ଖର ଆଗେ ଯାଇ ।
ଘେନି ସେ ସବୁ ରାକ୍ଷସଙ୍କୁ
ଗଲା ରାମଙ୍କୁ ମାରିବାକୁ ।
ରାମ କ୍ଷଣକେ କଲେ ନାଶ
ଚଉଦ ସହସ୍ର ରାକ୍ଷସ ।
ମନ କଲେ ସେ ରଘୁବୀର
ଅଧ ନିମିଷେ ତିନିପୁର ।
ଭସ୍ମ କରିବ ସେ ନିଶ୍ଚୟେ
ମୋତେ ଏମନ୍ତ ପ୍ରତେ ହୁଏ ।
ସେ ସୀତା ଭାର୍ଯ୍ୟା ହେଲେ ତୋର
ଜନ୍ମ ସଫଳ ହେବ ବୀର ।
ଲୋକରେ ସୁନ୍ଦରୀ ଅଟଇ
ଏମନ୍ତ ଯେଉଁ ବଇଦେହୀ ।
ଯେମନ୍ତେ ଭାର୍ଯ୍ୟା ସେ ତୁମ୍ଭର
ହେବ ତହିଁକି ଯତ୍ନ କର ।
ତା ଆଗେ ତୁ ସାକ୍ଷାତ ହୋଇ
ନିଶ୍ଚୟେ ନ ପାରିବୁ ରହି ।
ଏ ଘେନି ମାୟାରେ ତାହାଙ୍କୁ
ମୋହ କରାଇ ସେ ସୀତାଙ୍କୁ ।
ବହନ ଆଣ ହେ ରାଜନ
ଶୁଣି ସନ୍ତୋଷ ଦଶାନନ ।
ବହୁତ ଦ୍ରବ୍ୟମାନ ଦେଇ
ଶାନ୍ତିବଚନ ତାଙ୍କୁ କହି ।
ମନରେ ହରଷ ଲଭିଲା
ପ୍ରବେଶ ଅନ୍ତଃପୁରେ ହେଲା ।

ନିଦ୍ରା ନୋହିଲା ତାଙ୍କୁ ରାତ୍ରେ
ଏ ରୂପେ ସେ ଚିନ୍ତା କରନ୍ତେ ।
ଗରବ ବଳ ବୀର୍ଯ୍ୟ ବହୁ
ଖର ତ ରାକ୍ଷସ ଅଟଇ ।
ଶ୍ରୀରାମ ଜଣେ ତ ମନୁଷ୍ୟ
ତାଙ୍କୁ କେମନ୍ତେ କଲେ ନାଶ ।
ସେ ରାମ ଅବା ନାରାୟଣ
ମୋତେ ସେ ଦର୍ଶନ କାରଣ ।
ମାନବା ପାଇଁ ପ୍ରଜାପତି
ମାଗିଲାକୁ ଅବା ଶ୍ରୀପତି ।
ମାୟା ମନୁଷ୍ୟ ରୂପ କଲେ
ରଘୁକୁଳରେ ଜାତ ହେଲେ ।
ତା ହାତେ ଯେବେ ମୁଁ ମରିବି
ବୈକୁଣ୍ଠ ରାଜ୍ୟକୁ ପାଇବି ।
ନୋହିଲେ ତ ବହୁତ ଯୁଗ
ଏ ରାଜ୍ୟ କରୁଥିବି ଭୋଗ ।
ଏ ଘେନି ରାମଠାକୁ ଯିବି
ତା ତୁଲେ ବଇର ହୋଇବି ।
ଏମନ୍ତ ମନେ ବିଚାରିଲା
ଶ୍ରୀରାମ ବିଷ୍ଣୁ ସେ ଜାଣିଲା ।
ପୁଣି ସେ ଚିନ୍ତିଲା ଯୁଦ୍ଧରେ
ବିଷ୍ଣୁଙ୍କ ପାଇବି ସତ୍ୱରେ ।
ନୋହିଲେ ଭକ୍ତିରେ ବହନ
ଏରୂପେ ନୋହିବେ ପ୍ରସନ୍ନ ।
ହଳଧରର ଅଧ କର
ନାଶନ୍ତୁ ରାବଣାର ହର ।
ଏ ଶଏ ଶତାବନ ପଦ
ହରିବ ସମସ୍ତ ବିପଦ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ ଅରଣ୍ୟକାଣ୍ଡେ
ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଶିବ ବୋଲନ୍ତି ଗୋ ଗଉରି
ଏ ରୂପେ ରାତ୍ରରେ ବିଚାରି ।
ନିଶ୍ଚୟ କରଣ ଚିତ୍ତରେ
ପ୍ରଭାତୁ ବସି ଶତାଙ୍ଗରେ ।
ସମୁଦ୍ର ପାର ହୋଇଗଲା
ମାରୀଚ ମନ୍ଦିରେ ମିଳିଲା ।
ମାରୀଚ ମୁନି ପ୍ରାୟେ କରି
ଜଟା ବଳ୍କଳ ଅଛି ଧରି ।
ନିର୍ଗୁଣ ପରମ୍ମା ଅଟଇ
ଗୁଣ ମାନଙ୍କ ପ୍ରକାଶଇ ।
ଏମନ୍ତ ପ୍ରକାରେ ଯେ ହରି
ତାହାଙ୍କୁ ହୃଦେ ଧ୍ୟାନ କରି ।
ଦେଖିଲା ସେ ସମାଧି ଅନ୍ତେ
ଅଛନ୍ତି ରାବଣ ପୁରତେ ।
ବେଗେ ସେ ଉଠି ଅଲିଙ୍ଗନ
କରି ସତ୍ୱରେ ପୂଜାମାନ ।
ଯତ ଅସନେ ବସାଇଲା
ଏମନ୍ତ ବଚନ କହିଲା ।
ରଥରେ ବସି ଏକା ହୋଇ
ଆପଣ ଅଇଲ୍ କିପାଇଁ ।

ତୁହେ କି କାର୍ଯ୍ୟ ବିସ୍ମରିଛ
ଚଣ୍ଡାଳ ପ୍ରାୟେ ତ ଦିଶୁଛ ।
କହ ତା ଗୁପତ ନ କର
କରିବି ପ୍ରିୟକଥା ତୋର
କେବଳ ନ୍ୟାୟ କଥା ଯେତେ
ହେବ କହିବା ହେଉ ତେବେ ।
ଯେମନ୍ତ ପାପରାଶି ମୋତେ
ଛୁଇଁବ ନାହିଁ କଦାଚିତେ ।
ଏମନ୍ତ ଶୁଣନ୍ତେ ରାବଣ
କହିଲେ ମାରୀଚକୁ ପୁଣ ।

ରାବଣ ଉବାଚ

ଦଶରଥ ଯେ ନରପତି
କୋଶଳ ଦେଶେ ସେ ଅଛନ୍ତି ।
ରାମ ନାମେ ତା ଜ୍ୟେଷ୍ଠ ପୁତ୍ର
ଯୋଦ୍ଧା ଅଟଇ ସେ ଅତ୍ୟନ୍ତ ।
ତା ଦୁଷ୍ଟ ପଣୁ ତାହାଠାରେ
ବନିତା ଭ୍ରାତା ସଙ୍ଗତରେ ।
କୋପେ ତା ପିତା ଅରଣ୍ୟକୁ
ବାହାର କରିଦେଲା ତାକୁ ।
ଆସି ଏ ଦେଶେ ରଘୁପତି
ପଞ୍ଚବଟୀରେ ରହିଛନ୍ତି ।
ସୀତା ନାମରେ ଅଛି ପତ୍ନୀ
ଅଟଇ ସେ ଲୋକମୋହିନୀ ।
ଖର ଦୂଷଣ ତ୍ରିଶିରାର
ସଙ୍ଗତରେ ସେ ରଣଧୀର ।
ଚଉଦ ସହସ୍ର ରାକ୍ଷସ
ଅଦୋଷେ କଲା ମୋର ନାଶ ।
ସୁର୍ପଣଖାର ନାସା କର୍ଣ୍ଣ
ନିର୍ଦ୍ଦୋଷେ କଲାକ ଛେଦନ ।

ସେ ଅତି ନିର୍ଭୟ ଯେ ହୋଇ
ପଞ୍ଚବଟୀରେ ଅଛି ରହି ।
ଏଣୁ ସହାୟ ହେବୁ ଯେବେ
ତୁହେଁ ସେଠାକୁ ଯାଇ ତେବେ ।
ନ ଥିବା ବେଳେ ବେନିଭାଇ
ତା ପ୍ରାଣବଲ୍ଲଭୀ ଅଟଇ ।
ଏମନ୍ତ ଯେଉଁ ବଇଦେହୀ
ତାହାକୁ ଆଣିବା ଚୋରାଇ ।
ତୁମ୍ଭେ ମାୟାରେ ମୃଗ ହେବ
ଦୂରକୁ ସେ ଦୁହିଁଙ୍କୁ ନେବ ।
ଏହି ସମୟେ ମୁଁ ସେଠାକୁ
ଯାଇ ହରି ନେବି ସୀତାକୁ ।
ଏତେକ ମାତ୍ର ତୁ କରିବୁ
ପୁଣି ଏ ସ୍ଥାନକୁ ଆସିବୁ ।
ମାରୀଚ ଶୁଣନ୍ତେ ଏମନ୍ତ
ବିସ୍ମୟ ହୋଇ ଅତି ଅନ୍ତ ।
ରାବଣ ମୁଖକୁ ସେ ଚାହିଁ
କହଇ ନିଃଶ୍ୱାସ ପକାଇ ।
ସମୂଳ ହୋଇ କରି ନାଶ
ହୋଇବା ପାଇଁ ଉପଦେଶ ।
ଏରୂପେ ଦେଲା ଯେ ବଇରି
ନିଶ୍ଚୟେ ସେ ଶତ୍ରୁ ତୁମ୍ଭର ।
ବଧ ହେବାକୁ ଯୋଗ୍ୟ ସେହୁ
ତୁମ୍ଭର ମୃତ୍ୟୁ ଇଚ୍ଛେ ଯହୁଁ ।
ରାମର ପୌରୁଷ ସୁମରି
ଅଦ୍ୟାପି ଅଛି ଭୟଙ୍କର ।
ପୂର୍ବେ ସେ ବାଳକାଳେ ମୋତେ
କୌଶିକ ଯାଗର ନିମନ୍ତେ ।
ଏକ ବାଣକେ ଉଡ଼ାଇଲେ
ଶତେ ଯୋଜନେ ପକାଇଲେ ।

ସେ ଦନୁ ମୁଁ ସନ୍ତତ ହୋଇ
ତାଙ୍କୁ ମନରେ ଶଙ୍କୁ ଥାଇ ।
ରାମର ସେହୁ କାର୍ଯ୍ୟ ସ୍ମର
ସବୁ ଦେଖଇ ରାମପର
ପୂର୍ବର ବଇର ବସ୍ତୁର
ଏବେ ମୁଁ ମୃଗ ରୂପ ଧରି ।
ତୀକ୍ଷ୍ଣ କରି ମୋ ବେଣି ଶୃଙ୍ଗ
ସଙ୍ଗତେ ଘେନି ବହୁ ମୃଗ ।
ଦଣ୍ଡକ ଅରଣ୍ୟକୁ ଚଳି
ସେ ରାମ ଆଶ୍ରମେ ମିଳିଲି ।
ତାହାଙ୍କୁ ମାରିବା ନିମନ୍ତେ
ନିକଟ ହୋଇ ମୁଁ ଅସନ୍ତେ ।
ଜାନକୀ ଲକ୍ଷ୍ମଣ ସହିତେ
ବସି ସେ ଥିଲେ ଦେଖି ମୋତେ ।
ସେ ବସି ଥାଇ ଏକଶର
ହେଲେ ବିନ୍ଧନ୍ତେ ରଘୁବୀର ।
ବହୁତ ପୀଡ଼ିତ ମୁଁ ହେଲି
ରକତ ବାନ୍ତି କରିଥିଲି ।
ଆସି ମୁଁ ଏମନ୍ତ ପ୍ରକାରେ
ପଡ଼ିଲି ସମୁଦ୍ର ମଧ୍ୟରେ ।
ସେ ଦନୁ ମହାଭୟ କଲି
ନିର୍ଭୟେ ଏ ସ୍ଥଳେ ରହିଲି ।
ମଣ୍ଡୁକ ଚିନ୍ତାଭର ହୋଇ
ବମ୍ବର ଜହାଡ଼େ ଲୁଚଇ ।
ସର୍ପ ସକାଶୁ ଭୟ ପାଇ
ଯେହ୍ନେ ଅଶଙ୍କା ହେଉ ଥାଇ ।
ମୁଁ ସେହୁ ରୂପେ ସବୁଠାଇଁ
ତାଙ୍କୁ ଭାବନା କରୁ ଥାଇଁ ।
ରମଣୀ ରାଜ୍ୟ ରଥ ରତ୍ନ
ଶୁଣନ୍ତେ ଏ ଶବଦ ମାନ ।

ଏ ରାମ ବୋଲି ଶଙ୍କା ହୋଇ
ବହୁତ ଭୟ ମୁଁ ଲଭଇ ।
ସେ ଅବା ମିଳିଲେ ଏଠାରେ
ଏମନ୍ତ ପ୍ରକାରେ ମନରେ ।
ଯେତେବେଳରେ ତା ସ୍ମରଇ
ମୁଁ ସବୁ କାର୍ଯ୍ୟକୁ ଛାଡ଼ଇ ।
ରାମଚନ୍ଦ୍ରଙ୍କୁ ନିତ୍ୟେ ଚିତ୍ତେ
ଚିନ୍ତା କରୁଥାଇ ସନ୍ତତେ ।
ଯେତେବେଳରେ ନିଦ୍ରା ହୋଇ
ସ୍ୱପ୍ନରେ ରାମଙ୍କୁ ଦେଖଇ ।
ତହିଁରୁ ବଡ଼ ଭୟ ହୋଇ
ତତ୍କାଳ ମୋ ନିଦ୍ରା ଭଜଇ ।
ଏ ଘେନି କରି ସେ ରାଘବ
ସଙ୍ଗତେ ଅହେ ଦଶଗ୍ରୀବ ।
କଳହ ନ କରି ବହନ
କର ସଦନକୁ ଗମନ ।
ଅପାର ତାଙ୍କୁ ଲଙ୍କପତ
ରାକ୍ଷସ କୁଳ ବଢ଼ିଛନ୍ତି ।
ତାହାଙ୍କୁ ରକ୍ଷା କରିବାର
ସ୍ୱଧର୍ମ ଅଟଇ ତୁମ୍ଭର
ଅଭାବ ରାମସଙ୍ଗେ ଯେବେ
ହେବ ସମସ୍ତେ ନାଶ ଯିବେ ।
ମୁଁ ତୁମ୍ଭ ଏ ହିତ ବଚନ
କହୁଛି ଘେନ ଦଶାନନ ।
ରାମ ପରମାତ୍ମା ଅଟନ୍ତି
ତାହାଙ୍କ ଠାରୁ ଲଙ୍କପତି
ବେଗେ ବିରୋଧ ବୁଦ୍ଧି ତେଜ
ଭକ୍ତି ଭାବରେ ତାଙ୍କୁ ଭଜ ।
ଯେଣୁ କରି ସେ ରାମଚନ୍ଦ୍ର
ଅଟନ୍ତି କରୁଣା ସମୁଦ୍ର ।

ମୁନିଙ୍କ ଠାରୁ ହେ ରାଜନ
ପୂର୍ବେ ମୁଁ ଶୁଣିଛି ଏସନ ।
ସତ୍ୟ ଯୁଗରେ ବ୍ରହ୍ମା ଗଲେ
ପରମେଶ୍ୱରଙ୍କୁ ମାଗିଲେ ।
ଏଥିକି ବିଷ୍ଣୁ ଅଜ୍ଞା ଦେଲେ
କି କାର୍ଯ୍ୟ କରିବା ବୋଇଲେ ।
ଶୁଣି ସେ ଚତୁରଆନନ
ତାହାଙ୍କୁ କହିଲେ ଏସନ ।
ଦଶରଥର ହୋଇ ସୁତ
ଧରଣୀ ତଳେ ହୋଇ ଜାତ ।
ଅଛି ଶତ୍ରୁ ଯେ ଦଶଶିର
ତାହାକୁ ବେଗେ ବଧ କର ।
ଏଣୁ ସେ ମନୁଷ୍ୟ ନୁହନ୍ତି
ନିଶ୍ଚେ ଟି ବିଷ୍ଣୁ ରଘୁପତି ।
ଭୂମିର ଭାର ନାଶ ପାଇଁ
ମାୟା ମନୁଷ୍ୟ ବେଶ ହୋଇ ।
ନିର୍ଭୟ ହୋଇ ଅରଣ୍ୟକୁ
ଆଇଲେ ତୋତେ ମାରିବାକୁ ।
ଏମନ୍ତ ଶୁଣନ୍ତେ ରାବଣ
କହିଲେ ମାରୀଚକୁ ପୁଣ ।
ନିଶ୍ଚୟେ ଯେବେ ରଘୁପତି
ପରମ ଆତ୍ମା ସେ ଅଟନ୍ତି ।
ସେ ପୁଣି ମୋତେ ମାରିବାକୁ
ଧାତା ମାଗିଲେ ଯେବେ ତାଙ୍କୁ ।
ବିଷ୍ଣୁ ତା ସ୍ୱୀକାର କଲେ
ଏଥକୁ ମନୁଷ୍ୟ ହୋଇଲେ ।
ଯେବେ ସେ ମୋତେ ମାରିବାକୁ
ଆସିଣ ଅଛନ୍ତି ଏଠାକୁ ।
ସତ୍ୟବାଦୀ ସେ ନିଶ୍ଚେ ଯାହା
ବୋଲି ଅଛନ୍ତି ହେବ ତାହା ।

ଏଣୁ ମୁଁ ତାଙ୍କଠାକୁ ଯିବି
ଯତ୍ନରେ ସୀତାଙ୍କୁ ଅଣିବି ।
ଯୁଦ୍ଧରେ ମଲେ ତ ତରିବି
ପରମ ପଦକୁ ଲଭିବି ।
ଯେବେ ମୁଁ ରାମଙ୍କୁ ମାରିବି
ତେବେ ତ ସୀତାଙ୍କୁ ପାଇବି ।
ଏଣୁ ଉଠ ମୋ ବୋଲ କର
ବିଚିତ୍ର ମୃଗ ରୂପ ଧର ।
ଆଶ୍ରମୁଁ ବାହାର କରିଣ
ଦେନି ତୁ ଶ୍ରୀରାମ ଲକ୍ଷ୍ମଣ ।
ପୁଣି ତୁ ନିଜ ଆଶ୍ରମରେ
ପ୍ରବେଶ ହୋଇବୁ ସତ୍ୱରେ ।
ଭୟ ଦେଖାଇ ମୋତେ ଯେବେ
କହିବୁ ଥାଇ କିଛି ତେବେ ।
ନିଶ୍ଚୟେ ତୋତେ ଏହିଠାରେ
ହାଣିମି ଏହି ଖଡ୍ଗରେ ।
ମାରୀଚ ଏମନ୍ତ ଶୁଣନ୍ତେ
ବିଚାର କଲା ହୃଦଗତେ ।
ରାମରେ ଯେବେ ମୁଁ ମରିବି
ତେବେ ସଂସାରୁ ମୁକ୍ତ ହେବି ।
ମଲେ ମୁଁ ଏ ଦୁଷ୍ଟ ହସ୍ତରେ
ପଡ଼ିବି ସିନା ନରକରେ ।
ବିଚାରି ବୋଇଲା ରାଜନ
କରିବି ମୁଁ ତୁମ୍ଭ ବଚନ ।
ବୋଲି ସେ ରଥରେ ବସିଲା
ଶ୍ରୀରାମ ଆଶ୍ରମେ ମିଳିଲା ।
ବିଚିତ୍ର ମୃଗ ରୂପ କଲା
ସୁବର୍ଣ୍ଣ ପ୍ରାୟ ଦେହ ହେଲା ।
ତହିଁରେ ରୁପା ବିନ୍ଦୁମାନ
ଦୁଇ ଶିଙ୍ଗ ହେଲା ରତନ ।

ଗୃହ ଖୁର ମଣି ନିର୍ମିତ
ମହେନ୍ଦ୍ର ମଣି ପ୍ରାୟେ ନେତ୍ର ।
ବଦନ ଭିତରେ ବିସ୍ତାର
ଦିଶଇ ବିଜୁଳି ପ୍ରକାର ।
ବୁଲିଲା ଏମନ୍ତ ପ୍ରକାରେ
ବଇଦେହୀର ଅଗ୍ରତରେ ।
କ୍ଷଣେ ଧାମଇଁ କ୍ଷଣେ ରହି
କେଉଁ କାଳରେ ଲୋଳ ହୋଇ ।
ନିକଟ ହୋଇଣ ଆସଇ
କ୍ଷଣ କ୍ଷଣକେ ଦଏ ଗୃହିଁ ।
ପୁଣି ତତ୍କାଳ ଭୟ ପାଇ
ଡେଇଁ କରି ଯାଏ ପଳାଇ ।

ସୀତାଙ୍କ ମୋହିତ କରାଇ
ବୁଲିଲା ସେ ଏମନ୍ତ ହୋଇ ।
ଅମିତ ଭାବରେ ଭଜିବ
ଦୁଷ୍ଟ ରାବଣ ମୁକ୍ତ ହେବ ।
ପ୍ରୀତିରେ ଯେ ପୁଣି ଭଜିବ
ସେ ଲୋକ ଗତିକି ଲଭିବ ।
ବୋଲେ ପତିତ ହଳଧର
ହେ ରାମ କରୁଣାସାଗର ।
ତୁମ୍ଭ କରୁଣା ହେଲେ ଊଣା
ନିମିଷକରେ ହୁଏ ବଣା ।
ଏ ଶଏ ଦଶୋତ୍ତର ପଦ
ଅଟଇ ପରମ ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଅରଣ୍ୟକାଣ୍ଡେ ନାମ ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଈଶ୍ୱର ବୋଇଲେ ପାର୍ବତୀ
ଏଥିଅନ୍ତରେ ରଘୁପତି ।
ରାବଣ ଚେଷ୍ଟା ଜାଣି ଚିତ୍ତେ
ସୀତାଙ୍କୁ କହିଲେ ଏକାନ୍ତେ ।
ତୁମ୍ଭଠାକୁ ଯେ ଦଶଗ୍ରୀବ
ଭିକାରି ରୂପରେ ଆସିବ ।
ଏଣୁ ତୁମ୍ଭ ଅଙ୍କତରେ
ଛାୟା ସୀତା ରଖି କୁଟୀରେ ।
ରହିବା ହେଉ ଅନଳରେ
ବରଷେ ମୋହର ଆଜ୍ଞାରେ ।
ଦଶକନ୍ଧର ବଧ ଅନ୍ତେ
ତୁମ୍ଭେ ପାଇବ ପୁଣି ମୋତେ ।

ଜାନକୀ ଶ୍ରୀରାମ ଆଜ୍ଞାରେ
ମାୟା ସ୍ୱରୂପ ସେ କୁଟୀରେ ।
ରଖି ବହନ ହୁତାଶନ
ମଧ୍ୟରେ ହେଲେ ଅନ୍ତର୍ଦ୍ଧାନ ।
ମାୟା ସୀତା ମାୟାମୃଗକୁ
ଦେଖିଣ ହସି ଶ୍ରୀରାମଙ୍କୁ ।
ବୋଇଲେ ଦେଖ ରଘୁପତି
ବଣେ ବନ୍ଧୁମାନେ ଛନ୍ତି ।
ଶରୀର ଅଟଇ ସୁବର୍ଣ୍ଣ
ଦିଶୁଛି ପରମ ଶୋଭନ ।
ଏହାକୁ ବାନ୍ଧି କରି ମୋତେ
ଦିଅ ମୋ କ୍ରୀଡ଼ାର ନିମିତ୍ତେ ।

ରାମ ତା ପିଇକାର କର
ବାହାର ହୋଇଲେ ଧନୁ ଧର ।
ଭାଇଙ୍କି ବୋଇଲେ ହେ ବୀର
ପ୍ରାଣ ବଲ୍ଲଭା ସୀତା ମୋର
ଏହାଙ୍କୁ ତୁମ୍ଭେ ଯତ୍ନ କର
ଜଗି ଥିବଟି ଧନୁ ଧର ।
ମାୟାବୀ ଯେଉଁ ରକ୍ଷମାନେ
ବହୁତ ଅଛନ୍ତି ଏ ବନେ ।
ଏ ଘେନି କର ସାବଧାନେ
ରକ୍ଷା କରିବଟି ଯତନେ ।
ଲକ୍ଷ୍ମଣ ଶୁଣି ସେ କହନ୍ତି
ରାମଙ୍କୁ କହିଲେ ଏମନ୍ତ ।
ଏ ମୃଗ ମାରୀଚ ନିଶ୍ଚୟେ
ଏଥିରେ ନ କର ସଂଶୟେ ।
ନୋହିଲେ କି ରତନ ହୋଇ
ମୃଗ ଏରୂପେ ଅଛୁ କାହିଁ ।

ଶ୍ରୀରାମ ଉବାଚ

ରାମ ବୋଇଲେ ତାଙ୍କୁପୁତ୍ରି
ମାରୀଚ ଏ ଯେବେ ଲକ୍ଷ୍ମଣ ।
ତେବେ ମୁଁ ଏହାକୁ ଅବଶ୍ୟ
ଆଜ କରିବି ପ୍ରାଣେ ନାଶ
ମୃଗ ହୋଇବ ଏହୁ ଯେବେ
ସୀତା ସନ୍ତୋଷ ପାଇଁ ତେବେ ।
ବାନ୍ଧି ଆଣିବି ଏ ମୃଗକୁ
ଏ ଘେନି ଯାଉଛି ବନକୁ ।
ଏରୂପେ ଭାଇଙ୍କି କହିଲେ
ମୃଗକୁ ଗୋଡ଼ାଇଣ ଗଲେ ।
ଲୋକ ମୋହିନୀ ଯେଉଁ ମାୟା
ଅଟଇ ସେହୁ ଯାହା ଜାୟା ।

ଯେହୁ ନିର୍ବିକାର ଅନନ୍ତ
ଚଉଦ ଭୁବନର ପତି ।
ଯେ ପୁଣ ଚୈତନ୍ୟ ସ୍ୱରୂପ
ସକଳ ସମ୍ପୂର୍ଣ୍ଣ ନିଷ୍ପାପ ।
ସେ ରାମ ଏମନ୍ତ ହୋଇଲେ
ମୃଗ ପଛରେ ଗୋଡ଼ାଇଲେ ।
ଭଗବାନ ଯେ ଭକ୍ତ ଠାରେ
ଦୟା କରନ୍ତି ନିରନ୍ତରେ ।
ଏ ବାକ୍ୟ ସତ୍ୟ ହୋଇବାକୁ
ସୀତାର ପ୍ରିୟ କରିବାକୁ ।
ମାୟା ବୋଲି ସେ ଜାଣିଥିଲେ
ମୃଗ ପଛରେ ଗୋଡ଼ାଇଲେ ।
ନୋହିଲେ କି ଯେ ପୂର୍ଣ୍ଣ କାମ
ପରମ ଆତ୍ମା ଯେଉଁ ରାମ ।
ତାଙ୍କର ମୃଗରେ ସ୍ପୃହାରେ ।
କି କାର୍ଯ୍ୟ ଅବା ସଂସାରରେ ।
ଶିବ ବୋଲନ୍ତି ଗୋ ପାର୍ବତୀ
ଶୁଣ ଏବେ ସେ ମୃଗ ରୀତି ।
ଗୋଡ଼ାନ୍ତେ ତାକୁ ରଘୁସାଇଁ
କ୍ଷଣକେ ପାଖରେ ଦିଶଇ ।
କେତେବେଳେ ସେ ଧାଇଁ ଯାଇ
କେତେବେଳେ ସେ ନ ଦିଶଇ ।
ଏମନ୍ତ ପ୍ରକାରେ ରାମଙ୍କୁ
ନେଲା ସେ ବହୁତ ଦୂରକୁ ।
ଏଥି ଉତ୍ତାରେ ରାଘବର
ତାକୁ ରାକ୍ଷସ ବୋଲି କରି ।
ନିଶ୍ଚୟ ଯହୁଁ ସେ ଜାଣିଲେ
ମାର୍ଗଣ ଗୋଟିଏ ବିନ୍ଧିଲେ ।
ରାକ୍ଷସ ଧରି ପୂର୍ବ ମୂର୍ତ୍ତି
ରକତ ବାନ୍ଧୁଅଛି ବାନ୍ତି ।

ଡାକିଲେ ବୋଇଲା ପୁଣ ପୁଣ
ରଖ ହେ ରଖ ହେ ଲକ୍ଷ୍ମଣ ।
ଏମନ୍ତେ ଶ୍ରୀରାମ ସ୍ୱରରେ
ଡାକିଲା ପଡ଼ି ଧରଣୀରେ ।
ଅଜ୍ଞାନ ଲୋକ ହିଁ ମରଣ
ସମୟେ ରାମ ସୁମରଣ ।
ଯେବେ ପ୍ରାଣ ତ୍ୟାଗ କରଇ
ତେବେ ସେ ସାଯୁଜ୍ୟ ଲଭଇ ।
ଏ ରାମ ହାତେ ବଧ ହେଲା
ତାଙ୍କ ମୁଖକୁ ଚାହୁଁ ଥିଲା ।
କହ କି ହୁଏ ତାର ମୁକ୍ତି
ଯେ ଅଛି ଏମନ୍ତ ସୁକୃତି ।
ସ୍ୱର୍ଗେ ଦେଖନ୍ତି ଦେବତାଏ
ମାରୀଚ ଠାରୁ ତେଜଟାଏ ।
ବାହାର ହୋଇ ରାମଠାରେ
ପ୍ରବେଶ ହେଲା ଦେଖି ସୁରେ ।
ବହୁତ ବିସ୍ମୟ ହୋଇଲେ
ଏରୂପେ କୁହାକୁହି ହେଲେ ।
ରାକ୍ଷସ ହିଂସଇ ମୁନିଙ୍କି
ବିଶେଷେ ଏ ମହାପାତକୀ ।
ଦେଖ କି କର୍ମ କରିଥିଲା
ଏବେ ସେ କି ଗତି ପାଇଲା ।
ଏଣୁ ଏହାର କୃତ୍ୟ ନୋହି
ରାମ ମହିମା ଏ ଅଟଇ ।
ରାମ ବାଣ ବାଜିଥିଲା
ତାଙ୍କୁ ତ ପୂର୍ବେ ଚିନ୍ତୁ ଥିଲା ।
ଘର ଦ୍ରବ୍ୟାଦି ସବୁଠାରେ
ସ୍ନେହ ଛାଡ଼ିଲା ରାମ ଡରେ ।
ରାମଙ୍କୁ ହୃଦରେ ଚିନ୍ତିଲା
ସମସ୍ତ ଦୁରିତ ନାଶିଲା ।
ପ୍ରାନ୍ତେ ରାମଙ୍କୁ ଚାହୁଁ ଥିଲା
ମାଇଲେ ସେ ତାଙ୍କୁ ପାଇଲା ।
ବିପ୍ର କି ରାକ୍ଷସ ବା ହେଉ
ପାପୀ ବା ଧାର୍ମିକ ବା ଯେହୁ ।
ରାମଙ୍କୁ କରନ୍ତେ ସ୍ମରଣ
ଦେହରୁ ଛାଡ଼େ ଯେବେ ପ୍ରାଣ ।
ସଂସାର କଷ୍ଟୁ ପାର ହୋଇ
ପରମ ପଦ ସେ ଲଭଇ ।
ଏରୂପେ ହୋଇ କଥା ବାର୍ତ୍ତା
ଗଲେ ମନ୍ଦିରକୁ ଦେବତା ।
ତହିଁ ଉତ୍ତାରେ ରଘୁବୀର
ମନରେ କରନ୍ତି ବିଚାର ।
ରାକ୍ଷସ ମରିବା ବେଳରେ
କାହିଁକି ମୋ ସ୍ୱର ପ୍ରକାରେ ।
ଡାକିଲା ଏ ପ୍ରକାର ପୁଣ
ରଖ ହେ ରଖ ହେ ଲକ୍ଷ୍ମଣ ।
ଯେବେ ମୋ ସ୍ୱରସ୍ୱେ ମଣିବେ
ତେବେ ଜାନକୀ କି ହୋଇବେ ।
ଏମନ୍ତ ମନେ ଚିନ୍ତା କଲେ
ଆଶ୍ରମକୁ ସେ ଲେଉଟିଲେ ।
ଜାନକୀ ଶୁଣି ସେ ଶବଦ
ମନରେ ଲଭି ଅତି ଖେଦ ।
ଭୟେ ଦୁଃଖେ ବ୍ୟାକୁଳ ହେଲେ
ଲକ୍ଷ୍ମଣଙ୍କୁ ସେ ଆଜ୍ଞା ଦେଲେ ।
ବହନ ଯାଅ ରାମଠାକୁ
ଅସୁରେ ପୀଡ଼ା କଲେ ତାଙ୍କୁ ।
ରାମ ଯେ ତୁମ୍ଭଙ୍କୁ ଡାକିଲେ
ଲକ୍ଷ୍ମଣ ରଖ ହେ ବୋଇଲେ ।
ତୁମ୍ଭଙ୍କୁ ତାଙ୍କ ବାକ୍ୟ ପୁଣ
ଶୁଭୁ କି ନାହିଁ ହେ ଲକ୍ଷ୍ମଣ ।

ସେ ବୋଇଲେ ଗୋ ବଇଦେହୀ
ରାମ ବଚନ ଏ ନୁହଇ ।
କେହି ରାକ୍ଷସ ଜଣେ ମଲା
ଏରୂପେ କପଟେ ଡାକିଲା ।
ଶ୍ରୀରାମ ଯେବେ କ୍ରୋଧ ହେବେ
ତ୍ରୈଲୋକ୍ୟ କ୍ଷଣକରେ ତେବେ ।
ଭସ୍ମ କରିବେ ସେ ନିଶ୍ଚୟେ
ଏ ରୂପେ ହୀନ ଲୋକ ପ୍ରାୟେ ।
କହନ୍ତି ନାହିଁ ସେ ବଚନ
ଏ କଥା ମନରେ ନ ଘେନ ।
ଏମନ୍ତ ଶୁଣି ବଇଦେହୀ
ଲୋତକ ଯାଉଅଛି ବହି ।
ଅତିଶୟରେ କ୍ରୋଧ ହେଲେ
ଲକ୍ଷ୍ମଣଙ୍କୁ ଗୁହି କହିଲେ ।
ପାପିଷ୍ଠ ଦୁର୍ବୋଧ ରେ ଦୁଷ୍ଟ ।
ଇଚ୍ଛା କରୁଛୁ ଭାଇ କଷ୍ଟ ।
ଶ୍ରୀରାମ ବିନାଶ ସନ୍ତତ
ଲୋଡ଼ୁଥିଲା ଯେଉଁ ଭରତ ।
ସେ ତୋତେ ପଠାଇ ଦେଲେ
ଶ୍ରୀରାମଚନ୍ଦ୍ର ନାଶ ହେଲେ ।
ତୁ ଅଯୋଧ୍ୟାକୁ ନେବୁ ମୋତେ
ଏଥିକି ଅଛୁ ସଙ୍ଗତେ ।
କେବେହେଁ ମୋତେ ନ ପାଇବୁ
ଏହିକ୍ଷଣି ତୁ ଗୁହିଁ ଥିବୁ ।
ତୋହର ଅଗ୍ରରେ ମୋ ପ୍ରାଣ ।
ଛାଡ଼ିବ ଦେଖିବୁ ଲକ୍ଷ୍ମଣ ।
ରାମ ଜାଣନ୍ତି ନାହିଁ ତୋତେ
ଅଛୁ ତୁ ନେବାକୁ ମୋତେ ।
ସେ ଏହା ଯେବେ ଜାଣିଥାନ୍ତେ
ତୋତେ କପାଁ ସଙ୍ଗେ ଆଣନ୍ତେ ।
ମନ ବଚନ କର୍ମବ୍ୟରେ
ନିଷ୍ଟେ ମୁଁ ଶ୍ରୀରାମ ବାହାରେ ।।
ତୋତେ ବା ଭରତଙ୍କୁ ପୁଣ
ସ୍ପର୍ଶ ନ କରିବି ଜାଣ ।
ଏମନ୍ତ ବୋଲି କରଭିରେ
ମାରି କାନ୍ଦିଲେ ବିକଳରେ ।
ଲକ୍ଷ୍ମଣ ହସ୍ତ ଦେଇ କର୍ଣ୍ଣେ
ବୋଇଲେ ଧିକ ଗୋ କୋପନେ ।
ବିନା ଦୋଷେ ମୋତେ ଦୁଷିଲ
ପାଇବ ଏହା ପ୍ରତିଫଳ ।
ବୁଦ୍ଧିଭ୍ରଂଶ ହୋଇଛି ତବ
ନିଷ୍ଟେ କି ଅନିଷ୍ଟ ଘଟିବ ।
ଅରଣ୍ୟ ଦେବତାମାନଙ୍କୁ
ସମର୍ପି ଦେଇ ସେ ସୀତାଙ୍କୁ ।
ଦୁଃଖେ ମନ୍ଦ ମନ୍ଦ ହୋଇଣ
ରାମ ଠାକୁ କଲେ ପ୍ରୟାଣ ।
ଏହି ସମୟେ ଦଶ ମୁଣ୍ଡ
ଘେନି ସେ କମଣ୍ଡଳୁ ଦଣ୍ଡ ।
ମିଳିଲା ଭିକାରୀ ରୂପରେ
ଶ୍ରୀରାମ ପର୍ଣ୍ଣ କୁଟୀ ଦ୍ୱାରେ ।
ଜାନକୀ ତାହାକୁ ଦେଖିଲେ
ବନ୍ଦନ ନମସ୍କାର କଲେ ।
ପୂଜିଲେ ଭକ୍ତି ଯୁକ୍ତା ହୋଇ
ବହୁତ ଫଳ ମୂଳ ଦେଇ ।
କୁଶଳ ପରଶନ କଲେ
ଏମନ୍ତ ବଚନ କହିଲେ ।
ହେ ମୁନି ଫଳ ମୂଳ ଖାଅ
ଦଣ୍ଡେ ବିଶୋଇ ସୁଖୀ ହୁଅ ।
ମୋ ଭର୍ତ୍ତା ଏହିକ୍ଷଣି ପୁଣ
ଏଠାରେ ପ୍ରବେଶ ହୋଇଣ ।

ବିଶେଷ କର ସେ ଭକ୍ତିରେ
ପୂଜା କରିବେ ତୁମ୍ଭଠାରେ ।
ଶତ୍ରୁକୁ ଯୋଗାଇବ ଯେବେ
ଦଣ୍ଡେ ଥିବାକୁ ହେଉ ତେବେ ।

ଭିକ୍ଷୁ ଉବାଚ

ଭିକାରୀ ବୋଲେ ପଦ୍ମନେତ୍ରୀ
କେ ତୁମ୍ଭେ କେ ତୁମ୍ଭର ପତି ।
ସବୁଦିନେ ତ ଏ ଅରଣ୍ୟ
ରାକ୍ଷସମାନଙ୍କର ସ୍ଥାନ ।
ଏଥି କାହିଁକି ରହିଅଛ
ଏଠାରେ କି କାର୍ଯ୍ୟ କରୁଛ ।
ଏହା କହିବା ହେଉ ସବୁ
ଅମ୍ଭେ ଏ ଉତ୍ତରୁ କହୁବୁ ।
ଯେଉଁ ନିମିତ୍ତେ ତୁମ୍ଭମାନ୍କୁ
ଅସିଅଛୁ ଏ ଆଶ୍ରମକୁ ।

ସୀତୋବାଚ

ଜାନକୀ ବୋଇଲେ ହେ ଯତି ।
ଅଯୋଧ୍ୟା ଦେଶ ନରପତି ।
ଦଶରଥ ବୋଲିଣ ନାମ
ତାଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀରାମ ।
ତାଙ୍କ କାନ୍ତା ମୁଁ ନାମ ସୀତା
ଜନକ ରାଜାଙ୍କ ଦୁହିତା ।
ଲକ୍ଷ୍ମଣ ବୋଲି ରାମ ଭାଇ
ତାଙ୍କ ସଙ୍ଗରେ ଛନ୍ତି ଯାଇ ।
ଚଉଦ ବରଷ ଏଥିରେ
ରହିବୁ ନୃପତି ଆଜ୍ଞାରେ ।
କହିବା ହେଉ କେ ଆପଣ
ଏଥକୁ କହିଲେ ରାବଣ ।

ଭିକ୍ଷୁ ଉବାଚ

ବିଶ୍ରବା ଋଷିଙ୍କର ସୁତ
ରାକ୍ଷସ ଶ୍ରେଷ୍ଠ ଶୂରବନ୍ତ ।
ନାମ ଅଟଇ ମୋ ରାବଣ
ଶୁଣି ମୁଁ ତୋହର ରୂପ ଗୁଣ ।
କାମରେ ସନ୍ତପତ ହୋଇ
ତୋତେ ପୁରକୁ ନେବା ପାଇଁ ।
ପ୍ରବେଶ ହେଲି ଏ ବନରେ
ତୁ କୃପା କର ମୋହଠାରେ ।
ମୁନି ବେଶକୁ ଧରିଛନ୍ତି
ଏମନ୍ତ ଯେଉଁ ରଘୁପତି ।
ବିଶେଷେ ମନୁଷ୍ୟ ଅଟନ୍ତି
କି ପ୍ରୟୋଜନ ତହିଁ ମତି ।
ଏ ଯୌବନ କରି ମୋତେ ଭଜ
ଦୁର୍ଲ୍ଲଭ ଭୋଗମାନ ଭୁଞ୍ଜ ।
ବନବାସର ଦୁଃଖମାନ
ଛାଡ଼ିବା ହେଉ ଗୋ ବହନ ।
ସେ ଯହୁଁ ଏମନ୍ତ ଶୁଣିଲେ
କିଛି ଭୟ ପାଇ କହିଲେ ।
ମୋତେ ଯେ ତୁମ୍ଭେ ଏ ବଚନ
ବୋଇଲ ତେବେ ଦଶାନନ ।
ଶ୍ରୀରାମ ଶ୍ରୀହସ୍ତେ ଅବଶ୍ୟ
ବିନାଶ ହେବୁରେ ରାକ୍ଷସ ।
ଏହିକ୍ଷଣି ସେ ବେନି ଭାଇ
ଅସିବେ ଦଣ୍ଡେ ଥାଅ ରହି ।
ଧରଷିବାକୁ ମୋତେ କେହି
ତିନି ଲୋକରେ କ୍ଷମ ନାହିଁ ।

ସିଂହ ପକ୍ଷୀଙ୍କ କେଉଁଠାଇଁ
ଶଙ୍କେ ଘୋର କ ନାଅଇ ।
ଖଦାର ବ୍ରମ ଶରେ ହେବୁ
ଧରଣୀ ତଳରେ ପଡ଼ିବୁ ।
ଶୁଣି ରାବଣ କ୍ରୋଧ ହେଲା
ପର୍ବତ ମତ ଦେହ ହେଲା ।
ଦଶ ମସ୍ତକ ବିଂଶ କର
ଶ୍ୟାମଳସୁନ୍ଦର ଆକାର ।
ଏ ରୂପେ ନିଜ ମୂର୍ତ୍ତି କଲା
ସୀତାଙ୍କୁ ଭୟ ଦେଖାଇଲା ।
ଦେଖି ପବନ ମନ୍ଦ ହେଲା
ନଦୀପ୍ରବାହ ନିବର୍ତ୍ତିଲା ।
ରବିକିରଣ ଗୁପ୍ତ ହେଲା
ଅନଳ ଶୀତଳ ହୋଇଲା ।
ମୃଗ ଚଢ଼େଇ ତୁନି ହେଲେ
ପାଦପ ନିଶ୍ଚଳ ହୋଇଲେ ।
ଅରଣ୍ୟ ଦେବୀ ସର୍ବଭୂତ
ଦେଖିଣ ହୋଇଲେ ତ୍ରସ୍ତ ।
ନିଜ ନଖରେ ଲଙ୍କସାଇଁ
ସୀତା ସହିତ କରି ମହୀ ।
ଛାଡ଼ି ନେଇ ରଥେ ରଖିଲା
ଦକ୍ଷିଣ ମୁଖ ହୋଇ ଗଲା ।
ଜାନକୀ ତ୍ରସ୍ତ ହୋଇଣ
ହାହା ଶ୍ରୀରାମ ହା ଲକ୍ଷ୍ମଣ ।
ବୋଲି ସେ କରୁଛନ୍ତି ଶୋକ
ବହିଣ ଯାଉଛି ଲୋତକ ।
ଉଦ୍ବେଗ ହେଉଅଛି ମନ
ହୋଇଣ ସେ ଅଧୋବଦନ ।
ଜାନକୀ ଶୋକ ଏ ପ୍ରକାରେ
ଶୁଣି ଜଟାୟୁ କ୍ରୋଧଭରେ ।
ଉତ୍ତାଳ ପର୍ବତୁ ଉଠିଲେ
ରେ କାର କରି ଗୋଡ଼ାଇଲେ ।
ମୋହ ଅଗରେ କାହା ଘର
ଲୋକନାଥ ଯେ ରଘୁବୀର ।
ତାହା ଭାର୍ଯ୍ୟାକୁ ବଳେ ଧରି
ନେଉଛୁ ଶୂନ୍ୟ ପୁରୁ ହରି ।
ଯାଗରେ ମନ୍ତ୍ର ପୂତ ହୋଇ
ଯେଉଁ ପ୍ରୋଡାଶ ହୋଇଥାଇ ।
ତାହା କି ନାଅଇ କୁକ୍କୁର
ଏମନ୍ତ ବୋଲି ରାବଣର ।
ଶତାଙ୍ଗ ଅଶ୍ବରେ ଭାଙ୍ଗିଲେ
ଚୂନା କରି ସେ ପକାଇଲେ ।
ପୁଣି ସେ ଦୁଇ ପାଦେ କରି
ଅଶ୍ୱଙ୍କୁ ପକାଇଲେ ମାରି ।
ରାବଣ ହସ୍ତୁ ଘେନି ଧନୁ
ଭାଙ୍ଗିଲେ ଭାରି ଦେଇ ଜାନୁ ।
ସୀତାଙ୍କୁ ଛାଡ଼ି ଦଶାନନ
କ୍ରୋଧରେ ଖଡ୍ଗ ଧରିଣ ।
ଦୁଇ ଡେଣା ସେ ଜଟାୟୁର
କାଟି ପକାନ୍ତେ ଦଶଶିର ।
ପ୍ରାଣ ମାତ୍ର ଅଛି ଶରୀରେ
ଏ ରୂପେ ପଡ଼ିଲେ ଭୂମିରେ ।
ଶନ୍ତ୍ରା କରନ୍ତେ ଦଶମାଥ
ପ୍ରବେଶ ହେଲା ଆନ ରଥ
ତହିଁ ସୀତାଙ୍କୁ ବସାଇଲା
ପୁଣି ଆକାଶ ମାର୍ଗେ ଗଲା ।
ହା ଜଗନ୍ନାଥ ରଘୁବୀର
ହା ପ୍ରାଣବଲ୍ଲଭ ମୋହର ।
ଦୁଃଖେ ମୁଁ ପଡ଼ିଅଛି ଯେତେ
କାହିଁକି ଦେଖୁ ନାହିଁ ମୋତେ ।

ରାକ୍ଷସ ରାଜାଙ୍କୁ ତୁମ୍ଭର
ହତ କେଉଁ ରକ୍ଷା କର ।
ଅପରାଧ ତୋ ଠାରେ ପୁଣ
ଯାହା ମୁଁ କଲି ହେ ଲକ୍ଷ୍ମଣ ।
ସେ ଫଳ ଭୋଗ ହେଲା ମୋର
ଏବେ ମୋ ଦୋଷ କ୍ଷମାକର ।
ମୁଁ ଯେ ବଚନ ଶର ଘାତେ
ବହୁତ ପୀଡ଼ା କଲି ତୋତେ ।
ତଥାପି ନ ଯେନ୍ତ ତା ବାର
ଏ ଦୁଃଖବେଳେ ରକ୍ଷାକର ।
ସୀତାର ଏମନ୍ତ ପ୍ରକାର
ରୋଦନ ଦେଖି ଦଶଶିର ।
ଆଶଙ୍କା କଲା ସେ ନପୁଣି
ରାମ ଆସିବେ ଏହା ଶୁଣି ।
ଏ ଭେନ କର ରୋଷ ସଙ୍ଗରେ
ଘେନି ସେ ପବନଙ୍କୁ ଶରେ ।
ଆକାଶେ ଯାଆନ୍ତେ ଜାନକୀ
ଗୃହିଣ ଦେଲେ ଧରଣୀକି ।
ଦେଖିଲେ ଏକ ନଗ ଶୃଙ୍ଗ
ଶିଖ ଉପରେ ଶାଖାମୃଗ ।
ବସି ଅଛନ୍ତି ପାଞ୍ଚଜଣ
ଦେଖି ଜାନକୀ ଆଭରଣ ।
ଦୋପଟ୍ଟା ବାନ୍ଧି ଅଧିକରେ
ବାନ୍ଧ ସେମାନଙ୍କ ଆଗରେ ।
ଶ୍ରୀରାମ ଜାଣିବାର ପାଇଁ
ପକାଇ ଗଲେ ବଇଦେହୀ ।
ଏଥି ଅନ୍ତରେ ଦଶଶିର
ବେଗେ ସମୁଦ୍ର ହୋଇ ପାର ।
ନିଜ ନଗର ଅନ୍ତଃପୁରେ
ଅଶୋକ ବିପିନ ମଧ୍ୟରେ ।
ସହସ୍ରେ ରାକ୍ଷସୀଙ୍କ ମେଳେ
ସୀତାଙ୍କୁ ଜଗାଇ ରଖିଲେ ।
ରାବଣ ଅତ୍ୟନ୍ତ ଯତ୍ନରେ
ରଖି ମାତୃ ବୁଦ୍ଧି ବସ୍ତୁରେ ।
ଜାନକୀ କୃଶ ହୋଇଛନ୍ତି
ଅଙ୍ଗ ମାର୍ଜନା ନ କରନ୍ତି ।
ଶୁଖିଣ ଯାଇଛି ବଦନ
ଶ୍ରୀରାମଠାରେ ଦେଇ ମନ ।
ହା ରାମ ହା ରାମ ବୋଲିଣ
ବିଳାପ କର ଅନୁକ୍ଷଣ ।
ରାକ୍ଷସୀମାନଙ୍କ ମଧ୍ୟରେ
ରହିଲେ ଅତ୍ୟନ୍ତ ଦୁଃଖରେ ।
ବୋଲେ ଅଧମ ହଳଧର
ହେ ରାମ କରୁଣାସାଗର ।
ମୋ ଅପରାଧ କ୍ଷମା କର
ପ୍ରସନ୍ନ ହୁଅ ରାବଣାର ।
ଶଏ ଏକାଣୀ ପଦ ଗୀତ
କାଟୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଆରଣ୍ୟକକାଣ୍ଡେ ନାମ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ହସି କହିଲେ ତ୍ରିପୁରାରି
ଏଥୁ ଉତ୍ତରେ ଗୋ ଗଉରି ।
ମାରି ମାୟାବୀ ମାରୀଚକୁ
ବେଗେ କରନ୍ତେ ଆଶ୍ରମକୁ ।
ଦୂରୁ ଦେଖିଲେ ରାମଚନ୍ଦ୍ର
ମୁଖ ଶୁଖାଇ ମନ୍ଦ ମନ୍ଦ ।
ହୋଇ ଲକ୍ଷ୍ମଣ ଆସୁଛନ୍ତି
ବିଚାରି କଲେ ରଘୁପତି ।
ମାୟା ଜାନକୀ ଯା କହଇ
ତାହା ତ ଏ ଜାଣନ୍ତି ନାହିଁ ।
ଏ ବେଳେ ଏହାଙ୍କୁ ବଞ୍ଚାଇ
ଅଜ୍ଞାନ ଲୋକ ପ୍ରାୟେ ହୋଇ ।
ସୀତାଙ୍କୁ ଶୋଚନା କରିବି
ନ କରି ଯେବେ ଭିନ୍ନ ହେବି ।
ତେବେ ଏ ସମସ୍ତ ରାକ୍ଷସ
କେମନ୍ତେ ହୋଇବେ ବିନାଶ ।
ଏବେ ମୁଁ କାମୁକ ଯେମନ୍ତ
ସେରୂପେ ହୋଇ ସନ୍ତାପନ୍ତ ।
ଶୋଚନା କରି ସେ ସୀତାଙ୍କୁ
ଖୋଜିବା ଛଳରେ ତାହାଙ୍କୁ ।
ସମୁଦ୍ର ପାରି ହୋଇ ଯିବି
ଲଙ୍କାରେ ପ୍ରବେଶ ହୋଇବି ।
ସବଂଶ କରି ମୁଁ ଅବଶ୍ୟ
କରିବି ରାବଣକୁ ନାଶ ।
ଅଗ୍ନିରୁ ଉଦ୍ଧରି ସୀତାଙ୍କୁ
ଯିବି ମୁଁ ପୁଣି ଅଯୋଧ୍ୟାକୁ ।
ବ୍ରହ୍ମା ବର ମାଗିଛନ୍ତି ମୋତେ
ମନୁଷ୍ୟ ହୋଇବା ନିମିତ୍ତେ ।

ଏ ବେଳେ ଧରି ନରଚିହ୍ନ
ପୃଥ୍ୱୀରେ ଥିବା କିଛି ଦିନ ।
ମାୟା ମନୁଷ୍ୟ ଯେ ମୁଁ ମୋର
ଚରିତମାନ ଯେତେକ ନର ।
ଶ୍ରଦ୍ଧାରେ ଶ୍ରବଣ କରିବ
ଅନାୟାସେ ସେ ମୁକ୍ତ ହେବ ।
ମନେ ଏମନ୍ତ ନିଶ୍ଚେ କଲେ
ଲକ୍ଷ୍ମଣଙ୍କୁ ଗୃହି କହିଲେ ।
ବଇଦେହୀଙ୍କ ଛାଡ଼ି ଭ୍ରାତ
ଆସିବା ହେଲ କି ନିମିତ୍ତ ।
ବେଗେ କହ ମୋ ଜାନକୀଙ୍କ
ରାକ୍ଷସମାନେ ଖାଇଲେ କି ।
ରାମର ଏମନ୍ତ ବଚନ
ଶ୍ରବଣ କରିଣ ଲକ୍ଷ୍ମଣ ।
ବିନୟ ହୋଇ କରଯୋଡ଼ି
ତାଙ୍କ ଚରଣ ତଳେ ପଡ଼ି ।
ଜାନକୀ ଦୁଷ୍ଟ ବାକ୍ୟ ଯାହା
ବୋଲିଥିଲେ କହିଲେ ତାହା ।
ରାକ୍ଷସ ତୁମ୍ଭ ପ୍ରାୟେ କରି
ଡାକନ୍ତେ ମୋର ନାମ ଧରି ।
ତୁମ୍ଭ ପ୍ରାୟେ ସେ ତା ବୁଝିଲେ
ଶୋକ କରି ସେ ଆଜ୍ଞା ଦେଲେ ।
ଶ୍ରୀରାମ ପୀଡ଼ା ପାଇ ଭୋତେ
ଡାକୁ ଅଛନ୍ତି ଯା ତୁରିତେ ।
ମୁଁ ତାଙ୍କୁ ବୋଇଲି ଏଥିକି
ରାକ୍ଷସ ଡାକ ଏ ଜାନକୀ ।
ଏ ରାମ ବଚନ ନୁହଇ
ନିଷ୍ଠୁରେ ଥାଅ ବଇଦେହୀ ।

ଏରୂପେ ମୁଁ ଶାନ୍ତ କରନ୍ତେ
ବୋଇଲେ ସୀତା ଯାହା ମୋତେ
ତୁମ୍ଭ ସମ୍ମୁଖରେ ସେ କଦନ୍ତ
କହିବା କ୍ରୁହିଲ ଜଗତ ।
ଶୁଣନ୍ତେ ମୁଁ କର୍ଣ୍ଣ ବୁଜିଲି
ତୁମ୍ଭର ସମ୍ମୁଖୁ ଅଇଲି ।
ଶ୍ରୀରାମ ବୋଇଲେ ହେ ଭ୍ରାତ
ତଥାପି କଲ ଅନୁଚିତ ।
ଦେଖିଲ ସ୍ତ୍ରୀସ୍ୱ ଲୋକ ବୋଲି
ଏରୂପେ ଛାଡ଼ି ଯା ଅଇଲି ।
ରାକ୍ଷସମାନେ ତାଙ୍କୁ ନେଲେ
ନୋହିଲେ କି ଅବା ଖାଇଲେ ।
ଏଥି ସଂଶୟ କିଛି ନାହିଁ
ଏମନ୍ତ ବୋଲି ତୋରା ହୋଇ ।
ଆଶ୍ରମେ ପ୍ରବେଶ ହୋଇଲେ
ତହିଁ ସୀତାଙ୍କୁ ନ ଦେଖିଲେ
ଏ ଦେଖି ଅତି ଦୁଃଖୀ ହୋଇ
ବିଳାପ କଲେ ରଘୁସାଇଁ ।
ହା ପ୍ରାଣପ୍ରିୟା ଗୋ ଜାନକି
କେଉଁ ସ୍ଥଳରେ ତୁ ଅଛୁ କି ।
ଆଜ ତ ପୂର୍ବ ପ୍ରାୟ ହୋଇ
ଆଶ୍ରମେ ନାହୁଁ ବଇଦେହୀ ।
କି ଅବା କଉତୁକେ ମୋତେ
ବଞ୍ଚନା କରିବା ନିମିତ୍ତେ ।
ଲୁଚି ଅଛୁ କି କେଉଁ ଠାଇଁ
ଏମନ୍ତ ବୋଲି ରଘୁସାଇଁ ।
ସମସ୍ତ ଅରଣ୍ୟ ଖୋଜିଲେ
ସୀତାଙ୍କୁ କାହିଁ ନ ଦେଖିଲେ ।
ବୋଇଲେ ସେ କାର୍ପଣ୍ୟ ହୋଇ
ଅରଣ୍ୟ ଦେବୀଙ୍କି ସେ ଗୁହି ।

କେଉଁଠାରେ ମୋ ବଇଦେହୀ
ଅଛୁ ତା ଦେବା ହେଜ କହି ।
ହେ ମୃଗମାନେ ପକ୍ଷୀମାନେ
ଯେତେ ପାଦପ ଅଛ ବନେ ।
ମୋ ପ୍ରାଣପ୍ରିୟାଙ୍କୁ ସମସ୍ତେ
କହି ଦେବାକୁ ହେଜ ମୋତେ ।
ଶିବ ବୋଲନ୍ତି ଗୋ ଗଉରି
ରାମ ଏରୂପେ ଶୋକ କରି ।
ଆପଣ ସର୍ବଜ୍ଞ ହୋଇଲେ
ସୀତାଙ୍କୁ କାହିଁ ନ ଦେଖିଲେ ।
ଆନନ୍ଦ ସ୍ୱରୂପ ହୋଇଲେ
ସୀତାଙ୍କ ପାଇଁ ଶୋକ କଲେ ।
ଆପଣ ଅଚଳ ହୋଇଲେ
ଜାନକୀ ନିମିତ୍ତେ ଧାଇଁଲେ ।
ତାଙ୍କର ଅହଙ୍କାର ନାହିଁ
କୁହଇ ମମତାହିଁ କାହିଁ ।
ସେ ଅଟେ ନିଷ୍ଟେ ଅଖଣ୍ଡିତ
ଆନନ୍ଦ ସ୍ୱରୂପ ଏମନ୍ତ ।
ହେଲେହେଁ ଶୋଚନା ସେ କଲେ
ହା ପ୍ରିୟ ହା ସୀତା ବୋଇଲେ ।
ରାମ ତ ହେଲେ ଅନାଶକ୍ତ
ଏରୂପେ ଯାହା ଅନୁଗତ ।
ହୋଇ ଅଛନ୍ତି ଯେ ମନୁଷ୍ୟଙ୍କୁ
ଏଣୁ ମୂଢ଼ ଯେ ସେ ଲୋକଙ୍କୁ ।
ନିଷ୍ଟେ ଅସକ୍ତ ହୋଇଛନ୍ତି
ଏରୂପେ ପରତେ ହୁଅନ୍ତି ।
ଏମନ୍ତ ହୋଇ ରଘୁପତି
ଜ୍ଞାନୀଙ୍କ ପ୍ରତେ ସେ କୁହନ୍ତି ।
ଶ୍ରୀରାମ ଲକ୍ଷ୍ମଣ ସଙ୍ଗତେ
ପ୍ରତି ଅରଣ୍ୟ ଖୋଜି ଯାଉନ୍ତି ।

ରଥ ଗୋଟାଏ ଧନୁଟାଏ
ପଡ଼ିଛି ଭଗ୍ନ ହୋଇ ଠାଏ ।
ଶ୍ରୀରାମ ଦେଖନ୍ତେ ଏମନ୍ତ
ବୋଇଲେ ଦେଖ ଅହେ ଭ୍ରାତ ।
ସୀତାଙ୍କୁ ଯେ କେ ନେଉଥିଲା
ତାକୁ ଜିଣି କେ ପୁଣି ନେଲା
ତା ରଥ କାର୍ମୁକ ଏଠାରେ
ଭାଙ୍ଗି ପଡ଼ିଲା ଯୁଝିବାରେ ।
ଯାଆନ୍ତେ ସେ ଥୋକାଏ ଦୂର
ଦେଖିଲେ ବହୁଛି ରୁଧିର
ଏରୂପେ ପର୍ବତର ପ୍ରାୟେ
ପଡ଼ିଛି ଶରୀର ଗୋଟାଏ ।
ରାମ ବୋଇଲେ ଅହେ ଭାତ
ଏହି ସୀତାଙ୍କୁ କରି ହତ ।
ଦେଖ ତ ଏ ଏକାନ୍ତ ହୋଇ
ଅଛ ସୁଖରେ ଅଛି ଶୋଇ ।
ନଷ୍ଟେ ଏ ରାକ୍ଷସ ଲକ୍ଷ୍ମଣ
ମାରିବା ଧନୁଶର ଆଣ ।
ଯହୁଁ ଜଟାୟୁ ତା ଶୁଣିଲେ
ସଭୟ ହୋଇ ସେ କହିଲେ ।
ମୋହ କର୍ମରେ କରି ବୀର
ମରୁଛି ମୁଁ ତୁମ୍ଭେ ନ ମାର ।
ଜଟାୟୁ ବୋଲି ମୋତେ ଜାଣ
ସୀତାଙ୍କୁ ନେଲା ଯେ ରାବଣ ।
ତାହା ସଙ୍ଗତେ ଯୁଦ୍ଧ କଲି
ତା ରଥ ଧନୁ ମୁଁ ଭାଙ୍ଗିଲି ।
ଅଶ୍ୱମାନଙ୍କୁ ତା ନାଶନ
କରନ୍ତେ ମୋତେ ଦଶାନନ ।
କ୍ରୋଧରେ ମୋ ପକ୍ଷ କାଟିଲା
ଦକ୍ଷିଣାମୁଖ ହୋଇଗଲା ।

ଏ ପ୍ରାଣ ଛାଡ଼ୁଛି ମୋହର
ଗୁହିଁବା ହେତୁ ରଘୁବୀର ।
ଏମନ୍ତ ଶୁଣି ରଘୁସାଇଁ
ଜଟାୟୁ ନିକଟକୁ ଯାଇ ।
ଗୁହିଁଲେ ପ୍ରାଣକଣ୍ଠଗତ
ହୋଇଛି ଜାଣିଣ ଏମନ୍ତ ।
ଶୋକେ ନୟନୁ ଶ୍ରୀରାମର
ବହି ଯାଉଛି ଅଶ୍ରୁଧାର ।
ବେଗେ କରରେ ରଘୁସାଇଁ
ଶରୀର ତା ଅଞ୍ଜିସି ଦେଇ !
ବୋଇଲେ ହେ ଜଟାୟୁ ମୋର
ଭାର୍ଯ୍ୟାକୁ ନେଲା ଯେଉଁ କ୍ରୂର ।
ତା ଭଲ କରି ଅଜ ଥରେ
କହିବା ହେଉ ମୋ ଅଗରେ ।
ମୋହ କାର୍ଯ୍ୟରେ ଦେଲୁ ପ୍ରାଣ
ମୋ ପ୍ରିୟବନ୍ଧୁ ଯେ ଅପଣ ।
ଶୁଣି ସେ ଗଦଗଦ ହୋଇ
ସ୍ୱର ବାହାର ହେଉ ନାହିଁ ।
ରୁଧିର କରୁଛନ୍ତି ବାନ୍ତ
ବୋଇଲେ ଅହେ ରଘୁନାଥ ।
ସୀତାଙ୍କୁ ରାବଣ ହରିଲା
ଦକ୍ଷିଣା ମୁଖ ହୋଇଗଲା ।
ଆଜ ମୁଁ କହି ନ ପାରଇ
ତୋ ଆଗେ ମୋ ପ୍ରାଣ ଛାଡ଼ଇ ।
ବଡ଼ ଭାଗ୍ୟରେ ମୁଁ ତୁମ୍ଭଙ୍କୁ
ଦେଖିଲି ମରିବା ବେଳକୁ ।
ପରମ ଆତ୍ମା ତୁମ୍ଭେ ବୀର
ମାୟାରେ ହୋଇଅଛ ନର ।
ଏବେ ମୁଁ ପ୍ରାନ୍ତ ସମୟରେ
ମୁକ୍ତ ହେଲି ତୋ ଦର୍ଶନରେ ।

ମୋ ଦେହ ହେଜ ଛୁଇଁବାକୁ
ସିବ ମୁଁ ତୁମ୍ଭ ମନ୍ଦରକୁ ।
ଶ୍ରୀରାମ ତା ଦେହ ଛୁଇଁଲେ
ଜଟାୟୁ ଶରୀର ଛାଡ଼ିଲେ ।
ତାହାଙ୍କୁ ବନ୍ଧୁ ପ୍ରାପ୍ତ ହୋଇ
ଶୋଚନା କଲେ ରଘୁସାଇଁ ।
ଲୋତକ ଝାଜ଼ଅଛୁ ବହି
ଲକ୍ଷ୍ମଣଙ୍କୁ ସେ ଅଜ୍ଞା ଦେଇ ।
ବହୁତ କାଷ୍ଠ ଅଣାଇଲେ
ତାହାଙ୍କ ଶରୀର ଦହିଲେ ।
ଲକ୍ଷ୍ମଣ ତୁଲେ ରାବଣାର
ଦୁଃଖିତ ହୋଇ ସ୍ନାନ ସାର ।
ମୃଗ ଗୋଟିଏ କର ନାଶ
ଖଣ୍ଡି ଖଣ୍ଡି କର ମାଉଁସ ।
ଘାସ ମାନଙ୍କେ ତା ରଖିଲେ
ଏମନ୍ତ ବଚନ କହିଲେ ।
ଏହା ଚଢ଼େଇମାନେ ଖାନ୍ତୁ
ଜଟାୟୁ ତୃପତ ହୁଅନ୍ତୁ ।
ବୋଇଲେ ଅହେ ଜଟାୟୁଷ
ଯାଅ ତୁମ୍ଭେ ସେ ସ୍ଥାନେ ବସ ।
ସ୍ୱରୂପ ପାଅ ତୁମ୍ଭେ ମୋର
ଏହା ବୋଲନ୍ତେ ରଘୁବୀର ।
ଜଟାୟୁ ଏହି ସମୟରେ
ଦୃଶ୍ୟ ହୋଇଲେ ଆକାଶରେ ।
ସୂର୍ଯ୍ୟର ପ୍ରାପ୍ତ ବିମାନରେ
ଅଛନ୍ତି ଦିବ୍ୟ ସୁଶରୀରେ ।
ଶଙ୍ଖ ରଥାଙ୍ଗ ଦୋ କଞ୍ଜ
ଏଣେ ଶୋଭିତ ଚାର ଭୁଜ ।
କିରୀଟ କୁଣ୍ଡଳ କଙ୍କଣ
ଅଛି ସମସ୍ତ ଆଭରଣ ।

ଶରୀର ଯେସନ୍ତେ ନବଘନ
ପିନ୍ଧିଛନ୍ତି ସୁପୀତ ବସନ ।
ଆପଣା ତେଜେ ତ୍ରିଭୁବନ
କରଅଛନ୍ତି ସେ ସମ୍ପୂର୍ଣ୍ଣ ।
ଚାର ପାର୍ଷଦ ଚାରୁଣରେ
ସେବୁଣ ଅଛନ୍ତି ସୁଖରେ ।
ଅଗେ ସମସ୍ତ ଯୋଗୀମାନେ
ସ୍ତୁତି କରନ୍ତି ତୋଷମନେ ।
ଏ ରୂପେ ଆକାଶରେ ଥାଇ
ଜଟାୟୁ କୃତାଞ୍ଜଳି ହୋଇ
ହରଷେ ଗଦଗଦ ହେଲେ
ରାମଙ୍କୁ ଚାହିଁ ସ୍ତୁତି କଲେ ।

ଜଟାୟୁରୁବାଚ

ଯା ଗୁଣ ସଂଖ୍ୟା କହି ନୋହି
ଯାହାକୁ ଏତେ ତେତେ ହୋଇ ।
ନୁହଇ ବଚନରେ କହି
ସବୁର ଆଦ୍ୟ ଯେ ଅଟଇ ।
ଜଗତ ଉତପତ୍ତି ସ୍ଥିତି
ନାଶର ହେତୁ ଯେ ହୁଅନ୍ତି ।
ଯେ ପରମାତ୍ମା ସନାତନ
ଏମନ୍ତ ଯେ ରଘୁନନ୍ଦନ ।
ତାଙ୍କ ପାଦକୁ ନିରନ୍ତର
କରୁଅଛୁ ମୁଁ ନମସ୍କାର ।
ଯେ ଅପ୍ରମିତ ସ୍ୱରୂପ
ଯେ ସଦା କାଳରେ ନିଷ୍ପାପ ।
ଯେ ପୁଣ ଲକ୍ଷ୍ମୀ କଟାକ୍ଷରେ
ବ୍ରହ୍ମା ଇନ୍ଦ୍ରାଦି ଦୁଃଖ ହରେ ।
ଯେତେକ ମନୁଷ୍ୟ ଅଛନ୍ତି
ତହିଁରେ ଯେ ଶ୍ରେଷ୍ଠ ଅଟନ୍ତି ।

ଧରି ଅଛନ୍ତି ଧନୁଶର
ଏମନ୍ତ ଯେଉଁ ରଘୁବୀର ।
ତାଙ୍କ ପାଦକୁ ନିରନ୍ତର
କରୁଅଛି ମୁଁ ନମସ୍କାର ।
ତିନି ଭୁବନେ ରୂପ ଯାର
ଅଟଇ ପରମ ସୁନ୍ଦର ।
ଶଏ ଆଦିତ୍ୟ ପ୍ରାୟେ ହୋଇ
ତେଜ ଯାହାର ପ୍ରକାଶଇ ।
ଯେ ଯାହା ମନରେ ବାଞ୍ଛନ୍ତି
ସେ ଫଳ ଦିଅନ୍ତା ଅଟନ୍ତି ।
ଯେ ତାଙ୍କ ଶରଣ ପଶନ୍ତି
ତାହାଙ୍କୁ ସେ ରକ୍ଷା କରନ୍ତି ।
କଳପ ପାଦପ ମୂଳରେ
ସ୍ଥାନ ଯାହାର ନିରନ୍ତରେ ।
ଏମନ୍ତ ଯେ ରଘୁନନ୍ଦନ
ତାଙ୍କୁ ହେଲି ଶରଣାପନ୍ନ ।
ସଂସାର ବନ ନାଶ ପାଇଁ
ଯା ନାମ ଦାବାଗ୍ନି ଅଟଇ ।
ସଂସାର ସୁଖକୁ ଦିଅନ୍ତା
ଏ ରୂପେ ଯେତେକ ଦେବତା ।
ଚଉଦ ଭୁବନେ ଅଛନ୍ତି ।
ତାଙ୍କର ଦେବତା ଅଟନ୍ତି ।
ଯେ କୋଟି କୋଟି ଦଇତଙ୍କୁ
କରି ଅଛନ୍ତି ବିନାଶକୁ
ଯମୁନା ଜଳ ପ୍ରାୟ ହୋଇ
ଯା ଦେହ ବରନ ଅଟଇ ।
ଏମନ୍ତ ହରିଙ୍କି ସନ୍ତତ
ହେଉଅଛୁ ଶରଣାଗତ ।
ସଂସାର ବାସନା ନକର
ଯେ ଅଟନ୍ତି ଦୁଷ୍ଟ'ଭଡର ।

ଶଙ୍କର ଅଜ ମୁନି ଯେତେ
ଯାହାଙ୍କୁ ଦେଖନ୍ତି ସନ୍ତତେ ।
ସଂସାର ସାଗର ତରଣି
ନିମିତ୍ତେ ଭେଲା ଯା ଚରଣ ।
ହର ପାର୍ବତୀଙ୍କର ମନ
ସନ୍ତତେ ଅଟେ ଯାହା ସ୍ଥାନ ।
ପର୍ବତ ଶ୍ରେଷ୍ଠକୁ ଧରନ୍ତା
ଯା ପାଦେ ଅସୁର ଦେବତା ।
ସବୁ ଦିନରେ ସେବୁଛନ୍ତି
ଯେ ଦେବତାଙ୍କୁ ବର ଦିଅନ୍ତି ।
ସେ ରଘୁନାୟକ ଚରଣ
ହେଉ ସେ ମୋ ନିତ୍ୟ ଶରଣ
ପର ବନିତା ପରଧନେ
ଲୋଭ ନ ହୁଅନ୍ତି ଯେଉଁମାନେ ।
ପରରଗୁଣ ତା'ସମ୍ପତ୍ତି
ଏଥୁ ଯେ ସନ୍ତୋଷ ହୁଅନ୍ତି ।
ପର ହିତରେ ପ୍ରୀତ ହୋଇ
ଯାହାର ଆତ୍ମା ହୋଇ ଥାଇ ।
ଏମନ୍ତ ଯେ ଲୋକନିକରେ
ଯାହାକୁ ସେ ଭଲ ପ୍ରକାରେ ।
ସେବି ପାରନ୍ତି ଅନୁବ୍ରତ
ପଦ୍ମ ପଲାଶ ପ୍ରାୟେ ନେତ୍ର ।
ଏମନ୍ତ ଯେ ରଘୁନନ୍ଦନ
ତାହାଙ୍କୁ ହେଉଛୁ ପ୍ରପନ୍ନ ।
ମନ୍ଦହାସରେ ଶୋଭମାନ
ପ୍ରକାଶ ପଙ୍କଜ ବଦନ ।
ଯେ ତାଙ୍କୁ ଚିନ୍ତା କରୁଥାନ୍ତି
ତାଙ୍କର ସୁଲଭ ଅଟନ୍ତି ।
ମହେନ୍ଦ୍ର ନୀଳ ପ୍ରାୟ ଶ୍ୟାମ
ରୂପ ନିନ୍ଦୁଛି କୋଟି କାମ ।

ଶ୍ରବଣ ପର୍ଯ୍ୟନ୍ତେ ନୟନ
ପୁଣ୍ଡରୀକ ପ୍ରାୟେ ଶୋଭନ ।
ସର୍ବର ଗୁରୁ ପଶୁପତି
ତାଙ୍କର ଗୁରୁ ଯେ ଅଟନ୍ତି ।
ଏମନ୍ତ ଯେଉଁ ରଘୁପତି
ସେ ମୋର ହେଉ ସବୁ ଗତି ।
ତିନି ଗୁଣଙ୍କୁ ଅନୁଗତ
ଯେଣୁ ହୁଅ ହେ ସୀତାକାନ୍ତ ।
ଏ ଯେଣୁ ବ୍ରହ୍ମା ବିଷ୍ଣୁ ଶିବ
ସ୍ୱରୂପେ ଶୋଭିତ ରାଘବ ।
ବହୁତ ଥିଲେ ଜଳପାତ୍ର
ଆଦିତ୍ୟ ଦିଶଇ ଯେମନ୍ତ ।
ଇନ୍ଦ୍ରର ଯେହ୍ନେ ସ୍ତବ ପାତ୍ର
ଯେ ପ୍ରଭୁ ଅଟଇ ଏମନ୍ତ ।
ଯେ ସବୁ ଭୁବନରେ ପତି
ତାଙ୍କୁ ମୁଁ କରୁଅଛି ସ୍ତୁତି ।
କୋଟି କନ୍ଦର୍ପ ମନୋହର
ଯେ ଦେବ ଭାବନାର ଦୂର ।
ଯତିମନଙ୍କ ହୃଦସ୍ଥଳେ
ପ୍ରକାଶ ହୋନ୍ତି ସଦାକାଳେ ।
ଏମନ୍ତ ସେ ରଘୁନନ୍ଦନ
ତାହାଙ୍କୁ ହେଉନ୍ତୁ ପ୍ରସନ୍ନ ।
ଏମନ୍ତେ ସେ ଜଟାୟୁ ସ୍ତୁତି
କରନ୍ତେ ତାଙ୍କୁ ରଘୁପତି ।

ପରମ ସନ୍ତୋଷ ହୋଇଲେ
ପ୍ରସନ୍ନ ହୋଇ ଆଜ୍ଞା ଦେଲେ ।
ବହୁତ ଜନ୍ମଯୁକ୍ତ ହୁଅ
ପରମ ପଦକୁ ତୁ ପାଅ ।
ଏ ସ୍ତୁତି ଯେ ସଯତ ହୋଇ
ପଢ଼ଇ ଶୁଣଇ ଲେଖଇ ।
ଇହଲୋକରେ ସେହୁ ନର
ଲଭଇ ଭକ୍ତିକି ମୋହର ।
ମଲେ ମୋ ସ୍ୱରୂପ ଲଭଇ
ଏହା ବୋଲନ୍ତେ ରଘୁସାଇଁ ।
ଶୁଣି ଜଟାୟୁ ଅତି ଅନ୍ତ
ହରଷେ ହୋଇଣ ସଯୁତ ।
ଶ୍ରୀ ରଘୁନାଥ ରୂପ ପାଇ
ଧାତାରେ ପୂଜିତ ଅଟଇ ।
ଏମନ୍ତ ପ୍ରକାରେ ଯେ ସ୍ଥାନ
ତହିଁକି କଲେ ସେ ଗମନ ।
ବୋଲଇ କ୍ଷୁଦ୍ର ହଳଧର
ସୁଜନେ ଶୁଣ ମୋ ଉତ୍ତର ।
ବହନ ଏଥି ମନ ଦିଅ
ଜଟାୟୁ ପ୍ରାୟେ ମୁକ୍ତ ହୁଅ ।
ରାମ ନାମରେ ମୋକ୍ଷ ହୁଅ
ଭବାର୍ଣ୍ଣବରୁ ତରିଯାଅ ।
ଷହେ ସତୁରି ପଦ ଗୀତ
ହରୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଅରଣ୍ୟକାଣ୍ଡେ ନାମ ଅଷ୍ଟମୋଽଧ୍ୟାୟଃ ।

# ନବମ ଅଧ୍ୟାୟ

## ଶ୍ରୀ ମହାଦେବ ଉବାଚ

ଶିବ ବୋଲନ୍ତି ଗୋ ପାର୍ବତି
ତହିଁ ଉତ୍ତାରେ ରଘୁପତି ।
ବଡ଼ ଦୁଃଖିତ ହୋଇ ଶରେ
ଭାଇଙ୍କି ଘେନି ସଙ୍ଗତରେ ।
ସୀତାଙ୍କୁ ଖୋଜିବାକୁ ଗଲେ
ପ୍ରବେଶ ଅନ୍ୟ ବନେ ହେଲେ ।
ରାକ୍ଷସ ଗୋଟାଏ ତହିଁରେ
ଦେଖିଲେ ଅଦ୍ଭୁତ ଆକାରେ ।
ତୁଣ୍ଡ ଗୋଟାଏ ହୃଦେ ଅଛି
ତା ବଡ଼ ବିସ୍ତାର କରିଛି ।
ନେତ୍ର ନାସିକା ଶିର କର୍ଣ୍ଣ
ଏକୁହିଁ ନାହାନ୍ତି ଏମାନ ।
ଯୋଜନେ ଯୋଜନେ ଲେଖାଏଁ
ଅଟନ୍ତି ତାର ବାହୁ ଦୁହେଁ ।
ସେ ସବୁ ଜନ୍ତୁମାନେ ତହିଁ
ଧରଣ ଭକ୍ଷଣ କରଇ ।
କବନ୍ଧ ବୋଲି ତାର ନାମ
ବୁଲନ୍ତେ ଲକ୍ଷ୍ମଣ ଶ୍ରୀରାମ ।
ଦେଖିଲେ ଦୁହିଙ୍କି ବାହୁରେ
ନେଇଛି ଗୁଡ଼ଥାଇ ଶରେ ।
ଶ୍ରୀରାମ ହସି ଲକ୍ଷ୍ମଣଙ୍କୁ
ବୋଇଲେ ଦେଖ ରାକ୍ଷସକୁ ।
ନାହିଁ ଏହାର ପାଦ ମୁଣ୍ଡ
ହୃଦେ କେବଳ ଅଛି ତୁଣ୍ଡ ।
ବେନି ବାହୁରେ ଯା ଧରଇ
ତାହା ଖାଇ ଏ ସୁଖେ ଥାଇ ।
ଆମ ଦୁହିଙ୍କି ଏ ଧରି
ଘେନି ଯାଉଛି ଭକ୍ଷ କରି ।
ଏଥିରୁ ତ ବାହାର ହୋଇ
ଯିବାକୁ ପଥ ଦିଶୁ ନାହିଁ ।
ଅଜ ତ ପଳାଇ ନୋହିବ
ଏହିକ୍ଷଣି ତ ଏ ଖାଇବ ।
ଲକ୍ଷ୍ମଣ ବୋଇଲେ ରାଘବ
ବିଳୁରେ କି କାର୍ଯ୍ୟ ହୋଇବ ।
ଆପଣ ମୁଁ ଏବେ ଏହାର
କାଟିବା ଦୁଇ ବାହୁ ବୀର ।
ରାମ ତା କରି ସିତ୍କାର
ଦକ୍ଷିଣ ବାହୁ ମୂଳ ତାର ।
କାଟିଲେ ଖଡ଼୍ଗେ ବହନ
ଲକ୍ଷ୍ମଣ ଦେଖନ୍ତେ ଏସନ ।
ସତ୍ୱରେ ଖଡ଼୍ଗ ଧରିଲେ
ତା ବାମବାହୁ ସେ କାଟିଲେ ।
କବନ୍ଧ ବିସ୍ମୟ ହୋଇଲା
ତାଙ୍କୁ ଏମନ୍ତ ପଚାରିଲା ।
ବାହା କାଟିଲ ଯେଣୁ ମୋର
ତେଣୁ କି ତୁମ୍ଭେ ଦୁହେଁ ସୁର ।
ଯେବେହେଁ ଦେବତା ହୁଅନ୍ତେ
ସେହି ତ ଏହା ନ ପାରନ୍ତେ ।
ଏଥକୁ ଶ୍ରୀରାମ କହିଲେ
ଅଯୋଧ୍ୟାରେ ଯେ ରାଜା ଥିଲେ ।
ତାଙ୍କର ଦଶରଥ ନାମ
ମୁଁ ତାଙ୍କ ଜ୍ୟେଷ୍ଠ ପୁତ୍ର ରାମ ।
କନିଷ୍ଠ ଭ୍ରାତା ଏ ଅମ୍ଭର
ନାମ ଲକ୍ଷ୍ମଣ ଏହାଙ୍କର ।
ସୀତା ନାମରେ ମୋହର କାନ୍ତା
ଜନକ ରାଜାର ଦୁହିତା ।

ସେ ବଡ଼ ସୁନ୍ଦରୀ ଅଟଇ
ବନେ ଅମ୍ଭେ ତ ଦୁଇ ଭାଇ ।
ଗଲୁ ମୃଗୟା କରିବାକୁ
ରାକ୍ଷସ ଜଣେ ନେଲା ତାକୁ ।
ଅମ୍ଭେ ସୀତାଙ୍କୁ ଖୋଜୁଥିଲୁଁ
ଏ ବନେ ପ୍ରବେଶ ହୋଇଲୁଁ ।
ତୁମ୍ଭେ ଯେ ଧରିଲ ଅମ୍ଭଙ୍କୁ
ଏ ବେଳ ପ୍ରାଣ ଭକ୍ଷିବାକୁ ।
କାଟିଲୁ ତୁମ୍ଭ ବାହୁ ଦୁଇ
ଏଡ଼େ ବିକଟ ରୂପ ହୋଇ ।
କେ ତୁମ୍ଭେ ହେଲ କି ନିମିତ୍ତେ
ଏହା କହିବା ହେଉ ମୋତେ ।

### କବନ୍ଧ ଉବାଚ

ଶୁଣନ୍ତେ ସେ କବନ୍ଧ ପୁଣ
ବୋଇଲେ ଶ୍ରୀରାମ ଆପଣ ।
ଏଠାକୁ ଅଇଲଣି ଯେବେ
ନିଶ୍ଚେ ମୁଁ ଧନ୍ୟ ହେଲି ତେବେ ।
ପୂର୍ବେ ମୁଁ ଗନ୍ଧର୍ବ ଅଟଇ
ପର ସ୍ତ୍ରୀ ମାନଙ୍କୁ ହରଇ ।
ଏରୂପେ ପରମ ସୁନ୍ଦର
ହୋଇଥିଲା ମୋ କଳେବର ।
ତହିଁ ମୁଁ ଅତି ଗର୍ବୀ ହୋଇ
ସବୁ ଲୋକରେ ବୁଲୁଥାଇ ।
ବହୁତ ତପସ୍ୟା କରନ୍ତେ
ବ୍ରହ୍ମା ଅମର କଲେ ମୋତେ ।
ଏମନ୍ତେ ବନେ ବୁଲୁଥିଲି
ଅଷ୍ଟବକ୍ରଙ୍କୁ ମୁଁ ଦେଖିଲି ।
ମୁଁ ଗର୍ବୀ ହୋଇଣ ହସନ୍ତେ
ସେ ମୁନି କ୍ରୋଧ ହୋଇ ମୋତେ
ବୋଇଲେ କଲୁ ଯେବେ ହାସ୍ୟ
ଶାପ ଦେଲେ ହୁଅ ରାକ୍ଷସ ।
ତାହାଙ୍କୁ କରି ନମସ୍କାର
କହନ୍ତେ ବିନୟ ଉତ୍ତର ।
ସେ ମୋହଠାରେ ଦୟା କଲେ
ସେ ଶାପମୋକ୍ଷ ଆଜ୍ଞା ଦେଲେ ।
ତ୍ରେତା ଯୁଗରେ ନାରାୟଣ
ସେ ଦାଶରଥି ନାମେ ପୁଣ ।
ଏଠାରେ ପ୍ରବେଶ ହୋଇବେ
ତୋ ବାହୁ କାଟି ପକାଇବେ ।
ସେକାଳେ ଶାପୁଁ ମୁକ୍ତ ହେବୁ
ତୋ ପୂର୍ବ ସ୍ୱରୂପ ପାଇବୁ ।
ଏରୂପେ ମୁଁ ସେ ଶାପ ପାଇ
ଭୟାଳ ରକ୍ଷ ଦେହ ବହି ।
ବହୁତ ଦୁଷ୍ଟ ପଣ କଲି
ବନେ ମୁଁ ଇନ୍ଦ୍ରଠାକୁ ଗଲି ।
ଅନେକ ସଂଗ୍ରାମ ସେ କଲେ
ମୋ ଶିରେ କୁଳିଶ ମାରିଲେ ।
ସେ ଦେଲେ କରି ପାଦ ଶିର
ପେଟରେ ପଶିଲା ମୋହର
ବିରଞ୍ଚି କରିଛୁ ଅମର
ଏଣୁ ରହିଲା ପ୍ରାଣ ମୋର ।
ମୋଠାରେ ଦୟା କରି ସୁରେ
କହିଲେ ମହେନ୍ଦ୍ର ଗମ୍ଭୀରେ ।
ବଦନ କର ପାଦ ନାହିଁ
ଏ ରକ୍ଷା ପାଇବ କି ହୋଇ ।
ଏଣୁ କରି ହେ ରାମଚନ୍ଦ୍ର
ମୋତେ ଅନୁଜ୍ଞା ଦେଲେ ଇନ୍ଦ୍ର ।
ଯୋଜନେ ଲେଖାଏଁ ଯେ ଲମ୍ବ
ତୋହର ବେନି ବାହୁ ହେବ ।

ତୁଣ୍ଡ ଗୋଟାଏ ହୃଦୟରେ
ହୋଇବ ଯାଅ ତୁ ସତ୍ୱରେ ।
ସେ ଧନୁ ଅଛି ମୁଁ ଏଠାରେ
ଯେ ଆସି ପଡ଼ିଲ ମୋ କରେ ।
ତାହାଙ୍କୁ ଭକ୍ଷଣ କରଇ
ତୋତେ ସନ୍ତତେ ଶନ୍ତ ଥାଇ ।
ମୋତେ କାଷ୍ଠ ଗର୍ଭେ ବହନ
କର ମୋ ଶରୀର ଦହନ ।
ମୋ ପୂର୍ବ ଶରୀର ପାଇବ
ଜାନକୀ ବିଷୟ କହିବ ।
ଶୁଣି ଶ୍ରୀରାମ ଆଜ୍ଞା ଦେଲେ
ଲକ୍ଷ୍ମଣ ବିବର ଖୋଳିଲେ ।
ତହିଁରେ କାଳ ହୁତାଶନ
କରନ୍ତେ ତାହାଙ୍କ ଦହନ ।
ଅଦ୍ଭୁତ ଗୋଟାଏ ତାହାର
ଦେହରୁ ହୋଇଲା ବାହାର ।
ଦଶୁଚ୍ଛ କନ୍ଦର୍ପ ପ୍ରକାର
ଅଛି ସମସ୍ତ ଅଳଙ୍କାର ।
ରାମଙ୍କୁ କରି ପ୍ରଦକ୍ଷିଣ
ପ୍ରଣାମ କରି ପୁଣ ପୁଣ ।
ଧରିଛି ପୁଲକ ନିକର
ନେତ୍ରୁ ବହୁଛି ଅଶ୍ରୁଧାର ।
କର ଯୁଗଳ ଦେଇ ଶିରେ
ଗଦ୍‌ଗଦ ହୋଇ ଭଗତରେ ।
ବୋଇଲା ଅହେ ରଘୁସାଇଁ
ମୋ ମନ ବଡ଼ ତୋଷ ହୋଇ ।
ସ୍ତୁତି କରିବା ପାଇଁ ତୋତେ
ଉତ୍ସୁକ କରୁଅଛି ମୋତେ
ଅନନ୍ତ ଆଦ୍ୟ ରଘୁବୀର
ତୁମ୍ଭେ ତ ମନ ବଚନର ।
ନିଷ୍ଟୟେ ଅଟ ଅଗୋଚର
ସୂକ୍ଷ୍ମ ସ୍ୱରୂପ ଯେ ତୁମ୍ଭର ।
ସଦାକାଳରେ ତ ଅଛନ୍ତି
ସ୍ଥୂଳ ସୂକ୍ଷ୍ମ ତ ଦେହୁ ଭିନ୍ନ ।
ନୟନେ ନୋହେ ଯାକୁ ଗୃହି
ତେଣୁ ତୁମ୍ଭର ରୂପ ନାହିଁ ।
ଯେତେକ ସବୁ ଦେଖୁଥାଇ
ଜଡ଼ ଏ ଅତ୍ମା ନୋହେ ଦେଖି ।
ତୋ ଠାରୁ ଅଟେ ତ ନିଷ୍ଟନ
ଜାଣିମ ତୋତେ କେହ୍ନେ ମନ ।
ବୁଦ୍ଧି ଅବିଦ୍ୟା କାର୍ଯ୍ୟ ଯେବେ
ଦୁହେଁ ଏକଠା ହୋନ୍ତି ତେବେ ।
ଜୀବ ବୋଲନ୍ତି ତାକୁ ଲୋକେ
ବ୍ରହ୍ମ ଯେ ବୁଦ୍ଧ୍ୟାଦିଙ୍କ ସାକ୍ଷୀ ।
ତୋଠାରେ ଅଜ୍ଞାନରୁ କରି
ଜଗତ ତହିଁ ଅବଧାରି ।
ହିରଣ୍ୟଗର୍ଭ ଯେ ସେ ତୋର
ନିଷ୍ଟେ ତ ଏ ସୂକ୍ଷ୍ମ ଶରୀର
ବିରାଟ ପୁରୁଷ ତୁମ୍ଭର
ଅଟଇ ସ୍ଥୂଳ କଳେବର ।
ହୁଅଇ ଭାବନା ଗୋଚର
ଯେ ସ୍ଥୂଳ ଦେହ ସେ ତୁମ୍ଭର ।
ଧ୍ୟାନରେଟି ନିଷ୍ଟୟେ ସେହି
ପରମ ମଙ୍ଗଳ କରଇ ।
ସ୍ଥୂଳ ଶରୀର ଯେ ତୁମ୍ଭର
ବ୍ରହ୍ମାଣ୍ଡ କୋଷ ସେହୁ ଖର ।
ମହତତ୍ତ୍ୱାଦି ଯେଉଁ ସାତ
ଅବରଣରେ ସେ ଆବୃତ ।
ଏହା ମୁଁ କହିଲି ଯେତେକ
ବିରାଟ ଦେହେ ଯେ ଏତେକ ।

ଭୂତ ଭବିଷ୍ୟ ବର୍ତ୍ତିମାନ
କର ଯହିଁରେ ଦରଶନ ।
କଳ୍ପ ତ ଥାଇ ଏ ସଂସାର
ଏ ମୂର୍ତ୍ତି ଅଶେଷ ଧ୍ୟାନର ।
ମୋକ୍ଷ ସ୍ୱରୂପ ତୁ ଆପଣ
ଲୋକମାନେ ତୋ ଅଙ୍ଗ ଗଣ ।
ଚରଣ ମୂଳ ତୋ ପାତାଳ
ପାଦର ପାର୍ଷ୍ଣ ମହାତଳ ।
ତଳାତଳ ଯେ ରସାତଳ
ଅପାନ ଏ ଜାନୁ ଯୁଗଳ ।
ହେ ରାମ ଅତଳ ବିତଳ
ଅଟଇ ତୋ ଜଙ୍ଘ ଯୁଗଳ ।
ଧରଣୀ ତୋ ଜଘନ ସ୍ଥଳ
ଆକାଶ ବତା ନାଭି ମଣ୍ଡଳ ।
ହୃଦୟ ନକ୍ଷତ୍ର ନିକର
ମହର୍ଲୋକ କଣ୍ଠ ତୁମ୍ଭର ।
ଜନ ଲୋକ ମୁଖ ମଣ୍ଡଳ
ତପ ଲୋକ ଲଲାଟ ସ୍ଥଳ ।
ସତ୍ୟ ଲୋକଟି ତୁମ୍ଭ ଶିର
ଇନ୍ଦ୍ରାଦି ଦିଗପାଳ ନିକର ।
ସ୍ଥିତ ବାହୁ ଯୁଗଳ ଗବ
ବିରାଟ ରୂପ ଏ ରାଘବ ।
ଦିଗମାନେ ତେଣି ଶ୍ରବଣ
ଅଶ୍ୱିନୀକୁମାରେ ତୋ ଘ୍ରାଣ ।
ମୁଖ ଅଟଇ ତୋ ଅନଳ
ଆଦିତ୍ୟ ନୟନ ଯୁଗଳ ।
ମନ ତୋ ଚନ୍ଦ୍ରମା ମଣ୍ଡଳ
ଭ୍ରୂଲତା ଭଙ୍ଗି ତୋର କାଳ ।
ଧିଷଣ ବୁଦ୍ଧିଟି ତୁମ୍ଭର
ରୁଦ୍ର ତୁମ୍ଭର ଅହଙ୍କାର ।

ଛନ୍ଦ ବୃନ୍ଦଟି ତୋ ବଚନ
ଯମ ଦେବତା ତୋ ଦଶନ ।
ମାୟା ଅଟଇ ହାସ ତୋର
ସୃଷ୍ଟି ତୋ ଆଖି ଠାରବାର ।
ତୁମ୍ଭର ଆଗ ଭାଗ ଧର୍ମ
ତୋ ପୃଷ୍ଠ ଭାଗଟି ଅଧର୍ମ ।
ଫେଡ଼ିବା ବୁଜିବା ତୋ ନେତ୍ର
ହୁଅଇ ସେ ଦିବସ ରାତ୍ର ।
ସାତ ସମୁଦ୍ର ତୋ ଉଦର
ନଦୀମାନେ ନାଡ଼ି ତୁମ୍ଭର ।
ବୃକ୍ଷ ଔଷଧିମାନେ ରାମ
ଯେତେ ଅଛନ୍ତି ସବୁ ରୋମ ।
ବୃଷ୍ଟି ତୋ ରେତ ରଘୁପତି
ମହିମା ତୋର ଜ୍ଞାନ ଶକ୍ତି ।
ଏ ରୂପେ ତୋ ସ୍ଥୂଳ ଶରୀର
ଏହା ଯେ କରଇ ବିଚାର ।
ଅନାୟାସେ ମୁକ୍ତି ଲଭଇ
ଆଉ କିଛି ତୋ ଲୋଡ଼ା ନାହିଁ ।
ଏ ଘେନି କରି ଏହା ମୁହିଁ
ହେ ରାମ ଭାବନା କରଇ ।
ଧ୍ୟାନେ ଯେ ସ୍ମରଇ ଶ୍ରୀରାମ
ଟାଙ୍କୋର ଜାତ ହୁଏ ପ୍ରେମ ।
ଯେ ମୂଳ ଭାବନା କରଇ
ସେ ନିଶ୍ଚେ ମୁକ୍ତିକି ଲଭଇ ।
ଯେ ସ୍ଥୂଳରୂପ ମୁହିଁ ତୋର
ଚିନ୍ତା କରୁଛି ନିରନ୍ତର ।
ଧରିଛନ୍ତି ଯେ ବର୍ତ୍ତିମାନ
ଜଟା ବଳକଳ ଧନୁର୍ବାଣ ।
ଯେ ଶ୍ୟାମସୁନ୍ଦର ଶରୀର
ରୁଚିର ବେଶ ମନୋହର ।

ଲକ୍ଷ୍ମଣ ସଙ୍ଗତେ ଅଛନ୍ତି
ବନେ ଯେ ସୀତାଙ୍କୁ ଖୋଜନ୍ତି ।
ଏମନ୍ତ ଯେ ସେ ରଘୁବୀର
ମୋ ମନେ ଥାଉ ନିରନ୍ତର ।
ସର୍ବଜ୍ଞ ଯେଣୁ ତ୍ରିପୁରାର
ଗଉରୀ ତୁଳେ ତେଣୁ କର ।
ଏହି ରୂପକୁ ନିରନ୍ତର
ଧ୍ୟାନ କରନ୍ତି ସେ ତୁମ୍ଭର ।
ଯେ ମୃତ୍ୟୁ ହୁଅଇ କାଶୀରେ
ସେ ଲୋକମାନଙ୍କ କର୍ଣ୍ଣରେ ।
ରାମ ନାମଟି ପଶୁପତି
ତାରକ ବ୍ରହ୍ମ ବୋଲି ଦ୍ୟନ୍ତି ।
ଏଣୁ କରି ହେ ରଘୁସାଇଁ
ନିଶ୍ଚେ ପରମ ଆତ୍ମା ତୁହି ।
ମାୟାରେ ସମସ୍ତଙ୍କୁ ଯେଣୁ
ମୋହ କରାଇ ଥାଅ ତେଣୁ ।
ତତ୍ତ୍ୱ କରି ହେ ରଘୁପତି
ତୁମ୍ଭଙ୍କୁ କେହି ନ ଜାଣନ୍ତି ।
ଭୋ ରାମ ଭଦ୍ର ତୋତେ ମୋର
ଅନବରତେ ନମସ୍କାର ।
ପରମ ଆତ୍ମା ତୁମ୍ଭେ ବୀର
ସାଧାତା ସମସ୍ତ ଲୋକର ।
ଅଯୋଧ୍ୟା ପ୍ରଭୃତି ଅପଣ
ଲକ୍ଷ୍ମଣ ସେବେ ତୋ ଚରଣ ।
ଏମନ୍ତ ତୁ ଯେ ରଘୁବୀର
ତୁମ୍ଭଙ୍କୁ ମୋର ନମସ୍କାର ।
ହେ ଜଗନ୍ନାଥ ସୀତାବର
ରକ୍ଷାକର ହେ କ୍ଷୋକର ।
ଭୋ ନାଥ ତୁମ୍ଭ ମାୟା ମୋତେ
ନ ଘୋଟାଇବ କଦାଚିତେ ।

ଏମନ୍ତ ଶୁଣନ୍ତେ ରାଘବ
ହସି ବୋଇଲେ ହେ ଗନ୍ଧର୍ବ ।
ତୁ ମୋତେ ଭକ୍ତି ସ୍ତୁତି କଲୁ
ଶୁଣି ସନ୍ତୋଷ ଅମ୍ଭେ ହେଲୁ ।
ଅଗମ୍ୟ ଯୋଗୀମାନଙ୍କର
ଏମନ୍ତ ହୋଇଣ ମୋହର ।
ଅଛି ସେ ଯେଉଁ ଦିବ୍ୟସ୍ଥାନ
ତହିଁକି କରି ଯା ଗମନ ।
ଏ ଯେଉଁ ସ୍ତୁତି କଲୁ ପୁଣି
ଏହା ଭକ୍ତିରେ ଯେଉଁ ପ୍ରାଣୀ ।
ନ ଦେଇ ମନ ଅନ୍ୟ ଠାଇଁ
ପଢ଼ି ହରଷ ଲଭୁ ଥାଇ ।
ମୋକ୍ଷଦାୟକ ଏହୁ ସ୍ତୁତି
ଆଗମମାନେ କହୁଛନ୍ତି ।
ଅଜ୍ଞାନ୍ତ କାତ ହୋଇଥାଇ
ଏମନ୍ତ ସଂସାର ତେଜଇ
ଆତ୍ମାର ଅନୁଭବ ହୋଇ
ଯେ ତାହା ଯତ୍ନରେ ଜାଣଇ ।
ଏମନ୍ତ ଯେ ମୁଁ ମୋତେ ସେହି
ଅଳପ ଶ୍ରମରେ ଲଭଇ ।
ସୁଜନେ କରନ୍ତି ସ୍ତବରେ
ମନ ବଳାଅ ନିରନ୍ତରେ ।
ଅସାର ସଂସାର ନାଶିବ
ଶ୍ରୀରାମଚନ୍ଦ୍ରଙ୍କୁ ଲଭିବ ।
ଯେଣୁ କରି ସେ ରାମଚନ୍ଦ୍ର
ଅମିୟ କରୁଣା ସମୁଦ୍ର ।
ଏଣୁ ଅଧମ ହଳଧର
ସୀତା ଯୁକ୍ତ ହେ ରଘୁବୀର ।
ଭଗତ କର ଜନ୍ମାନ୍ତରେ
ହୋଇବ ତୁମ୍ଭ ଚରଣରେ ।

ହେ ରାମ ପତିତପାବନ
ଅଧମ ହୀନ ହୀନ ଧନ ।
ତୋ ମନ୍ତ୍ର ଯନ୍ତ୍ରେ ଏ ପ୍ରକାରେ
ଖ୍ୟାତ ହୋଇଛୁ ଏ କ୍ଷିତିରେ ।
ଏ ଘେନି ଭରସା ମୁଁ କଲି
ତୋ ପାଦେ ଶରଣ ପଶିଲି ।
ଯେଣୁ ତୁ କରୁଣାସାଗର
ଏ ବେଳେ ମୋତେ ରକ୍ଷାକର ।
ଏ ଶଏ ଏକାବନ ପଦ
କୃଷ୍ଣସ୍ୱ ପରମ ମୋକ୍ଷଦ ।
ଶ୍ରୀରାମ ନାମ ଯେଉଁ ପଦ
ବିଷୟାବିଷକୁଟି ଗଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଅରଣ୍ୟକାଣ୍ଡେ ନାମ ନବମୋଽଧ୍ୟାୟଃ ।

## ଦଶମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଏଥୁ ଉତ୍ତରେ ପଶୁପତି
ହସି ବୋଇଲେ ଗୋ ପାର୍ବତୀ ।
ଗନ୍ଧର୍ବ ଏମନ୍ତ ସେ ହୋଇ
ଶ୍ରୀରାମ ଠାରୁ ବର ପାଇ ।
ସ୍ୱର୍ଗ ଲୋକକୁ ଯିବାବେଳେ
ରାମଙ୍କୁ ଏମନ୍ତ କହିଲେ ।
ଅଗରେ ଏ ନିକଟେ ଶ୍ରୀରାମ
ଅଛି ଯେ ଗୋଟିଏ ଆଶ୍ରମ ।
ଶବରୀ ଜଣେ ତହିଁ ଛନ୍ତି
ତୋ ପାଦପଦ୍ମରେ ତା ଭକ୍ତି ।
ଉତ୍ତମ ତତ୍ତ୍ୱ ସେ ଜାଣନ୍ତି
ତା ଠାକୁ ଯାଅ ରଘୁପତି ।
ସେ ସବୁ ତୁମ୍ଭଙ୍କୁ କହିବ
ଏମନ୍ତ କହିଣ ଗନ୍ଧର୍ବ ।
ସୂର୍ଯ୍ୟ ସମାନ ବିମାନରେ
ବସି ସେ ଅନନ୍ଦ ମନରେ ।
ରାମଙ୍କୁ ନମସ୍କାର କଲେ
ବିଷ୍ଣୁ ପଦକୁ ସୁଖେ ଗଲେ ।
ଶ୍ରୀରାମଙ୍କୁ ଯେ ସୁମରଇ
ଫଳ ଏ ରୂପେ ସେ ଲଭଇ ।
ତଦନ୍ତେ ଶ୍ରୀରଘୁନନ୍ଦନ
ସିଂହ ବ୍ୟାଘ୍ରରେ ପରିପୂର୍ଣ୍ଣ ।
ଏମନ୍ତ ବନେ ବେନି ଭାଇ
ଗଲେ ସେ ମନ୍ଦ ମନ୍ଦ ହୋଇ ।
ଗନ୍ଧର୍ବ କହିଲା ଆଶ୍ରମ
ନିକଟେ ହୁଅନ୍ତେ ଶ୍ରୀରାମ ।
ଲକ୍ଷ୍ମଣ ତୁଲେ ସୀତାକାନ୍ତ
ଆସୁଛନ୍ତି ଦେଖି ଏମନ୍ତ ।
ଶବରୀ ବଡ଼ ହୃଷ୍ଟ ହୋଇ
ବେଗେ ପାଛୋଟି ଘେନି ଯାଇ ।
ପ୍ରବେଶ କରି ଆଶ୍ରମରେ
ଲୋତକ ଧାର ହରଷରେ ।
ନୟନୁ ବହୁଛି ବହୁତ
ଏ ରୂପେ କରି ଦଣ୍ଡବତ ।
କୁଶଳ ପ୍ରଶନ ସେ କଲା
ଆସନ ଦେଇ ବସାଇଲା ।

ଶ୍ରୀରାମ ଲକ୍ଷ୍ମଣ ପୟର
ଧୋଇଲା ଯେଣୁ ତୀର୍ଥ ନୀର ।
ସେ ପାଦୋଦକ ଘେନି ଶିରେ
ପୂଜା କରି ସେ ଅର୍ଘ୍ୟାଦରେ ।
ଆଗ କରଣ ରାମ ପାଇଁ
ଅତି ଯତନେ ଥିଲା ଥୋଇ ।
ବିବିଧ ପକ୍ୱ ଫଳ ମାନ
ସମସ୍ତ ଅମୃତ ସମାନ ।
ଅଣିଣ ଭକ୍ତ ଯୁକ୍ତ ହୋଇ
ରାମ ସମ୍ମୁଖରେ ଦେଲା ନେଇ ।
ଅତି ସୁଖେ ରଘୁନନ୍ଦନ
ସେମାନ କରନ୍ତେ ଭୋଜନ ।
ପୁଣି ଶବରୀ ହୃଷ୍ଟମନେ
ସୁବାସ କୁସୁମ ଚନ୍ଦନେ ।
ରଘୁନାଥର ଶ୍ରୀଚରଣ
ଭକ୍ତିରେ ପୂଜା କରି ପୁଣ ।
ସୁଖରେ ସେ ବିଜେ କରାଇ
କହିଲା କୃତାଞ୍ଜଳି ହୋଇ ।
ହେ ରାମ ପୂର୍ବେ ଏହି ବନେ
ମୋହର ଗୁରୁ ଋଷିମାନେ ।
ତପସ୍ୟା କରୁଥିଲେ ରହି
ତାଙ୍କୁ ମୁଁ ସେବା କରୁଥାଇ ।
ବହୁତ ସହସ୍ର ବରଷ
ଯୋଗ-ସେ କରଣ ଅଭ୍ୟାସ ।
ବ୍ରହ୍ମ ଲୋକକୁ ଯିବାବେଳେ
ସେମାନେ ମୋତେ ଅଜ୍ଞା ଦେଲେ
ଏହିଠାରେ ତୁ ଥାଅ ରହି
ପରମାତ୍ମା ଯେ ରାମ ହୋଇ ।
ଦଶରଥର ମନ୍ଦିରରେ
ସଂଜାତ ହୋଇ ଧରଣୀରେ ।
ରାକ୍ଷସଙ୍କ ବଧ ନିମିତ୍ତେ
ଜାନକୀ ଲକ୍ଷ୍ମଣ ସଙ୍ଗତେ ।
ବନରେ ଋଷି ସମୂହଙ୍କୁ
ବୁଲନ୍ତି ରକ୍ଷା କରିବାକୁ ।
ବର୍ତ୍ତିମାନ ସେ ରଘୁପତି
ଚିତ୍ରକୂଟ ପର୍ବତେ ଛନ୍ତି ।
ସେ ନିଶ୍ଚେ ଆସିବେ ଏଠାକୁ
ତୁ ଧ୍ୟାନ କରୁଥା ତାହାଙ୍କୁ ।
ସେ ବ୍ରହ୍ମ ଶରୀରକୁ ଗୃହି
ବହନ ତୁ କୃତାର୍ଥ ହୋଇ ।
ଅନଳେ ଶରୀର ଦହିବୁ
ତାହାଙ୍କ ପାଦକୁ ତୁ ଯିବୁ ।
ଧ୍ୟାନ କରି ମୁଁ ଏ ରୂପକୁ
ରହିଛି ତୋତେ ଦେଖିବାକୁ ।
ମୋ ଗୁରୁମାନଙ୍କର ବୋଲ
ଆଜ ସେ ହୋଇଲା ସଫଳ ।
ତୁମ୍ଭର ଦର୍ଶନ ହେ ବୀର
ନୋହିଲା ଗୁରୁ ମାନଙ୍କର ।
ମୁଁ ସ୍ତ୍ରିରୀ ମୂଢ଼ ଜାତି ହୀନ
କେମନ୍ତେ କଲି ଦରଶନ ।
ତୁମ୍ଭ କିଙ୍କରର କିଙ୍କର
ଏ ରୂପେ ମୁଁ ଶଏ ଦାସର ।
ଦାସୀ ହେବି ଏଥକୁ ବୀର
ଅଧିକାର ତ ନାହିଁ ମୋର ।
ସାକ୍ଷାତ ତୁମ୍ଭ ଦାସୀ ହେବି
ଏହା ମୁଁ କି କରି ବୋଲିବି ।
ତୁମ୍ଭେ ତ ମନ ବଚନର
ନିଶ୍ଚୟେଁ ଅଟ ଅଗୋଚର ।
ଏ ରୂପେ ବୋଲନ୍ତି ପଣ୍ଡିତେ
କି କରି ଦେଖିଲି ମୁଁ ତୋତେ ।

ଅଜ୍ଞାନୀ ତୁଚ୍ଛ ଜାତ ସ୍ତ୍ରୀଏ
ନ ଜାଣଇଁ ମୁଁ ସ୍ତୁତ କରିଁ ।
କି କରିବି ଅଜ୍ଞା କର
ଶୁଣି କହିଲେ ରଘୁବୀର ।

ଶ୍ରୀରାମ ଉବାଚ

ସ୍ତ୍ରୀ ପୁରୁଷ ଜାତ ନାମ
ବ୍ରହ୍ମଚର୍ଯ୍ୟାଦି ଯେ ଆଶ୍ରମ ।
ମୋତେ ଭଜିବାକୁ ଏମାନ
କେହି ନୁହନ୍ତି ପ୍ରୟୋଜନ ।
କେବଳ ମାତ୍ର ଭକ୍ତି ପଣ
ଅମ୍ଭଙ୍କୁ ଭଜିବା କାରଣ
ମୋ ଭକ୍ତି ନ ଥାଇ ଯାହାର
ଏମନ୍ତ ଅଛେ ଯେତେ ନର ।
ସେ ଯେତେ କର୍ମ ଯାଗ ଦାନ
ତପସ୍ୟା ବେଦ ଅଧ୍ୟୟନ ।
କଲେ ତୋ ପରି କରି ମୋତେ
ଦେଖଇ ନାହିଁ କଦାଚିତେ ।
ଏ ଯୋଗ ଭକ୍ତିର ସାଧନ
ସଂକ୍ଷେପେ କହିବା ସେମାନ ।
ସାଧୁ ସଙ୍ଗମ ଯେବେ ହୋଇ
ଆଦ୍ୟ ସାଧନ ସେ ବୋଲାଇ ।
ମୋ କଥା ହେବା କୋହା କୋହି
ଦ୍ୱିତୀୟ ସାଧନ ଅଟଇ ।
ମୋହର ନାମ ସଂକୀର୍ତ୍ତନ
ଅଟଇ ତୃତୀୟ ସାଧନ ।
ଚତୁର୍ଥ ସାଧନ ମୋହର
ପ୍ରସଙ୍ଗ ମାନ କହିବାର ।
ଶ୍ରଦ୍ଧା ଭକ୍ତିରେ ଯୁକ୍ତ ହୋଇ
ହୃଦରେ କୁଟିଳ ନ ଥାଇ ।

ସୁସେବା କରି ଗୁରୁ ମନ
ହରିବା ପଞ୍ଚମ ସାଧନ ।
ସନ୍ତତେ ପବିତ୍ର ସ୍ୱଭାବ
ଯମ ନିୟମ କରିଥିବ ।
ମୋହ ପୂଜାରେ ନିଷ୍ଠା ଥାଇ
ଷଷ୍ଠ ସାଧନ ଏ ବୋଲାଇ ।
ସମସ୍ତ ଅଙ୍ଗେ କରି ଯୁକ୍ତ
ଯେ ଉପାସନା ମୋର ମନ୍ତ୍ର ।
କରି ଅଭ୍ୟାସ କରୁଥାଇ
ସପ୍ତମ ସାଧନଟି ସେହି ।
ମୋ ପ୍ରତ୍ୟାହୁଁ ମୋ ଭକ୍ତ ଠାଇଁ
ବିଶେଷ ପୂଜା ଯେ କରଇ ।
ସବୁ ଭୂତ ମାନଙ୍କୁ ପୁଣ
ଦେଖିବ ମୋହ ସମାନେଣ ।
ବାହାର କାର୍ଯ୍ୟରେ ସନ୍ତତ
ଯେ ହୋଇଥିବ ବିରକତ ।
ହୋଇବ ସମାଧିରେ ଯୁକ୍ତ
ଅଷ୍ଟମ ସାଧନ ଏମନ୍ତ ।
ବ୍ରହ୍ମର ତତ୍ତ୍ୱ ନିରୂପଣ
ଅଟଇ ନବମ ସାଧନ ।
କହିଲୁ ଅମ୍ଭେ ଯେତିମାନ
ଏ ନଅ ଭକ୍ତିର ସାଧନ ।
ସ୍ତ୍ରୀଏ ପୁରୁଷ ଅବା ଯେହୁ
ପଶୁ ପକ୍ଷୀହିଁ ଅବା ହେଉ ।
ଏ ରୂପେ ଥିଲେ ମୋହ ଠାଇଁ
ପ୍ରେମ ଲକ୍ଷଣା ଭକ୍ତି ହୋଇ
ମୋ ଭକ୍ତ ହେଲେ ତତ୍ତ୍ୱ ମୋର
କରଇ ଅନୁଭବ ନର ।
ମୋ ଅନୁଭବ ଯେବେ ହୋଇ
ସେହି ଜନ୍ମରେ ମୁକ୍ତି ପାଇ ।

ଏଣୁକର ମୋଠାରେ ପୁଣ
ନିଷ୍ଠସ୍ଥ ଭକ୍ତ ସେ କାରଣ ।
ଯାହା ସେ କହିଲଇଁ ଆଗ
ଆଦ୍ୟ ସାଧନ ସାଧୁ ସଙ୍ଗ ।
ସେ କଥା ଯାହାର ହୁଅଇ
କ୍ରମେ ସେ ସବୁହିଁ ଲଭଇ ।
ଏରୂପେ ଜାତ ହୋଏ ଭକ୍ତି
ତଦନ୍ତେ ଲଭଇ ମୁକତି
ଯେଣୁ ତୁମ୍ଭର ମୋହ ଠାଇଁ
ଭକ୍ତି ତ ଅଛୁ ଦୃଢ଼ ହୋଇ ।
ଏ ହେତୁ ଏଠାକୁ ଆଇଲି
ତୁମ୍ଭଙ୍କୁ ଦରଶନ ଦେଲି ।
ମୋତେ ଯା ଦରଶନ କଲ
ଏଥିରୁ ମୁକତି ଲଭିଲ ।
ଏ କଥା ଯେ ନିଷ୍ଠସ୍ଥ ହୋଇ
ଆନ କାରଣ କିଛି ନାହିଁ ।
ସୀତାଙ୍କୁ ନେଲା କେ ଚୋରାଇ
ଯେବେ ତା ଜାଣିମା ହୁଅଇ ।
ତେବେ ସେ ଛନ୍ତି କେଉଁଠାରେ
କହି ତ ଦିଅ ତୁ ସତ୍ୱରେ ।
ଏମନ୍ତ ଶୁଣି ସେ ଶବରୀ
ତାଙ୍କୁ କହିଲା ହସି କରି ।

ଶବର୍ଯ୍ୟୁବାଚ

ହେ ନାଥ ସବୁ ଜଗତର
ପର ପାଳନା ତୁମ୍ଭେ କର ।
ଏ ହେତୁ ସର୍ବଜ୍ଞ ଆପଣ
ସମସ୍ତ କଥାମାନ ଜାଣ ।
ଲୋକ ବେଭାର ହେତୁ ଯେବେ
ପଚାରିବାକୁ ହେଲ ତେବେ ।
ଶୁଣ ହେ ଶ୍ରୀ ରଘୁନନ୍ଦନ
ସୀତାଙ୍କୁ ନେଇ ଦଶାନନ ।
ରଖିଛି ଲଙ୍କା କଟକରେ
ଅଶୋକ ବଣିକା ମଧ୍ୟରେ ।
ଏହି ନିକଟେ ରଘୁବୀର
ପମ୍ପା ନାମରେ ଅଛି ସର ।
ସେଠାରେ ଗିରିଟାଏ ରାମ
ଅଛି ଋଷ୍ୟମୂକ ତା ନାମ ।
ସେ ପର୍ବତରେ ହେ ରାଘବ
ଅଛନ୍ତି କପୀଶ ସୁଗ୍ରୀବ ।
ଚାରି ମନ୍ତ୍ରୀଙ୍କ ସଙ୍ଗତରେ
ତା ଜ୍ୟେଷ୍ଠ ଭାଇ ବାଳି ଡରେ ।
ଋଷିଶାପରୁ ବାଳି ତହିଁ
ପ୍ରବେଶ ହୋଇ ନ ପାରଇ ।
ସେଠାକୁ ତୁମ୍ଭେ ବେଗେ ଯାଅ
ସୁଗ୍ରୀବ ସଙ୍ଗେ ମିତ ହୁଅ ।
ତୁମ୍ଭର ନିଷ୍ଠସ୍ଥେ ସୁଗ୍ରୀବ
ସମସ୍ତ କାର୍ଯ୍ୟ ସେ କରିବ ।
ମୁଁ ଏବେ ତୁମ୍ଭ ଅଗ୍ରତରେ
ପ୍ରବେଶ ହୋଇ ଅନଳରେ
ଉତ୍ତମ ଶରୀର ଧରିବି
ପରମ ପଦକୁ ତୋ ଯିବି ।
ଏ ହେତୁ କର କ୍ଷଣେ ଆଜ୍ଞ
ଆପଣ ରହିଥିବା ହେଜ ।
ଏମନ୍ତ କହି ସେ ଅଗ୍ନିରେ
ପ୍ରବେଶ ହୋଇଲା ସତ୍ୱରେ ।
ଅବିଦ୍ୟାକୃତ ଯେ ବନ୍ଧନ
କ୍ଷଣକେ କାଟି ତା ବହନ ।
ଦୁର୍ଲ୍ଲଭ ମୁକ୍ତି ଅପ୍ରମାଦେ
ଲଭିଲେ ଶ୍ରୀରାମ ପ୍ରସାଦେ ।

ଭକ୍ତବତ୍ସଳ ରଘୁପତି
ଯାହାଙ୍କୁ ପ୍ରସନ୍ନ ହୁଅନ୍ତି ।
ତାହାର ଦୁଷ୍କର ହୋଇଣ
ହୁଅଇ କେଉଁ କଥା ପୁଣ ।
ଦେଖ ଶବରୀ ତୁଚ୍ଛ ଜାତି
ସେହୁ ଲଭିଲ ଏଡ଼େ ଗତି ।
ଏଣୁ ରାମଙ୍କୁ ଚିନ୍ତ ମନେ
ବ୍ରାହ୍ମଣ ଆଦି ଶୁଦ୍ର ମାନେ ।
ଯା ହେଉଅଛନ୍ତି ମୁକର୍ତି
ସେ କଥା କିପାଁ ହେବ ଚିନ୍ତ ।
ଯେଉଁ ଶ୍ରୀରାମଠାରେ ଭକ୍ତି
କଲେ ଅବଶ୍ୟ ହୋଏ ମୁକ୍ତି
ଶିବ କହିଲେ ହସି ପୁଣ
ହେ ସବୁ ଲୋକମାନେ ଶୁଣ ।
ଦିଅଇ ରଘୁନାଥ ଭକ୍ତି
ନିଶ୍ଚେଁ ନିଶ୍ଚେଁ ନିଶ୍ଚେଁ ମୁକତି ।
କାମଧେନୁଟି ପାଦପଦ୍ମ
ଏମନ୍ତ ଅଟେ ଯେଉଁ ରାମ ।
ତମ୍ଭେ ସେବାକର ତାଙ୍କୁ
ସାକ୍ଷୀ ମୁଁ ହେଲି ଏକଥାକୁ ।
ବିବିଧପ୍ରକାର ଯେ ଜ୍ଞାନ
ନାନାପ୍ରକାରେ ମନ୍ତ୍ରମାନ ।
ଦୂରରୁ ଛାଡ଼ ତା ବହନ
ଶ୍ୟାମସୁନ୍ଦର ଅପଘନ ।
ହୃଦେ ପ୍ରକାଶ ହୋଇଛନ୍ତି
ଏମନ୍ତ ଯେଉଁ ରଘୁପତି ।
ତାହାଙ୍କ ପାଦ ହୃଦୟରେ
ଭଜୁ ଅଛୁ ମୁଁ ନିରନ୍ତରେ ।
ରାମଚନ୍ଦ୍ରଙ୍କୁ ଏଣୁ ନିତ୍ୟେ
ଭଜିବା ହେଉ ହେ ପଣ୍ଡିତେ ।

ଶୁଣ ସୁଜନେ ଦେଇ ମନ
ଏ କାଣ୍ଡ ହୋଇଲା ସମ୍ପୂର୍ଣ୍ଣ ।
ଏତ ସମୁଦ୍ରୁଁ ଅପ୍ରଛିନ୍ନ ।
ମୋ ମନ କ୍ଷୁଦ୍ର ମୀନୁ ହୀନ
ଏ ଯେଣୁ କହିଲି ମୁଁ ଏତେ
କୋପ ନ କର ହେ ପଣ୍ଡିତେ ।
ଏତ ଶିବଙ୍କ ଅଗୋଚର
ମୁଁ ଅଟେ ପାପୀ ମୂଢ଼ ନର ।
କେବଳ ରାମ ଦୟାନିଧି
କରନ୍ତି ଦୀନ ବାଞ୍ଛା ସିଦ୍ଧି ।
ଏ ଯେଣୁ କରୁଛି ସାହସ
ସୁଜନେ କ୍ଷମା କର ଦୋଷ ।
ମୋଠାରେ ଅନୁଗ୍ରହ କର
ତୁମ୍ଭେମାନେ ତ କ୍ଷମାସାର
ମାଗଇ ଦୀନ ହଳଧର
ଅହେ ରାଜେନ୍ଦ୍ର ରଘୁବୀର ।
ସମସ୍ତ ଭୟମାନ ମୋର
ବହନ କରି ନାଶ କର ।
ସୀତା ସହିତେ ତୁମ୍ଭ ପଦ
ହେଉ ମୋ ସମସ୍ତ ସମ୍ପଦ ।
ମନୋଗତେ ଯେ ବାଞ୍ଛା ମୋର
ହେ ଦୟାନିଧି ସିଦ୍ଧି କର ।
ମୋହ ସମସ୍ତ ପାପମାନ
କାଟ ହେ ଶ୍ରୀରଘୁନନ୍ଦନ ।
ସୀତା ଲକ୍ଷ୍ମଣ ସହିତରେ
ତୋ ଦିବ୍ୟ ଚରଣ ଯୁଗରେ ।
ସବୁ ଜନ୍ମରେ ଭକ୍ତହେଉ
କୋଟି ଜନ୍ମରେ ଆନ ନୋହୁ ।
ସନ୍ତତ ସାଧୁର ସଙ୍ଗତ
ଦେବା ହେଉ ହେ ସୀତାପତି ।

ତୁମ୍ଭଙ୍କୁ ଏଥିପାଇଁ ମୋର
ଅନ୍ତବାରତେ ନମସ୍କାର ।
ଉମା ସହିତେ ତ୍ରିପୁରାର
ସମସ୍ତ ଦୋଷ କ୍ଷମାକର ।
ଏ ମନୋରଥକୁ ମୋହର
ବଡ଼ ବେଗରେ ସିଦ୍ଧକର ।
ଅଧ୍ୟାତ୍ମ ପୁରାଣ ଚରିତ
ସବୁର ହିତେ କଲି ଗୀତ ।

ଏଣୁ ସୁଜନେ ନିରନ୍ତରେ
ଚିତ୍ତ ବଳାଅ ଏ ଗୀତରେ ।
ହୋଇବ ଭବ ଜଳୁ ପାର
ଜାନକୀବଲ୍ଲଭ ସୁମର ।
ଚୌଦଶ ବା'ବନ ପଦ
କାଣ୍ଡ ଦଶ ଅଧ୍ୟା ମୋକ୍ଷଦ ।
ଏ ଶଏ ଛୟାଳିଶ ପଦ
ଏ ଅଧ୍ୟା କାଟୁ ମୋ ଆପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଅରଣ୍ୟକ କାଣ୍ଡେ ନାମ ଦଶମୋଽଧ୍ୟାୟଃ ।

# କିଷ୍କିନ୍ଧ୍ୟା କାଣ୍ଡ

## ପ୍ରଥମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶିବ ବୋଇଲେ ଗୋ ପାର୍ବତୀ
ଏଥିଉତ୍ତାରୁ ରଘୁପତି ।
ନବମାଳିକା ଲତାତଳେ
ଚମ୍ପକମହୀରୁହ ମୂଳେ ।
ଦିବ୍ୟପ୍ରବାଳ ବେଦିକାରେ
ବିଚିତ୍ର ମୃଗ ଅଜିନରେ ।
ଶବରୀ ଆଶ୍ରମେ ଶ୍ରୀରାମ
କରି ଯେ ଅଛନ୍ତି ବିଶ୍ରାମ ।
ସୁମରକତ ସମ ଶ୍ୟାମ
ରୂପେ ଅସମ କୋଟି କାମ ।
ଜଟା ମୁକୁଟେ ସୁଶୋଭନ
ପିନ୍ଧି ଅଛନ୍ତି କୃଷ୍ଣାଜିନ ।
ପଙ୍କଜ ପଲାଶ ପ୍ରକାର
ନୟନ ବିସ୍ତାର ରୁଚିର ।
ବିକାଶ କମଳବଦନ
ମନ୍ଦହାସରେ ସୁପ୍ରସନ୍ନ ।
ବିସ୍ତାର ରୁଚିର ବିପୁଳ
ଏରୂପେ ଦିଶେ ବକ୍ଷସ୍ଥଳ ।
ସହସ୍ରେ ସୂର୍ଯ୍ୟପ୍ରାୟେ ତେଜ
ମର୍କତ ସ୍ତମ୍ଭମତ ଭୁଜ ।
ଚରଣ ଶ୍ରୀକର ଅଧର
ପ୍ରବାଳପଦ୍ମ ବିମ୍ବାକାର ।
ଶ୍ରବଣ ଯୁଗଳେ କୁଣ୍ଡଳ
ହୃଦେ ଶବରୀଫୁଲ ମାଳ ।
ତା ଦେଲା ସୁବାସଚନ୍ଦନ
ସର୍ବାଙ୍ଗେ ହୋଇଛି ଲେପନ ।

କୋଦଣ୍ଡ ଖଡ଼ଗ ଭାରତୀ
ବୃକ୍ଷେ ଉଳୁରୁ ହୋଇଛନ୍ତି ।
ଅଗ୍ରଜ ଲକ୍ଷ୍ମଣ ଉପରେ
କୋଦଣ୍ଡ ଧରି ବାମକରେ ।
ବଇଦେହୀଙ୍କ ହୃଦେ ଚିନ୍ତି
ରାବଣଠାରେ ରଘୁପତି ।
ସେ କ୍ରୋଧ ବହ୍ନି ହୃଦୟରେ
ଶର ଟୁକନ୍ତି ଧରଣୀରେ ।
ଏମନ୍ତ ରୂପ ନିରନ୍ତରେ
ଚିନ୍ତୁଅଛି ମୁଁ ହୃଦୟରେ ।
ହେ ରାମ ରଘୁକୁଳବର
ସମସ୍ତ ଅଘ ଅପହର ।
ଶରଣାପନ୍ନ ହେଲି ତୋତେ
ସଂସାର ଭୟୁ ରଖ ମୋତେ ।
ସୀତା ସଂଯୁତେ ତୁମ୍ଭପଦ
ହେଉ ମୋ ସମସ୍ତ ସମ୍ପଦ ।
ହେ ଦୀନବନ୍ଧୁ ଦୟାନିଧି
ମୋ ମନୋରଥ କର ସିଦ୍ଧି ।
ସୀତା ଲକ୍ଷ୍ମଣ ଯୁତେ ତୋର
ଚରଣେ ହେଉ ନମସ୍କାର ।
ତୁମ୍ଭର ଅଧ୍ୟାତ୍ମ ଚରିତ
ଅରଣ୍ୟକାଣ୍ଡକୁ ତ ଗୀତ ।
କରି ଶ୍ରୀଚରଣେ ଜଣାଇ
ଏବେ କିଷ୍କିନ୍ଧ୍ୟାକାଣ୍ଡ ପାଇଁ ।
ଅନୁଜ୍ଞା ମାଗୁଅଛି ତୋତେ
ଉଦ୍ୟମ ହୋଇ ସ୍ଫୁରୁ ମୋତେ ।

ଅବଶ୍ୟ ହୋଇ ନିର୍ବାପାଇ
ଏରୂପେ ସ୍ୱାମୀ ଅଙ୍ଗୀକରି ।
ପାର୍ବତୀ ସହିତରେ ପୁଣ
ବନ୍ଦଇ ଶଙ୍କର ଚରଣ ।
ହେ ଦେବ ଦେବ ବେଗେ ମୋର
ଏ ମନୋରଥ ସିଦ୍ଧିକର ।
ହେ କୃତ୍ତିବାସ ଆଶୁତୋଷ
ମୋଠାରେ ହୋଇଣ ସନ୍ତୋଷ ।
ସମସ୍ତ ଅପରାଧମାନ
କ୍ଷମା କର ହେ ତ୍ରିଲୋଚନ ।
ଶ୍ରୀରାମ ଅଧ୍ୟାତ୍ମ ଚରିତ
କିଷ୍କିନ୍ଧ୍ୟାକାଣ୍ଡ ଏବେ ଗୀତ ।
କରିବି ଏବେଁ ବର୍ଣ୍ଣ ନୋହୁ
ଏରୂପେ ମୋତେ ଅଙ୍ଗୀକରି ।
ଏଠାରୁ କିଷ୍କିନ୍ଧ୍ୟା ଚରିତ
ଶୁଣ ସୁଜନେ ଦେଇ ଚିତ୍ତ ।
ପାର୍ବତୀ ବୋଲେ ସଦାଶିବ
ସୁଗ୍ରୀବ ସଙ୍ଗତେ ରାଘବ ।
କି ପ୍ରକାରରେ ସଖା ହେଲେ
ବାଳିକି କି ରୂପେ ମାରିଲେ ।
କିଷ୍କିନ୍ଧ୍ୟା ସୁଗ୍ରୀବକୁ ଦେଇ
କାହିଁ ରହିଲେ ବେନିଭାଇ ।
ବଇଦେହୀଙ୍କି ଖୋଜିବାକୁ
କିରୂପେ ପେଷିଲେ ଦୂତଙ୍କୁ ।
ଏମାନ କହ ମହେଶ୍ୱର
ବୋଲି ଯୋଡ଼ନ୍ତେ ବେନିକର ।

ଶ୍ରୀ ମହାଦେବ ଉବାଚ

ହସି କହିଲେ ପଶୁପତି
ତାହିଁ ଉତ୍ତରରେ ଗୋ ପାର୍ବତୀ ।

ଲକ୍ଷ୍ମଣ ତୁଲେ ରାମ ଗଲେ
ପ୍ରବେଶ ପମ୍ପା ତୀରେ ହେଲେ ।
ସରକୁ ଏ ପ୍ରକାରେ ଦେଖି
ଶ୍ରୀରାମଚନ୍ଦ୍ର ହେଲେ ସୁଖୀ ।
କୋଶେ ଲେଖାଏଁ ଗୃହ ତୀର
ଅଗାଧ ସ୍ୱାଦୁ ସ୍ୱଚ୍ଛନୀର ।
ବିକାଶ ଉତ୍ପଳ ନଳିନ
କୁମୁଦେ ହୋଇଛି ସମ୍ପୂର୍ଣ୍ଣ ।
ଜଳକୁକ୍କୁଟ ପାଣିକାଉ
କୋୟଷ୍ଟି କୁଳ ଚକ୍ରବାକ
ବକ ସାରସ ହଂସ କ୍ରୌଞ୍ଚ
ଏ ନାଦେ ହୋଇଛି ସୁସଞ୍ଚ ।
ନାନାପ୍ରକାରେ ପୁଷ୍ପ ଯୁକ୍ତ-
ଲତିକା ଅଛନ୍ତି ବହୁତ
ଲମ୍ବିତ ହୋଇ ଫଳଭରେ
ବହୁତ ବୃକ୍ଷଛନ୍ତି ତୀରେ ।
ସାଧୁଙ୍କ ମନର ପ୍ରକାର
ନିର୍ମଳ ହୋଇଅଛି ନୀର ।
ପଡ଼ି ପଙ୍କଜ ରଜକୁଳ
ସୁବାସ ହୋଇଛି ସଲିଳ ।
ତହିଁରେ ଶ୍ରୀରାମ ଲକ୍ଷ୍ମଣ
ସ୍ନାନ ଅଚମନ କରିଣ ।
ସନ୍ତୋଷେ ଜଳପାନ କଲେ
ତହୁଁ ଶୀତଳବାଟେ ଗଲେ ।
ଜଟା ବଳ୍କଳ ଧନୁଶର
ଧରିଣ ଦଶନ୍ତ ରୁଚିର ।
ରୂହାନ୍ତେ ପର୍ବତ ଶୋଭାକୁ
ବିବିଧ ପ୍ରକାର ବୃକ୍ଷଙ୍କୁ ।
କ୍ରୀଡ଼ା କରନ୍ତା ହୋଇଗଲେ
ସେ ଋଷ୍ୟମୂକ ତଳେ ହେଲେ ।

ସୁଗ୍ରୀବ ଏହି ସମୟରେ
ଚାରି ମନ୍ତ୍ରୀଙ୍କ ସଙ୍ଗତରେ ।
ଶୃଙ୍ଗ ଉପରେ ବସିଥିଲେ
ଭୟେ ସେଠାରୁ ପଳାଇଲେ ।
ତଦନ୍ତେ ସେ ସୁଗ୍ରୀବ ଡରେ
ହନୁମନ୍ତଙ୍କୁ ଚାହିଁ ଖରେ ।
ବୋଇଲେ ଦେଖ ହେ ମାରୁତ
ବୀର ଦଈଟି ଅସୁଛନ୍ତି ।
ଏ ଦୁହେଁ ଅଟନ୍ତି କେ ପାଇଁ
ବୁଝିବା ହେଉ ବିପ୍ର ହୋଇ ।
ବାଳି ଅମ୍ଭଙ୍କୁ ମାରିବାକୁ
ପେଷିବା ଅଛନ୍ତି ଏହାଙ୍କୁ ।
ତାହାଙ୍କ ତୁଲେ କଥା ହେବ
ହୃଦୟ ଶୋଧିଣ ବୁଝିବ ।
ଦୁଷ୍ଟ ହୃଦୟ ହେବ ଯେବେ
ହସ୍ତ ଠାରିବା ହେବ ତେବେ ।
ସୁଜନ ଏ ଯେବେ ହୋଇବେ
ହସିବ ମନ୍ଦ କରି ତେବେ ।
ଏରୂପେ ଠାରିଲେ ଆପଣେ
ତାହାଙ୍କୁ ଜାଣିମି ମୁଁ ପୁଣ ।
ମାରୁତ ଧରି ବଟୁ ବେଶ
ସେଠାରେ ହୋଇଲେ ପ୍ରବେଶ ।
ବିନୟ ହୋଇ ପ୍ରଣମିଲେ
ଏମନ୍ତ ବଚନ କହିଲେ ।
ପୁରୁଷଶ୍ରେଷ୍ଠ ଯିବା ଦୁହେଁ
କେ ତୁମ୍ଭେ କହ ତା ନିଶ୍ଚୟେ ।
ବିଶେଷେ ଅଟ ବୀରବର
ତେଜ ଯେସନେ ଚଣ୍ଡକର ।
ଏରୂପେ ସର୍ବ ଦିଗମାନ
କରୁଛ ତ ପ୍ରକାଶମାନ ।

ତୁ ସ୍ୱଇଚ୍ଛେକ୍ୟ କର୍ତ୍ତା ହୋଇ
ମୋହ ମନକୁ ତ ଅସଇ
ସଂସାର ହେତୁ ଯେ ଅଟନ୍ତି
ପ୍ରକୃତ ପୁରୁଷ ବୋଲନ୍ତି ।
ସେହି କି ତୁମ୍ଭେ ବେନି ବୀର
ମାୟାରେ ହୋଇଅଛ ନର ।
ବୁଲୁଛ ଏ ପ୍ରକାରେ ମୋତେ
ମନରେ ହେଉଛି ପରତେ
ପୃଥ୍ୱୀର ଭାର ନାଶିବାକୁ
ପ୍ରଜାଙ୍କୁ ରକ୍ଷା କରିବାକୁ ।
କ୍ଷତ୍ରିୟ ଅକୃତଙ୍କ ବହି
ଆପଣ ଅବତାର ହୋଇ ।
କରିବା ପାଇଁ ଜଗତର
ସର୍ଜନା ପାଳନା ସଂହାର ।
ଏଥକୁ ସମର୍ଥ ନିଶ୍ଚୟେ
ସ୍ୱବଶ ଅଟ ତୁମ୍ଭେ ଦୁହେଁ ।
ସମସ୍ତ ପ୍ରବର୍ତ୍ତାଇ ଅଛ
ସମସ୍ତ ହୃଦରେ ରହିଛ ।
ଏମନ୍ତ ନର ନାରାୟଣ
ଅଟ କି ତୁମ୍ଭେ ଦୁଇ ଜଣ ।
ତୁମ୍ଭଠାରେ ତ ଏ ପ୍ରକାରେ
ପ୍ରତେ ହେଉଛି ମୋ ହୃଦରେ ।
ଶ୍ରୀରାମ ଶୁଣି ଏହା ପୁଣ
ବୋଇଲେ ଦେଖ ହେ ଲକ୍ଷ୍ମଣ ।
ଏ ବଟୁଟି ଶବଦ ଶାସ୍ତ୍ର
ସଂପୂର୍ଣ୍ଣେ ଜାଣଇ ସମସ୍ତ ।
ଶୁଣିଲୁ ଏ ଅନେକ ଥର
କହିଲା ଯେତେକ ଉତ୍ତର ।
ସମସ୍ତ ଭିଦ୍ରମ ଅଟଇ
କହୁଛ ଅଶୁଦ୍ଧ ଏଥେ ନାହିଁ ।

ଏଥି ଉତ୍ତରେ ରଘୁସାଇଁ
କହିଲେ ବଟୁକୁ ଅନାଇ
ଦାଶରଥି ମୁଁ ନାମ ମୋର
ରାମଚନ୍ଦ୍ର ହେ ଦ୍ୱିଜବର ।
କନିଷ୍ଠ ଭ୍ରାତ ଏ ଅମ୍ଭର
ନାମ ଲକ୍ଷ୍ମଣ ଏହାଙ୍କର ।
ସୀତା ବୋଲି ଯେ ଅମ୍ଭ ପତ୍ନୀ
ତାହାଙ୍କ ସଙ୍ଗତରେ ଘେନି ।
ତାତଙ୍କ ଆଦେଶେ ଦଣ୍ଡକବନକୁ
ଅଇଲି ପିତା ବୋଇଲାରୁ ।
ସୀତାଙ୍କୁ ବନରୁ ହରିଲା
ରାକ୍ଷସ ଜଣେ ନେଲା କେହି ।
ଖୋଜିବା ପାଇଁ ଅମ୍ଭେ ତାଙ୍କୁ
ବୁଲନ୍ତେ ଅଇଲୁଁ ଏଠାକୁ ।
ତୁମ୍ଭେ କେ ଅଟ କାହା ଶିଷ୍ୟ
ମୋ ଆଗେ କର ତା ପ୍ରକାଶ ।
ଏମନ୍ତ ଶୁଣି ବଟୁ ପୁଣି
କହିଲେ ହରଷ ହୋଇଣ ।

ବଟୁ ଉବାଚ

ସୁଗ୍ରୀବ ବୋଲି କପିପତି
ସଙ୍ଗରେ ଘେନି ଚାରି ମନ୍ତ୍ରୀ ।
ଏହି ପର୍ବତେ ହେ ରଘବ
ଅଛନ୍ତି ରହି ସେ ସୁଗ୍ରୀବ ।
ଯେ ବାଳି ପାପିଷ୍ଠ ଅତ୍ୟନ୍ତ
ତାଙ୍କର ଏ କନିଷ୍ଠ ଭ୍ରାତ ।
ସେ ବାଳି ସୁଗ୍ରୀବଙ୍କୁ ପୁଣ
ବାହାର କରିଣ ଦେଇଣ ।
ଏହା ଭାର୍ଯ୍ୟାକୁ ଘେନିଗଲା
ବଳେ ସୁରତ ତାକୁ କଲା ।

ଏ ତାହା ଭୟରେ ପଳାଇ
ଋଷ୍ୟମୂକରେ ଛନ୍ତି ରହି ।
ମନ୍ତ୍ରୀ ମୁଁ ଅଟଇ ତାଙ୍କର
ପୁତ୍ର ପବନଦେବତାର ।
ଅଞ୍ଜନାଗର୍ଭେ ହେଲି ଜାତ
ମୋହର ନାମ ହନୁମନ୍ତ ।
ଏବେ ସୁଗ୍ରୀବ ତୁମ୍ଭେ ପୁଣ
ସଖା ହେବା ହେଉ ଆପଣ ।
ତୁମ୍ଭ ଭାର୍ଯ୍ୟାକୁ ବଳେ ଧରି
ନେଇ ଅଛି ଯେ ଚୋର କରି ।
ସେ ରିପୁ ବିନାଶ ନିମନ୍ତେ
ସୁଗ୍ରୀବ ସାହା ହେବେ ତୋତେ ।
ଏକଥା ଯୋଗାଇବ ଯେବେ
ଅସିବା ହେଉ ମିତ୍ର ତେବେ ।

ଶ୍ରୀରାମ ଉବାଚ

ଏମନ୍ତ ଶୁଣି ରଘୁନାଥ
ହସି ବୋଇଲେ ହେ ମାରୁତ ।
ତାଙ୍କ ତୁମ୍ଭେ ସଖା ହେବାକୁ
ଅମ୍ଭେତ ଅସିଛୁ ଏଠାକୁ ।
ସେ ଉତ୍ତରେ ତାଙ୍କର ଯେବେ
କରିବା କାର୍ଯ୍ୟ ଥିଲେ ତେବେ ।
ଶୁଣି ସୁରୂପ ହନୁମନ୍ତ
ଧରି ସେ କହିଲେ ଏମନ୍ତ ।
ଅସିବା ହେଉ ରଘୁବୀର
ମୋହ ଉଦରେ ବିକେ କର ।
ଯିବା ସୁଗ୍ରୀବ ବାଳି ଡରେ
ରହି ଅଛନ୍ତି ଯେଉଁଠାରେ ।
ଏମନ୍ତ ଶୁଣି ବେନି ଭାଇ
ତାଙ୍କ ସ୍କନ୍ଧେ ବସିଲେ ଯାଇ ।

ତେଣୁ ମାରୁତ କ୍ଷଣକରେ
ମିଳାଇଲେ ପର୍ବତ ଉପରେ ।
ତାହାଙ୍କ ବେନି କନ୍ଧୁ ପୁଣ
ଓହ୍ଲାଇ ଶ୍ରୀରାମ ଲକ୍ଷ୍ମଣ ।
ଗହଳ ପତ୍ର ବୃକ୍ଷମୂଳେ
ସୁଖେ ଛାଇରେ ବିଜେକଲେ ।
ସୁଗ୍ରୀବ ଅଗ୍ରେ ହନୁମନ୍ତ
କହିଲେ ଯୋଡ଼ି ବେନି ହସ୍ତ
ଭୟକୁ ନ କର ଆପଣ
ଆଇଲେ ଏ ରାମ ଲକ୍ଷ୍ମଣ ।
ନନ୍ଦନ ଭଠ ସୂର୍ଯ୍ୟ ପୁତ୍ର ।
ଶ୍ରୀରାମ ହେବେ ତୁମ୍ଭ ମିତ୍ର ।
ଏ କଥା ତାହାଙ୍କୁ ମୁଁ କହି
ଅଣିଛି ସମ୍ମତ କରାଇ ।
ସାକ୍ଷ୍ୟ କରାଇ ହୁତାଶନ
ସୁହୃଦ ହୁଅ ହେ ବହନ ।
ସୁଗ୍ରୀବ ଶୁଣନ୍ତେ ଏମନ୍ତ
ହରଷ ହୋଇ ଅତିଅନ୍ତ ।
ସେଠାରୁ ବେଗେ ଉଠି ଯାଇ
ଶ୍ରୀରାମ ଅଗ୍ରେ ଉଭା ହୋଇ ।
ବୃକ୍ଷ ଶାଖାଟିଏ ଭାଙ୍ଗିଲେ
ରାମଙ୍କୁ ବସିବାକୁ ଦେଲେ ।
ମାରୁତ ଦେଲେ ଲକ୍ଷ୍ମଣଙ୍କୁ
ଲକ୍ଷ୍ମଣ ଦେଲେ ସୁଗ୍ରୀବଙ୍କୁ ।
ତିନିହେଁ ଏମନ୍ତ ପ୍ରକାରେ
ବସିଲେ ପତ୍ର ଆସନରେ
ମାରୁତ ଏଥି ଅନନ୍ତରେ
ନଳ ନୀଳ ତାର ତୁଲରେ ।
ବସିଲେ ସୁଗ୍ରୀବ ପଛରେ
ଲକ୍ଷ୍ମଣ ଏଥୁ ଅନନ୍ତରେ ।

ବନକୁ ଯନ୍ତ୍ରୀଙ୍କ ଅଇଲେ
ଯନ୍ତ୍ରୀରେ ଯେତେ କାଳ ଥିଲେ ।
ସୀତା ହରଣ ପରଯନ୍ତେ
କହିଲେ ସୁଗ୍ରୀବ ଅଗ୍ରତେ ।
ଶୁଣି ସୁଗ୍ରୀବ ଦୁଃଖୀ ହେଲେ
ରାମଙ୍କୁ ଏମନ୍ତ କହିଲେ ।
ଅହେ ରାଜେନ୍ଦ୍ର ମୁଁ ସୀତାଙ୍କ
ସମ୍ବାଦ କହିବି ତୁମ୍ଭଙ୍କୁ ।
ତୁମ୍ଭେ ସେ ଶତ୍ରୁକୁ ମାରନ୍ତେ
ସହାୟ ହେବି ତୋ ସଙ୍ଗତେ ।
କଥାଏ ଦେଖି ଅଛୁ ଯାହା
ଆପଣ ଶୁଣ ଏବେ ତାହା ।
ଦିନେ ମନ୍ତ୍ରୀଙ୍କ ସଙ୍ଗତରେ
ବସିଥିଲି ଶୃଙ୍ଗ ଉପରେ ।
କେ ଯାଉଥିଲା ଆକାଶରେ
ସ୍ତ୍ରୀ ଜଣେ ଥିଲା ତା ରଥରେ ।
ଶ୍ରୀରାମ ରାମ ବୋଲୁଥିଲେ
ଏମନ୍ତେ ତଳକୁ ଚାହିଁଲେ ।
ଆମ୍ଭମାନଙ୍କୁ ସେ ଦେଖିଣ
ଫୋପାଡ଼ି ବସନେ ଭୂଷଣ ।
ବନ୍ଧନ କରି ପକାଇଲେ
ତୋ ନାମେ ଶୋକ କରୁଥିଲେ ।
ରାକ୍ଷସ ବେଗେ ରଥ ବାହି
ଗଲା ଦକ୍ଷିଣ ମୁଖୀ ହୋଇ ।
ଯତ୍ନ କରି ସେ ଅଳଙ୍କାର
ରଖିଛୁ କନ୍ଦରରେ ବୀର ।
ତାହା ଦେଖିବା ହେଲେ ବୀର
ହୋଇ ଙ୍କ ନୃହଇ ତୁମ୍ଭର
ଏମନ୍ତ କହି ବେଗେ ଗଲେ
ରାମ ଛାମୁରେ ଅଣି ଦେଲେ ।

ରାମ ତା ଚିହ୍ନାଇ ଦେଖିଲେ
ହା ସୀତା ବୋଲି ମୋହ ଗଲେ ।
ପୁଣି ତା ହୃଦରେ ପକାଇ
ସାମାନ୍ୟ ଲୋକ ପ୍ରାୟ ହୋଇ ।
ଦୁଃଖରେ ଶ୍ରୀ ରଘୁନନ୍ଦନ
ବହୁତ କରନ୍ତେ ରୋଦନ ।
ଲକ୍ଷ୍ମଣ ଆଶ୍ୱାସନା କଲେ
ଏମନ୍ତ ବଚନ କହିଲେ ।
ସଙ୍ଗରେ ନେଇ ସୁଗ୍ରୀବଙ୍କୁ
ସଂଗ୍ରାମେ ମାରି ରାବଣଙ୍କୁ ।
ଏହି ନିକଟେ ହେ ରାଘବ
ସୀତାଙ୍କୁ ଲଭିବା ହୋଇବ ।
ସୁଗ୍ରୀବ ଏଥୁଅନନ୍ତରେ
କହିଲେ ଶ୍ରୀରାମ ଛାମୁରେ ।
ହେ ରାମ ରଘୁକୁଳ ବୀର
ଶୁଣ ମୋ ପ୍ରତିଜ୍ଞା ଉତ୍ତର ।
ସଂଗ୍ରାମେ ମାରି ରାବଣଙ୍କୁ
ତୁମ୍ଭଙ୍କୁ ଦେବି ମୁଁ ସୀତାଙ୍କୁ ।
ମାରୁତି ଏଥୁଅନନ୍ତରେ
ଶ୍ରୀରାମ ସୁଗ୍ରୀବ ମଝିରେ ।
ଜାଳିଲେ ଅନଳ ଅକ୍ଷୀଣ
ରାମ ସୁଗ୍ରୀବ ଦୁହେଁ ପୁଣ ।
ଏକ ଅରକେ ସାକ୍ଷୀ କଲେ
ଆନନ୍ଦେ ଭିଡ଼ା ଭିଡ଼ ହେଲେ ।
ସୁଗ୍ରୀବ ଏଥୁ ଅନନ୍ତରେ
ବସିଲେ ଶ୍ରୀରାମ ପାଖରେ ।
କହିଲେ ଆପଣା ବୃତ୍ତାନ୍ତ
ବୋଇଲେ ଶୁଣ ହେ ସଙ୍ଘାତ ।
ମୁଁ ବାଳିଠାରେ ଦୋଷ ଯାହା
କଲି ବୁଝିବା ହେଉ ତାହା ।

ମୟ ଦଇତର କୁମର
ମାୟାବୀ ବୋଲି ନାମ ତାର ।
ସେ ଦିନେ ଆସି କିଷ୍କିନ୍ଧ୍ୟାକୁ
ବାଳିଙ୍କି ଡାକିଲା ଯୁଦ୍ଧକୁ ।
ସେ ଡାକ ସେ ସହି ନ ପାରି
ସିଂହର ପ୍ରାୟେ ନାଦ କରି ।
ବେଗେ ବାହାରି ଘରୁ ହେଲା
ନିର୍ଘାତ ମୁଥେକ ମାଇଲା ।
ମାୟାବୀ ମହାଭୟ କଲା
ନିଜ ପୁରକୁ ପଳାଇଲା ।
ତା ପଛେ ଗୋଡ଼ାଇଲେ ବାଳି
ତାଙ୍କ ପଛରେ ମୁହିଁ ଗଲି ।
ମାୟାବୀ କନ୍ଦରକୁ ଯାନ୍ତେ ।
ବାଳି ବୋଇଲେ ଦେଖି ମୋତେ
ରହି ଥିବୁଟି ତୁ ଏଠାରେ
ଅମ୍ଭେ ପଶୁଛୁ କନ୍ଦରରେ ।
କହି ହୋଇଲେ ପରବେଶ
ଏମନ୍ତେ ଗଲା ଏକ ମାସ ।
ସେ ଗୁହା ଦ୍ୱାରରୁ ରକତ
ଉଦ୍‌ଗାର ହୁଅନ୍ତେ ବହୁତ ।
ତା ଦେଖି ବଡ଼ ଦୁଃଖୀ ହେଲି
ମଲେ ବାଳି ମୁଁ ବିଚାରିଲି ।
ସେ ଦ୍ୱାରେ ଏକ ପଥରକୁ
ପକାଇ ଆଇଲି ପୁରକୁ ।
କହିଲି ଗୁହାରେ ରାକ୍ଷସ
ବାଳିଙ୍କ କଲେ ପ୍ରାଣେ ନାଶ ।
ତା ଶୁଣି ଦୁଃଖେ ମନ୍ତ୍ରୀ ବ୍ରାତେ
ମନ ନ ଥିଲା ନେଇ ମୋତେ ।
କିଷ୍କିନ୍ଧ୍ୟା ରାଜ୍ୟରେ ଯେ ବଳେ
ସେମାନେ ଅଭିଷେକ କଲେ ।

ରାଜ୍ୟ ମୁଁ ପାଳନା କରନ୍ତେ ।
ଏ ରୂପେ କେତେ କାଳଯାନ୍ତେ ।
ପ୍ରବେଶ ବାଳି ଅସି ହେଲେ
ମୋତେ ବହୁତ ଧିକ୍କାରଲେ ।
ପୁଣି ବହୁତ କ୍ରୋଧ କଲେ
ନିର୍ଘାତ ମୁଥେକ ମାଇଲେ ।
ଭୟେ ମୁଁ ନଗ୍ନ ପଳାଇଲି
ବହୁତ ସ୍ଥଳ ବୁଲି ବୁଲି ।
ରହିଲି ମୁଁ ଋଷ୍ୟମୂକରେ
ସେ ବାଳି ଋଷି ଶାପ ଡରେ ।
ଏ ଗିରିକି ସେ ନ ଆସନ୍ତି
ସେହି ଦନ୍ତୁ ହେ ସେ ପ୍ରଭୁ ।
ମୋହ ଭାର୍ଯ୍ୟାକୁ ଯେଜ୍ଞ ଗଲେ
ବଳେ ତାହାକୁ ଭୋଗ କଲେ ।
ସାନଭାଇ ଭାର୍ଯ୍ୟାକୁ ଯେଣୁ
ହରିଲେ ବାଳି ବଳେ ତେଣୁ ।
ସେ ଦୁଃଖବଶରୁ ହନ୍ତ
ହେଉଥାଇ ମୁଁ ସନ୍ତପନ୍ତ ।
ପାଦ ପଦ୍ମରୁ ଯେ ତୁମ୍ଭର
ଏବେ ମୁଁ ସୁଖୀ ହେଲି ବୀର ।
ସେ ମିତ୍ର ଦୁଃଖେ ପୀଡ଼ା ପାଇ
ଭକ୍ତବଶ ଯେ ରଘୁସାଇଁ ।
ସୁଗ୍ରୀବ ଠାରେ ଦୃଷ୍ଟି ଦେଲେ
ଏମନ୍ତ ପ୍ରତିଜ୍ଞା ସେ କଲେ ।
ତୁମ୍ଭର ଶତ୍ରୁ ବାଳି ନାଶ
କରିବି କରିବି ଅବଶ୍ୟ ।
ସୁଗ୍ରୀବ ବୋଲେ ହେ ରାଜେନ୍ଦ୍ର
ବାଳିକି ସମ ନୋହେ ଇନ୍ଦ୍ର ।
ବଡ଼ ସମର୍ଥ ସେ ଅଟନ୍ତି
ଦେବେ ଭରସି ନ ପାରନ୍ତି ।
ତାହାକୁ କେମନ୍ତେ ରାଘବ
ବିନାଶ କରିବା ହୋଇବ ।
ନିଶ୍ଚୟେ ସମର୍ଥ ଆପଣ
ତଥାପି ବାଳି ବଳ ଶୁଣ ।
ଦୁନ୍ଦୁଭି ନାମରେ ରାକ୍ଷସ
ଥିଲା ସେ ମହିଷର ବେଶ ।
ଦିନେ କିଷ୍କିନ୍ଧ୍ୟାକୁ ଆଇଲା
ରଣେ ସେ ବାଳିକି ଡାକିଲା ।
ବାଳି ତ ବଡ଼ କୋପୀ ବୀର
ସହି ନ ପାରି ଡାକ ତାର ।
ବେଗେ ପ୍ରବଳ ହୋଇ ବାହାର
ଦୁଇ ଶିଙ୍ଗ ଧରଣ ତାର ।
ଏକ ଗୋଡ଼ ତା ଦେହେ ଦେଇ
ବେକ ମୋଡ଼ି ମୁଣ୍ଡ ଛିଣ୍ଡାଇ ।
ତାହାକୁ ଭୂମିରେ ପକାଇ
ହାତକେ ସେ ମୁଣ୍ଡ ବୁଲାଇ ।
କ୍ରୋଧରେ ତା ଫିଙ୍ଗି ଦିଅନ୍ତେ
ଯୋଜନକେ ସେ ଏ ପର୍ବତେ ।
ମାତଙ୍ଗ ଆଶ୍ରମେ ପଡ଼ିଲା
ତହୁଁ ରକତ ବୃଷ୍ଟି ହେଲା ।
ଦେଖି ମାତଙ୍ଗ ମୁନିବର
କ୍ରୋଧେ ବୋଇଲେ ରେ ବାନର ।
ଆଜୁ ଅବଧି ହୋଇ ଯେବେ
ଏଠାକୁ ଆସିବୁ ତୁ କେବେ ।
ମରିବୁ ମୁଣ୍ଡ ଫାଟି ଯାଇ
ସଂଶୟ ଏ କଥାରେ ନାହିଁ ।
ଏରୂପେ ଋଷି ଶାପ ଶୁଣି
ସେହି ଦିନରୁ ବାଳି ଜାଣି ।
ଭୟ କରି ସେ ମରଣକୁ
ନ ଆସନ୍ତି ଏ ପର୍ବତକୁ ।

ତେଣୁ ଅତି ନିର୍ଭୟ ହୋଇ
ମୁଁ ଏ ପର୍ବତେ ଅଛୁ ରହି ।
ଦେଖ ଏ ଦୁନ୍ଦୁଭିର ଶିର
ଦିଶୁଛୁ ପର୍ବତ ଆକାର ।
ଟେକିଣ ଯେବେ ତା ପକାଇ
ଦେଇ ପାରିବ ରଘୁସାଇଁ ।
ତେବେ ଜାଣିମାହେ ରାଘବ
ବାଳିକି ନିଶ୍ଚୟେ ମାରିବ ।
ଏମନ୍ତ କହି ଦୁନ୍ଦୁଭିର
ଦେଖାଇ ଦେଲେ ନେଇ ଶିର ।
ରାମ ଦେଖି ହସି ଚରଣ
ବୁଢ଼ା ଅଙ୍ଗୁଠିରେ ଯାକିଣ ।
ଫିଙ୍ଗି ତା ଦିଅନ୍ତେ ଲୀଳାରେ
ପଡ଼ିଲା ଦଶ ଯୋଜନରେ ।
ସେ କଥା ଅଦ୍ଭୁତ ପ୍ରକାରେ
ସୁଗ୍ରୀବ ମନ୍ତ୍ରୀଙ୍କ ତୁଲରେ ।
ଦେଖିଣ ଅଶ୍ଚର୍ଯ୍ୟ ପାଇଲେ
ରାମଙ୍କୁ ସାଧୁ ସାଧୁ କଲେ ।
ତଦନ୍ତେ ପୁଣି ସେ ସୁଗ୍ରୀବ
ଭଗତବଶ ଯେ ରାଘବ ।
ତାଙ୍କୁ ବୋଇଲେ ହେ ଶ୍ରୀରାମ
ଏ ଯେଉଁ ସାତ ତାଳ ଦ୍ରୁମ ।
ବାଳି ଏଥିଁ ଗୋଟିଏ ପୁଣ
ଧରି ହଲାଇ ଦିଅନ୍ତେଣ ।
ଝଡ଼ି ପଡ଼ଇ ସବୁ ପତ୍ର
ଏକାବେଳେକେ ଯେବେ ମିତ୍ର ।
ବାଣକେ ପାରିବ ଫୁଟାଇ
ତେବେ ବାଳିକି ରଘୁସାଇଁ ।
ମାରିବ ଏମନ୍ତ ବିଶ୍ୱାସ
ମୋ ମନେ ହୋଇବ ଅବଶ୍ୟ ।
ଶୁଣନ୍ତେ ହସି ରଘୁବୀର
ହେଳେ ଛାଡ଼ିଲେ ଏକ ଶର ।
ସପତ ତାଳ ଫୁଟି ବାଣ
ପର୍ବତ ଧରଣୀ ଭେଦିଣ ।
ମିଳିଲା ରାମ ତୂଣୀରରେ
ସୁଗ୍ରୀବ ଏହୁ ଅନନ୍ତରେ ।
ବଡ଼ ବିସ୍ମୟ ମନେ ପାଇ
ଅତି ହରଷଯୁତ ହୋଇ ।
କର ଯୁଗଳ ଦେଇ ଶିରେ
କହିଲେ ଶ୍ରୀରାମ ଛାମୁରେ ।
ତୁ ଜଗନ୍ନାଥ ପରମ୍ବ୍ରହ୍ମ
ଏଥେଁ ସଂଶୟ କିଛି ନାହିଁ ।
ପୂର୍ବେ ମୁଁ ପୁଣ୍ୟ କରିଥିଲି
ତେଣୁ ତୋ ସଙ୍ଗତ ଲଭିଲି ।
ସଂସାରୁ ତରିବା ନିମିତ୍ତେ
ତୋତେଟି ଭଜନ୍ତି ପଣ୍ଡିତେ ।
ମୋକ୍ଷ ସ୍ୱରୂପଟି ଆପଣ
ତୁମ୍ଭଙ୍କୁ ଲଭିବ ଯେ ପୁଣ ।
ସେ ଲୋକ କାହିଁକି ସଂସାର
ଲୋଡ଼ିବ ଅଜ ରଘୁବୀର ।
ରାଜ୍ୟ ବନିତା ଧନ ସୁତ
ଏ ତୁମ୍ଭ ମାୟାରେ ସଂଯୁତ ।
ଅହେ ଦେବେଶ ରଘୁଧାଇଁ
ଏଣୁ ମୁଁ କିଛି ମାଗୁ ନାହିଁ ।
କେବଳ ମାଗୁଛୁ ତୁମ୍ଭଙ୍କୁ
ମୋତେ ପ୍ରସନ୍ନ ହୋଇବାକୁ ।
ମୋ ପୂର୍ବ ଭାଗ୍ୟରୁ ରାଘବ
ପାଇଲି ଆମ୍ଭ ଅନୁଭବ ।
ଯେମନ୍ତ ଭୂମି ଶୋଧୁ ଥାଇ
ସୁନା ଗରଯ୍ୟା ତହିଁ ପାଇ

ଦାନ ତପସ୍ୟା ବ୍ରତ କୀର୍ତ୍ତି
ଯାଗାଦି କର୍ମ ଯେତେ ଛନ୍ତି ।
ଏମାନଙ୍କରେ ନ ଛୁଟଇ
ଯେଣୁ ସେ ଅନାଦି ଅଟଇ ।
ଅବିଦ୍ୟା ବନ୍ଧ ବୋଲି ଯାକୁ
ଅଜ ମୁଁ ଛିଣ୍ଡାଇଲି ତାକୁ ।
ଯେଉଁ ସଂସାର ଜୀର୍ଣ୍ଣ ନୋହି
ଭଜିଲେ ଦୃଢ଼ ହେଉଥାଇ ।
ଯେଣୁ ତୋ ପଙ୍କଜ ପଦର
ଛୁଇଁଲି ନୈଷ୍ଠିକର ବୀର ।
ତତ୍କାଳ ଏ ବେଳ ମୋହର
ନାଶ ହୋଇଛି ଏ ସଂସାର ।
ନିଷ୍କଳ ହୋଇ ବ୍ରହ୍ମଠାଇଁ
ମା ଚିତ୍ତ ଅଧକ୍ଷଣେ ଥାଇ ।
ସମସ୍ତ ଅନର୍ଥ ମାନର
ମୂଳ ଯେ ଅଜ୍ଞାନ ସେ ତାର ।
ବିନାଶ ତତ୍କାଳ ହୋଇ
ଏଣୁ ମୋ ମନ ବ୍ରହ୍ମ ଠାଇଁ ।
ଏ ମୂର୍ତ୍ତିକି ମୋ ହୃଦୟରେ
ହେ ନାଥ ରହୁ ନିରନ୍ତରେ ।
ଶ୍ରୀରାମ ରାମ ଯେ ମୁହୂର୍ତ୍ତେ
ଗାୟନ କରେ ହୃଷ୍ଟ ଚିତ୍ତେ ।
ସେ ବ୍ରହ୍ମହତ୍ୟା ସୁରାପାନ
ଅଜ ସମସ୍ତ ପାପମାନ ।
ଯେବେ ବହୁତ କରିଥାଇ
ସେ ସବୁ ପାପରୁ ତରଇ ।
ଅହେ ଶ୍ରୀରାମ ପଦ୍ମମୁଖ
ରାଜସ୍ୱ ଭାର୍ଯ୍ୟା ରାଜ୍ୟ ସୁଖ ।
ମୁଁ ଏହା ଅଜ ଲୋଡ଼ୁ ନାହିଁ
ସଂସାର ବନ୍ଧକୁ ଛଡ଼ାଇ ।

ଭକ୍ତି ଛୁ ତୋ ପାଦ ଯୁଗଳେ
ଭକତ ଦଅ ସଦାକାଳେ ।
ବ୍ରହ୍ମର ମାୟା ଯୁକ୍ତ ହୋଇ
ଏମନ୍ତ ଯେଉଁ ଭବ ତହିଁ ।
ତହିଁର ଅଂଶ ମୁଁ ଗୋସାଇଁ
ଏ ଯେନ ବ୍ରହ୍ମ ଭକ୍ତି ଦେଇ ।
ଏ ସଙ୍କଟରୁ ରଘୁବୀର
ମୋତେ ଅପଣ ରକ୍ଷାକର ।
ପୂର୍ବେ ତୋ ମାୟାରେ ମୋ ଶତ୍ରୁ
ଅବୃତ ହୋଇ ଶତ୍ରୁ ମିତ୍ର ।
ଈଶ୍ୱର ହେଉଥିଲି ମନେ
ଏବେ ତୋ ପାଦ ଦରଶନେ ।
ସମସ୍ତ ବ୍ରହ୍ମ ହେଲ ମୋତେ
ମନକୁ ହେଉଛି ପରତେ ।
ଏବେ ମୋହର ହେ ରାଘବ
ମିତ୍ର ଅମିତ୍ର କାହୁଁ ହେବ ।
ଯେତେକ ବେଳ ଯାଏ ତୋର
ମାୟାରେ ବଦ୍ଧ ହୋଇ ବୀର ।
ସଂସାରେ ପଡ଼ିଥାଏ ନର
ତେତେକ ବେଳ ଯାଏଁ ତାର ।
ସମ୍ପତ୍ତି ବଡ଼ପଣ ମାନ
ଲୋଡ଼ୁ ଆଇ ସେ ପ୍ରତିଦିନ ।
ମୁଁ ବଡ଼ ବୋଲି ଯେତେବେଳ
ବିଗ୍ରହ ଅଛି ତେତେକାଳ ।
ନାନାପ୍ରକାରେ ଭେଦ ହୋଇ
ଏ ଭେଦ ଯେତେବେଳ ଥାଇ ।
ତାହାର ତେତେବେଳ ଯାଏଁ
କାଳ ସକାଶୁ ଭୟ ହୋଏ ।
ଏ ଯେନ କର ଅବିଦ୍ୟାରେ
ଯେ ପୁଣି ଉପାସନା କରେ ।

ସେ ଲୋକ ନିଶ୍ଚେ ରଘୁସାଇଁ
ଘୋର ନରକେ ପଡ଼େ ଯାଇଁ ।
ରାଜ୍ୟ କଳତ୍ର ପୁତ୍ର ଧନ
ଏଥେ ସେ ହୁଅଇ ବନ୍ଧନ ।
ତହିଁରେ ମାୟା ମୂଳ ହୋଇ
ଏଣୁ ସେ ମାୟାକୁ ଗୋସାଇଁ ।
ବେଗେ ତା ନାଶିବାକୁ ହେଉ
ତୁମ୍ଭ ପାଦେ ମୋ ଭକ୍ତି ଥାଉ ।
ତୁମ୍ଭର କଥା ମୋ ବଚନ
କରୁଥିବ ନିତ୍ୟ ଗାୟନ ।
ତୋ ଭକ୍ତ ସେବାରେ ସଂଯୁତ
ହେଉ ଥାଉ ମୋ ବେନି ହସ୍ତ ।
ଅହେ ଶ୍ରୀରାମ ମୋହ ଅଙ୍ଗ
ତୁମ୍ଭ ଅଙ୍ଗରେ ପାଉ ସଙ୍ଗ ।
ତୁମ୍ଭର ମୂର୍ତ୍ତି ତୁମ୍ଭ ଭକ୍ତ
ଗୁରୁମାନଙ୍କୁ ଦେଖୁ ନେତ୍ର ।
ତୁମ୍ଭର ଜନ୍ମ କର୍ମ ମାନ
ଶୁଣୁ ଥିବ ମୋ ବେନିକର୍ଣ୍ଣ ।
ତୋ ସନମାନ ଯହିଁ ଥିବ
ସେଠାକୁ ମୋ ଚରଣ ଯିବ ।
ତୋ ପାଦରଜରେ ମିଶ୍ରିତ
ଯେ ତୀର୍ଥ ସଲିଳ ଏମନ୍ତ ।
ତହିଁ ଅଙ୍ଗମାନେ ମୋହର
ସ୍ନାନ କରନ୍ତୁ ନିରନ୍ତର ।
ବିଧାତା ଶିବାଦି ଯହିଁରେ
ସେବା କରନ୍ତି ନିରନ୍ତରେ ।
ଏମନ୍ତ ଯେଉଁ ତୋ ପୟର
ତହିଁରେ ସନ୍ତତେ ମୋ ଶିର ।
ନିତ୍ୟେ କରୁଥାଉ ପ୍ରଣାମ
ଏରୂପେ ଅଙ୍ଗ ହେଉ ରାମ ।
ବୋଲଇ ଦାସ ହଳଧର
ସୁଜନେ ଶୁଣ ମୋ ଉତ୍ତର ।
ବେଗେ ଏ ସ୍ତବେ ମନ ଦିଅ
ସୁଗ୍ରୀବ ସମ ଗତି ପାଅ ।
ଇହଲୋକରେ ସୁଖେ ଥିବ
ଅନ୍ତେ ଶ୍ରୀରାମଙ୍କୁ ଲଭିବ ।
ସୁଗ୍ରୀବ ଲକ୍ଷ୍ମଣ ସଂଯୁତ
ଶ୍ରୀରାମ ଚରଣରେ ନିତ୍ୟ ।
ରଜନୀ ଦିବସରେ ମୋର
ସନ୍ତତେ ହେଉ ନମସ୍କାର ।
ଦୁଇଶ ଚୌରାଅଶୀ ପଦ
କାଟୁ ମୋ ସମସ୍ତ ଆପଦ ।
ସୁଜନେ ଭଜ ରାମ ପାଦ
ଅନ୍ତେ ଲଭିବ ମୋକ୍ଷପଦ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ କିଷ୍କିନ୍ଧ୍ୟାକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ସଦାଶିବ
ଏମନ୍ତ କହନ୍ତେ ସୁଗ୍ରୀବ ।
ଅହେଣା ଅଲିଙ୍ଗନେ ହତ
ହୋଇଛୁ ସମସ୍ତ ଦୁରିତ ।

ଏମନ୍ତ ସୁଗ୍ରୀବଙ୍କ ଶୁଣି
ଅପଣା କାର୍ଯ୍ୟ ସିଦ୍ଧି ପାଇଁ ।
ତାଠାରେ ମାୟାକୁ ବିସ୍ତାରି
ହସି କହିଲେ ରାବଣାରି ।
ହେ ସଖା କହିଲ ଯେମନ୍ତ
ସେ କଥା ସେହି ରୂପେ ସତ ।
କେବଳ ଲୋକମାନେ ମୋତେ
ଏମନ୍ତ ବୋଲିବେ ସମସ୍ତେ ।
ଶ୍ରୀରାମଚନ୍ଦ୍ର ସୁଗ୍ରୀବଙ୍କୁ
ମିତ୍ର କଲେ ସଖା ହୋଇ ତାଙ୍କୁ ।
ଏ ଅପବାଦ ମୋତେ ହେବ
ଏଣୁ ଅପଣେ ଯିବା ହେବ ।
ବାଳିଙ୍କ ଯୁଦ୍ଧ ନିମିତ୍ତରେ
ଡାକିବା ହେବ ଅତି ଖରେ ।
ଏକଶରକେ ମାରି ତାଙ୍କୁ
ସେ ରାଜ୍ୟ ନୃପତି ତୁମ୍ଭଙ୍କୁ ।
କରିବି ବୋଲନ୍ତେ ରାଘବ
କିଷ୍କିନ୍ଧ୍ୟାକୁ ଯାଇ ସୁଗ୍ରୀବ ।
ବଡ଼ ଶବଦମାନ କଲେ
ବାଳିଙ୍କ ଯୁଦ୍ଧକୁ ଡାକିଲେ ।
ଭାଇର ଶୁଣନ୍ତେ ଗର୍ଜନ
କ୍ରୋଧରେ ହୋଇ ରକ୍ତାନନ ।
ପୁରୁ ବେଗେ ବାହାର ହେଲେ
ସେଠାରେ ପ୍ରବେଶ ହୋଇଲେ ।
ସୁଗ୍ରୀବ ଦେଖି କ୍ରୋଧ ହୋଇ
ଶ୍ରୀରାମ ସହାୟ ଯେ ପାଇ ।
ଅଗ ବାଳିଙ୍କ ହୃଦସ୍ଥଳେ
ମୁଥ ଯୋଡ଼ିଏ ପ୍ରହାରିଲେ ।
ବାଳି ହି ସେହି ପ୍ରକାରରେ
ମାରିଲେ ସୁଗ୍ରୀବ ହୃଦରେ ।

ଏମନ୍ତ ପ୍ରକାରେ ବହୁତ
ଯୁଦ୍ଧ କରନ୍ତେ ବେନି ଭ୍ରାତ ।
ସେ ଦୁଇଙ୍କର ଏକ ମୂର୍ତ୍ତି
ଏମନ୍ତ ଦେଖି ରଘୁପତି ।
ମିତ୍ର ମରିବା ଡରେ ଶର
ବାଳିଙ୍କି ନ କଲେ ପ୍ରହାର ।
ସୁଗ୍ରୀବ ଏଥୁ ଅନନ୍ତରେ
ରକତ ବାନ୍ତି କରି ଖରେ ।
ମନରେ ମହାଭୟ କଲେ
ଋଷ୍ୟମୂକକୁ ପଳାଇଲେ ।
ନିଜ ପୁରକୁ ବାଳି ଗଲେ
ରାମ ସୁଗ୍ରୀବ ଠାରେ ହେଲେ ।
ସୁଗ୍ରୀବ ବୋଲେ ସୀତାକାନ୍ତ
ଶତ୍ରୁ ତ ମୋହର ସେ ଭ୍ରାତ ।
ତା ହସ୍ତେ କିପାଇଁ ରାଘବ
ଦେବାକୁ ହେଲ ପରାଭବ ।
ମାରିବ ବୋଲି କରି ଯେବେ
ମନରେ ନିଷ୍ଠେ ଥିଲ ତେବେ ।
ଏରୂପେ କିପାଁ ଅଚରିଲ
ତୁମ୍ଭେ କିପାଁ ମୋତେ ନ ମାର
ସତ୍ୟବାଦୀ ତ ଅଟ ପୁଣ
ଶରଣବତ୍ସଳ ଅପଣ ।
ମୋ ଅଗେ ସତ୍ୟ କରଥିଲ
ଏବେ ତା କିପାଇଁ ତେଜିଲ ।
ଏମନ୍ତ ଶୁଣି ରଘୁବୀର
ଶୋକେ ବହନ୍ତି ଅଶ୍ରୁଧାର ।
ଏରୂପେ କରି ଅଲିଙ୍ଗନ
କହିଲେ ସ୍ନେହରେ ବଚନ ।
ହେ ସଖା ମୋଠାରେ ତୁମ୍ଭର
ମନରେ ଭୟକୁ ନ କର ।

ଏକ ମୂର୍ତ୍ତି ତ ଦୁହିଁଙ୍କର
ଦେଖି ତା ଭୟ ହେଲା ମୋର ।
ମିତ୍ର ତେଜଇ ନିଜ ପ୍ରାଣ
ଏ ଯେଣି ନ ମାରିଲ ବାଣ ।
ଏବେ ଭ୍ରମ ନୋହିବା ପାଇଁ
ଚିହ୍ନ କରିବା ତୁମ୍ଭ ଠାଇଁ ।
ଆଉଥରେ ଡାକ ଆପଣ
ଏବେ ମଲ୍ଲ ସେ ବୋଲି ଜାଣ ।
ମିଥ୍ୟା ନ କହଇ ମୁଁ ରାମ
ଏଥର କରୁଛି ନିୟମ ।
ତୁମ୍ଭ ଶତ୍ରୁ ବାଳିଙ୍କ ନାଶ
କରିବି କ୍ଷଣକେ ଅବଶ୍ୟ ।
ଏମନ୍ତ ରୂପେ ରାବଣାରି
ମିତ୍ରଙ୍କୁ ଆଶ୍ୱାସନା କରି ।
ଲକ୍ଷ୍ମଣ ମୁଖକୁ ଚାହିଁଲେ
ତାଙ୍କୁ ଏମନ୍ତ ଆଜ୍ଞା ଦେଲେ ।
ବେଗେ ସୁଗ୍ରୀବ ବକ୍ଷସ୍ଥଳେ
ବାନ୍ଧଣ ଦେଇ ପୁଷ୍ପମାଳେ ।
ସେ କିଷ୍କିନ୍ଧ୍ୟାକୁ ବାଳିଠାକୁ
ପେଷ ହେ ବହନ ଏହାଙ୍କୁ ।
ଏ ଯେଣି କରି ପୁଷ୍ପମାଳେ
ବାନ୍ଧି ଦେଇ ତା ବକ୍ଷସ୍ଥଳେ ।
ଲକ୍ଷ୍ମଣ ତୋଷ କରି ତାଙ୍କୁ
ପଠାଇଲେ କିଷ୍କିନ୍ଧ୍ୟାକୁ ।
ସୁଗ୍ରୀବ ବେଗେ ଯାଇ ପୁଣ
ଡାକିଲେ ଅଦ୍ଭୁତ କରଣ
ଶୁଣି ବିସ୍ମୟ ବାଳି ହୋଇ
ବହୁତ କ୍ରୋଧ ଚିତ୍ତେ ବହି ।
କଚ୍ଛରେ ବାନ୍ଧଣ ବସନ
ସତ୍ୱରେ କରନ୍ତେ ଗମନ ।

ତାରା ଏମନ୍ତ ଦେଖି ବେଗେ
ମିଳି ଓଗାଳି ବାଳିଆଗେ ।
ଭୋ ସ୍ୱାମି ନ ଯାଅ ଏଥର
ହେଉଛି ବହୁ ଭୟ ମୋର ।
ଏକ୍ଷଣେ ଯେ ପଳାଇ ଥିଲା
ପୁଣି ସେ ଡକାଲେ ଅଇଲା ।
ସମର୍ଥ କଣେ ଅବା କେହି
ରଖିବ ତାକୁ ସାହା ହୋଇ ।
ଶୁଣି ତା ବାଳି ବୋଲେ ସଖି
ଶଙ୍କା ନ କର ଚନ୍ଦ୍ରମୁଖି ।
ବାଟ ଛାଡ଼ ମୁଁ ବେଗେ ଯିବି
କ୍ଷଣକେ ସଂହାରି ଆସିବି ।
ସହାୟ କାହୁଁ ତା ଆସିବ
ତଥାପି କେହୁ ଯେବେ ଥିବ ।
ତେବେ ମୁଁ ନିଶ୍ଚୟ ସୁଗ୍ରୀବ
ସଙ୍ଗତେ ହରିବ ତା ଜୀବ ।
ଯେ ନିଷ୍ଟେ ଶୂର ହୋଇଥିବେ
ତାହାଙ୍କୁ ଅମିତ ଡାକିବ
ସେ ପୁଣି ରହଇ ମନ୍ଦରେ
ଏହା ବିଚାର ତ ମନରେ
ଅଶଙ୍କା ନ କର ହୃଦରେ
ଆସିବି ତାକୁ ମାରି ଖରେ ।
ବାଳି ବଚନ ତାରା ଶୁଣି
ଦୁଃଖେ କହିଲା ତାଙ୍କୁ ପୁଣି ।

ତାରୋବାଚ

ଅହେ ରାଜେନ୍ଦ୍ର ମୋ ଉତ୍ତର
ଶୁଣି ତା ଯାହା ଇଚ୍ଛା କର ।
ଅଙ୍ଗଦ ବନେ ମୃଗୟାରେ
ଶୁଣି କହୁଛି ମୋ ଆଗରେ ।

ଅଯୋଧ୍ୟା ରାଜ୍ୟ ନରନାଥ
ତାହାଙ୍କ ନାମ ଦଶରଥ ।
ରାମ ନାମେ ତା ଜ୍ୟେଷ୍ଠ ପୁତ୍ର
ବଡ଼ ସୁନ୍ଦର ଗୁଣବନ୍ତ ।
ଲକ୍ଷ୍ମଣ ନାମେ ତାଙ୍କ ଭାଇ
ଭାର୍ଯ୍ୟା ତାଙ୍କର ବଇଦେହୀ ।
ଶ୍ରୀରାମ ସେ ଦୁହିଁଙ୍କ ତୁଲେ
ଦଣ୍ଡକ ବନକୁ ଆଇଲେ ।
ସୀତାଙ୍କୁ ହରିଲା ରାବଣ
ଏ ବେନି ଶ୍ରୀରାମ ଲକ୍ଷ୍ମଣ ।
ତାହାଙ୍କୁ ଖୋଜି ଆସିବାରେ
ମିଳିଲେ ସେ ଋଷ୍ୟମୂକରେ ।
ତାହାଙ୍କୁ ଆଣି ହନୁମନ୍ତ
ସୁଗ୍ରୀବ ତୁଲେ କଲେ ମିତ ।
ସୁଗ୍ରୀବ ଅଗ୍ନି ସାକ୍ଷ୍ୟ କଲେ
ରାମ ସଙ୍ଗତେ ମିତ୍ର ହେଲେ ।
ପ୍ରତିଜ୍ଞା କଲେ ରଘୁବୀର
ପ୍ରହାର କରି ଏକଶର ।
ବାଳିକି ନିଶ୍ଚୟେ ମାରିବି
ତୁମ୍ଭଙ୍କୁ ନୃପତି କରିବି ।
ଏକଥା କରିଣ ନିୟମ
ଆସିଛନ୍ତି ସୁଗ୍ରୀବ ରାମ ।
ହେ ନାଥ ଏକଥା ନିଶ୍ଚୟ
ଏଥିରେ ନ କର ସଂଶୟ ।
ନୋହିଲେ ଏହିକ୍ଷଣି ଗଲା
ପୁଣି କେମନ୍ତେ ସେ ଆଇଲା ।
ବଇର ଛାଡ଼ି ନୃପମଣି
ବହନ ସୁଗ୍ରୀବଙ୍କୁ ଆଣି ।
ଯୁବରାଜ୍ୟରେ ତାଙ୍କୁ ବୀର
ବହନ ଅଭିଷେକ କର ।

ଶ୍ରୀରାମଚନ୍ଦ୍ର ଚରଣରେ
ଶରଣାପନ୍ନ ହୁଅ ଖରେ ।
ମୋତେ ଅଙ୍ଗଦକୁ ଏ ପୁର
ରାଜ୍ୟ ସହିତେ ରକ୍ଷାକର ।
ଏମନ୍ତେ କହି ମହାଦେଇ
ନେତ୍ରୁ ଝାଳନ୍ତି ଲୁହ ବହି ।
ପଡ଼ି ସେ ବାଳିଙ୍କ ପୟରେ
ଚରଣ ଧରି ବେନି କରେ ।
ବହୁତ ବିକଳ ହୋଇଣ
ବିଳାପ କରନ୍ତେ ସେ ପୁଣ ।
ବାଳି ତାଙ୍କୁ ତୋଳି ବହନ
ସ୍ନେହରେ କରି ଆଲିଙ୍ଗନ ।
କରେ ନୟନ ପୋଛି ଦେଲେ
ପ୍ରୀତରେ ଏମନ୍ତ କହିଲେ ।
ପ୍ରିୟା ସ୍ୱଭାବେ କରି ତୁହି
ଭୟ ପାଉଅଛ ଗୋ ସହି ।
ଆମ୍ଭର ଏ କଥାରେ ପ୍ରିୟେ
ଭୟ ତ ନୋହୁଛି ତିଳାଏ ।
ଲକ୍ଷ୍ମଣ ତୁଲେ ରଘୁପତି
ଯେବେ ଏଠାକୁ ଆସିଛନ୍ତି ।
ଜାଣିମା ହେଉ ସେହି ତେବେ
ମୋଠାରେ ସ୍ନେହ ଯେ କରିବେ ।
ରାମ ସାକ୍ଷାତ ନାରାୟଣ
ଜଗତର ପ୍ରଭୁ ସେ ପୁଣ ।
ତାଙ୍କ ବିଷୟ ଅମ୍ଭେ ପୁଣି
ପୂର୍ବ କାଳରୁ ଅଛୁ ଶୁଣି ।
ନାଶିବା ପାଇଁ ଭୂମି ଭାର
ହୋଇଅଛନ୍ତି ଅବତାର ।
ପରମ ଆତ୍ମା ସେ ଅଟଇ
ପର ଆପଣା ତାର ନାହିଁ ।

ଏଣୁ ତାହାଙ୍କ ଚରଣରେ
ନମସ୍କାର ହିଁ କର ଗରେ ।
ଯେନ ଅସିବା ମନ୍ଦରକୁ
ପ୍ରୀତରେ ପୂଜିବା-ତାହାଙ୍କୁ ।
ଭକ୍ତର ବଶ ସେ ଅଟନ୍ତି
ଯେ ତାଙ୍କୁ ଯେମନ୍ତ ଭଜନ୍ତି ।
ତହିଁକି ଅନୁରୂପ ହୋଇ
ସେ ପୁଣି ତାହାଙ୍କୁ ଲଭଇ ।
ସୁଗ୍ରୀବ ଯୁଦ୍ଧ ପାଇଁ ଯେବେ
ଆସିଛୁ ସହୋଦର ତେବେ ।
ଯାହା କହିବା ହେଲ ତାକୁ
ଯୁବରାଜ୍ୟରେ କରିବାକୁ ।
ଆସିଛୁ ସେ ଯୁଦ୍ଧ ନିମିତ୍ତେ
ଏ ରୂପେ ଡାକୁଅଛୁ ମୋତେ ।
ମୋତେ ତ ସମସ୍ତ ଜଗତେ
ସମର୍ଥ ବୋଲନ୍ତି ସମସ୍ତେ ।
ଏବେ ଭସ୍ମାନ୍ତ ପ୍ରାୟେ ହୋଇ
କେମନ୍ତେ ରହିବ ଗୋ ସହି ।
ଏଣୁ ସୁମୁଖୀ ଶୋକ ଛାଡ଼
ପୁରକୁ ଯାଅ ଯା ବାହୁଡ଼ ।
ବହୁଛି ଶୋକେ ଅଶ୍ରୁଧାର
ଏମନ୍ତେ ତାରାଙ୍କ ଅପାର ।
ସେ ଅଶ୍ୱାସନା କରି ତହିଁ
ପୁରକୁ ପଠିଅଇ ଦେଇ ।
ମାରିବା ପାଇଁ ସୁଗ୍ରୀବକୁ
କ୍ରୋଧେ ବେଗେ ଗଲେ ସେଠାକୁ ।
ସୁଗ୍ରୀବ ବାଳିଙ୍କି ଯେ ଗୃହିଁ
ବହୁତ କ୍ରୋଧଚିତ୍ତ ହୋଇ ।
କୁସୁମ ମାଳା ଅଛୁ ଉରେ
ବିହଙ୍ଗ ପ୍ରାୟେ ହୋଇ ଝରେ ।

ସେ ବଳୀ ବାଳି ହୃଦସ୍ଥଳେ
ମୁଷ୍ଟି ଯୁଗଳ ପ୍ରହାରିଲେ ।
ବାଳି ସୁଗ୍ରୀବ ହୃଦୟରେ
ମାରିଲେ ମୁଷ୍ଟି ସେ ପ୍ରକାରେ ।
ସୁଗ୍ରୀବ ରାମଙ୍କୁ ଗୃହିଁଲେ
ବାଳିଙ୍କ ସଙ୍ଗେ ଯୁଦ୍ଧ କଲେ ।
ସେ ଦୁହେଁ ଏକ ଆକାରରେ
ଯୁଝନ୍ତେ ଏମନ୍ତ ପ୍ରକାରେ ।
ଏମନ୍ତ ଦେଖି ରଘୁବୀର
ବେଗେ ତୂଣୀରୁ କାଢ଼ି ଶର ।
ତା ଇନ୍ଦ୍ର ଅସ୍ତ୍ରରେ ମନ୍ତ୍ରିଲେ
କୋଦଣ୍ଡ ଗୁଣରେ ସନ୍ଧିଲେ ।
ଓଟାର କର୍ଣ୍ଣପାଏ ନେଇ
ବୃକ୍ଷ ମଧ୍ୟେ ଅଦୃଶେ ଥାଇ
ବାଳିଙ୍କ ଗୃହିଁ ରାବଣାରି
ତା ହୃଦ ମଧ୍ୟ ଲକ୍ଷ୍ୟ କରି ।
କୁଳିଶ ସମ ଯେଉଁ ଶର
ପ୍ରହାର କରନ୍ତେ ତା ବୀର ।
ପୃଥ୍ୱୀ କମ୍ପାଇ ସେହୁ ଶରେ
ଭେଦନ୍ତେ ବାଳି ହୃଦୟରେ ।
ସେ ଧ୍ୱନିଟାଏ ବଡ଼ କଲେ
ଜଗୁଇ ଭୂମିରେ ପଡ଼ିଲେ ।
କିଛି ବେଳ ସେ ମୋହ ଯାଇ
ପୁଣି କ୍ଷଣକେ ଜ୍ଞାନ ପାଇ ।
ଦେଖିଲେ ଅଗ୍ରେ ଛନ୍ତି ରାମ
ମର୍କତ ମଣି ପ୍ରାୟେ ଶ୍ୟାମ ।
ପଙ୍କଜ ପଲ୍ଲବ ନୟନ
ବାମ ଭୁଜରେ ଶରାସନ ।
ମାର୍ଗଣ ଦକ୍ଷିଣ କରରେ
ବଳ୍କଳ କଟିପ୍ରଦେଶରେ ।

ଜଟା ମୁକୁଟ ଧରି ଶିର
ଦିଶୁଛନ୍ତି ପରମ ରୁଚିର ।
ହୃଦୟ ବିସ୍ତାର ପୃଥୁଳ
ତହିଁ ଲମ୍ବିଛି ବନମାଳ ।
ସ୍ଥୂଳ ସୁନ୍ଦର ଲମ୍ବ ତେଜ
ଏ ରୂପେ ଦିଶେ ବେନି ଭୁଜ ।
ତାହାଙ୍କ ବେନିପାର୍ଶ୍ୱେ ଶେଣ
ଅଛନ୍ତି ସୁଗ୍ରୀବ ଲକ୍ଷ୍ମଣ ।
ବାଳି ଏ ପ୍ରକାରେ ରାମଙ୍କୁ
ଦେଖନ୍ତେ ନିନ୍ଦା କଲେ ତାଙ୍କୁ ।
ହେ ରାମ ମାଇଲ ଯେ ମୋତେ
କି ଅପକାର କଲି ତୋତେ ।
ତୁ ତ ନ ଜାଣୁ ରାଜ ଧର୍ମ
ନିଶ୍ଚୟେ କଲୁ ନିନ୍ଦ୍ୟ କର୍ମ
ସତ୍ୟ ଯୋଧ୍ୱ ତୁ ଅଟୁ ଯେବେ
ବୃକ୍ଷରେ ଲୁଚି ଯାହା ଏବେ ।
ମାରିଲୁ ଚୋର ପ୍ରାୟେ ହୋଇ
ଅମ୍ଭ ଅଗ୍ରରେ ଛିଡ଼ା ନୋହି ।
ଏଥିରୁ କିବା ହେ ରାଘବ
ବଡ଼ ଅପକୀର୍ତ୍ତି ପାଇବ ।
ଯେବେ କ୍ଷତ୍ରିୟ ପୁତ୍ର ରାମ
ହୋଇଛ ମନୁ ବଂଶେ ଜନ୍ମ ।
ତେବେ ମୋ ଅଗେ ଯୁଦ୍ଧ କଲେ
ଲଭନ୍ତ ଏ ଫଳକୁ ଭଲେ ।
କି କାର୍ଯ୍ୟ କଲା ଏ ସୁଗ୍ରୀବ
ଅମ୍ଭେ କି ନ କଲୁ ରାଘବ ।
ବନରେ ଭାର୍ଯ୍ୟାକୁ ତୁମ୍ଭର
ହରଣ ନେଲା ଦଶଶିର ।
ଏଣୁ ସୁଗ୍ରୀବକୁ ଅପଣ
ପଶିବା ହୋଇଛ ଶରଣ ।
ଏମନ୍ତ କରି ଅମ୍ଭେ ପୁଣି
ତୁମ୍ଭ ବିଷୟ ଅଛୁ ଜାଣି ।
ଲୋକରେ ଖ୍ୟାତ ମୁଁ ଅଟଇ
ତୁମ୍ଭେ ମୋ ବଳ ଜାଣ ନାହିଁ ।
ଇଚ୍ଛା କରନ୍ତ ତୁମ୍ଭେ ଯେବେ
ଦଶାନନକୁ ବାନ୍ଧି ତେବେ ।
ସବଂଶ କଟଣ ଅଣନ୍ତି
ଏହିଠାରେ ହେ ରଘୁପତି
ସୀତାଙ୍କୁ ସେ ଲଙ୍କା ସହିତେ
ଦିଅନ୍ତି ମୁହୂର୍ତ୍ତିକେ ତୋତେ ।
ଧର୍ମାତ୍ମା ବୋଲାଉ ତୁ ଯେବେ
କିମ୍ପାଧ ପରାୟେ କରି ଏବେ ।
ମର୍କଟ ଗୋଟାଏ ମାଇଲ
ଏଥୁ ପାଇଲୁ କେଉଁ ଫଳ ।
ଅମ୍ଭର ମାଂସ ତ ଜଗତେ
ଅଭକ୍ଷ ବୋଲନ୍ତି ସମସ୍ତେ ।
ମୋତେ ଯେ ମାଇଲ ରାଘବ
ଏହା କି କରିବା ହୋଇବ ।
ଏ ରୂପେ ବହୁତ ରାମଙ୍କୁ
କହୁ ଯେ ଥିଲା ବାଳି ତାଙ୍କୁ ।
ରାମ ବୋଇଲେ ହେ ବାନର
ଅମ୍ଭେ ଯେ ରକ୍ଷକ ଧର୍ମର ।
କୋଦଣ୍ଡ କାଣ୍ଡ ଧରି କରେ
ଏ ରୂପେ ବୁଲୁ ସବୁଠାରେ ।
ଅଧର୍ମିଲୋକଙ୍କୁ ସଂହାରୁ
ଧର୍ମ ପରିପାଳନା କରୁ ।
ଭଗିନୀମାନେ ବଧୂ ସୁତା
ଭାଇମାନଙ୍କର ବନିତା ।
ଏତେକ ଯାକ କପିପତି
ସମସ୍ତେ ସମାନ ଅଟନ୍ତି ।

ଏଥିଁ ଜଣଙ୍କ ସଙ୍ଗତରେ
ରମଣୀକରେ ଯେ ମୋହରେ ।
ପାପିଷ୍ଠ ସେ ଲୋକ ବୋଲାଇ
ରାଜାର ସେ ବଧ୍ୟ ଅଟଇ ।
ଅନୁଜବନିତାଙ୍କୁ ନେଇ
ବଳେ ହରିଲ୍ ମୋହ ହୋଇ ।
ଯେଣୁ ମୁଁ ଜାଣଇ ଧର୍ମକୁ
ସେ ଯେଣୁ ମାଇଲ ତୁମ୍ଭଙ୍କୁ ।
ବାନର ଯେଣୁ ତୁମ୍ଭେ ପୁଣ-
ଏ ଯେଣୁ କହୁଛି ନ ଜାଣ ।
ଅମ୍ଭମାନଙ୍କ ଗତାଗତ
ପାପୀଙ୍କି ପବିତ୍ର କରନ୍ତି ।
ଏମନ୍ତ ତେଣୁ କହି କଲ୍
ତୁମ୍ଭଙ୍କୁ ନ କହି ମାଇଲ୍ ।
ଯେଣୁ ଜାଣିଲେ ବାଳି ପୁଣ
ରାମ ନିଶ୍ଚେ ରମାରମଣ ।
ଏ ଯେଣୁ ନମସ୍କାର କଲେ
ଏମନ୍ତ ବଚନ କହିଲେ ।
ହେ ରାମ ହେ ରାମ ହେ ବୀର
ଜାଣିଲି ତୁ ପରମେଶ୍ୱର ।
ନ ଜାଣି ବୋଇଲି ମୁଁ ଯାହା
କ୍ଷମା କରିବା ହେଉ ତାହା ।
ସାକ୍ଷାତ ବାଜିଲା ତୋ ଶରେ
ଦୁର୍ଲ୍ଲଭ ଦର୍ଶନ ତୁମ୍ଭର ।
ବଂଶଯେ ତୁମ୍ଭ ଆଗେ ବୀର
ଯାଉଛି ଜୀବନ ମୋହର ।
ଅଣ ଅଯୁକ୍ତେ ନାମ ତୋର
ଧରି ଯେ ତେଜଇ ଶରୀର ।
ଦିବ୍ୟ ବିମାନେ ଯୁକ୍ତ ହୋଇ
ପରମ ପଦ ସେ ଲଭଇ ।

ସାକ୍ଷାତ ଏବେ ମୋ ଅଗରେ
ରହିଛ ମୃତ୍ୟୁ ସମୟରେ ।
ଏଣୁ କର ହେ ରଘୁବୀର
ଏ କଥା କି ଭାଗ୍ୟ ମୋହର ।
ଆପଣ ବସ୍ତୁ ଶ୍ରୀ ବୈଦେହୀ
ରାବଣ ବଧ ହେବା ପାଇଁ ।
ବିଧାତା ମାଗିଲାକୁ ରାମ
ମହୀରେ ଆସି ହେଲ ଜନ୍ମ ।
ଏମନ୍ତ ପୂର୍ବୁଁ ଜାଣିଅଛି
ଏବେ ତୋ ପଦକୁ ଯାଉଛି ।
ଏ ରୂପେ କର ଅବଧାନ
ଅଳ୍ପ ଶୁଣ ମୋ ବଚନ ।
ମୋହ ସମାନେ ଅଟେ ବୀର
ବାଳକ ଅଙ୍ଗଦ ମୋହର ।
ଏ ଯେଣୁ ତାଠାରେ ରାଘବ
ସୁଦୟା କରିବା ହୋଇବ ।
ଶ୍ରୀହସ୍ତେ ଛୁଇଁ ମୋତେ ବୀର
ବେଗେ ବାଣଟି କର ଶର ।
ରାମ ସେ ବାଣ ଉତ୍ପାରିଲେ
ଶ୍ରୀ ହସ୍ତେ ତାହାଙ୍କୁ ଛୁଇଁଲେ ।
କପି ଶରୀର ସେ ଛାଡ଼ିଲେ
ବେଗେ ଦେବତା ଶ୍ରେଷ୍ଠ ହେଲେ
ବାଳିଙ୍କ ହୃଦେ ଶ୍ରୀରାମର
ବାଜି ତ ଥିଲା ଦିବ୍ୟ ଶର ।
ଶୀତଳ ହସ୍ତ ଅଟେ ଯାର
ସ୍ଥାନ ଯେ ସମସ୍ତ ସୁନ୍ଦର ।
ଏମନ୍ତ ଶ୍ରୀରାମ ଶ୍ରୀକରେ
ଛୁଅନ୍ତେ ତାଙ୍କ ସୁଦୟାରେ ।
ସେକ୍ଷଣି ତେଜି କଳେବର
ଲଭିବାର ନୋହେ କାହାର ।

ପରମହଂସ ମାନଙ୍କର
ଦୁଃଖରେ ଲଭ୍ୟ ଏ ପ୍ରକାର ।
ସେଓଁ ପରମ ପଦ ତାହା
ସୁଖେ ଲଭିଲେ କପି ନାହା ।
ଅଧ୍ୟାତ୍ମ ପୁରାଣ ଚରିତ
ଶୁଣିଲେ ପାପ କରେ ହତ ।
ମାଗଇ ହଳଧର ଦାସ
ସୁଜନେ କ୍ଷମା କର ଦୋଷ ।
ସୀତା ଲକ୍ଷ୍ମଣ ଯୁକ୍ତେ ରାମ
ଚରଣେ କରୁଛି ପ୍ରଣାମ ।
ଅଧ୍ୟା ଏ ଶତାଅଣୀ ପଦ
ଏ ମୋର ସମସ୍ତ ସମ୍ପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
କିଷ୍କିନ୍ଧ୍ୟା କାଣ୍ଡେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

## ତୃତୀୟ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶିବ ବୋଲନ୍ତି ଉମା ଶୁଣ
ଏମନ୍ତେ ବାଳି ମରନ୍ତେଣ ।
ମର୍କଟମାନେ ଭୟ ପାଇ
ଅଜ୍ଞାନ ହୋଇ ସେ ପଳାଇ ।
ପ୍ରବେଶ ହୋଇ ନିଜ ପୁରେ
କହିଲେ ତାରାଙ୍କ ସମ୍ମୁରେ ।
ଭୋ ଦେବି ଘୋର ଯୁଦ୍ଧ କଲେ
ବାଳି ଯେ ଜୀବନ ତେଜିଲେ ।
ଏବେ ଏ ଅଙ୍ଗଦଙ୍କୁ ତୋର
ମହା ଭୟରୁ ରକ୍ଷାକର ।
ଡକାଇ ସଚିବମାନଙ୍କୁ
ଅଜ୍ଞାଦେବାକୁ ହେଳ ତାଙ୍କୁ ।
କବାଟ ଗୃହଦ୍ୱାରେ ଦେଇ
ସମସ୍ତ ଦ୍ୱାର ରଖିଥାନ୍ତୁ ।
କପିମାନଙ୍କ ମଧ୍ୟେ ତୋର
ଅଙ୍ଗଦଙ୍କୁ ନୃପତ କର ।
ଏମନ୍ତ ଶୁଣି ମହାଦେଇ
ଶୋକେ ପଡ଼ିଲେ ମୋହ ଯାଇ ।
ପୁଣି କ୍ଷଣକେ ମୋହ ଛାଡ଼ି
ଶିର ହୃଦରେ କର ତାଡ଼ି ।
ବୋଲେ ଅଙ୍ଗଦ ଧନ ରାଜ୍ୟ
ଏଥିରେ ଅଛି ମୋ କି କାର୍ଯ୍ୟ ।
ପତିର ସଙ୍ଗତେ ଦହନ
ତେଜିବି ନିଶ୍ଚେ ମୋ ଜୀବନ ।
କହି ସେ କରନ୍ତି ଗମନ
ପିଟି ଯାଉଛି କାନମାନ ।
କରୁ ଅଛନ୍ତି ଉଚ୍ଚେ ଶୋକ
କହୁଛି ନୟନୁ ଲୋତକ ।
ଯାଇ ସେ ଏମନ୍ତ ପ୍ରକାରେ
ବାଳି-ଶରୀର ଥିବା ଠାବେ ।
ସତ୍ୱରେ ପ୍ରବେଶ ହୋଇଲେ
ତାହାଙ୍କୁ ଏରୁପେ ଦେଖିଲେ ।
ବୋଲି ହୋଇ ସେ ରକ୍ତଧୂଳି
ଭୂମିରେ ପଡ଼ି ଅଛି ବାଳି ।
ହା ନାଥ ହା ହା ନାଥ ବୋଲି
କାନ୍ଦିଲା ସାଉଁଟି ଭୂଲୁଲି ।

ପଡ଼ି ବାଲିଙ୍କ ଚରଣରେ
ରାମଙ୍କୁ ଦେଖି ସେ ଅଗରେ ।
ପୁଣି ଅନେକ ଶୋକ କଲେ
ତାହାଙ୍କ୍ ଏମନ୍ତ କହିଲେ ।
ହେ ରାମ ବିନ୍ଧ ଯେଉଁ ଶର
ପତିଙ୍କି ମାରିଲ ମୋହର ।
ମୋତେ ହେ ମାର ସେହି ବାଣ
ବେଗେ ହରିବା ହେଉ ପ୍ରାଣ ।
ପତି ପାଲେଛ୍ୟ ଏବେ ମୋର
ଇଚ୍ଛା ହେଉଛି ରଘୁବୀର ।
ବାଳି ସେଠାରେ ଯାଇଁ ମୋତେ
ଦେଖିଣ ଥିବେ ଯେ ନିରତେ ।
ତାଙ୍କର ମୋ ନଥିଲି ଠାରେ
ସୁଖ ହେବ ନାହିଁ ସ୍ୱର୍ଗରେ ।
ବନିତା ବିଚ୍ଛେଦ ରାଘବ
କରୁ ତ ଅଛ ଅନୁଭବ ।
ଏଣୁ ବାଳିଙ୍କି ମୋତେ ଦିଅ
ବନିତା ଦାନ ଫଳ ପାଅ ।
ପୁଣି ବୋଇଲେ ହେ ସୁଗ୍ରୀବ
ବାଳିଙ୍କ ମାରି ତ ରାଘବ ।
ତୁମ୍ଭଙ୍କୁ ଦେଲେ ରାଜ୍ୟ ପୁର
ରୁମା ସହିତେ ଭୋଗ କର ।
ଏମନ୍ତ ରୂପେ ତାରାଙ୍କର
ବିଳାପ ଦେଖି ରଘୁବୀର ।
ତାହାଙ୍କଠାରେ ଦୟାବନ୍ତ
ବୋଧିଲେ ତତ୍ତ୍ୱ ଜ୍ଞାନ କହି ।
ବ୍ୟର୍ଥରେ ତୁ ଏମନ୍ତ ହୋଇ
ଶୋକ କରୁଛୁ କାହିଁପାଇଁ ।
ପଡ଼ିଛି ଏ ଯେଉଁ ଶରୀର
ଏହି ତୁମ୍ଭର ନିଜ ବର ।
କି ଏଥେ ଥିଲା ଯେଉଁ ଜୀବ
ତାହାକୁ ବୋଲି ତୁ ମୋ ଧବ ।
ଦେହ ବୋଲାଇ ଯେବେ କାନ୍ତ
ସେ ପଞ୍ଚଭୂତମୟ ଶାନ୍ତ ।
ସନ୍ତତ ଯେଉଁ ହାଡ଼ ରକ୍ତ
ମାଂସ ଚର୍ମରେ ହୋଇ ଯୁକ୍ତ ।
କାଳରେ କର୍ମରେ ଗୁଣରେ
ଜନ୍ମ ହୋଇଛି ଅବନୀରେ ।
ଏମନ୍ତ ଦେହ ତ ଏଠାଇଁ
ପଡ଼ିଛି ଶୋକ କାହିଁପାଇଁ ।
ଯେବେ ଜୀବକୁ ବୋଲି ପତି
ତେବେ ଶୁଣ ଗୋ ତାହା ସ୍ଥିତି ।
ଜନ୍ମ ନୁହଇ ନ ମରଇ
ନ ଥାଇ କାହିଁକି ନ ଯାଇ ।
ସ୍ତ୍ରୀ ପୁରୁଷ ନପୁଂସକ
ନୋହେ ସେ ସତାକାଳେ ଏକ ।
ନିତ୍ୟେ ଅକାଶ ପ୍ରାପ୍ତ ହୋଇ
କାହିଁରେ ସେହି ନ ଲାଗଇ ।
ନିତ୍ୟ ସେ ଜ୍ଞାନସ୍ୱରୂପହିଁ
ସେ ଅବିଦ୍ୟାରେ ନ ମିଶଇ ।
ଏମନ୍ତ ଅଟେ ଯେଉଁ ଜୀବ
ତା ପାଇଁ କିମ୍ପା ଶୋକ ହେବ ।

ତାରୋବାଚ

ଶୁଣି ବୋଇଲେ ତାରା ତାଙ୍କୁ
ହେ ରାମ ହେଉ କହିବାକୁ ।
ଦେହ ବୋଲାଇ କାଷ୍ଠ ମତ
ଜୀବ ତ ବୋଲି ଅଟେ ନିତ୍ୟ ।
ଚୈତନ୍ୟ ସ୍ୱରୂପ ଅଟଇ
ଯେବେ କାହିଁରେ ନ ମିଶଇ ।

ତେବେ ଅନ କେ ବନ୍ଧସାଇଁ ।
ସୁଖ ଦୁଃଖ ଏଥି ସେନଇ ।

ଶ୍ରୀରାମ ଉବାଚ

ଶ୍ରୀରାମ ଏ ବଚନ ଶୁଣି
ତାଙ୍କୁ ବୋଇଲେ ସେ ପୁଣି ।
ଏ ଅତ୍ମା ଦେହ ଇନ୍ଦ୍ରିୟରେ
ସଂଯୁତ ହୋଇଲ କାଳରେ ।
ସେ ଅବିବେକୀ ହୋଇ ପୁଣ
ଅହଂକାରକୁ ଯେତେ ଧନ ।
ସେନଇ ତେତେ ଧନ ଯାଏ
ସଂସାର ଜାତ ତାର ହୋଏ ।
ମିଥ୍ୟାରେ ଆରୋପିତ ହୋଇ
ଯେଣୁ ସଂସାର ହେଉ ଥାଇ ।
ଯେଣୁ ସେ ଅପଣା ଇଚ୍ଛାଏଁ
ନିବର୍ତ୍ତି ନୁହଇ ନିଶ୍ଚୟେ ।
ବିଷୟକୁ ଯେ ଧ୍ୟାନ କରେ
ସେ ଲୋକ ଯେମନ୍ତ ସ୍ୱପ୍ନରେ ।
ସେ ମିଥ୍ୟା ଯେମନ୍ତ ଭୁଞ୍ଜଇ
ଏହି ରୂପେଟି ସଂସାରହିଁ ।
ଅନାଦି ଯେ ଅବିଦ୍ୟା ଗୁଣ
ତାହା ସମ୍ବନ୍ଧ କରି ପୁଣ ।
ଅବିଦ୍ୟା କାର୍ଯ୍ୟ ଅହଂକାର
ରାଗ ଦ୍ୱେଷ ଯେ ଯୁକ୍ତ ତାର ।
ସଂସାର ସେ ପୁଣ ହୁଅଇ
ମନଟି ସଂସାର ବୋଲାଇ ।
ବନ୍ଧହିଁ ମନଟି ଅଟଇ
ଅତ୍ମା ଯେ ମନ ସମ ହୋଇ ।
ମନର କୃତ ହୋଇ ଥାଇ
ଯେବଣ ବନ୍ଧ ସେ ତା ପାଇଁ ।
ବିଶୁଦ୍ଧ ସ୍ଫଟିକ ଯେମନ୍ତ
ବର୍ଣ୍ଣକ ସ୍ପର୍ଶେ ହେଲେ ଯୁକ୍ତ ।
ସେ ବର୍ଣ୍ଣ ପରାୟେ ଦିଶଇ
ସ୍ୱରୂପ ତେମନ୍ତ ନୁହଇ ।
ବୁଦ୍ଧି ଇନ୍ଦ୍ରିୟ ଅହଂକାର
ସଂସର୍ଗ କରଣ ଅତ୍ମାର ।
ସଂସାର ବଳେହେଁ ହୁଅଇ
ଅତ୍ମାହିଁ ସେ ଲଗ ଅଟଇ ।
ଯେ ମନ ଅଟଇ ଏମନ୍ତ
ତାହାକୁ ସେଣ ମନ୍ତ୍ର ଜାତ ।
ଯେଉଁ କାମନାମାନ ହୁଏ
ତା ଭୋଗ କରନ୍ତି ନିଶ୍ଚୟେ ।
ଗୁଣ ଗଣେ ସେ ବନ୍ଧା ହୋଇ
ବଳେ ସେ ସଂସାରେ ପଡ଼ଇ ।
ଅଦ୍ୟେ ସେ ମନ ଗୁଣ ଗଣ
ଦେଖଇ ଯେଣୁ ତେଣୁ ପୁଣ ।
ଶୁକ୍ଳ ଲୋହିତ କୃଷ୍ଣ ବର୍ଣ୍ଣ
ଏମନ୍ତ ମନ କର୍ମମାନ ।
ଯେ ଜନ ଏମନ୍ତ କରଇ
ସେ କର୍ମକୁ ସମାନ ହୋଇ ।
ହୁଅଇ ଯେଉଁ ଗତମାନ
ତାହା ସେ ଲଭଇ ବନ୍ଧନ ।
ଜୀବ ଏମନ୍ତ ପରକାରେ
ଅପଣା କର୍ମର ବଶରେ
ନାନା ଯୋନିରେ ଜାତ ହୋଇ
ପ୍ରଳୟ ଯାଏ ଭ୍ରମୁ ଥାଇ ।
କର୍ମରେ ଯେ ସହିତ ହୋଇ
ବାସନାମାନେ ଛନ୍ତି ରହି ।
ସହିତ ହୋଇ ଜୀବ ପୁଣ
ଅନାଦି ଯେ ଅବିଦ୍ୟା ଗୁଣ ।

ବଶ ହୋଇଣ ସେ ତହିଁରେ
ଅବିଦ୍ୟା କର୍ମମାନ କରେ ।
ଅଭିନିବେଶ କରିଥାଇଁ
ବାସନା ସୃଷ୍ଟିକାଳେ ଯାଇ ।
ମନରେ ହୋଇଣ ସହିତ
ଯେଉଁ ପ୍ରକାରେ ଘଟି ଯନ୍ତ ।
ଲେଉଟି ପୁଣି ସେ ପ୍ରକାରେ
ଜନ୍ମ ହୁଅଇ ସଂସାରରେ ।
ଯେବେ ତା ବହୁତ ସୁକୃତ
ଥାଇ ତେବେ ମୋ ଭକ୍ତ ଶାନ୍ତ ।
ଏମନ୍ତ ସାଧୁ ସଙ୍ଗ ପାଇ
ମୋ ବିଷୟେ ତା ବୁଦ୍ଧି ହୋଇ ।
ତାର ମୋ କଥା ଶ୍ରବଣରେ
ଶ୍ରଦ୍ଧା ହୁଅଇ ମୋହ ଠାରେ ।
ପୁଣି ତାହାର ସେ ଜ୍ଞାନରେ
ସଦ୍‌ଗୁରୁର ପ୍ରସାଦରେ ।
ମହା ବାକ୍ୟର ଅର୍ଥ ଯେବେ
ଜାଣଇ ଅକ୍ଳେଶରେ ତେବେ ।
ସ୍ୱରୂପ ବିଜ୍ଞାନ ହୁଅଇ
ଏଥି ସଂଶୟ କିଛି ନାହିଁ ।
ତଦନ୍ତେ ଜୀବନ ଶରୀର
ଇନ୍ଦ୍ରିୟ ମନ ଅହଂକାର ।
ଭିନ୍ନ ହୋଇ ଯେ ଏତେଠାରୁ
ଆତ୍ମାର ଯେ ଅନୁଭବରୁ ।
ସିଦ୍ଧ ହୋଇଣ ଅଛି ରହି
ଆନନ୍ଦସ୍ୱରୂପ ଅଟଇ ।
ଏମନ୍ତ ବ୍ରହ୍ମକୁ ଜାଣଇ
ସେ କ୍ଷଣେ ମୁକତ ହୁଅଇ ।
ସତ୍ୟ ଏ କହିଲି ଯେତେକ
ଯେ ରାମ ହୃଦୟେ ଏତେକ ।

ବିଗ୍ରହ କରେ ଚୁତଦନେ
ତାକୁ ସଂସାର ଦୁଃଖମାନେ ।
ଛୁଅନ୍ତି ନାହିଁ କଦାଚିତେ
ତୁମ୍ଭେ ତା ବିଗ୍ରହଲେ ଚିତ୍ତେ ।
ଦୁଃଖେ ନୋହିବ ଅଜ ଯୁକ୍ତ
କର୍ମବନ୍ଧରୁ ହେବ ମୁକ୍ତ ।
ଉତ୍ତମ ଭଗତ ମୋ ଠାରେ
ଥିଲ ତୁମ୍ଭର ଜନ୍ମାନ୍ତରେ ।
ଏ ଯେଣୁ ତୋ ମୋକ୍ଷ ନିମନ୍ତେ
ଏରୂପେ ଦେଖା ଦେଲି ତୋତେ ।
ଏମନ୍ତ ରୂପକୁ ମୋହର
ଧ୍ୟାନ କରିବ ନିରନ୍ତର ।
ତୁମ୍ଭଙ୍କୁ କହିଲଇଁ ଯେତେ
ଯେତେକ ତା ବିସ୍ମରିବ ଚିତ୍ତେ ।
ସଂସାରେ ପରାପର ହୋଇ
ଯେ କାର୍ଯ୍ୟ ସ୍ୱଧର୍ମ ଅଟଇ
ସେମାନ ଯେବେ କରୁଥିବ
ତେବେ ସଂସାରୁ ମୁକ୍ତ ହେବ ।
ସେ ତାର ଶୁଣନ୍ତେ ଏମନ୍ତ
ବିସ୍ମୟ ପାଇଣ ବହୁତ ।
ଶରୀରୁ ଅଭିମାନ ଶୋକ ।
ଜନ୍ମିଣି ଥିଲା ତା ଯେତେକ
ସବୁ ତା ଛାଡ଼ି ଶ୍ରୀରାମର
ଚରଣେ କଲା ନମସ୍କାର ।
ଆତ୍ମାନୁଭବ ସେ ବିଗ୍ରହ
ପରମ ସନ୍ତୋଷରେ କରି ।
ଜୀବନ ମୁକ୍ତ ସେ ହୋଇଲେ
ଅତ୍ୟନ୍ତ ସୁଖରେ ରହିଲେ ।
କ୍ଷଣାର୍ଦ୍ଧେ ଶ୍ରୀରାମଚନ୍ଦ୍ରଙ୍କ
ସଙ୍ଗ କରି ସେ ପାଇଲକୁ ।

ଅନାଦ ବଚକୁ ଛାଡ଼ିଲେ
ମୁକତ ହୋଇ ସୁଖୀ ହେଲେ ।
ସୁଗ୍ରୀବ ଶ୍ରୀରାମ ବଚନ
ଶୁଣନ୍ତେ ବେଗେ ପାଇ ଜ୍ଞାନ ।
ସୁସ୍ଥଚିତ୍ତ ହୋଇ ରହିଲେ
ରାମ ମିତ୍ରଙ୍କୁ ଆଜ୍ଞା ଦେଲେ ।
ପିଅର ନାଶଗଲେ ପୂଜ
କରଇ ଯେଉଁ ଯେଉଁ କୃତ୍ୟ ।
ଅଙ୍ଗଦ କୁଳେ ବାଳିବୀର
ସେ କର୍ମ ମାନ ବେଗେ କର
ସୁଗ୍ରୀବ ଶ୍ରୀରାମ ଆଜ୍ଞାରେ
ସମର୍ଥ କପିମାନଙ୍କରେ ।
ବାଳିଙ୍କି ରାଜ ଉପସ୍ଥରେ
ବିଜେ କରାଇ ବିମାନରେ ।
ଦୁନ୍ଦୁଭି ତୂର ଭେରୀ କୁଳ
ବହୁତ ବଜାଇ ମର୍ଦ୍ଦଳ ।
ବ୍ରାହ୍ମଣଗଣ ସବୁ ମନ୍ତ୍ରୀ
ଅଛନ୍ତି ସର୍ବ ଯୂଥପତି ।
ସମସ୍ତ ପୁର ରାଜ୍ୟ ନରେ
ତାର ଅଙ୍ଗଦ ସହିତରେ ।
ଶାସ୍ତ୍ର ପ୍ରମାଣେ କର୍ମମାନ
ବେଗେ କରାଇ କଲେ ସ୍ନାନ ।
ସୁଗ୍ରୀବ ମନ୍ତ୍ରୀଙ୍କ ତୁଲରେ
ପ୍ରବେଶ ହୋଇ ରାମଠାରେ ।
ସତ୍ୱରେ ନମସ୍କାର କଲେ
ହରଷ ହୋଇ ଜଣାଇଲେ
ବାନର ରାଜ୍ୟ ବସୁଧୀର
ଧର୍ମେ ପରିପାଳନା କର ।
ତୁମ୍ଭର ଅଟଇ ମୁଁ ଭୃତ୍ୟ
ଲକ୍ଷ୍ମଣ ଅଛନ୍ତି ଯେମନ୍ତ
ଏ ରୂପେ ପାଦ ପଙ୍କଜରେ
ସେବା କରିବି ନିରନ୍ତରେ ।
ଶ୍ରୀରାମ ଶୁଣନ୍ତେ ଏମନ୍ତ
ହସି ବୋଇଲେ ଅହେ ମିତ !
ତୁମ୍ଭେ ଯେ ମୁଁ ସେହି ଅଟଇ
ବେଗେ ଯାଅ ମୋ ଆଜ୍ଞା ପାଇ ।
ଆପଣା ରାଜ୍ୟର ପୁରରେ
ଅଭିଷେକ ହୁଅ ସତ୍ୱରେ ।
ହେ ସଖେ ଚଉଦ ବରଷ
ନଗରେ ନୋହିବି ପ୍ରବେଶ ।
ଆମ୍ଭର ଅନୁଜ ଲକ୍ଷ୍ମଣ
ତୁମ୍ଭ ପୁରକୁ ଯିବେ ଜାଣ ।
ଅଙ୍ଗଦଙ୍କୁ ଯୁବରାଜରେ
କରାଅ ଅଭିଷେକ ଖରେ ।
ନିକଟେ ଅଛୁ ଯେ ପର୍ବତ
ସେଠାକୁ ଯାଉଅଛୁ ମିତ ।
ବରଷାକାଳେ ଅମ୍ଭେ ତହିଁ
ଥିବୁ ତୁମ୍ଭଙ୍କ ବାଟ ଚାହିଁ ।
ଶରଦ ହୁଅନ୍ତେ ସୁଗ୍ରୀବ
ଯତ୍ନ କରିବାକୁ ହୋଇବ ।
କେତେହେଁ କାଳ ପୁରେ ରହି
ଜାନକୀଙ୍କି ଖୋଜିବା ପାଇଁ !
ସଇନ ସେନାଣ ଆସିବ
ଏମନ୍ତ ଶୁଣନ୍ତେ ସୁଗ୍ରୀବ ।
ରାମଙ୍କୁ ଦଣ୍ଡବତ କଲେ
କର ଯୋଡ଼ିଣ ଜଣାଇଲେ ।
ବୋଲିବା ହୋଇଲା ଯେମନ୍ତ
ଙ୍କେ ନାଥ କରିବି ତେମନ୍ତ ।
ଶ୍ରୀରାମ ଠାରୁ ଆଜ୍ଞା ପାଇ
ଲକ୍ଷ୍ମଣ ତୁଲେ ବେଗେ ଯାଇ ।

ପୁରରେ ପ୍ରବେଶ ହୋଇଲେ
ରାମ ଯେମନ୍ତ ବୋଲିଥିଲେ ।
ସବୁହିଁ କରି ସେ ପ୍ରକାରେ
ଶ୍ରୀଲକ୍ଷ୍ମଣଙ୍କ ଭଗତରେ ।
ବସାଇ ଜଉମାସନରେ
ପୁଜିଲେ ସେ ଯଥା ବିଧିରେ ।
ଲକ୍ଷ୍ମଣ ଅପି ସେ ଜନ୍ତ୍ରରେ
ପ୍ରବେଶ ହୋଇ ରାମଠାରେ ।
ତାହାଙ୍କୁ ନମସ୍କାର କଲେ
ସବୁ ବିଷୟ ଜଣାଇଲେ ।
ଏଥି ଜନ୍ତ୍ରରେ ରଘୁସାଇଁ
ଲକ୍ଷ୍ମଣ ସଙ୍ଗତରେ ଯାଇ ।
ପ୍ରବର୍ଷଣ ପର୍ବତେ ହେଲେ
ତହିଁ ଏକ ସ୍ଥାନ ଦେଖିଲେ ।
ବିବିଧ ବୃକ୍ଷରେ ଗହଳ
ସ୍ଫଟିକ ଅଟଇ ସେ ସ୍ଥଳ ।
ଶୀତ ବରଷା ବାତ ତହିଁ
କେଉଁ କାଳରେ ନ ବାଧଇ
ସଜଳ ଫଳମୂଳକୂଳ
ନିକଟେ ଅଛନ୍ତି ସକଳ ।

ବିଚିତ୍ର ମୃଗ ପକ୍ଷୀମାନେ
ସୁଶୋଭା ପାଉଛନ୍ତି ବନେ ।
ଷଡ଼ଋତୁର ଫଳ ମୂଳ
ସେଠାରେ ଅଛନ୍ତି ସକଳ ।
ସେ ସ୍ଥାନ ଦେଖି ରାମଚନ୍ଦ୍ର
ଲଭିଲେ ପରମ ଆନନ୍ଦ ।
ସୁଖେ ଲକ୍ଷ୍ମଣ ସଙ୍ଗତରେ
ରହିଲେ ସେ ଗିରି ଶୃଙ୍ଗରେ ।
ବୋଲଇ ଦୀନ ହଳଧର
ମନ ମୋହର ନିରନ୍ତର ।
ପ୍ରବର୍ଷଣ ଗିରି ଶୃଙ୍ଗରେ
ନିକୁଞ୍ଜ ସ୍ଫଟିକ ସ୍ଥଳୀରେ ।
ମୁଖେ ଶ୍ରୀରାମ ରାମ ଗାଇ
ମୋ ମନ ଭ୍ରମୁଥାଉ ତହିଁ ।
ନବୀନ ଘନ ପ୍ରାୟେ ଶ୍ୟାମ
ରୂପେ ଅସମ କୋଟି କାମ ।
ଏମନ୍ତ ଶ୍ରୀରାମ ପଦରେ
ରହୁ ଲକ୍ଷ୍ମଣ ସହିତରେ ।
ଏ ଅଧ୍ୟା ଶଏ ପଞ୍ଚାବନ
ହୁଅଇ ଏ ପରମ ଜ୍ଞାନ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ କିଷ୍କିନ୍ଧ୍ୟାକାଣ୍ଡେ
ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ତ୍ରିପୁରାରି
ଏଥି ଜନ୍ତ୍ରରେ ଗୋ ଗଉରି ।
ବରଷାକାଳ ସେ ଗିରିରେ
ମଣି କନ୍ଦରମାନଙ୍କରେ ।

ସୁପକ୍ୱ ଫଳ ମୂଳ ମାନ
ପ୍ରତ୍ୟହ ଭକ୍ଷଣ ଭୋଜନ ।
ସୁଖେ ରାମ ଲକ୍ଷ୍ମଣ ଦୁହେ
ଏରୂପେ ବନମାନ ନେଲେ ।
ଅକାଣ୍ଡେ ଦେଖନ୍ତେ ମୃଦର
ବିସ୍ମୟ ହେଲେ ରଘୁବୀର ।
ପବନେ ସେ ପ୍ରେରିତ ହୋଇ
ବହୁ ସଲିଳ କୁଳ ବହି ।
ନଭରେ ରହି ନବଘନ
ଘାଟେ କରନ୍ତି ଗରଜନ ।
ଚଞ୍ଚଳେ ଚଞ୍ଚଳାମାଳାର
ଝଟକ ଦଶେ ମନୋହର ।
ସୁବର୍ଣ୍ଣ କକ୍ଷା ମାନ ବହି
ମାତଙ୍ଗ ଯେସନେ ଦଣ୍ଡେ ।
ନବୀନ ଘାସ ମାନ ଖାଇ
ବହନ୍ତି ହୃଷ୍ଟପୁଷ୍ଟ ହୋଇ ।
ସମସ୍ତ ମୃଗ ପକ୍ଷୀମାନେ
ରାମଙ୍କ ଦେଖନ୍ତି ନୟନେ ।
ମର୍ତ୍ତ୍ୟରେ ଥିବି ସେ ସଭିଏଁ
ଧ୍ୟାନାବସ୍ଥ ମୁନି ପରାୟେ ।
ସନ୍ତତ ଅନିମିଷ ହୋଇ
ସେହି ରୂପକୁ ଥାନ୍ତି ଚାହିଁ ।
ପରମ ଆତ୍ମା ରଘୁସାଇଁ
ଯେଣୁ ମାୟାରେ ନର ହୋଇ ।
ବୁଲୁଅଛନ୍ତି ଅରଣ୍ୟରେ
ଏମନ୍ତ ବିଗ୍ରହ ଛନ୍ଦରେ ।
ସମସ୍ତ ସିଦ୍ଧବୃନ୍ଦମାନେ
ମୃଗ ପତଙ୍ଗ ହୋଇ ବନେ ।
ରାମଙ୍କୁ ହରଷ ମନରେ
ସେବା କଲେ ସେ ନିରନ୍ତରେ ।

ଏକଦିନେ ଯେ ରଘୁପତି
ସୁଖେ ବସିଛନ୍ତି ଅଛନ୍ତି ।
ସମାଧି ବଢ଼ାଇ ଲକ୍ଷ୍ମଣ
ତାହାଙ୍କୁ ପଚାରିଲେ ପୁଣ ।
ହେ ସ୍ୱାମି ମୋତେ ପୂର୍ବେ ଯାହା
ଆଜ୍ଞା ହୋଇଛ ଶୁଣି ତାହା ।
ଅନାଦି ଅବିଦ୍ୟାରୁ ଜନ୍ମ
ଯେ ହୋଇଥିଲା ହେ ଶ୍ରୀରାମ ।
ସେ ହୃଦ-ସଂଶୟ ତ ମୋର
ଛିଣ୍ଡିଛି ତହିଁ ରଘୁବୀର ।
କିମ୍ବା ଯୋଗରେ ଯୋଗୀମାନେ
ଆରାଧନା ଯେଉଁ ବିଧାନେ ।
କରନ୍ତି ଚରଣେ ତୁମ୍ଭର
ଏବେ ସେ ବିଷୟ ମୋହର ।
ଇଚ୍ଛା ହେଉଛି ଶୁଣିମାକୁ
ମୋକ୍ଷସାଧନ ବୋଲି ତାକୁ ।
ବୋଲନ୍ତି ସର୍ବଲୋକେ ବୀର
ଆଉ ମୁଁ ଭକ୍ତ ମୁଁ ତୁମ୍ଭର ।
ଏ ହେତୁ କହ ତା ରାଘବ
ଏଥି ଲୋକର ହିତ ହେବ ।
ଲକ୍ଷ୍ମଣ ଠାରୁ ସୀତାକାନ୍ତ
ଶୁଣିଣ କହିଲେ ଏମନ୍ତ ।

ଶ୍ରୀରାମ ଉବାଚ

ମୋହର ପୂଜା ବିଧି ଭ୍ରାତ
ଲକ୍ଷ୍ମଣ କେ ନେସ ଅପ୍ରମିତ ।
ତଥାପି ତହୁଁ ସଂକ୍ଷେପରେ
ଥୋକାଏ କହିବା କ୍ରମରେ ।
ଲେଖିଛି ଯାହା ଗୃହ୍ୟସୂତ୍ର
ସେହି ବିଧିରେ ହୋଇ ବ୍ରତ ।

ମୋ ଭକ୍ତିପଥେ ଯେତୁ ସ୍ୱାମୀ
ସେ ଗୁରୁଠାରୁ ମନ୍ତ୍ର ନେଇ ।
ସେ ଗୁରୁ ଯେମନ୍ତ ବିଧିରେ
କହିବେ ତେମନ୍ତ ପ୍ରକାରେ ।
ଭକ୍ତିରେ ହୋଇ ଏକମନା
ମୋତେ କରିବ ଅର୍ଚ୍ଚନା ।
ଆପଣା ହୃଦେ କି ସଲିଳେ
ପ୍ରତିମାଦିରେ କି ଅନଳେ ।
କିବା ଶାଳଗ୍ରାମ ଶିଳାରେ
ଏମାନଙ୍କରୁ କଥି କରେ ।
ଭକ୍ତିରେ ମୋ ସେବା କରିବ
ପ୍ରଭାତ କାଳରୁ ଉଠିବ ।
ବେଦ ମନ୍ତ୍ର ଯେଉଁ ବିଧିରେ
ଲେଖିଛି ସେହି ପରକାରେ ।
ମୃତ୍ତିକା ଗ୍ରହଣ ବିଧିରେ
ଶରୀର ଶୁଦ୍ଧ ନିମିତ୍ତରେ ।
ଶୁଦ୍ଧ ସଲିଳେ କରି ସ୍ନାନ
ସନ୍ଧ୍ୟାଦି ନିତ୍ୟ କର୍ମମାନ ।
ସବିଧି କରଣ ସମସ୍ତ
ପ୍ରଥମେ କରିବ ହେ ଭ୍ରାତ ।
କର୍ମର ସିଦ୍ଧି ନିମିତ୍ତରେ
ସଙ୍କଳ୍ପ କରିବ ଆଦ୍ୟରେ ।
ମୋ ଭକ୍ତଙ୍କ ହୃଦୟେ ଧରି
ଗୁରୁଙ୍କୁ ଆଗ ପୂଜା କରି ।
ଶିଳାଙ୍କୁ ସ୍ନାନ କରାଇବ
ପ୍ରତିମା ମାର୍ଜନା କରିବ ।
ପ୍ରସିଦ୍ଧ ଗନ୍ଧ ପୁଷ୍ପ ଦେଇ
ମୋତେ ସେବିଲେ ସିଦ୍ଧି ପାଇ ।
ହୃଦରେ କୁଟିଳ ନ ଧରି
ପୂଜିବ ମୋତେ ଅନୁସରି ।

ମୋ ପ୍ରତିମାରେ ଅଳଙ୍କାର
ଦେଲେ ପୀରତ ହୋଏ ମୋର ।
ଯେବେ ପୂଜିବ ଅନଳରେ
ହବିର୍ଭାଗ ଦେବ ତହିଁରେ ।
ଯେବେ ସୂର୍ଯ୍ୟଠାରେ ପୂଜିବ
ତେବେ ସ୍ଥଣ୍ଡିଳେକ କରିବ ।
ମୋ ଭକ୍ତ ଶ୍ରଦ୍ଧାଯୁକ୍ତ ପାଇ
ଜଳ ଦେଲେ ମୁଁ ପ୍ରୀତି ପାଇ ।
ଭକ୍ଷ୍ୟ ଭୋଜ୍ୟାଦି ଯେ ଅଶନ
ସୁବାସ କୁସୁମ ଚନ୍ଦନ ।
ଯେବେ ସେ ଶ୍ରଦ୍ଧାରେ ଦିଅଇ
ତେବେ ସେ ପ୍ରୀତି କହି ନୋହି ।
କରିବ ପୂଜାବିଧି ଭାଇ
ଆପଣା ସମ୍ପତ୍ତିଙ୍କ ଗୃହି ।
କୁଶ ଅଜିନ ସୁବସନ
ଏମାନ କରିବ ଆସନ ।
ଏମନ୍ତ ଆସନ ମାନରେ
ବସି ଦେବତା ସମ୍ମୁଖରେ ।
ଅନ୍ତର୍ବହିମାତୃକାଗଣ
ଦୁହିଁକି କରିବ ଲକ୍ଷଣ ।
ପୁଣି ସେ ତନ୍ତ୍ରରେ ଅବଶ୍ୟ
କରିବ କେଶବାଦି ନ୍ୟାସ ।
ପୁଣି ବସ୍ତ୍ର, ପଞ୍ଜର ମନ୍ତ୍ର
ଏ କର୍ମେ ତନନ୍ୟାସ ଭ୍ରାତ ।
କରି ପ୍ରତିମାଦିରେ ପୁଣ
କରିବ ଅଙ୍ଗ ନ୍ୟାସ ପୁଣ ।
କଳଶ ଆପଣା ଅଗ୍ରରେ
ସ୍ଥାପନା କରିବ ବାମରେ ।
ଗନ୍ଧପୁଷ୍ପାଦି ଆପଣାର
ଦକ୍ଷିଣେ ରଖିଥିବ କାର ।

ଅର୍ଘ୍ୟ ଯେ ପାଦ୍ୟ ମଧୁପର୍କ
ଆଚମନୀୟ ଯେ ଏତେକ ।
ଦେବାକୁ ସୁବଗୋଟି ପାତ୍ର
ରଖିଥିବାକୁ ହେବ ଭ୍ରାତ ।
ଆପଣା ହୃଦ ପଙ୍କଜରେ
ତେଜ ଅଦ୍ଭୁତ ପରକାରେ ।
ଜୀବ ବୋଲିଣ ନାମ ତାର
ଏମନ୍ତ ଯେ କଳା ସୋହର ।
ତାହାକୁ ଚିନ୍ତିଣ ମନରେ
ମୋର ଭିତର ତହିଁରେ ।
ପୂର୍ଣ୍ଣ ହୋଇଲ ବୋଲି ଜାଣି
ତାଙ୍କ ପ୍ରତିପାଦରେ ପ୍ରଣି ।
କରିବା ହେବ ଆବାହନ
ପାଦ୍ୟ ଅର୍ଘ୍ୟ ଯେ ଆଚମନ ।
ସ୍ନାନୀୟ ବସ୍ତ୍ର ଅଳଙ୍କାର
ଯଥା ଶକ୍ତିରେ ଦେଇ ବୀର ।
ହୃଦରେ କୁଟିଳ ନ ଧରି
ପୂଜା କରିବ ସ୍ୱଚ୍ଛ କରି ।
ଚନ୍ଦ୍ର ବିଭବ ଥିବ ଯାର
ସେ ପୁଷ୍ପ ଚନ୍ଦନ କର୍ପୂର ।
ଦେଇଣ ପୂଜିବ ସେ ମୋତେ
ପ୍ରଥମ ସେ ଆଗମ ମତେ ।
ମୂଳଚ ଦଶ ଆବରଣ
ଆଳତି ଧୂପ ଦୀପ ପୁଣ ।
ଦେବ ନୈବେଦ୍ୟ ସେ ଭକ୍ତିରେ
ଶ୍ରଦ୍ଧାରେ ଦେବ ବିଶେଷରେ ।
ଯେଣୁ ସବାଙ୍କୁ କରି ମୁହିଁ
ଶ୍ରଦ୍ଧା ବଢ଼ କରି ଯେନର ।
ଅଗସ୍ତି ମୁନିଙ୍କ ବାକ୍ୟରେ
ମୂଳମନ୍ତ୍ର କ୍ର ପୁଂ ସୂକ୍ତରେ ।

ଏ ଦୁଇ ଠାରୁ କଥା କରେ
ଚକ୍ଷୁରେ ଅବା ଭ ଘୃତରେ ।
ହୋମ କରିବ ଅନଳରେ
ଅତ୍ୟନ୍ତ ନିର୍ମଳ ଚିତ୍ତରେ ।
ତାତଲ ସ୍ୱର୍ଣ୍ଣ ପ୍ରାୟେ ବର୍ଣ୍ଣ
ସମସ୍ତ ଆଭରଣେ ପୂର୍ଣ୍ଣ ।
ଏ ରୂପେ ମୋ ମୂର୍ତ୍ତି ଅନଳେ
ଧ୍ୟାନ କରିବ ହୋମ କାଳେ ।
ପାରିଷଦଙ୍କୁ ବଳି ଦେବ
ହୋମ ଶେଷ କରିବା ହେବ ।
ତଦନ୍ତେ ହୋଇଣ ମଉନ
ଯୋଗେ ହୃଦରେ କରି ଧ୍ୟାନ ।
ଜପନ୍ତି କରିବା ହୋଇବ
ତାମ୍ବୁଲ ମୁଖବାସ ଦେବ ।
ମୋହ ନିମିତ୍ତେ ନୃତ୍ୟ ଗୀତ
ସ୍ତୁତି କରିବା ହେବ ଭ୍ରାତ ।
ମୋତେ ହୃଦରେ କରି ଧ୍ୟାନ
କରିବ ଦଣ୍ଡବତ ମାନ ।
ନିଷ୍ଠେ ମୁଁ ଦେଲି ବିଗ୍ରହବ
ପ୍ରସାଦ ଶିରରେ ଘେନିବ ।
ଧ୍ୟାନେ ଆପଣା ଦୁଇ କରେ
ମୋ ବେନି ପାଦ ଧରି ଶିରେ ।
ଏ ଘୋର ସଂସାରରୁ ମୋତେ
ରକ୍ଷାକର ପ୍ରଭୁ ସନ୍ତତେ ।
ଏମନ୍ତ ପ୍ରକାରେ ବୋଲିବ
ପୁଣିହିଁ ପ୍ରଣାମ କରିବ ।
ପରମ ଆତ୍ମା ଠାରେ ଲଭି
ଅଣିକ ପ୍ରାୟେ କରି ନେଇ ।
ଲେଉଟି କରିବ ସଂହାର
ଯେ ମୋତେ ଏମନ୍ତ ପ୍ରକାର ।

କରଣି ପୂଜା କରେ ଯେବେ
ସେ ମୋର ଅନୁଗ୍ରହ ତେବେ ।
ଇହଲୋକ ପରଲୋକରେ
ସିଦ୍ଧି ଲଭଇ ଦୁଇଠାରେ ।
ଏରୂପେ ପ୍ରତିଦିନ ଯେବେ
ମୋ ଭକ୍ତ ପୂଜାକରେ ତେବେ ।
ମୋହର ସ୍ୱରୂପ ଲଭଇ
ଏଥି ସଂଶୟ କିଛି ନାହିଁ ।
ମୁଁ ଯାହା କହିଲି ସାକ୍ଷାତ
ଏ ବଡ଼ ଗୁପତ ପଦ୍ଧତ ।
ଏ କଥା ଯେ ନିତ୍ୟେ ପଢ଼ଇ
ନୋହିଲେ କି ଅବା ଶୁଣଇ ।
ସେ ନିତ୍ୟ ପୂଜା ଫଳ ପାଇ
ସନ୍ଦେହ ଏ କଥାରେ ନାହିଁ ।
ପରମାତ୍ମା ଯେ ରାବଣାରି
ପୂଜାବିଧି ଏମନ୍ତ କରି ।
ଲକ୍ଷ୍ମଣ ଅପଣାର ଭକ୍ତ
ଶେଷ ଅଂଶହିଁ ସେ ସାକ୍ଷାତ ।୧୦୦।
କହି ଏ ପ୍ରକାରେ ତାହାଙ୍କୁ
ଅବଲମ୍ବ କରି ମାୟାକୁ ।
ପ୍ରାକୃତ ଲୋକ ପ୍ରାୟେ ହୋଇ
ହା ହା ଜାନକୀ ହା ବୈଦେହୀ ।
ଏମନ୍ତ ବୋଲିଣ କଷ୍ଟରେ
ନିଦ୍ରା ନ ଗଲେ ସେ ନିଶିରେ ।
ମାରୁତି ଏହି ସମୟରେ
କହିଲେ ସୁଗ୍ରୀବ ଅଗରେ ।
ହେ ରାଜା ହିତ ମୁଁ ତୁମ୍ଭର
କହିବି ଶୁଣ ମୋ ଉତ୍ତର ।
ଶ୍ରୀରାମ ବଡ଼ ଉପକାରି
କରି ଅଛନ୍ତି ପୂର୍ବେ ତୋର ।
କୃତଘ୍ନ ପରେ ତା ଅପଣ
ନ କଲ ରାଜନ ସ୍ମରଣ ।
ଏମନ୍ତ ପ୍ରକାରେ ସେ ହୋଇ
ମୋହ ମନକୁ ତ ଅସଇ ।
ବାଳି ଯେ ବୀର ଭଣ୍ଡପୁରେ
ସେ ମଲା ତୁମ୍ଭ ନିମିତ୍ତରେ ।
ରାଜ୍ୟରେ ଅଭିଷେକ ହେଲ
ବିଶେଷେ ତାରାଙ୍କୁ ପାଇଲ ।
ଯେ ରାମ ସକାଶରୁ ବୀର
ଏତେକ ହୋଇଲା ତୁମ୍ଭର ।
ସେ ଏବେ ତୁମ୍ଭ ଯିବା ପାଇଁ
ଭାଇର ତୁଲେ ଯୁତ ହୋଇ ।
ଗିରି କନ୍ଦରେ ଦୁଃଖୀ ସହି
ତୁମ୍ଭଙ୍କ ଛନ୍ଦ ବାଟ ରହି ।
ବାନର ଭାରୁଁ ବା ଅପଣ
ସ୍ତ୍ରିରି ବଶରେ ବା ରାଜନ ।
ବହୁତ ଅସକତ ହୋଇ
ଏହା ଜାଣିମା ହେଉ ନାହିଁ ।
ଜାନକୀଙ୍କି ଖୋଜିବା ପାଇଁ
ପ୍ରତିଜ୍ଞା କରିଛ ଗୋସାଇଁ ।
କୃତଘ୍ନ ହୋଇଲ ଅବଶ୍ୟ
ବାଳିର ପ୍ରାୟେ ଯିବ ନାଶ ।
ସୁଗ୍ରୀବ ଶୁଣନ୍ତେ ଏମନ୍ତ ।
କହିଲେ ହୋଇ ଭୟ ଯୁକ୍ତ ।
ବୋଇଲେ ଅହେ ହନୁମନ୍ତ
ଯାହା କହିଲ ସେହୁ ସତ୍ୟ ।
ଏବେ ଅପଣ ଯାଇ ବେଗ
ଦଶ ସହସ୍ର ଶାଖା ମୃଗ ।
ଦଶଦିଗକୁ ପଠିଅଇ
ଦେବାକୁ ହେଉ ବେଗେ ଯାଇଁ ।

ସାନୁଦ୍ଵୀପରେ କପି ଯେତେ
ଅଛନ୍ତି ଅସନ୍ତୁ ସମସ୍ତେ ।
ସର୍ବେ ପକ୍ଷର ଭିତରେ
ପ୍ରବେଶ ହେବେ କିଷ୍କିନ୍ଧ୍ୟାରେ ।
ଯେ ଏଥୁ ବିଳମ୍ବ ଅସିବେ
ସେମାନେ ନିଷ୍ଟେ ବଧ ହେବେ ।
ଏ ରୂପେ ତାଙ୍କୁ ଆଜ୍ଞା ଦେଲେ
ସେ ଅନ୍ତଃପୁର ମଧ୍ୟେ ହେଲେ ।
ମାରୁତି ସୁଗ୍ରୀବ ଆଜ୍ଞାରେ
ସେ ବାହାରକୁ ଯାଇ ଖରେ ।
ସେ ରୂପେ ସମସ୍ତ ଦଗକୁ
ପଠିଅଇଲେ ବାନରଙ୍କୁ ।
ଅସଂଖ୍ୟ ଗୁଣ ବଳ ଯାର
ବେଗରେ ପବନ ପ୍ରକାର
ଶରୀର ଯେସନ ପର୍ବତ
ଦାନରେ ମାନରେ ଭୂପତ ।
ହୋଇଣ ଅଛନ୍ତି ଏମନ୍ତ
କପିଶ୍ରେଷ୍ଠଙ୍କୁ ହନୁମନ୍ତ ।
ଦୂତ କର ଦଶଦଗକୁ
ପଠିଅଇଲେ ବେଗେ ତାଙ୍କୁ ।

ଅଧମ ଦାସ ହଳଧର
ସେ କପିମାନଙ୍କ କିଙ୍କର ।
ହେବାକୁ କର ଅଛୁ ମନ
ଯେଣୁ ପତିତ ଦୀନ ହୀନ ।
ସଂସାର ମାୟାରେ ବନ୍ଧନ
ହୋଇ ବ୍ୟାକୁଳ ହୁଏ ମନ ।
ଏ ଯେନି ମହାଭୟ ପାଇ
ପୁଣି ମନରେ ବିଚାରଇ
ଯେଣୁ ସେ ଶ୍ରୀ ରଘୁନନ୍ଦନ
ଅଟନ୍ତି ପତିତ ପାବନ ।
ଦୁଃଖୀ ଲୋକର ପ୍ରିୟ ବନ୍ଧୁ
ଅପରମିତ କୃପାସିନ୍ଧୁ ।
ଏଣୁ ସଂସାର କଷ୍ଟ ମୋର
ନିଷ୍ଟେ ନାଶିବେ ରଘୁବୀର ।
ସତତ ମୋର ମନେ ଧ୍ୟାନ
ହୋଇଲି ମୁଁ ଶରଣାପନ୍ନ ।
ଅହେ ରାଜେନ୍ଦ୍ର ରଘୁବୀର
ସମସ୍ତ ଦର ମୋର ହର ।
ଅଧ୍ୟା ଶଏ ଗୃଳଣ ପଦ
ମୋହର ହେଉ ଏ କାମଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ଵର ସମ୍ବାଦେ
କିଷ୍କିନ୍ଧ୍ୟାକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ତ୍ରିଲୋଚନ
ଶୁଣି ସମ୍ବନ୍ଧ ସାନୁମାନ ।
ଏମନ୍ତ ପର୍ବତରେ ରହି
ଜାନକୀ ବିଚ୍ଛେଦ ନ ସହି ।

ଦୁଃଖେ ଶ୍ରୀରାମ ରଜନୀରେ
କହିଲେ ଲକ୍ଷ୍ମଣ ଅଗରେ ।
ରାକ୍ଷସ ଯେ ସୀତାଙ୍କୁ ନେଲା
ଜୀଉଛି କି ସେ ନାଶ ଗଲା ।

ଏମନ୍ତ ନ ଜାଣିଲ ଭ୍ରାତ
ସେ ନଷ୍ଟେ ଜାଇଛି ଏମନ୍ତ ।
ଯେ ଅସି ମୋ ଆଗେ କହିବ
ସେ ମୋର ବଡ଼ ପ୍ରିୟ ହେବ ।
ଜାନକୀ ଅଛି ଯେଉଁଠାରେ
ତାହା ମୁଁ ଜାଣିଲେ ସତ୍ୱରେ ।
ସମୁଦ୍ର ଅମୃତ ପର୍ଯ୍ୟନ୍ତେ
ଘେନି ମୁଁ ଅଣନ୍ତି ନିଷ୍ଟଯ୍ୟେଁ ।
ପୁଣି ବୋଇଲେ ହେ ଲକ୍ଷ୍ମଣ
ମୋହର ପ୍ରତିଜ୍ଞା ଏବେ ଶୁଣ ।
ଯେ ନେଇ ଅଛି ମୋ ସୀତାକୁ
ତା ପୁଅ ବଳ ସଙ୍ଗେ ତାକୁ ।
ବାହନ ସହିତେ ଅବଶ୍ୟ
ନିକଟେ କରିବି ବିନାଶ ।
ହେ ଚନ୍ଦ୍ରମୁଖି ବଇଦେହି
ରାକ୍ଷସ ପୁରେ ଅଛ ରହି ।
ମୋତେ ନ ଦେଖି ଦୁଃଖୀ ହେବୁ
ପ୍ରାଣ କ ପ୍ରକାରେ ଧରିବୁ ।
ତୋ ବିନୁ ଚନ୍ଦ୍ରମାହିଁ ମୋତେ
ହେଉଛି ସୂର୍ଯ୍ୟ ପ୍ରାୟେ ପ୍ରତେ ।
ହେ ଚନ୍ଦ୍ର ଜାନକୀକି ଛୁଇଁ
ଶୀତଳ କର ତୁମ୍ଭେ ଯାଇଁ ।
ପୁଣି ସେ ଜନ୍ତ୍ରରେ ମୋହର
ଛୁଇଁବା ହୋଇବ ଶରୀର ।
ପୁଣି ବୋଇଲେ ଅହେ ଭ୍ରାତ
ସୁଗ୍ରୀବ ନିର୍ଦ୍ଦୟ ହେଲା ତ ।
ଏଡ଼େ ଦୁଃଖୀ ମୁଁ ଅଛି ହୋଇ
ଦେଖି ସେ ମୋତେ ଚାହୁଁ ନାହିଁ ।
ରାଜ୍ୟ ତ ନିଷ୍କଣ୍ଟକ କରି
ଲଭିଲା ସ୍ତ୍ରୀରେ ତ ହରି ।
ସ୍ତ୍ରୀଗଣମାନେ ତ ନିରନ୍ତରେ
ରହିଲେ ତାହା ସଙ୍ଗତରେ ।
ମଦ୍ୟପାନରେ ମତ୍ତ ହୋଇ
କାମୀ ହୋଇଲା ନିଷ୍ଟେ ସେହି ।
କୃତଘ୍ନ ହେଲା କପି ତେଣୁ
ଶରଦ ଋତୁ ଦେଖି ଯେଣୁ ।
ବଇଦେହୀଙ୍କ ଖୋଜିବାକୁ
ଅସୁ ନାହିଁ ମୋ ନିକଟକୁ ।
ଏଡ଼େ କୃତଘ୍ନ ସେ ବାନର
ପୂର୍ବେ କରିଛି ଉପକାର ।
ଏମନ୍ତ ଯେ ମୁଁ ମୋତେ ବୀର
ପାସୋରିଲା ସେ କପୀଶ୍ୱର ।
ପୁର ବାନ୍ଧବ ମଧ୍ୟ କରି
ତାକୁ ମୁଁ ପକାଇବି ମାରି ।
ସୁଗ୍ରୀବ ବାଳି ପ୍ରାୟେ ହେଉ
ଦେଖି ଅଜହିଁ ନାଶ ଯାଉ ।
ଏ ରୂପେ କ୍ରୋଧ ଦେଖି ପୁଣ
ରାମଙ୍କୁ କହିଲେ ଲକ୍ଷ୍ମଣ ।
ଆଜ୍ଞା ଦିଅ ହେ ରଘୁସାଇଁ
ବେଗେ ମୁଁ କିଷ୍କିନ୍ଧ୍ୟାକୁ ଯାଇ ।
କ୍ଷଣକେ ମାରି ସୁଗ୍ରୀବକୁ
ଅସିବି ତୁମ୍ଭ ନିକଟକୁ ।
ଏମନ୍ତ କହି ସେ ଲକ୍ଷ୍ମଣ
ଘେନି ଖଡ଼ଗ ଧନୁ ତୂଣ ।
ବାହାର ହୁଅନ୍ତେ ଯିବାକୁ
ଶ୍ରୀରାମ ଆଜ୍ଞା ଦେଲେ ତାଙ୍କୁ ।
ହେ ବତ୍ସ ଶୁଣ ମୋ ଉତ୍ତର
ସୁଗ୍ରୀବ ଅତି ପ୍ରିୟ ମୋର ।
ଏ ବେଳେ କର ତାକୁ ଭ୍ରାତ
କରିବା ନୋହିବଟି ହିତ ।

ତାହାଙ୍କୁ ଭଯ୍ଯ ଭରତ
ଏମନ୍ତ ବଚନ କହିବ ।
ବୋଲିବ ତୋତେ ବାଳି ପ୍ରାୟେ
ଶ୍ରୀରାମ ମାରିବେ ନିଶ୍ଚୟେଁ ।
ଏମନ୍ତ କହି ଅଙ୍ଗେ ତାଙ୍କୁ
ଘେନାଇଁ ଅଣିବ ଏଠାକୁ ।
ଏଠାରେ ସବୁ କାର୍ଯ୍ୟ ପୁଣ
କରିବି ସିନା ହେ ଲକ୍ଷ୍ମଣ ।
ସେ ତାର ସିଜକାର ଭଲେ
ସତ୍ଵରେ କିଷ୍କିନ୍ଧ୍ୟାକୁ ଗଲେ ।
କୋପେ ସେ ବାନରଙ୍କୁ ଗ୍ରହି
ଗଲେ ବହିଲ ପ୍ରାୟେ ହୋଇ ।
ରାମ ଯେ ସର୍ବଜ୍ଞ ଅଟନ୍ତି
ଲକ୍ଷ୍ମୀ ସର୍ବଦା ହୃଦେ ଥାନ୍ତି ।
ଭଞ୍ଜନ ସ୍ଵରୂପହିଁ ସେହି
ଏମନ୍ତ ହେଲେ ସୀତା ପାଇଁ ।
ଯେମନ୍ତ ପରାକୃତ ଲୋକ
ସାମାନ୍ୟ ସ୍ତ୍ରିୟ ପାଇଁ ଶୋକ ।
କରଇ ଅତ ଅଧି ହୋଇ
ସେ ରୂପେ ଭଲେ ରଘୁହାଇଁ ।
ସମସ୍ତ ବୁଦ୍ଧ୍ୟାଦ ମାନର
ସାକ୍ଷୀ ଅଟନ୍ତି ରଘୁବୀର ।
ମାୟାକୁ ଅତ ଦମି ଛନ୍ତି
ସଂଗାଦ ତାଙ୍କର ନାହାନ୍ତି ।
ଶୋକ ଅସିବ କାହୁଁ ତାର
କେବଳ ବ୍ରହ୍ମାର ଜଥର ।
ସତ୍ୟ ହୋଇବା ନିମିତ୍ତରେ
ଦଶରଥର ତପସ୍ୟାରେ ।
ମନୁଷ୍ୟ ବେଶ ଧରି ରାମ
ଧରଣୀ ତଳେ ହେଲେ ଜନ୍ମ ।
ଶ୍ରୀ ବିଷ୍ଣୁ ଶକ୍ତିଲେ ଶଇରେ
ସମସ୍ତ ଲୋକ ତ ମାୟାରେ ।
ଅଜ୍ଞାନ ହେଲେ ମୋହ ଯାଇ
ମୋକ୍ଷ ସେ ହୋଇବେ କି ହୋଇ
ଏମନ୍ତ କରି ସେ ବିଚାର
ସମସ୍ତ ଲୋକ ମାନଙ୍କର ।
ନାଶଇ ସବୁ ପାପ ଗଣ
ଏମନ୍ତ ଯେ ଶ୍ରୀ ରାମାୟଣ ।
ସେ କଥା ପ୍ରକାଶ ଲୋକରେ
କରିବା ନିମିତ୍ତେ ମାୟାରେ ।
ସମସ୍ତ ସାକ୍ଷୀ ଯେଉଁ ହରି
ମନୁଷ୍ୟ ପ୍ରାୟ ଚେଷ୍ଟା କରି ।
କ୍ରୋଧ ଅଜ୍ଞାନ କାମନାକୁ
ବ୍ୟବହାର ସିଦ୍ଧ ହେବାକୁ ।
ପ୍ରଜାଙ୍କୁ କରାଇ ମୋହନ
ଯେଉଁ କାଳରେ ଯେଉଁମାନ ।
କରିବା ଉଚିତ ଶ୍ରୀପତି
ତାହା ସେ କାଳରେ ଘେନନ୍ତି ।
ନାହାନ୍ତି ଗୁଣମାନେ କେହି
ଏମନ୍ତ ହେଲେ ସୀତାପାଇଁ ।
ସମସ୍ତ ଗୁଣେ ଅନୁରକ୍ତ
ହୋଇଲି ପରାୟେ ସନ୍ତତ ।
ଭଞ୍ଜନ ମୂର୍ତ୍ତି ରଘୁବୀର
ସାକ୍ଷୀ ସେ ଭଞ୍ଜନ ଶରୀର ।
ଅସ୍ଥା ସେ ଗୁଣମାନଙ୍କର
ଏ ଘେନ ଆକାଶ ପ୍ରକାର ।
ଜ୍ଞାନ ବୃହନ୍ତ କାମାଦରେ
ଯା କୀର୍ତ୍ତି ତପସ୍ଵୀ ନିକଟରେ ।
କେବଳ କର୍ଣ୍ଣରେ ଶୁଣନ୍ତି
ସନକାଦ ମାନେ ଜାଣନ୍ତି ।

ନିର୍ମଳ ଅତ୍ମା ଯାହାଙ୍କର
ଭକ୍ତ ଅଟନ୍ତି ଯେଉଁ ନର ।
ସେମାନେ ସର୍ବଦା ଜାଣନ୍ତି
ଉତ୍ତମ କରି ଗୋ ପାର୍ବତି ।
ଭକ୍ତ ମାନଙ୍କ ଅନୁସରି
ଜନ୍ମପାନ ଯେ ହୋନ୍ତି ହରି ।
ଶିବ ବୋଇଲେ ଉମା ଶୁଣ
ଏଥୁ ଉତ୍ତାରେ ସେ ଲକ୍ଷ୍ମଣ ।
କିଷ୍କିନ୍ଧ୍ୟା କଟକରେ ହୋଇ
କ୍ରୋଧରେ ଅଧର କମ୍ପାଇ ।
କପିଙ୍କି ଭୟ କରାଇଲେ
ଧନୁ ଟଙ୍କାର ଗାଢ଼େ କଲେ ।
ଏମନ୍ତ ଦେଖନ୍ତେ ନୟନେ
ସାମାନ୍ୟ କେଉଁ କପିମାନେ ।
ବୃକ୍ଷ ପାଷାଣ ଧରି କରେ
ଉଠିଲେ ପାଚେରି ଉପରେ ।
ଲକ୍ଷ୍ମଣ ମୁଖକୁ ଚାହିଁଲେ
କିଲି କିଲା ଶବଦ କଲେ ।
ଲକ୍ଷ୍ମଣ ଦେଖନ୍ତେ ଏମନ୍ତ
କ୍ରୋଧେ ଅରୁଣ କରି ନେତ୍ର ।
ମନ କରନ୍ତେ ବାନରଙ୍କୁ
ନିର୍ମୂଳ କରି ମାରିବାକୁ ।
ଲକ୍ଷ୍ମଣ ଅସିବା ଶବଦ
ଯହୁଁ ଶୁଣିଲେ ସେ ଅଙ୍ଗଦ ।
ବଡ଼ ବେଗେ ସେଠାକୁ ଯାଇ
କପିମାନଙ୍କୁ ନିବର୍ତ୍ତାଇ ।
ଲକ୍ଷ୍ମଣ ନିକଟକୁ ଗଲେ
ତାହାଙ୍କ ପାଦେ ପ୍ରଣମିଲେ ।
ସେ ଅଙ୍ଗଦକୁ ତୋଳି ଧରି
କହିଲେ ଅଲିଙ୍ଗନ କରି ।

ହେ ବତ୍ସ ରାମ କ୍ରୋଧ ହୋଇ
ଅଛନ୍ତି ମୋତେ ପଠିଅଇ ।
ବିଷୟ ସୁଗ୍ରୀବଙ୍କ ଅଗେ
କହିବା ହେଉ ଯାଇଁ ବେଗେ ।
ଶୁଣି ଅଙ୍ଗଦ ଖରେ ଗଲେ
ସୁଗ୍ରୀବ ଅଗରେ କହିଲେ ।
ଲକ୍ଷ୍ମଣ ଅସି କ୍ରୋଧ ହୋଇ
ପୁରି ଦ୍ୱାରରେ ଛନ୍ତି ରହି ।
ସୁଗ୍ରୀବ ଶୁଣନ୍ତେ ଏମନ୍ତ
ହୋଇ ସେ ବହୁତ ତରସ୍ତ ।
ହନୁମନ୍ତଙ୍କୁ ଡକାଇଲେ
ତାହାଙ୍କୁ ଏମନ୍ତ କହିଲେ ।
ସଙ୍ଗତେ ଘେନି ଅଙ୍ଗଦକୁ
ଯାଅ ଯା ଲକ୍ଷ୍ମଣ ସମ୍ମୁକୁ ।
ସକ୍ରୋଧ ହୋଇ ସେ ଅଛନ୍ତି
ତାହାଙ୍କୁ କରି ଯାଇ ଶାନ୍ତ ।
ମନ୍ଦ ମନ୍ଦ କରି ତାହାଙ୍କୁ
ଘେନି ଅସିବ ମନ୍ଦିରକୁ ।
ଏ ରୂପେ ପଠିଅଇ ତାଙ୍କୁ
ପୁଣି ସେ କହିଲେ ତାରାଙ୍କୁ ।
ଅପଣ କରିଣ ଗମନ
କହି ମୃଦୁ ବଚନମାନ ।
ଶାନ୍ତ କରାଇ ଲକ୍ଷ୍ମଣଙ୍କୁ
ଅଣିବ ଏ ଅନ୍ତଃପୁରକୁ ।
ତହିଁ ଉତ୍ତାରେ ମୋତେ ନେଇ
ତାହାଙ୍କୁ ଭେଟାଇବ ସହି ।
ତାରା ତା ସ୍ୱୀକାର କଲେ
ମଧ୍ୟ ଦ୍ୱାରରେ ସେ ମିଳିଲେ ।
ଅଙ୍ଗଦ ହନୁମନ୍ତ ଗଲେ
ଲକ୍ଷ୍ମଣ ସମ୍ମୁଖରେ ମିଳିଲେ ।

ଭକ୍ତିରେ ନମସ୍କାର କଲେ
ସ୍ୱଭେ ଅଇବା ପଗୃରଲେ ।
କର କୁଶଳ ପରଶନ
କହିଲେ ଏମନ୍ତ ବଚନ ।
ବେଗେ ଅସିବା ହେଉ ବୀର
ତୁମ୍ଭର ସିନା ଏ ମନ୍ଦର ।
ନିଃଶଙ୍କ ହୋଇ ମନ୍ଦରରେ
ପ୍ରବେଶ ହୋଇ ଅନ୍ତଃପୁରେ ।
ଦେଖିଣ ରାଜସ୍ତ୍ରୀ ମାନଙ୍କୁ
ଭେଟ ହୋଇଣ ସୁଗ୍ରୀବଙ୍କୁ ।
ଅଜ୍ଞା ଦେବାକୁ ହେବ ଯାହା
ନିଶ୍ଚୟେ କରିବେ ସେ ତାହା ।
ଏ ରୂପେ କହି ସେ ବହୁତ
ଅଙ୍ଗଦ ତୁଲେ ହନୁମନ୍ତ ।
ଲକ୍ଷ୍ମଣ ବେନି ଶ୍ରୀହସ୍ତରେ
ପଇଟି ଦେଇ ଦୁହେଁ କରେ ।
ନଗର ମଧ୍ୟରୁ ପୁରକୁ
ଘେନିଣ ଅସନ୍ତେ ତାହାଙ୍କୁ ।
ସେ ଯୂଥପତି ମାନଙ୍କର
ଅଟ୍ଟାଳି ମାନ ଦିବ୍ୟ ପୁର ।
ଦେଖିଣ ଇନ୍ଦ୍ର ପୁର ସମ
ଏମନ୍ତ ଯେ ରାଜ ସଦନ ।
ପ୍ରବେଶ ହୁଅନ୍ତେ ତହିଁରେ
ଦେଖିଲେ ମଧ୍ୟ ଦ୍ୱାରଠାରେ ।
ଚନ୍ଦ୍ରମା ମୁଖ ପ୍ରାୟେ ତାର
ଅଛି ସମସ୍ତ ଅଲଙ୍କାର ।
ଅନପ ହୋଇ ଅବନତ
ଦଶୁଛି ନୟନର ପ୍ରାନ୍ତ ।
ତାରା ଏ ପ୍ରକାରେ ସେଠାରେଁ
ଅଳପ ହସ ହସ ହୋଇ ।

ଲକ୍ଷ୍ମଣ ମୁଖକୁ ଗୃହିଁଲେ
ଏମନ୍ତ ବଚନ କହିଲେ ।
ପରମ ମଙ୍ଗଳ ତୁମ୍ଭର
ହୋଇବ ଅସ ହେ ଦେବର ।
ତୁମ୍ଭେ ତ ସାଧୁ ହେ ଲକ୍ଷ୍ମଣ
ଭକ୍ତବତ୍ସଳ ହିଁ ଅପଣ ।
ସୁଗ୍ରୀବ ତୁମ୍ଭର ତ ଭକ୍ତ
ବିଶେଷେ ଅଟନ୍ତି ସେ ଭୃତ୍ୟ ।
କପାଁ ଏ ତନ୍ତ୍ରରେ ତା ଠାଇଁ
ଚିତ୍ତରେ କୋଧ ଅଛ ବହି ।
ସୁଗ୍ରୀବ ବନ ପରବତେ
ବହୁତ କାଳ ପରିଯନ୍ତେ ।
ଅନବରତ ଦୁଃଖ ମାନ
ଭୋଗ କଲେ ସେ ପ୍ରତଦିନ ।
ସେ ଦୁଃଖ ମାନଙ୍କରୁ ପୁଣ
ରଖିଲ ଯତ୍ନେଁ ତା ଅପଣ ।
ତୁମ୍ଭ ପ୍ରସାଦେ ସୁଖ ପାଇ
କାମରେ ଅସକତ ହୋଇ ।
ରାମ ସେବାକୁ ଯା ନ ଗଲା
ଏ ନିକ ଦୋଷ ତାର ହେଲା ।
ବିବଧ ଦେଶରୁ ବାନରେ
ପ୍ରବେଶ ହୋଇବେ ଏଠାରେ ।
ପର୍ବତ ପ୍ରାୟେ ବାନରଙ୍କୁ
ଦଶ ଦିଗରୁ ଅଣି ମାନୁ ।
ଦଶ ସହସ୍ର କପି ବୀର
ପଠିଅଇଛୁ ହେ ଦେବର ।
ମର୍କଟ ଯୂଥପତି କୁଳ
ସଙ୍ଗତେ ଘେନିଣ ସକଳ ।
ସୁଗ୍ରୀବ ଯାଇଁ ଅତ ଖରେ
ରାକ୍ଷସଙ୍କ ତୁଲେ ଯୁଦ୍ଧରେ ।

ଏହୁ କାରଣେ ତ ଅବଶ୍ୟ
କରିବେ ରାବଣକୁ ନାଶ ।
ଏବେ ସେ ଘେନିଣ ତୁମ୍ଭଙ୍କୁ
ଆଜ ହୁ ଯିବେ ରାମଠାକୁ ।
ଭାର୍ଯ୍ୟା ସୁହୃଦ ବନ୍ଧୁ ପୁତ୍ର
ଏଥିରେ ହୋଇଛୁ ପ୍ରବୃତ୍ତ ।
ଏମନ୍ତ ହେଉଁ ଅନ୍ତଃପୁର
ତାହା ଦେଖିବା ହେଲ ବୀର ।
ଅଭୟ ଦେଇ ସୁଗ୍ରୀବଙ୍କୁ
ନେବା ହେଲ ଶ୍ରୀରାମଠାକୁ ।
ଲକ୍ଷ୍ମଣ ତାର ବଚନରେ
ଅଳପ ସନ୍ତୋଷ ମନରେ ।
ସେ ମନ୍ଦ ମନ୍ଦ ହୋଇ ଗଲେ
ପ୍ରବେଶ ଅନ୍ତଃପୁରେ ହେଲେ ।
ସୁଗ୍ରୀବ ଥିଲେ ପଲ୍ୟଙ୍କରେ
ରୋମାଙ୍କ ଭଙ୍ଗ ହୃଦୟରେ ।
ଦେଖନ୍ତେ ଲକ୍ଷ୍ମଣଙ୍କୁ ଗରେ
ତେଜିଁ ପଡ଼ନ୍ତେ ସେ ଭୟରେ ।
ତାହାଙ୍କୁ ଦେଖି ଏ ପ୍ରକାରେ
ଲକ୍ଷ୍ମଣ ବୋଇଲେ କ୍ରୋଧରେ ।
ଅରେ ଦୁର୍ବୃତ୍ତ ନାଶ ଗଲୁ
ଯେଣୁ ରାମଙ୍କୁ ପାସୋରିଲୁ ।
ବାଳିର ହରିଲ ଯେ ପ୍ରାଣ
ତୋତେ ତେଜିଛୁ ସେହି ବାଣ ।
ତୁହି ଯେମନ୍ତ ଆଜ ହେବୁ
ବାଳିର ମାର୍ଗକୁ ଦେଖିବୁ ।
ଏ ରୂପେ ରୋଷ କରଣେ
ତାହାଙ୍କୁ କହନ୍ତେ ଲକ୍ଷ୍ମଣ ।
ଏମନ୍ତ ଦେଖି ହନୁମନ୍ତ
ତାହାଙ୍କୁ କହିଲେ ଏମନ୍ତ ।
ଏ ରୂପେ କାହିଁକି ଉତ୍ତର
ବୋଲିବା ହେଲ ଅଛୁ ବୀର ।
ତୁମ୍ଭ ପ୍ରଭୁଙ୍କର ଶ୍ରୀରାମର
ବଡ଼ ଭକ୍ତ ଏ କପୀଶ୍ୱର ।
ରାମ କାର୍ଯ୍ୟକୁ ଜାଗର
ହୋଇ ଅଛନ୍ତି ନିରନ୍ତର ।
ସମସ୍ତ ଦିଗରୁ ହେ ବୀର
ସହସ୍ର ସହସ୍ର ବାନର ।
ଆସି ଅଛନ୍ତି ହେ ଲକ୍ଷ୍ମଣ
ଦେଖିବା ହେଲ ତା ଅପଣ ।
ସୀତାଙ୍କୁ ଖୋଜିବା ନିମିତ୍ତେ
ଯିବେ ଏ କ୍ଷଣରେ ସମସ୍ତେ ।
ନିଃଶେଷ କରି ଶ୍ରୀରାମର
କାର୍ଯ୍ୟ କରିବେ କପୀଶ୍ୱର ।
ଲକ୍ଷ୍ମଣ ମାରୁତି ଉତ୍ତରେ
ସଙ୍କୋଚ ପାଇଲେ ଶରୀରେ ।
ସୁଗ୍ରୀବ ଏଥୁ ଅନନ୍ତରେ
ସେ ଲକ୍ଷ୍ମଣଙ୍କୁ ଅର୍ଘ୍ୟପାଦରେ ।
ପୂଜା କରିଣ ସେ ବହନ
କହିଲେ କରି ଆଲିଙ୍ଗନ ।
ରାମର ଦାସ ମୁଁ ସନ୍ତତେ
ସେ ରକ୍ଷା କରିଛନ୍ତି ମୋତେ ।
ଶ୍ରୀରାମ ଅପଣା ତେଜରେ
ଅର୍ଦ୍ଧ ନିମିଷକ ଭିତରେ ।
ଜିଣିବେ ତିନିଲୋକ ଯାକ
କେବଳ ଯେଣୁ ମୁଁ ସେବକ ।
ଏବେ ମୁଁ ଘେନି ବାନରଙ୍କୁ
ସହାୟ ହେବି ମାତ୍ର ତାଙ୍କୁ ।
ଲକ୍ଷ୍ମଣ ଶୁଣି ଏ ଉତ୍ତର
ବୋଇଲେ ଅହେ କପୀଶ୍ୱର ।

ତୁମ୍ଭଙ୍କୁ ବୋଇଲି ମୁଁ ଯାହା
କ୍ଷମା କରିବା ହେଉ ତାହା ।
କହିଲେ ସିନା ମୁଁ ପ୍ରୀତିରେ
ଚୋଲି ମୁଁ ନାହିଁ ତା କ୍ରୋଧରେ
ରାମ ଜାନକୀ ବିରହରେ
ଏକା ଅଛନ୍ତି ଅରଣ୍ୟରେ ।
ଏଣୁ ସେଠାକୁ ଆଜଯିବା
ଆସ ହେ ବାହାର ହୋଇବା ।
ସେ ତାହା କରି ସିଦ୍ଧକାର
ଲକ୍ଷ୍ମଣ ତୁଲେ କପୀଶ୍ୱର ।
ବସି ସେ ଦିବ୍ୟ ଶତାଙ୍ଗରେ
ବାହାର ହୁଅନ୍ତେ ସତ୍ୱରେ ।
ବାନର ଭାଲୁଙ୍କ ନିକରେ
ଜସ୍ମୁକ ହୋଇ ହରଷରେ ।
ମୃଦଙ୍ଗ ବୃନ୍ଦ ଭେରୀମାନ
ଗାତେ ସେ ବଜାଇ ବହନ ।
ଶ୍ୱେତ ଗ୍ଭମର ଶ୍ୱେତଛତ୍ର
ଏଥିରେ ହୋଇଛୁ ଶୋଭିତ ।
ନୀଳ ଅଙ୍ଗଦ ମାରୁତିର
ତୁଲରେ ସମସ୍ତ ବାନର ।
ଘେନି ସୁଗ୍ରୀବ ହରଷରେ
ରାମ ଛାମୂକୁ ଗଲେ ଶୀଘ୍ରେ ।
ବୋଲଇ ହଳଧର ଦାସ
ସୁଜନମାନେ ବେଗେ ଆସ ।
ସୁଗ୍ରୀବ ରଥେ ବସି ମନ
କରିବା ରାମଙ୍କୁ ଦର୍ଶନ ।
ଏ ଜନ୍ମ ସଫଳ ହୋଇବ
ଘୋର ନରକ ନାଶ ଯିବ ।
ଶ୍ରୀରାମ ଲକ୍ଷ୍ମଣ ସଂଯୁକ୍ତ
ଶ୍ରୀରାମ ପଦେ ରହୁ ନିତ୍ୟ ।
ମୋମନ ନିରନ୍ତରେ ରହୁ
କୋଟିଜନ୍ମରେ ଆନ ନୋହୁ ।
ଏ ଶତ ଏକସ୍ତର ପଦ
ହରୁ ମୋ ସମସ୍ତ ଆପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
କିଷ୍କିନ୍ଧ୍ୟାକାଣ୍ଡେ ନାମ ପଞ୍ଚମୋଽଧ୍ୟାୟଃ ।

---

## ଷଷ୍ଠ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ପଶୁପତି
ଏହି ସମୟେ ଗୋ ପାର୍ବତୀ ।
ଶ୍ରୀରାମ କନ୍ଦର ଦ୍ୱାରରେ
ବସି ଅଛନ୍ତି ପାଷାଣରେ ।
ଧରି ବଲ୍କଳ କୃଷ୍ଣାଜିନ
ଦିଶନ୍ତି ପରମ ଶୋଭନ ।
ନବୀନ ଘନ ପ୍ରାୟେ ବର୍ଣ୍ଣ
ବିଶାଳ ରୁଚିର ନୟନ ।
ଜଟା ମୁକୁଟେ ସୁମଣ୍ଡିତ
ଅଟନ୍ତି ଅତି ଅନ୍ତ ଶାନ୍ତ ।
ମନ୍ଦହାସରେ ମନୋହର
ବଦନ ପଙ୍କଜ ଯାହାର ।
ସୀତା ବିରହ ଦୁଃଖେ ଶାନ୍ତ
ସନ୍ତାପ ଯୁକ୍ତ ହୋଇଛନ୍ତି ।
ମୃଗ ଚଢ଼ାଇମାନ ଦେଖି
ନିଷ୍ଟଳ କରିଛନ୍ତି ଆଖି ।

ଏରୂପେ ସୁଗ୍ରୀବ ଲକ୍ଷ୍ମଣ
ଦେଖିଣ ବହ୍ନିଁ ଉତ୍ତରଣ ।
ଭକ୍ତିରେ ଧର ଚରଣରେ
ଦଣ୍ଡ ପ୍ରଣାମ କର ଝରେ ।
ଶ୍ରୀରାମ ସୁଗ୍ରୀବଙ୍କ ଧର
ସ୍ନେହରେ ଅଲିଙ୍ଗନ କର ।
କୁଶଳ ବାର୍ତ୍ତା ପଚାରିଲେ
ସୁଖେ ବସାଇ ପୂଜା କଲେ ।
ଏଥୁଅନ୍ତରେ କପିସାଇଁ
ଭଗତ ଭାବେ ନମ୍ର ହୋଇ ।
କରଯୁଗଳ ଦେଇ ଶିରେ
କହିଲେ ଶ୍ରୀରାମ ଅଗ୍ରତରେ ।
ଦେଖିବା ହେଉ ରଘୁପତି
କପିସୈନ୍ୟ ଯେ ଅସୁଛନ୍ତି ।
କେ କୁଳାଚଳରୁ ସମ୍ଭୂତ
କେ ମେରୁ ମନ୍ଦରରୁ ଜାତ ।
କେ ଅବା ଦଶ କକୁଭରେ
କେ ଅବା ବିବିଧ ନଦୀରେ ।
କେ ଗିରିମାନଙ୍କରୁ ଜନ୍ମ
ହୋଇ ଅଛନ୍ତି ହେ ଶ୍ରୀରାମ ।
ଯେତେକ ଅସୁଛନ୍ତି କପି
ସର୍ବେ ଅଟନ୍ତି କାମରୂପୀ ।
ବିଶେଷେ ପୁଣି ଏ ବାନରେ
ଦେବତାମାନଙ୍କ ଅଂଶରେ ।
ହୋଇ ଅଛନ୍ତି ଏସମ୍ଭୂତ
ସମସ୍ତେ ଯୁଦ୍ଧରେ ପଣ୍ଡିତ ।
କେତେମାନଙ୍କର ହେ ରାମ
ହସ୍ତୀ ଘୋଟାକର ପ୍ରାକର୍ମ ।
ଦଶୋଟି ମତ୍ତ ମାତଙ୍ଗର
ବଳ ଅଟେ କେତେଁ କପିର ।

କେ ଅବା ତହୁଁ ଦଶଗୁଣ
କେ ସହସ୍ରଙ୍କ ସମ ପୂର୍ଣ୍ଣ ।
କେ ଦଶ ସହସ୍ର ନାଗର
ସମାନ ଅଟେ ରଘୁବୀର ।
ତାହାର ଏତେ ତେତେ ହୋଇ
ସଂଖ୍ୟା ତ କରିଣ ନୁହଇ ।
କେବା ଅଞ୍ଜନ ଗିରିସମ
ତାହାର ବର୍ଣ୍ଣ ଯେତେକ ହେମ ।
ରକ୍ତବର୍ଣ୍ଣ ତାହା ବଦନ
ତାହାର ଲମ୍ବା ବାଳମାନ ।
ଶୁଦ୍ଧ ସ୍ଫଟିକ ପ୍ରାୟ ହୋଇ
ତାହାର ଶରୀର ଦିଶଇ ।
କେ ମାନେ ରାକ୍ଷସ ପରାୟେ
ଦେଖିଲେ ହୋଏ ମହାଭୟେ ।
ଦେଖ ଦେଖ ଏ ସବୁ ହରି
ସତ୍ତ୍ୱରେ ଯୁଦ୍ଧ ଇଚ୍ଛା କରି ।
ମୃଦର ପ୍ରାୟେ ଗର୍ଜୁଛନ୍ତି
ସମସ୍ତ ଦିଗକୁ ଧାମନ୍ତି ।
ସମସ୍ତେ ଫଳମୂଳ ଖାନ୍ତି
ତୋ ଆଜ୍ଞାକାରୀ ଏ ଅଟନ୍ତି ।
ଭଲ୍ଲୁକମାନଙ୍କ ରାଜନ
ଅଟନ୍ତି ଏହୁ ଜାମ୍ବବାନ
ବଡ଼ ସୁବୁଦ୍ଧି ଅତି ବୀର ।
ମନ୍ତ୍ରୀଙ୍କ ମଧ୍ୟେ ଶ୍ରେଷ୍ଠ ମୋର
କୋଟିଏ ଋକ୍ଷ ଏହାଙ୍କର
ଅଛନ୍ତି ସର୍ବେ ମହାବୀର ।
ଏ କପି ନାମ ହନୁମନ୍ତ
ପବନ ଦେବତାଙ୍କ ସୁତ ।
ମହା ସମର୍ଥ ଏ ଅଟନ୍ତି
ଅତି ସୁବୁଦ୍ଧି ବଡ଼ ମନ୍ତ୍ରୀ ।

ଭକ୍ତିରେ ନମସ୍କାର କଲେ
ସ୍ନେହେ ଅତିବା ପଚାରିଲେ ।
କର କୁଶଳ ପରଶନ
କହିଲେ ଏମନ୍ତ ବଚନ ।
ବେଗେ ଆସିବା ହେଉ ବୀର
ତୁମ୍ଭର ସିନା ଏ ମନ୍ଦର ।
ନିଃଶଙ୍କ ହୋଇ ମନ୍ଦରରେ
ପ୍ରବେଶ ହୋଇ ଅନ୍ତଃପୁରେ ।
ଦେଖିଣ ରାଜସ୍ତ୍ରୀ ମାନଙ୍କୁ
ଭେଟ ହୋଇଣ ସୁଗ୍ରୀବଙ୍କୁ ।
ଆଜ୍ଞା ଦେବାକୁ ହେବ ଯାହା
ନିଶ୍ଚୟେ କରିବେ ସେ ତାହା ।
ଏ ରୂପେ କହି ସେ ବହୁତ
ଅଙ୍ଗଦ ତୁଲେ ହନୁମନ୍ତ ।
ଲକ୍ଷ୍ମଣ ବେନି ଶ୍ରୀହସ୍ତରେ
ପଇଟି ଦେଇ ଦୁହେଁ କରେ ।
ନଗର ମଧ୍ୟରୁ ପୁରକୁ
ଘେନିଣ ଆସନ୍ତେ ତାହାଙ୍କୁ ।
ସେ ଯୂଥପତି ମାନଙ୍କର
ଅଟ୍ଟାଳି ମାନ ଦିବ୍ୟ ପୁର ।
ଦେଖିଣ ଇନ୍ଦ୍ର ପୁର ସମ
ଏମନ୍ତ ସେ ରାଜ ସଦନ ।
ପ୍ରବେଶ ହୁଅନ୍ତେ ତହିଁରେ
ଦେଖିଲେ ମଧ୍ୟ ଦ୍ୱାରଠାରେ ।
ଚନ୍ଦ୍ରମା ମୁଖ ପ୍ରାୟେ ତାର
ଅଛି ସମସ୍ତ ଅଲଙ୍କାର ।
ଅଳପ ହୋଇ ଅରକତ
ଦିଶୁଛି ନୟନର ପ୍ରାନ୍ତ ।
ତାରା ଏ ପ୍ରକାରେ ସେଠାରେ
ଅଳପ ହସ ହସ ହୋଇ ।

ଲକ୍ଷ୍ମଣ ମୁଖକୁ ଚାହିଁଲେ
ଏମନ୍ତ ବଚନ କହିଲେ ।
ପରମ ମଙ୍ଗଳ ତୁମ୍ଭର
ହୋଇବ ଆସ ହେ ଦେବର ।
ତୁମ୍ଭେ ତ ସାଧୁ ହେ ଲକ୍ଷ୍ମଣ
ଭକ୍ତବତ୍ସଳ ହିଁ ଆପଣ ।
ସୁଗ୍ରୀବ ତୁମ୍ଭର ତ ଭକ୍ତ
ବିଶେଷେ ଅଟନ୍ତି ସେ ଭୃତ୍ୟ ।
କିପାଁ ଏ ଭକ୍ତରେ ତା ଠାଇଁ
ଚିତ୍ତରେ କ୍ରୋଧ ଅଛ ବହି ।
ସୁଗ୍ରୀବ ବନ ପରବତେ
ବହୁତ କାଳ ପରଯନ୍ତେ ।
ଅନବରତ ଦୁଃଖ ମାନ
ଭୋଗ କଲେ ସେ ପ୍ରତିଦିନ ।
ସେ ଦୁଃଖ ମାନଙ୍କରୁ ପୁଣ
ରଖିଲ ଯତ୍ନୁଁ ତା ଆପଣ ।
ତୁମ୍ଭ ପ୍ରସାଦେ ସୁଖ ପାଇ
କାମରେ ଆସକତ ହୋଇ ।
ରାମ ସେବାକୁ ଯା ନ ଗଲା
ଏ ନିଜ ଦୋଷ ତାର ହେଲା ।
ବିବିଧ ଦେଶରୁ ବାନରେ
ପ୍ରବେଶ ହୋଇବେ ଏଠାରେ ।
ପର୍ବତ ପ୍ରାୟେ ବାନରଙ୍କୁ
ଦଶ ଦିଗରୁ ଅଣାମାକୁ ।
ଦଶ ସହସ୍ର କପି ବୀର
ପଠିଅଛନ୍ତି ହେ ଦେବର ।
ମର୍କଟ ଯୂଥପତି କୁଳ
ସଙ୍ଗତେ ଘେନିଣ ସକଳ ।
ସୁଗ୍ରୀବ ଯାଇଁ ଅଭ ଶରେ
ରାକ୍ଷସଙ୍କ ତୁଲେ ଯୁଝିବେ ।

ଏହୁ ଜାଣିବେଟି ତ ଅବଶ୍ୟ
କରିବେ ରାବଣକୁ ନାଶ ।
ଏବେ ସେ ଘେନିଣ ତୁମ୍ଭଙ୍କୁ
ଆଜ ହି ଯିବେ ରାମଠାକୁ ।
ଭାର୍ଯ୍ୟା ସୁହୃଦ ବନ୍ଧୁ ପୁଣ
ଏଥିରେ ହୋଇଛୁ ପୂରିତ ।
ଏମନ୍ତ ହେଉଁ ଅନ୍ତଃପୁର
ତାହା ଦେଖିବା ହେଉ ବୀର ।
ଅଭୟ ଦେଇ ସୁଗ୍ରୀବଙ୍କୁ
ନେବା ହେଉ ଶ୍ରୀରାମଠାକୁ ।
ଲକ୍ଷ୍ମଣ ତାର ବଚନରେ
ଅଳପ ସନ୍ତୋଷ ମନରେ ।
ସେ ମନ୍ଦ ମନ୍ଦ ହୋଇ ଗଲେ
ପ୍ରବେଶ ଅନ୍ତଃପୁରେ ହେଲେ ।
ସୁଗ୍ରୀବ ଥିଲେ ପଲ୍ୟଙ୍କରେ
ରୋମାଙ୍କ ଭଗ୍ନ ହୃଦୟରେ ।
ଦେଖନ୍ତେ ଲକ୍ଷ୍ମଣଙ୍କୁ ଗରେ
ଡେଇଁ ପଡ଼ନ୍ତେ ସେ ଭୟରେ ।
ତାହାଙ୍କୁ ଦେଖି ଏ ପ୍ରକାରେ
ଲକ୍ଷ୍ମଣ ବୋଇଲେ କ୍ରୋଧରେ ।
ଅରେ ଦୁର୍ବୁଦ୍ଧି ନାଶ ଗଲୁ
ଯେଣୁ ରାମଙ୍କୁ ପାସୋରିଲୁ ।
ବାଳିର ହରିଲା ଯେ ପ୍ରାଣ
ତୋତେ କେଡ଼ୁଛି ସେହି ବାଣ ।
ତୁହି ତେମନ୍ତ ଅଜ ହେବୁ
ବାଳିର ମାର୍ଗକୁ ଦେଖିବୁ
ଏ ରୂପେ ପୌରୁଷ କରଣ
ତାହାଙ୍କୁ କହନ୍ତେ ଲକ୍ଷ୍ମଣ ।
ଏମନ୍ତ ଦେଖି ହନୁମନ୍ତ
ତାହାଙ୍କୁ କହିଲେ ଏମନ୍ତ ।

ଏ ରୂପେ କାହିଁକି ଉତ୍ତର
ବୋଲୁଛ ହେଉ ଅଛୁ ବୀର ।
ତୁମ୍ଭ ପୃଚ୍ଛାଇଁ ଶ୍ରୀରାମର
ବଡ଼ ଭକ୍ତ ଏ କପୀଶ୍ୱର ।
ରାମ କାର୍ଯ୍ୟକୁ ଜଜାଗର
ହୋଇ ଅଛନ୍ତି ନିରନ୍ତର ।
ସମସ୍ତ ଦିଗରୁ ହେ ବୀର
ସହସ୍ର ସହସ୍ର ବାନର ।
ଆସୁ ଅଛନ୍ତି ହେ ଲକ୍ଷ୍ମଣ
ଦେଖିବା ହେଉ ତା ଆପଣେ ।
ସୀତାଙ୍କୁ ଖୋଜିବା ନିମିତ୍ତେ
ଯିବେ ଏ କ୍ଷଣରେ ସମସ୍ତେ ।
ନିଃଶେଷ କରି ଶ୍ରୀରାମର
କାର୍ଯ୍ୟ କରିବେ କପୀଶ୍ୱର ।
ଲକ୍ଷ୍ମଣ ମାରୁତି ଉକ୍ତିରେ
ସଙ୍କୋଚ ପାଇଲେ ଚିତ୍ତରେ ।
ସୁଗ୍ରୀବ ଏଥୁ ଅନନ୍ତରେ
ସେ ଲକ୍ଷ୍ମଣଙ୍କୁ ଅର୍ଘ୍ୟାଦରେ ।
ପୂଜା କରିଣ ସେ ବହନ
କହିଲେ କରି ଆଲିଙ୍ଗନ ।
ରାମର ଦାସ ମୁଁ ସନ୍ତତେ
ସେ ରକ୍ଷା କରିଛନ୍ତି ମୋତେ ।
ଶ୍ରୀରାମ ଆପଣା ତେଜରେ
ଅର୍ଦ୍ଧ ନିମିଷକ ଭିତରେ ।
ଜିଣିବେ ତିନିଲୋକ ଯାକ
କେବଳ ଯେଣୁ ମୁଁ ସେବକ ।
ଏବେ ମୁଁ ଘେନି ବାନରଙ୍କୁ
ସହାୟ ହେବି ମାତ୍ର ତାଙ୍କୁ ।
ଲକ୍ଷ୍ମଣ ଶୁଣି ଏ ଉତ୍ତର
ବୋଇଲେ ଅହେ କପୀଶ୍ୱର ।

ଗବାକ୍ଷ ନଳ ନୀଳ ଗୟ
ଏ ଗନ୍ଧମାର୍ଦ୍ଦନ ଗବୟ ।
ଶରଭ ଦ୍ୱିବଦ ମଇନ୍ଦ
ଏ ଟି ପନସ ରାମଚନ୍ଦ୍ର ।
ଏ ବଳୀମୁଖ ଦଧିମୁଖ
ଏ ଟି ସୁଷେଣ ତାର ଦେଖ ।
ଧୂମ୍ରଜନ୍ତି ଯେ ବୃଦ୍ଧ ହରି
ଏହାଙ୍କ ନାମଟି କେଶରୀ ।
ଅତି ଅନ୍ୟ ପ୍ରାକର୍ମବନ୍ତ
ଏହାଙ୍କ ପୁଅ ହନୁମନ୍ତ ।
ନାମ ମୁଁ କହିଲି ଯେତେକ
ପ୍ରଧାନ ଯୂଥପ ଏତେକ ।
ମହେନ୍ଦ୍ର ପ୍ରାୟ ପରାକ୍ରମ
ଏ ମହା ବୀର୍ଯ୍ୟବନ୍ତ ରାମ ।
ଏଙ୍କୁ ଜଣକେ ଯୂଥପତି
କୋଟିଏ ଲେଖାଏଁ ଅଛନ୍ତି ।
ସମସ୍ତେ ସୁରମାନଙ୍କର
ଅଂଶରେ ହୋଇଛନ୍ତି ବୀର ।
ହେ ରାମଚନ୍ଦ୍ର ଏଣୁ କରି
ସମସ୍ତେ ତୋର ଆଜ୍ଞାକାରୀ ।
ଏ ଯେ ଅଙ୍ଗଦ ବାଳିସୁତ
ପିତା ସମାନ ଶୂରବନ୍ତ ।
ରାକ୍ଷସକୁଳ ଏ ଅବଶ୍ୟ
ବହୁତ କରିବେ ବିନାଶ ।
ଯେତେକ କହିଲି ହେ ବୀର
ନ କହୁ ଅଛି ଯେ ବାନର ।
ସମସ୍ତେ ନିଷ୍ଠେ ତୁମ୍ଭପାଇଁ
ପ୍ରାଣ ତେଜିବେ ରଣ ଠାଇଁ ।
ଘେନି ପାଷାଣ ଗିରି ଶୃଙ୍ଗ
ଯୁଦ୍ଧ କରିବେ ଶାଖା ମୃଗ ।

ଶତ୍ରୁଙ୍କୁ ମାରିବା ନିମିତ୍ତେ
ବଡ଼ ନିପୁଣ ଏ ସମସ୍ତେ ।
ଅତ୍ୟନ୍ତ ବଶ ଏ ତୁମ୍ଭର
ଏହାଙ୍କୁ ଆଜ୍ଞା ଦିଅ ବୀର ।
ଶୁଣନ୍ତେ ଶ୍ରୀରଘୁନନ୍ଦନ
ମିତ୍ରଙ୍କୁ କରି ଆଲିଙ୍ଗନ ।
ଆନନ୍ଦେ ନୟନ୍ତୁ ବହନ
ବହୁଛି ଅଶ୍ରୁଧାର ମାନ ।
ଏମନ୍ତ ରୂପେ ସୀତାକାନ୍ତ
ତାହାଙ୍କୁ କହିଲେ ଏମନ୍ତ ।
ଆପଣ ଜାଣନ୍ତି ସମସ୍ତ
ଏ ଘେନି କରି ବେଗେ ମିତ୍ର ।
ଖୋଜିବା ପାଇଁ ଜାନକୀଙ୍କି
ଅନୁଜ୍ଞା ଦିଅ ଏ କଟକି ।
ଯେମନ୍ତ ପ୍ରକାରେ ସୁଗ୍ରୀବ
ତୁମ୍ଭ ମନକୁ ଯୋଗାଇବ ।
ଏମନ୍ତ ଶୁଣି କପିସାଇଁ
ସେ ଅତି ଆନନ୍ଦିତ ହୋଇ ।
ଅତି ସମର୍ଥ ବାନରଙ୍କୁ
ପେଷିଲେ ସମସ୍ତ ଦିଗକୁ ।
ପୁଣି ଅଙ୍ଗଦ ଜାମ୍ବବନ୍ତ
ନଳ ସୁଷେଣ ହନୁମନ୍ତ ।
ଶରଭ ଦ୍ୱିବିଦ ମଇନ୍ଦ
ଏ ଆଠ ବୀରଙ୍କୁ କପୀନ୍ଦ୍ର ।
ପେଷିବା ପାଇଁ ଦକ୍ଷିଣକୁ
ଏମନ୍ତ କହିଲେ ତାହାଙ୍କୁ ।
ତୁମ୍ଭେମାନେ ମୋ ଅନୁଜ୍ଞାରେ
ବଇଦେହୀଙ୍କି ସବୁଠାରେ
ବହୁତ ଯତ୍ନରେ ଖୋଜିବ
ମାସକ ଭିତରେ ଆସିବ ।

ସୀତାଙ୍କୁ ନ ଦେଖି ନୟନେ
ମାସକୁ ବଳିଥିବ ଦିନେ ।
ଏ ପରକାରେ ଯେ ଆସିବ
ସେ ପ୍ରାଣଦଣ୍ଡକୁ ପାଇବ ।
ଏରୂପେ ତାଙ୍କ ପଟିଆଇ
ହରଷ ହୋଇ କପିସାଇଁ ।
ରାମଙ୍କୁ ନମସ୍କାର କଲେ
ତାହାଙ୍କ ପାଖରେ ବସିଲେ ।
ଯାଇ ଅଛନ୍ତି ହନୁମନ୍ତ
ଶ୍ରୀରାମ ଦେଖିଲେ ଏମନ୍ତ ।
ବୋଇଲେ ଅହେ ବାତ ସୁତ
ଅମ୍ଭର ନାମରେ ଅଙ୍କିତ ।
ଏମନ୍ତ ଯେ ମୁଦ୍ରିକା ମୋର
ଚିହ୍ନ ନିମନ୍ତେ ନିଅ ବୀର ।
ବଇଦେହୀଙ୍କି ଏହା ଦେବ
ଏଥୁଁ ତା ବିଶ୍ୱାସ ହୋଇବ ।
ତୁ ଏ କାର୍ଯ୍ୟକୁ ଯୋଗ୍ୟ ବୀର
ଜାଣିଲି ମୁଁ ବଳ ତୁମ୍ଭର ।
ଯାଅ ବୋଲି ସେ ମୁଦି ଦେଲେ
ବାଟେ ଶୁଭ ହେଉ ବୋଇଲେ ।
ଅଙ୍ଗଦ ଆଦି ବୀରେ ଗଲେ
ସମସ୍ତ ସ୍ଥାନରେ ଖୋଜିଲେ ।
ତହିଁରେ ଅରଣ୍ୟ ମଧ୍ୟରେ
ଦେଖିଲେ ସମସ୍ତ ବାନରେ ।
ଶରୀର ପର୍ବତ ପରାୟେ
ଏରୂପେ ରାକ୍ଷସ ଗୋଟାଏ ।
ବହୁତ ଗଜ ମୃଗଗଣ
ଧରି ସେ କରୁଛି ଭକ୍ଷଣ ।
ରାବଣ ପ୍ରାୟେ ତାକୁ ଚିହ୍ନେ
ବୁଝିଣ ବାନର ସମସ୍ତେ ।
ସେ କିଳିକିଳା ନାଦ କରି
ସତ୍ୱରେ ବେଢ଼ି ସବୁ ହରି ।
ମାରି ବହୁତ ମୃଥମାନ
ବେଗେ ହରିଲେ ତା ଜୀବନ ।
ଜାଣିଲେ ଏ ନୋହେ ରାବଣ
ଅନ୍ୟ ବନକୁ ଗଲେ ପୁଣ ।
ଯାଉଣ୍ଟୁ କଣ୍ଠ ତାଳୁ ଶୁଖି
ତୃଷାରେ ହୋଇ ବଡ଼ ଦୁଃଖୀ ।
ସଲିଳ ସମସ୍ତେ ଲୋଡ଼ିଲେ
କେଉଁ ସ୍ଥଳରେ ନ ପାଇଲେ ।
ଏମନ୍ତ ବୁଲନ୍ତେ ସଭିଏଁ
ଦେଖିଲେ ବିବର ଗୋଟିଏ ।
ଲତାମାନରେ ଅତିଅନ୍ତ
ହୋଇଅଛି ସେ ଆଚ୍ଛାଦିତ ।
ଆର୍ଦ୍ର ହୋଇ କୌଞ୍ଚପକ୍ଷୀ
ତହିଁରୁ ଆସୁଛନ୍ତି ଦେଖି ।
ଏ ଯେଣୁ ଜଳ ଏ ଭିତରେ
ଅଛି ବିଚାରି ସେ ବାନରେ ।
ପିବାର ନିଷ୍ଟୟ ସେ କଲେ
ଆଗରେ ହନୁମନ୍ତ ହେଲେ ।
ତାହାଙ୍କ ପଛରେ ସମସ୍ତେ
ସେ ଧରାଧରି ହୋଇ ହସ୍ତେ ।
ବହୁତ ଦୂର ଅନ୍ଧକାରେ
ଯାଆନ୍ତେ ଏମନ୍ତ ପ୍ରକାରେ ।
ବହୁତ ପ୍ରକାର ତହିଁରେ
ଆଶ୍ଚର୍ଯ୍ୟ ଦେଖିଲେ ବାନରେ ।
ଅବର ଅଛି ପୁଷ୍କରଣୀ
ମଣି ପ୍ରାୟେ ନିର୍ମଳ ପାଣି ।
ତହିଁରେ ଅଛି ଯେତେ ଦ୍ରୁମ
ସମସ୍ତେ କଳ୍ପବୃକ୍ଷ ସମ ।

ବିଶେଷେ ଫଳ ଫୁଲ ଚୟ
ଏଥିରେ ହୋଇଛି ଲମ୍ବିତ ।
ସେ ମନ୍ଦିରରେ ବହୁତ
ହୋଇଣ ଅଛନ୍ତି ମଣ୍ଡିତ ।
ମଣିରତ୍ନରେ ଯୁକ୍ତ ହୋଇ
ମନ୍ଦିରବୃନ୍ଦ ଅଛି ରହି ।
ଉତ୍ତମ ଭକ୍ଷ୍ୟ ଭୋଜ୍ୟମାନ
ଅନେକ ହୋଇଅଛି ପୂର୍ଣ୍ଣ ।
କେବଳ ତହିଁ ନାହିଁ ନର
ଶୂନ୍ୟ ହୋଇଛି ସେ ମନ୍ଦିର ।
ହେମ ଆସନ ଗୋଟିକରେ
ସ୍ତ୍ରୀ ଜଣେ ଛନ୍ତି ତହିଁରେ ।
ସାକ୍ଷାତ ସେ ଲକ୍ଷ୍ମୀ ପରାୟେ
ଦିଶୁ ଅଛନ୍ତି ତେଜୋମୟେ ।
ବକଳ ପିନ୍ଧି ଜଟା ବାନ୍ଧି
ଏରୂପେ ଯୋଗାରୂଢ଼ ହୋଇ ।
କରୁଅଛନ୍ତି ଧ୍ୟାନ ତହିଁ
ସେ ନିମିଳିତ ନେତ୍ର ହୋଇ ।
ତାହାଙ୍କୁ ଏରୂପେ ବାନରେ
ଦେଖି ବହୁତ ବିସ୍ମୟରେ ।
ଭୟାକୁଳ ହୋଇଣ ଭକ୍ତିରେ
ପ୍ରଣାମ କଲେ ହର୍ଷରେ ।
ଯୋଗିନୀ ଦେଖି ସେମାନଙ୍କୁ
ଏମନ୍ତ ପଚାରିଲେ ତାଙ୍କୁ ।
କାହାର ଦୂତ କାହିଁଥିଲ
ଏଥକୁ କି କାର୍ଯ୍ୟେ ଆଇଲ ।
କହ କାହିଁକି ତୁମ୍ଭେମାନେ
ପ୍ରବେଶ ହେଲ ମୋହ ସ୍ଥାନେ
ଏମନ୍ତ ଶୁଣି ହନୁମନ୍ତ
ତାହାଙ୍କୁ କହିଲେ ଏମନ୍ତ ।

ମୁଁ ଯାହା କହିବି ସମସ୍ତ
ଶୁଣିବା ହେଉ ଦେଇ ଚିତ୍ତ ।
ଅଯୋଧ୍ୟା ଦେଶ ନରନାଥ
ନାମ ତାଙ୍କର ଦଶରଥ ।
ଶ୍ରୀରାମ ନାମରେ ତାଙ୍କର
ଅଟନ୍ତି ସେ ଜ୍ୟେଷ୍ଠ କୁମର ।
ସେ ରାମ ପିତାଙ୍କ ଆଜ୍ଞାରେ
ବନିତା ଭ୍ରାତା ସଙ୍ଗତରେ ।
ଦଣ୍ଡକ ବନକୁ ଆଇଲେ
ପଞ୍ଚବଟୀରେ ରହିଥିଲେ ।
ତହୁଁ ଦୁରାତ୍ମା ଦଶଶିର
କାନ୍ତାକୁ ହରିଲା ତାଙ୍କର ।
ଶ୍ରୀରାମଚନ୍ଦ୍ର ସେ ଉତ୍ତାରେ
ଭାଇଙ୍କି ଘେନି ସଙ୍ଗତରେ ।
ସୁଗ୍ରୀବ ନିକଟେ ମିଳିଲେ
ସେ ରାମ ତୁଲେ ମିତ୍ର ହେଲେ ।
ବଇଦେହୀଙ୍କି ଖୋଜିବାକୁ
ସୁଗ୍ରୀବ ପେଷିଲେ ଆମ୍ଭଙ୍କୁ ।
ଆଇଲୁ ଆମ୍ଭେ ଏ ନିମିତ୍ତେ
ସମସ୍ତ ଜଗରେ ଖୋଜନ୍ତେ ।
ତୃଷାରେ ଆମ୍ଭେ ଅସ୍ଥି ହେଲୁଁ
ବିବର ଭିତରେ ପଶିଲୁଁ ।
ଏ ରୂପେ ଦୈବ ବଶରେ
ପ୍ରବେଶ ହୋଇଲୁଁ ଏଠାରେ ।
ତୁମ୍ଭେ କେ କେଉଁ ନିମିତ୍ତରେ
ରହିବା ହୋଇଛ ଏଠାରେ ।
ଶୁଣି ଯୋଗିନୀ ହୃଷ୍ଟ ହୋଇ
କହିଲେ ସେମାନଙ୍କୁ ଚାହିଁ ।
ଭୋଜନ ଫଳ ମୂଳ କର
ମୋ ଇଚ୍ଛା ହୋଇବ ତୁମ୍ଭର ।

ଅମୃତ ପ୍ରାୟ ଜଳମାନ
ସନ୍ତୋଷ ହୋଇ କର ପାନ ।
ତଦନ୍ତେ ଆସିବ ଏଠାକୁ
ସବୁ ମୁଁ କହିବି ତୁମ୍ଭଙ୍କୁ ।
ବାନରେ ଶୁଣି ହରଷରେ
ଉଠିଣ ବୃକ୍ଷମାନଙ୍କରେ ।
ସୁପକ୍ୱ ଫଳ ମଧୁମାନ
କରି ତୋଷେ ଭୋଜନ ପାନ ।
ଯୋଗିନୀ ସମ୍ମୁଖରେ ମିଳିଲେ
କରମାନ ଯୋଡ଼ି ରହିଲେ ।
କହିଲେ ସେ ଯୋଗିନୀ ତାଙ୍କୁ
ଅନାଇ ମାରୁତି ମୁଖକୁ ।
ହେମା ନାମେ ଏକ ବନିତା
ସେ ବିଶ୍ୱକର୍ମାର ଦୁହିତା ।
ଅପସରାରେ ଶ୍ରେଷ୍ଠ ସେହୁ
ବହୁତ ନୃତ୍ୟ ଗୀତେ ପଟୁ ।
ଶିବଙ୍କୁ କଲା ସେ ସନ୍ତୋଷ
ପ୍ରସନ୍ନ ହୋଇ ଭଗବାସ ।
ଏ ଦିବ୍ୟ ପୁର ତାଙ୍କୁ ଦେଲେ
ସେ ହେମା ପାଇ ତୋଷ ହେଲେ
ସେ ଦଶସହସ୍ର ବରଷ
ଏ ଦିବ୍ୟ ପୁରେ କଲେ ବାସ ।
ପ୍ରିୟସଖୀ ମୁଁ ତାହାଙ୍କର
ପୁଜଣ ବିଷ୍ଣୁଙ୍କ ପଦ୍ମର ।
ମୋକ୍ଷକୁ ଇଚ୍ଛା କରି ମନେ
ରହିଛି ମୁଁ ନିର୍ଜ୍ଜନ ସ୍ଥାନେ ।
ଝିଅ ମୁଁ ଗନ୍ଧର୍ବ ରାଜାର
ନାମ ଯେ ସ୍ୱୟଂପ୍ରଭା ମୋର ।
ବ୍ରହ୍ମଲୋକକୁ ଯିବାବେଳେ
ସେ ହେମା ମୋତେ ଆଜ୍ଞା ଦେଲେ

ଏ ନିର୍ଜ୍ଜନ ସ୍ଥାନେ ତୁ ରହ
ତପସ୍ୟାମାନ କରୁ ଥାଅ ।
ତ୍ରେତା ଯୁଗରେ ନାରାୟଣ
ଦାଶରଥି ନାମ ହୋଇଣ ।
ଭୂଭାର ନାଶ କରିବାକୁ
ଆସିବେ ଦଣ୍ଡକ ବନକୁ ।
ତାହାଙ୍କ ଭାର୍ଯ୍ୟାକୁ ଖୋଜନ୍ତେ
ବାନରେ ଭେଟ ହେବେ ତୋତେ
ତାହାଙ୍କୁ ତୁ ପୂଜା କରିବୁ
ଶ୍ରୀରାମ ସମ୍ମୁଖକୁ ତୁ ଯିବୁ ।
ତାଙ୍କୁ ବହୁ ସ୍ତୁତି କରିଣ
ଯୋଗିମାନଙ୍କର ଯେ ପୁଣ ।
ଗମ୍ୟ ଅଟଇ ବିଷ୍ଣୁ ସ୍ଥାନ
ତହିଁକି କରିବୁ ଗମନ ।
ତେଣୁ ରାମଙ୍କୁ ଦେଖିବାକୁ
ତୋରା ହେଉଛି ମୁଁ ଯିବାକୁ ।
ସମସ୍ତେ ବୁଜିଣ ନୟନ
ଏଠାରୁ ଯାଅ ଯା ବହନ ।
ସେମାନେ ନେତ୍ରେ କର ଦେଲେ
ପୂର୍ବ ଥିଲାର ବନେ ହେଲେ ।
ଯୋଗିନୀ ସେ ସ୍ଥାନ ତେଜିଲେ
ରାମଙ୍କୁ ଦେଖିବାକୁ ଗଲେ ।
ସୁଗ୍ରୀବ ଲକ୍ଷ୍ମଣର ତୁଲେ
ଶ୍ରୀରାମଚନ୍ଦ୍ରଙ୍କୁ ଦେଖିଲେ ।
କରି ପ୍ରଦକ୍ଷିଣ ବହୁତ
ଅନେକ କରି ଦଣ୍ଡବତ ।
ସମସ୍ତ ରୋମ ପୁଲକାଇ
କହିଲେ ଗଦଗଦ ହୋଇ ।
ଅହେ ରାଜେନ୍ଦ୍ର ରଘୁସାଇଁ
ତୁମ୍ଭର ଦାସୀ ମୁଁ ଅଟଇ ।

ତୁମ୍ଭଙ୍କୁ ନେତ୍ରେ ଦେଖିବାକୁ
ମୋ ନାଥ ଅଇଲ ସ୍ୱୟମ୍ଭୁ ।
ବହୁତ ସହସ୍ର ବରଷ
କଲିସ୍ମି ମଧ୍ୟେ କରି ବାସ ।
ତପସ୍ୟା କଲି ଏ ନିମିତ୍ତେ
ଏ ରୂପେ ଦେଖିବାକୁ ତୋତେ ।
ମାୟାର ପରେ ଅଛୁ ରହି
ସବୁରି ଆଦ୍ୟ ଅଟୁ ତୁହି ।
ଏମନ୍ତ ଯେ ତୁ ତୋତେ ବୀର
କରୁଅଛି ମୁଁ ନମସ୍କାର ।
ସମସ୍ତ ଭୂତମାନ ଠାଇଁ
ଅଦୃଶ ହୋଇ ରଘୁସାଇଁ ।
ସବୁ କାଳରେ ସବୁଠାରେ
ରହିଛ ବାହାର ଭିତରେ ।
ଯୋଗମାୟା ଯେ ବାଡ଼ ତହିଁ
ରହିଛ ଅପ୍ରକାଶ ହୋଇ ।
ମନୁଷ୍ୟ ବେଶ ଅଛ ଧରି
ନୃତ୍ୟକାରଙ୍କ ବେଶ ପରି ।
ଚିହ୍ନିଣ ନୁହଇ ଯେମନ୍ତ
ତେହ୍ନେ ତୁମ୍ଭଙ୍କୁ ସୀତାକାନ୍ତ ।
ଅଜ୍ଞାନ ଚକ୍ଷୁରେ କଦଣ
କେବେହେଁ ଜାଣି ନୁହେ ପୁଣ ।
ପରମ ବୈଷ୍ଣବମାନଙ୍କୁ
ତୁମ୍ଭ ଭକ୍ତି ଯୋଗ ଦେବାକୁ ।
ଜାତ ହୋଇଛ ରଘୁ ସାଇଁ
ମୁଁ ସ୍ତ୍ରିରି ଅଜ୍ଞାନ ଅଟଇ ।
ଏ ବେଳ କି ରୂପେ ତୁମ୍ଭଙ୍କୁ
ଯୋଗ୍ୟ ହୋଇବି ଜାଣିବାକୁ ।
ତୋ ତତ୍ତ୍ୱ ଯେବେ କେ ଜାଣଇ
ଜାଣୁ ସେ ତା ମୁଁ ଲୋଡୁ ନାହିଁ ।

ତୁମ୍ଭ ଏ ରୂପ ମୋ ହୃଦରେ
ଅଶ୍ରାନ୍ତ ସକଳ କାଳରେ ।
ଏ ଯେଉଁ ପାଦ ଯୁଗ ତୋର
ସାକ୍ଷାତ ଦେଖିଲି ହେ ବୀର ।
ଏହୁ ସଜାଣୁଛି ବହନ
ନିଷ୍ଟେ ହୁଅଇ ମୋକ୍ଷ ଜ୍ଞାନ ।
ସଂସାରେ ପଡ଼ି ନିରନ୍ତରେ
ଅରତ ହୁଏ ଯେଉଁ ନରେ ।
ସେମାନେ ଏହା ରଘୁପତ
କେବେହେଁ ଦେଖି ନ ପାରନ୍ତି ।
ସନ୍ତୁ ମାର୍ଗରେ ଯେହୁ ଥାଇ
ଉତ୍ତମ କରି ସେ ଦେଖଇ ।
ଧନ ତନୟ ଭାର୍ଯ୍ୟା ଭୃତ୍ୟ
ଏଥିରେ ଯେ ହୋଇ ଗର୍ବିତ ।
ନାମ କହିବାକୁ ତୁମ୍ଭର
ଯୋଗ୍ୟ ନୁହନ୍ତି ସେହୁ ନର
ଯେଣୁ ଅକିଞ୍ଚନ ଲୋକର
ଧନ ଅଟୁ ତୁ ରଘୁବୀର ।
ଗୁଣମାର୍ଗକୁ ନିଷ୍ଟେ ପୁଣ
ନିବର୍ତ୍ତାଇ ଅଛ ଆପଣ ।
ଅନନ୍ତ ତୁ ରଘୁନନ୍ଦନ
ଅକିଞ୍ଚନ ଲୋକର ଧନ ।
ଅତ୍ମାରାମ ତୁ ସୀତାକାନ୍ତ
ତୁମ୍ଭେ ଅଟ ନିର୍ଗୁଣବନ୍ତ ।
ତୁମ୍ଭେ ଟି ଗୁଣମାନଙ୍କର
ଅତ୍ମାସ୍ୱରୂପ ରଘୁବୀର ।
କାଳରୂପୀ ଯେଉଁ ପୁରୁଷ
ସେ ନିଶ୍ଚେ ତୁ ଅଟୁ ଅବଶ୍ୟ ।
ମୋ ମନକୁ ଏମନ୍ତ ହୋଇ
ପ୍ରତେ ହେଉଛି ରଘୁସାଇଁ ।

ଅବ୍ୟ ଅନନ୍ତ ମଧ୍ୟ ତୁମ୍ଭର
କେହି ନାହାନ୍ତି ରଘୁବୀର ।
ସବୁଠାରେ ସମାନ ହୋଇ
ବେଭାର କରୁଅଛ ତୁହି ।
ଯେମନ୍ତ ଚେଷ୍ଟା ମନୁଷ୍ୟର
ସେ ରୂପେ ଚରିତ ତ ତୋର ।
ଏଣୁ କରି ହେ ରଘୁସାଇଁ
ଏହା କେହି ଜାଣଇ ନାହିଁ ।
ତୁମ୍ଭର ପ୍ରିୟ କେହି ନାହିଁ
ଏଣୁ ଅପ୍ରିୟ ଥିବ କେହି ।
ତୋ ମାୟାରେ ଯେ ମୋହ ହୋନ୍ତି
ସେ ରୂପେ ତୁମ୍ଭଙ୍କୁ ବୋଲନ୍ତି ।
ତୁମ୍ଭେ ଅକର୍ତ୍ତା ଅଜ ଈଶ
ଦେବତା ତିର୍ଯ୍ୟକ ମନୁଷ୍ୟ ।
ଜନ୍ମ ହୋଇ ଯେ କର୍ମ କର
ଏ ବଡ଼ ବିଡ଼ମ୍ବନ ତୋର ।
ସମସ୍ତ ଲୋକରେ ରାଘବ
କଥା ଶ୍ରବଣେ ପ୍ରବର୍ତ୍ତିବ ।
ହୋଇଛ ଏଥି ପାଇଁ ଜନ୍ମ
ଏମନ୍ତ କେ ବୋଲନ୍ତି ରାମ ।
ତପସ୍ୟା ଦଶରଥଙ୍କର
ସିଦ୍ଧ କରିବା ପାଇଁ ବୀର ।
ପୂର୍ବକାଳେ ଯାହା କୌଶଲ୍ୟା
ତୁ ପୁତ୍ର ହେବାକୁ ମାଗିଲା ।
ଏଥି ନିମିତ୍ତେ ହେଲ ଜାତ
କେ ପୁଣି ବୋଲନ୍ତି ଏମନ୍ତ ।
ଯେଣୁ ପୃଥିବୀ ଭାର ପୁଣ
ହେଲେ ଦୁଷ୍ଟ ରାକ୍ଷସଗଣ ।
ବ୍ରହ୍ମା ବୋଇଲେ ତେଣୁ କରି
ସେ ଯେଣ ନରରୂପ ଧରି ।
ଅବତରିଲ ଏ କ୍ଷିତିରେ
ଏହା ବୋଲନ୍ତି କେଉଁ ନରେ ।
ତୁମ୍ଭର କଥା ଯେ ଶୁଣନ୍ତି
ଯେ ଅବା ଗାୟନ କରନ୍ତି ।
ସଂସାର ସମୁଦ୍ରରୁ ପାର
କରିଛ ତୋ ଯେଉଁ ପୟର ।
ତାହା ସେମାନେ ସୀତାପତି
ନିଶ୍ଚୟେ ଭଲେ ସେ ଜାଣନ୍ତି ।
ମାୟାଗୁଣରେ କରି ତୋର
ମୁଁ ବନ୍ଧା ହୋଇଅଛି ବୀର ।
କେମନ୍ତେ ତୋତେ ମୁଁ ଜାଣିମି
କି ବୋଲି ସ୍ତୁତି ବା କରିଣ
ତୁମ୍ଭେ ତ ମାୟାରୁ ବାହାର
ଅଗୋଚର ଗୁଣମାନଙ୍କର ।
ଏ ଯେଣ ଏ ମୂର୍ତ୍ତିକି ତୋର
କରୁଅଛି ମୁଁ ନମସ୍କାର ।
ଯାହାର ଦେଖ ପାର୍ଶ୍ୱଶେଣ
ଅଛନ୍ତି ସୁଗ୍ରୀବ ଲକ୍ଷ୍ମଣ ।
କରରେ ଅଛି ଧନୁବାଣ
ତା ପାଦେ ପଶିଲି ଶରଣ ।
ଶ୍ରୀରାମ ଯହୁଁ ତା ଶୁଣିଲେ
ତା ଠାରେ ପ୍ରସନ୍ନ ହୋଇଲେ ।
ଯେଣୁ ପ୍ରଣତ ଲୋକଙ୍କର
ଦୁଃଖ ନାଶନ୍ତି ରଘୁବୀର ।
ଆପଣା ଭକତ ଅଟଇ
ଏମନ୍ତ ଯୋଗିନୀଙ୍କ ଚାହିଁ ।
ବୋଇଲେ କହ ବାଞ୍ଛା ଯାହା
କରିବୁ କରିବ ମୁଁ ତାହା ।
ସ୍ୱୟଂପ୍ରଭା ଏହା ଶୁଣିଣ
ମାଗିଲା ଆନନ୍ଦ ହୋଇଣ ।

ମୁଁ ଯହିଁଥିଲେ ତହିଁ ରାମ ।
ଯେଉଁ ଯୋନିରେ ହେଲେ ଜନ୍ମ
ତୋ ପାଦ ପଦ୍ମରେ ରାଘବ ।
ନିଶ୍ଚଳ ହୋଇ ଭକ୍ତ ହେବ ।
ତୋ ପାଦ ଭକ୍ତମାନଙ୍କର
ସଙ୍ଗ ମୋ ହେବ ନିରନ୍ତର ।
ନୋହିବ ସାମାନ୍ୟ ଲୋକର
ଇଚ୍ଛା ମୋହର ନିରନ୍ତର ।
ଭକ୍ତିରେ ନିରତ ରାଘବ
ଶ୍ରୀରାମ ରାମ ବୋଲୁଥିବ ।
ସୁମରକତ ମତ ଶ୍ୟାମ
ଏମନ୍ତ ରୂପ ଯେ ଶ୍ରୀରାମ ।
ସଙ୍ଗତେ ସୁଗ୍ରୀବ ଲକ୍ଷ୍ମଣ
ଶ୍ରୀ କରେ ଥିବ ଧନୁର୍ବାଣ ।
ସୁପୀତ ବସନ କଟିରେ
ମୁକୁଟ ଥିବ ମସ୍ତକରେ ।
କର୍ଣ୍ଣରେ ମକର କୁଣ୍ଡଳ
ହୃଦେ ମୁକୁତା ମାଳ ଜାଳ ।
ଭୁଜରେ କେୟୂର କଙ୍କଣ
କର ଶାଖାରେ ମୁଦିଗଣ ।
ନୂପୁର ଚରଣ ଯୁଗଳେ
କୌସ୍ତୁଭ ଥିବ ବକ୍ଷସ୍ଥଳେ ।
ଏମନ୍ତ ମୂର୍ତ୍ତି ନିରନ୍ତର
ସ୍ମରଣ କରୁ ମନ ମୋର ।
ଏ ବର ଦିଅ ରଘୁସାଇଁ
ଆନ ବରରେ କାର୍ଯ୍ୟ ନାହିଁ ।

ଯେମନ୍ତ ମାଗିଲ ଏମନ୍ତ
ହେଉ ବୋଇଲେ ସୀତାକାନ୍ତ ।

ଶ୍ରୀରାମ ଉବାଚ

ବଦର ବନକୁ ଆପଣ
ଯା ମୋତେ କରଣ ସ୍ମରଣ ।
ଛାଡ଼ି ଏ ପଞ୍ଚଭୂତ ଦେହ
ନିକଟେ ମୋତେ ତୁମ୍ଭେ ପାଅ ।
ଏ ରୂପେ ଅମୃତ ସମାନ
ଶୁଣି ସେ ଶ୍ରୀରାମ ବଚନ ।
ବଡ଼ଇ ବୃକ୍ଷମାନଙ୍କରେ
ସଂସ୍କୃତ ହୋଇ ସୁତୀର୍ଥରେ ।
ପ୍ରବେଶ ହୋଇ ସେ ବହନ
ରାମଙ୍କୁ ହୃଦେ କରି ଧ୍ୟାନ ।
ସ୍ମରଣ କରୁଁ କରୁଁ ନିତ୍ୟ
ତେଜିଣ ଅନିତ୍ୟ ଯେ ଗାତ୍ର ।
ଦିବ୍ୟ ଶରୀରକୁ ଧଇଲେ
ପରମ ପଦକୁ ଲଭିଲେ ।
ବୋଲଇ ଦାସ ହଳଧର
ଅହେ ରାଜେନ୍ଦ୍ର ରଘୁବୀର ।
ଜାନକୀ ସହିତେ ତୁମ୍ଭର
ଚରଣେ ଭକ୍ତି ହେଉ ମୋର ।
ତୋ ପାଦପଦ୍ମେ ଯେ କିଙ୍କର
ତା ସଙ୍ଗ ହେଉ ନିରନ୍ତର ।
ହେ ନାଥ କରୁଣା ସାଗର
ଏ ରୂପେ ଅନୁଗ୍ରହ କର ।
ଦୁଇଶ ପଞ୍ଚାଳିଶ ପଦ
ସମସ୍ତ ଲୋକର ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
କିଷ୍କିନ୍ଧ୍ୟା କାଣ୍ଡେ ନାମ ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଶଙ୍କର ଏଥୁ ଅନନ୍ତରେ
କହିଲେ ଅମ୍ବିକା ଅଗରେ ।
ସ୍ୱୟଂପ୍ରଭା ଗଲା ଉତ୍ତାରେ
ସୀତାଙ୍କୁ ଖୋଜନ୍ତେ ବାନରେ ।
ମୋହନ୍ତୁ ପାରଣ ଶ୍ରମରେ
ପଶିଲେ ଏକ ବିପିନରେ ।
ଅଙ୍ଗଦ ସମସ୍ତଙ୍କୁ ଚାହିଁ
କହିଲେ ଅତି ଦୁଃଖୀ ହୋଇ ।
ବଇଦେହୀଙ୍କ ଖୋଜିବାରେ
ମାସକୁ ବଳିଲା ବାନରେ ।
ନ ଦେଖି ଲଇଁ ତ ତାଙ୍କୁହିଁ
ରାଜା ଅଜ୍ଞାହିଁ ନ କଲଇଁ ।
ଗଲେତ ସୁଗ୍ରୀବ ପାଖକୁ
ହାଣିବ ସିନା ସେ ଅମ୍ଭଙ୍କୁ ।
ବିଶେଷେ ମୁଁ ପୁଣି ତାହାର
ଅଟଇ ଶତ୍ରୁର କୁମର ।
ଏ ହେଳେ ଏ ଦୋଷେ ସୁଗ୍ରୀବ
ମୋତେ ସେ ନିଶ୍ଚୟେଁ ମାରିବ ।
ତାହାର ମୋଠାରେ କି ପ୍ରୀତି
ଶ୍ରୀରାମ ମୋତେ ରଖିଛନ୍ତି ।
ଏମନ୍ତ ଜହୁଁ ଉଦ୍ଧୁସାଇଁ
ତାଙ୍କାର୍ଥହିଁ ତ ନ କଲଇଁ ।
ଉପାୟେ ଏହୁ କାଲେ ତାଙ୍କୁ
ଖଟିଲା ମୋତେ ମାରିବାକୁ ।
ଏମନ୍ତ ପାପୀ କପିପତି
ମାତା ସମାନ ଯେ ଅଟନ୍ତି ।
ଏମନ୍ତ ଜ୍ୟେଷ୍ଠଭ୍ରାତା-କାନ୍ତା
ତାଙ୍କୁ ଯେ କରିଛି ବନିତା ।
ଏ ହେଳେ କରି ତା ପାଶକୁ
ମୋ ମନ ନୋହୁଛି ଯିବାକୁ ।
ଯେମନ୍ତ ତେମନ୍ତ ପ୍ରକାରେ
ଜୀବନ ତେଜିବା ଏଠାରେ ।
କହି ସେ ଏମନ୍ତ ବଚନ
କାନ୍ଦନ୍ତେ ତାରାର ନନ୍ଦନ ।
ଏମନ୍ତ ଦେଖନ୍ତେ ନୟନେ
ତହିଁରୁ କେତେଁ କପିମାନେ ।
ବୋଇଲେ ଶୁଣ ହେ ଅଙ୍ଗଦ
ଛାଡ଼ିବା ହେଉ ମନ୍ତ୍ର ଖେଦ ।
ନିଶ୍ଚୟେଁ ଅମ୍ଭେମାନେ ବୀର
ରକ୍ଷା କରିବୁ ପ୍ରାଣ ତୋର ।
କନ୍ଦର ମଧ୍ୟେ ଯେ ଥିଲାଇଁ
ଦେବତା ପୁର ପ୍ରାୟେ ହୋଇ ।
ନାନାରୂପେ ତ ଅଛି ବାସ
ତହିଁ ନିଶ୍ଚିନ୍ତେ ଥିବା ଆସ ।
ଏ ରୂପେ ଏକ ଅରକରେ
କହୁ ଅଛନ୍ତି ଯେ ବାନରେ ।
ତାହାଙ୍କ ମୁଖରୁ ଏସନ
ବଚନ ଶୁଣି ହନୁମାନ ।
ଅଙ୍ଗଦକୁ ଯେ କୋଳେ ଧରି
ସ୍ନେହରେ ଅଲିଙ୍ଗନ କରି ।
ବୋଇଲେ ଏହୁ ଦୁର୍ବିଚାର
ଉଚିତ ନୁହଇ ତୁମ୍ଭର ।
ଯେଣୁ ତାରାର ତୁ ତନୟ
ଏ ହେଳେ ସୁଗ୍ରୀବର ପ୍ରିୟ ।
ରାମର ଲକ୍ଷ୍ମଣ ପୁଚ୍ଛାରେ
କହନ୍ତି ସେହ ତୁମ୍ଭଠାରେ ।

ଏଣୁ ସୁଗ୍ରୀବ ରଘୁବୀର
ତୁହ୍ମଙ୍କ ସକାଶୁଁ ଲୁମ୍ଭର ।
କାଛୁହିଁ ଭୟ ହେବ ନାହିଁ
ମୁହିଁ ତୋ ହିତେ ରହିଲଇଁ ।
ଏ ଯାହା କହୁଛନ୍ତି ବୀର
ଅଭେଦ୍ୟ କନ୍ଦର ଭିତର ।
ଭେଦ ନୋହିଣ ରାମ ଶର
ସ୍ଥାନ ଅଛୁ କ ବ୍ରାହ୍ମଣର ।
ତୁମ୍ଭଙ୍କୁ ଏମନ୍ତ ପ୍ରକାରେ
କହୁ ଅଛନ୍ତି ଯେ କାନରେ ।
ପୁତ୍ର କଳତ୍ର ଛାଡ଼ି କରି
ତୋ ସଙ୍ଗେ ରହିବ କେ ହରି ।
ଗୁପତ କଥାଏ ତୁମ୍ଭଙ୍କୁ
କହିବ ହେଉ ଶୁଣିମାକୁ ।
ଶ୍ରୀରାମ ମନୁଷ୍ୟ ନୁହନ୍ତି
ସାକ୍ଷାତ ବସ୍ତୁ ସେ ଅଛନ୍ତି ।
ଜଗମୋହିନୀ ଯେଉଁ ମାୟା
ସେହି ଜାନକୀ ତାଙ୍କ ଜାୟା ।
ଶେଷ ସ୍ୱରୂପ ସେ ଲକ୍ଷ୍ମଣ
ମାରିବାକୁ ଏ ରକ୍ଷଗଣ ।
ମାୟାରେ ଏ ବ୍ରହ୍ମାର ବୋଲେ
ମନୁଷ୍ୟ ହୋଇ ଜନ୍ମ ହେଲେ ।
ବୈକୁଣ୍ଠବାସୀ ଯେ ଈଶ୍ୱର
ଆମ୍ଭେଟି ପାର୍ଷଦ ତାଙ୍କର ।
ପରମ ଆତ୍ମା ଯେଉଁ କାଳେ
ମନୁଷ୍ୟ ଭାବକୁ ପାଇଲେ ।
ଏ ବେଳ ସେ ଅମ୍ଭଙ୍କୁ ପୁଣ
ଜାତ କଲେ କପି ରୂପେଣ ।
ଅମ୍ଭେମାନେ ପୂର୍ବ କାଳରେ
କହୁତ ତପସ୍ୟା ଫଳରେ ।
ଅନେକ ଆରାଧନା କରି
ସେ ଈଶ୍ୱରଙ୍କୁ ଶଦ୍ଧେ ଧରି ।
ତାଙ୍କର ଅନୁଗ୍ରହ ପାଇ
ତା ପାରଷଦ ହୋଇଲଇଁ ।
ମନରେ କପଟ ନ ଧରି
ଏବେ ତାହାଙ୍କୁ ସେବା କରି ।
ବୈକୁଣ୍ଠକୁ ଏଣୁ ଯିବା
ସୁଖରେ ସେବା କରିଥିବା ।
ଏମନ୍ତେ କହି ଅଙ୍ଗଦକୁ
କରଇ ଆଶ୍ୱାସନା ତାଙ୍କୁ ।
ଶକ୍ୟଗିରିଙ୍କ ବେଗେ ଯାଇ
ସୀତାଙ୍କୁ ଖୋଜିଣ ନ ପାଇ ।
ଗଲେ ଦକ୍ଷିଣ ମୁଖ ହୋଇ
ଲବଣ ସିନ୍ଧୁ ତୀରେ ଯାଇ ।
ମହେନ୍ଦ୍ର ପର୍ବତେ ମିଳିଲେ
ଜଳନିଧିଙ୍କ ଅନାଇଲେ ।
ଦେଖିଲେ ଅଗାଧ ଅଟଇ
ତରଙ୍ଗେ ସେ ବିସ୍ମୟ ହୋଇ ।
କି କରିବାଟି ଏ ଭୟରେ
କପିଲେ ସମସ୍ତ ବାନରେ ।
ଅଙ୍ଗଦ ଆଦି କପି କୁଳେ
ଏକ ଥରକେ ବସିବଲେ ।
ବୁଲନ୍ତେ ଅମ୍ଭମାନଙ୍କର
ମାସକୁ ବଳିଲ ଅପାର ।
ସୀତା ରାଣୀ କାହାକୁହିଁ
ଖାହିଁ ତ ଦେଖିଲଇଁ ନାହିଁ ।
କଷ୍ଟର ଖାସୀତ ସୁଗ୍ରୀବ
ଏଣୁ ସେ ଅମ୍ଭଙ୍କୁ ମାରିବ ।
ସେ ଦଣ୍ଡ ପୃଛଉଁ ଅମ୍ଭର
ଭଲ ହୋଇବ ମରିବାର ।

ଏମନ୍ତ ନିଶ୍ଚୟ କରଣ
ସେ କୁଶ ଶେଯା କରି ପୁଣ
ବସିଲେ ମରଣ ନିମିତ୍ତ
ଏହି ସମୟେ ସେ ପର୍ବତ ।
କନ୍ଦର ମଧ୍ୟରୁ ବହନ
ଶରୀର ପର୍ବତ ସମାନ ।
ବାହାର ଗୃଧ୍ର ଜଣେ ହେଲେ
ସବୁ ବଗକୁ ଅନାଇଲେ ।
ଦେଖିଲେ ଅନଶନ କରି
ବସି ଅଛନ୍ତି ବହୁ ହରି ।
ହରଷ ହୋଇଣ ବୋଇଲେ
ଦଇବ ଅଣି ଏତେ କାଳେ ।
ଦେଲା ତ ଭୋଜନ ବହୁତ
ଗୋଟିଏ ଲେଖାଏଁ ମୁଁ ନିତ୍ୟ
ସୁଖରେ କରିବି ଭୋଜନ
ବାନରେ ଶୁଣି ସେ ବଚନ ।
ଏମନ୍ତ ପ୍ରକାରେ ଶୁଣିଲେ
ଭୟରେ କୁହାକୁହି ହେଲେ ।
ଏ ଗୃଧ୍ର ଅମ୍ଭ ସମସ୍ତଙ୍କୁ
ବସିଛି ଅଛି ଖାଇବାକୁ ।
ରାମ ସୁଗ୍ରୀବ ଦୁହିଙ୍କର
କାର୍ଯ୍ୟ ନ ପାରିଲୁଁ କରି ।
ଆପଣା କୁଶଳ କଥାହିଁ
କିଛି କେହି ତ ନ କଲୁଁ ।
ରାମାର୍ଥେ ଖାଇବ ଅମ୍ଭଙ୍କୁ
ଯିବା ନିଶ୍ଚୟେଁ ଯମଠାକୁ ।
ବଡ଼ ଧାର୍ମିକ ଜଟାୟୁଷ
ରାମ ନିମିତ୍ତେ ଗଲେ ନାଶ ।
ଯୋଗୀନ୍ଦ୍ରମାନେ ଯା ନ ପାନ୍ତି
ଏମନ୍ତ ଅଟେ ଯେଉଁ ଗତି ।

ସେ ତାହା ରାମ ପ୍ରସାଦରେ,
ଲଭିଲେ ଅନାୟାସରେ ।
ସମ୍ପାତି ଶୁଣି ଏବଚନ
ତାହାଙ୍କୁ କହିଲେ ଏସନ ।
ତୁମ୍ଭେ କେ ଅଟ ହେ ବାନରେ
କର୍ଣ୍ଣକୁ ଅମୃତ ପ୍ରକାରେ
ଜଟାୟୁ ନାମ ସଂକୀର୍ତ୍ତନ
କଲ ଯେଣୁ ମୁଁ ହେଲି ଧନ୍ୟ ।
ଏବେ ତା ଭଲ କରି କହ
ମୋ ଠାରୁ ଭୟକୁ ନ ପାଅ ।
ଏଥିକୁ କହିଲେ ସେମାନେ
ଶ୍ରୀ ଦାଶରଥି ରାମ ବନେ ।
ଲକ୍ଷ୍ମଣ ବଇଦେହୀ ତୁଲେ
ପଞ୍ଚବଟୀରେ ରହିଥିଲେ ।
ରାମ ଲକ୍ଷ୍ମଣ ଦିନେ ତହିଁ
ଯାଇଥିଲେ ଯେ ମୃଗ ପାଇଁ ।
ସେକାଳେ ସୀତାଙ୍କୁ ରାବଣ
ନେଇ ଯାଅନ୍ତେ ଲଙ୍କାପାଇଁ ।
ହା ରାମ ରକ୍ଷାକର ମୋତେ
ଜାନକୀ ଏରୂପେ କାନ୍ଦନ୍ତେ ।
ଶୁଣି ଜଟାୟୁ ଗୋଡ଼ାଇଲେ
ରାମ ନିମିତ୍ତେ ଯୁଦ୍ଧ କଲେ ।
ରାବଣ ସଂଗ୍ରାମେ ତାହାଙ୍କୁ
ମାରଣ ନେଲେ ସେ ସୀତାଙ୍କୁ ।
ଶ୍ରୀରାମ ପ୍ରବେଶ ହୋଇଲେ
ଜଟାୟୁ ଶରୀର ଦହିଲେ ।
ସେ ରାମ ସାରୂପ୍ୟ ପାଇଲେ
ବୈକୁଣ୍ଠ ପୁରକୁ ସେ ଗଲେ ।
ଏ ଭଣ୍ଡାରେ ସେ ରାମ ପାଇଁ
ପ୍ରବେଶ ଋଷ୍ୟମୂକେ ହୋଇ ।

ଅନଳ ଜାଳି ସାକ୍ଷୀ କଲେ
ସୁଗ୍ରୀବ ସଙ୍ଗେ ସଖା ହେଲେ ।
ବାଳୀକି ମାରି ମିତ୍ର ବୋଲେ
ବାନର ରାଜ୍ୟ ତାଙ୍କୁ ଦେଲେ ।
ଖୋଜିବା ପାଇଁ ସେ ସୀତାଙ୍କୁ
ସୁଗ୍ରୀବ ବାନର ଶ୍ରେଷ୍ଠଙ୍କୁ ।
ଦଶଦିଗକୁ ପେଷି ଦେଲେ
ଏମନ୍ତ ବଚନ କହିଲେ ।
ମାସକ ଭିତରେ ଆସିବ
ମାରିବା ଯେବେ ମତ ହେବ ।
ସମ୍ପ୍ରତି କରଣ ଅଇଲୁଁ
ମାସକ ଗଲା ବୁଲି ବୁଲି ।
ବଇଦେହୀଙ୍କି ରାବଣକୁ
ଦେଖିଲୁ ନାହିଁ ଯତ୍ନେ ତାଙ୍କୁ ।
ଏଥକୁ ସମସ୍ତ ବାନରେ
ଅହାର ଛାଡ଼ିଣ ଏଠାରେ ।
ରହିଛୁ ମରିବା କାରଣ
ନିଶ୍ଚୟ ଜାଣ ଏ ବଚନ ।
ହେ ପକ୍ଷୀବର ଏ ବିଷୟ
ଜାଣ ଯେବେ ଆମ୍ଭଙ୍କୁ କହ ।
ସମ୍ପାତି ଶୁଣି ଏ ପ୍ରକାରେ
କହିଲେ ତାଙ୍କୁ ହରଷରେ ।
ଜଟାୟୁ ମୋର ସାନ ଭ୍ରାତ
ଏବେ ମୁଁ ତାହାର ଚରିତ ।
କେତେ ସହସ୍ର ବରଷରେ
ପାଇଲି ଏମନ୍ତ ପ୍ରକାରେ ।
ତୁମ୍ଭମାନଙ୍କ ବଚନରେ
ସହାୟ ହୋଇବି ମନରେ ।
ଭାଇଙ୍କ ଉଦକ ଦେବାକୁ
ନିଅ ଆମ୍ଭଙ୍କ ହଳିଳକୁ ।

ତୁମ୍ଭର କାର୍ଯ୍ୟ ପାଇଁ ଯତ୍ନ
ଶୁଣିଛ କହିବି ମୁଁ ତାହା ।
ବେଗେ ବାନରମାନେ ତାଙ୍କୁ
ନେଲେ ଜଳଧି ନିକଟକୁ ।
ସମ୍ପାତି ତହିଁ କରି ସ୍ନାନ
ଭାଇଙ୍କ ଦେଲା ଜଳଦାନ ।
ପୁଣି ତାହାକୁ କପିମାନେ
ରଖିଲେ ଆଣି ନିଜସ୍ଥାନେ ।
ସମ୍ପାତି ବାନରଙ୍କୁ ରହି
ହରଷ କହିଇଲା ହୋଇ ।
କହିଲେ ସମୁଦ୍ର ଉତରେ
ତ୍ରିକୂଟ ପର୍ବତ ଶିଖରେ ।
ଲଙ୍କା ନାମରେ ଅଛି ପୁରୀ
ତହିଁରେ ସୁବର୍ଣ୍ଣ ପାଚେରୀ ।
ଏଠାରୁ ସେ ଶଏ ଯୋଜନ
ତହିଁରେ ଅଶୋକ ବଟିନ ।
ସେଠାରେ ସୀତା ଛନ୍ତି ବସି
ବେଢ଼ିଣ ଅଛନ୍ତି ରାକ୍ଷସୀ ।
ସେ ଲଙ୍କା ଜାନକୀ ସହିତେ
ଏଠାରୁ ଦିଶୁଅଛି ମୋତେ ।
ଗୃଧ୍ର ମୁଁ ଦୂରଦୃଷ୍ଟି ନୟନୁ
ଦିଶୁଛି ମୋତେ ଏତେ ଦୂରୁ ।
ଏ ହେଳା କର ଏ କଥାରେ
ସଂଶୟ ନ କର ମନରେ ।
ଶଏ ଯୋଜନ ଯେ ଲଙ୍ଘିବ
ସୀତାଙ୍କୁ ଦେଖି ସେ ଆସିବ ।
ମୋ ସାନ ଭାଇ ନିଜ ପ୍ରାଣ
ହରିଛି ସେ ଦୁଷ୍ଟ ରାବଣ ।
ତାକୁ ପକାଇବାକୁ ମାରି
ମନହିଁ ହେଉଛି ମୋହର ।

କେବଳ ପକ୍ଷ ନାହିଁ ମୋର
ସିନ୍ଧୁ ତରଣେ ଯତ୍ନ କର ।
ରାମ ଏ ଉଦ୍ଧ୍ୱରେ ଅବଶ୍ୟ
କରିବେ ରାବଣଙ୍କୁ ନାଶ ।
ଯେ ଶତ ଯୋଜନ ତରିବ
ଲଙ୍କାରେ ପ୍ରବେଶ ହୋଇବ ।
ସୀତାଙ୍କୁ ସେ ଶାନ୍ତ କରିବ
ରାବଣ ତୁଲେ କଥା ହୋଇ ।
ଲେଉଟି ସମୁଦ୍ର ତରିବ
ଏଥିକୁ ସମର୍ଥ ହୋଇବ ।
ଏ ପରକାରେ ଯେ ବାନର
ବସି ତା ବନ୍ଧନ ଖଗୃବ ।
ଅନ୍ତରରେ ହଳଧର
କରେ ରାମଙ୍କୁ ନମସ୍କାର ।
ଶତ ପଚିଶ ଅଧ୍ୟା ପଦ
କଟୁ ମୋ ସମସ୍ତ ଅପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ କିଷ୍କିନ୍ଧ୍ୟା କାଣ୍ଡେ
ନାମ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

କହିଲେ ସେ ନୀଳ ଲୋହିତ
ଶୁଣ ଭବାନୀ ଦେବି ଚିତ୍ତ ।
ପୁଣି ଏ ଉଦ୍ଧ୍ୱରେ ସମ୍ପାତି
ଅପଣା ପୂର୍ବକାଳ ରୀତି ।
ବାନରମାନଙ୍କୁ କହିଲେ
ଅମ୍ଭେ ଜଟାୟୁ ପୂର୍ବକାଳେ ।
ବଳକୁ ଜାଣିମା ନିମନ୍ତେ
ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତେ ।
ଉଡ଼ିବା ପାଇଁ କରି ମନ
ବହୁତ ସହସ୍ର ଯୋଜନ ।
ଗଲୁ ଉଦ୍ଧ୍ୱକୁ ବେନି ଭାଇ
ସୂର୍ଯ୍ୟ କିରଣେ ଦହି ହୋଇ ।
ମୋହର ଭାଇ ଜଟାୟୁକୁ
ତହିଁରୁ ରକ୍ଷା କରିବାକୁ ।
ଡେଣା ମୁଁ ଦେଲି ତା ଉପରେ
ତେଣୁ ଆଦିତ୍ୟ କିରଣରେ ।
ପକ୍ଷ ପୋଡ଼ିଲା ମୋହ ହେଲି
ଏ ଗିରି ଉପରେ ପଡ଼ିଲି ।
ତହିଁରୁ ତିନିଦିନ ଅନ୍ତେ
ଜ୍ଞାନ ହୋଇଲା ହୃଦ ଗତେ ।
ଦେଖେ ଅବା ଏ କେବା ଗିରି
ଜାଣିଲି ନାହିଁ ଭ୍ରମେ କରି ।
ଚକ୍ଷୁ ଫେରି ମୁଁ ଅନାଇଲି
ଏ ଗିରି ଉପରୁ ଖସିଲି ।
କଷ୍ଟରେ ମନ୍ଦମନ୍ଦ ହୋଇ
ଋଷି ଆଶ୍ରମେ ହେଲି ଯାଇ ।
ଚନ୍ଦ୍ରମା ନାମେ ମୁନି ଥିଲେ
ସେ ଦେଖି ଅତି ଦୁଃଖୀ ହେଲେ ।
ପୁଣି ସେ ପଚାରିଲେ ମୋତେ
ଏ ବିରୂପ କେ ଦେଲା ତୋତେ ।
ପୂର୍ବକାଳେ ତ ଜାଣୁ ଅମ୍ଭେ
ବଡ଼ ସମର୍ଥ ଅଟ ତୁମ୍ଭେ ।

ଏବେ ତୋ ପକ୍ଷୀ ଯେ ପୋଡ଼ିଲେ
କହ ତା ମନକୁ ଆଇଲେ ।
ଶୁଣି ମୁଁ ଅତି ଦୁଃଖୀ ହୋଇ
ତାଙ୍କୁ ସେ ସବୁ ଚେଷ୍ଟା କହୁ ।
ପୁଣି ମୁଁ କହିଲି ଏମନ୍ତ
ଦହିବି ଦାବାନଳେ ଗାତ୍ର ।
ପକ୍ଷ ତ ନାହିଁ ତପୋଧନ
କି ରୂପେ ଧରିବି ଜୀବନ ।
ଏମନ୍ତ ଯହୁଁ ସେ ଶୁଣିଲେ
ଦୟାକରଣ ଅଜ୍ଞା ଦେଲେ ।
ବୋଇଲେ ଶୁଣ ମୋ ଉତ୍ତର
ତୁମ୍ଭର ଇଚ୍ଛା ଯେ ତା କର ।
ଦୁଃଖର କାରଣ ଏ ଗାତ୍ର
କର୍ମରୁ ହୋଇଛି ସମ୍ଭୂତ ।
ନିଶ୍ଚୟ କରି ଅହଙ୍କାରେ
କର୍ମ ଜନ୍ମଇ କଳେବରେ ।
ଅବିଦ୍ୟାରୁଟି ଅହଙ୍କାର
ଜାତ ହୁଅଇ ନିରନ୍ତର ।
ଅନାଦି ସେ ଜଡ଼ ଅଟଇ
ଚୈତନ୍ୟ ଛାୟାରେ ସେ ଯାଇଁ ।
ଯେବଣେ କାଳରେ ମିଶଇ
ଉପଲବ୍ଧା ପ୍ରାୟେ ହୋଇ ।
ଏ ଅପଘନ ଅଟେ ଯେଣୁ
ସ୍ୱରୂପ ଅହଙ୍କାର ତେଣୁ ।
ହୋଏ ଚେତନା ପରକାର
ଅହନ୍ତା ବଳରେ ଆତ୍ମାର ।
ଦେଖି ମୁଁ ଏମନ୍ତ ବୋଲଇ
ଏ ବୁଦ୍ଧି ନିଶ୍ଚୟେ ହୁଅଇ ।
ଦେହେ ଆତ୍ମାକୁ ବୁଦ୍ଧି କରି
ସେ ସୁଖ ଦୁଃଖ ଦୁହିଁକର ।

ସଂଭୋଗ ଯା ସକାଶୁ ହୋଇ
ଏମନ୍ତ ସଂସାର ହୁଅଇ ।
ଆତ୍ମା ନିର୍ବିକାର ମିଥ୍ୟାରେ
ସେ ଅହଙ୍କାର ରୂପ ଧରେ
ଦେଖି ମୁଁ କର୍ମ କର୍ତ୍ତା ମୁହିଁ
ଏମନ୍ତ ସଙ୍କଳ୍ପ କରଇ ।
ଜୀବ ରୂପରେ ସେ ଶରୀରେ
ସମସ୍ତ କର୍ମ ମାନଙ୍କରେ ।
ସେ କର୍ମଫଳେ ବଶ ହୋଇ
ତହିଁ ସେ ବନ୍ଧନ ହୁଅଇ ।
ଭ୍ରମଇ ସେ ପାପ ପୁଣ୍ୟରେ
ଅର୍ଦ୍ଧ ଊର୍ଦ୍ଧ୍ୱ ଯେ ଦିଗନ୍ତରେ ।
ଯାଗାଦି ଅଧି ଯେତେ ପୁଣ୍ୟ
ବହୁତ କଲି ମୁଁ ଏମାନ ।
ଏ ଯୋଗେ ମୁଁ ସ୍ୱର୍ଗକୁ ଯିବ
ସୁଖରେ ଭୋଗ ମୁଁ କରିବ ।
କରି ଏ ସଂକଳ୍ପ ମନରେ
ଅଭ୍ୟାସ କରି ଏ ରୂପରେ ।
ସେ ଚିରକାଳ ପର୍ଯ୍ୟନ୍ତେ
ସୁଖସମ୍ଭୋଗ କରି ନିତ୍ୟେ ।
ସୁକୃତ ଯେବେ କ୍ଷୟ ଯାଇ
ପଡ଼ଇ କର୍ମବଶ ହୋଇ ।
ଚନ୍ଦ୍ରମାମଣ୍ଡଳେ ପଡ଼ଇ
ତହୁଁ କାକର ସଙ୍ଗ ପାଇ ।
ପଡ଼ଇ ଅସି ଧରଣୀରେ
ସମସ୍ତ ଶସ୍ୟମାନଙ୍କରେ ।
ତହିଁରୁ ତା ସମସ୍ତ ନରେ
ଭୁଞ୍ଜନ୍ତେ ଭକ୍ଷ୍ୟସ୍ୱରୂପରେ ।
ତାଙ୍କଠାରେ ସେ ରେତ ହୋଇ
ସ୍ତ୍ରୀଙ୍କଗର୍ଭରେ ମିଳଇ ।

ଯୋଜନ ଶକତ ହୋଇ ଯୁକ୍ତ
ଚର୍ମରେ ହୁଅଇ ବେଷ୍ଟିତ ।
ଘନକେ ସେ କଠିନ ହୋଇ
କେତେଦିନେ ସେ ବୃଦ୍ଧି ହୁଅଇ ।
ପଞ୍ଚମ ରାତ୍ର ହୁଏ ଯେବେ
ସେ ବୁଦ ବୁଦ ହୁଏ ତେବେ ।
ସାତ ରାତ୍ରେ ସେ ପୁଣି ହୁଏ
ମାଂସ ପିଣ୍ଡୁଳା ଗୋଟାଏ ।
ପୁଷ୍ଟ ସେ ପଦର ଘନରେ
ଯୁକ୍ତ ହୁଅଇ ରକତରେ ।
ହୁଅନ୍ତେ ପଞ୍ଚବିଂଶ ରାତ୍ର
ତହୁଁ ଅଙ୍କୁର ହୋଏ ଜାତ ।
ଗ୍ରୀବା ପୃଷ୍ଠ ଯେ କନ୍ଧ ଶିର
ଉଦର ଏ ପାଞ୍ଚ ପ୍ରକାର ।
ଯେ ଯାହା ଯଥାକ୍ରମେ ସ୍ଥିତ
ମାସକ ଭିତରେ ହୁଅନ୍ତ ।
କର ଚରଣ ଜାନୁ କଟି
ପାର୍ଶ୍ୱ ଏ ଦୁଇ ମାସେ ସୃଷ୍ଟି ।
ଚରଣ ଅଧ ଅଙ୍ଗ ସନ୍ଧି
ଏ ହୁଏ ତିନମାସେ ସିଦ୍ଧି
ଚତୁର୍ଥ ମାସେ ହୁଏ ଜାତ ।
କର ପଦରେ ଶାଖା ମାତ୍ର
ଅପାନ ନଖାଦ ଦଶନ
ନାସିକା ଶ୍ରବଣ ଲୋଚନ ।
ପୂର୍ଣ୍ଣ ହୁଅନ୍ତେ ପଞ୍ଚମାସ
ଏତେକ ହୁଅଇ ପ୍ରକାଶ ।
କର୍ଣ୍ଣର ଛିଦ୍ର ପେଟ ତଳ
କୋଷ ମେହନ ନାଭି ସ୍ଥଳ ।
ଏତେକ ଯେ ଯାହା ସ୍ଥାନରେ
ହୁଅନ୍ତି ଛମାସ ଭିତରେ ।

ସମସ୍ତ ଶିରେ କେଶ ରୋମ
ସପ୍ତମ ମାସେ ହୁଏ ଜନ୍ମ ।
ସର୍ବାଙ୍ଗ ହୁଅଇ ପ୍ରକାଶ
ପୂର୍ଣ୍ଣ ହୁଅନ୍ତେ ଅଷ୍ଟମାସ ।
ସ୍ତ୍ରୀଙ୍କ ଗର୍ଭେ ସେହୁ ରହି
ଏମନ୍ତ ପ୍ରକାରେ ବଢ଼ଇ ।
ଯେବେ ନବମ ମାସ ହୋଇ
ତେବେ ସେ ଚେତନା ଲଭଇ ।
ଶିରା ଯେ ଅଛି ଭିତରରେ
ମାତାର ନାଭି ମଣ୍ଡଳରେ ।
ତହିଁ ଭିତରେ ଅଛି ରନ୍ଧ୍ର
ଅତ୍ୟନ୍ତ ସୂକ୍ଷ୍ମ ହୋଇ କ୍ଷୁଦ୍ର ।
ପିଣ୍ଡ ବଢ଼ଇ ତେଣେ କରି
ମାତା ଗର୍ଭକୁ ଅନୁସରି ।
ଆପଣା କରମ ବଶରେ
ନ ମରେ ସେ ମାତା ଗର୍ଭରେ ।
ପୂର୍ବର ଜନ୍ମ କର୍ମ ଯେତେ
ସୁମରୁ ଥାଇ ତା ସନ୍ତତେ ।
ଜଠରାଗ୍ନିରେ ସନ୍ତପତ
ହୋଇ ସେ ବୋଲଇ ଏମନ୍ତ ।
ମୁଁ ନାନେ ସହସ୍ର ଯୋନିରେ
ସଞ୍ଜାତ ହୋଇ ବାରେ ବାରେ ।
ସମ୍ଭବ ପୁତ୍ର ଦାରାଦର
ଭୋଗ ମୁଁ କରିଛି ଅପାର ।
ବାନ୍ଧବ ପଶୁମାନେ ମୋର
ହେଲେ ତ କୋଟି ପରକାର ।
ତହିଁରେ ଆସକତ ହୋଇ
ତାହାଙ୍କୁ ପୋଷିବା ନ ପାରି ।
ନ୍ୟାୟ ଅନ୍ୟାୟୁପାନ କରି
ଏବେ ଯେ ଧନ ଅରଜିଲି ।

ଏତେ ଅଭାଗ୍ୟବନ୍ତ ହେଲି
ସ୍ୱପ୍ନେ ବିଷ୍ଣୁଙ୍କୁ ନ ଚିନ୍ତିଲି ।
ସେ ଫଳ୍ଙ୍କ ନ ପାଇଲି ସୁଖ
ଭୋଗ କରୁଛୁ ଗର୍ଭ ଦୁଃଖ ।
ଯେ ପୁଣ ଅଟଇ ଅନିତ୍ୟ
ତାହାକୁ ମଣିଲି ମୁଁ ସତ୍ୟ ।
ଏମନ୍ତ ଶରୀରରେ ଥାଇ
କୁତ୍ସିତରେ ଅତି ସକ୍ତ ହୋଇ ।
ଅକାର୍ଯ୍ୟ କଲି ମୁଁ ବହୁତ
ନ କଲି ଆପଣାର ହିତ ।
ଏରୂପେ ଆପଣା କର୍ମରେ
ଚହଣ ବିବିଧ ପ୍ରକାରେ ।
ଭୋଗ ତ କଲି ଦୁଃଖମାନ
ଏ ଗର୍ଭ ନରକ ଯେସନ ।
ଅଉ ମୁଁ କେତେ କାଳ ଥିବି
ଏଥୁ ବାହାର କେବେ ହେବି ।
ଯେବେ ମୁଁ ବାହାର ହୋଇବି
ନିତ୍ୟାନ ବିଷ୍ଣୁଙ୍କୁ ପୂଜିବି ।
ଏରୂପ ସେ ଜୀବ ଚିନ୍ତନ୍ତେ
ପୀଡ଼ିତ ହୋଇ ଯୋନି ଯନ୍ତେ ।
କଷ୍ଟ ଭାବରେ ଅତି ଅନ୍ତ
ପେଲିଲ ହୋଇ ଗର୍ଭଗତ ।
ମନ ରକ୍ତରେ ଯୁତ ହୋଇ
କ୍ରମିଷ୍ଠା ପରିପ୍ରାୟେ ଦିଶଇ ।
ନରକୁ ପାପୀ ପ୍ରାୟେ ହୋଇ
ବାହାର ହୋଇ ସେ ପଡ଼ଇ ।
ତତ୍କାଳ ହୋଇ ସେ ଅଜ୍ଞାନ
ବାଲ୍ୟାଦିରେ ଯେ ଦୁଃଖମାନ ।
ତା ପୁଣି ଭୋଗ ସେ କରଇ
ମନରେ ଦୁଃଖ ଲକ୍ଷ ଥାଇ ।

ଯତ୍ତ୍ୱବନାଦ ଦୁଃଖମାନେ
ଯେତେ ଅଛନ୍ତି ତା ଘଟନେ ।
କେତେ କହିବ ତାହା ପୁଣ
ଭୋଗ ତ କରୁଛ ଆପଣ ।
ଏ ଦେହ ଅଟଇ ମୋହର
ଏରୂପେ ବୁଦ୍ଧି ହୁଏ ଯାର ।
ତାହାର ଏରୂପେ ଅବଶ୍ୟ
ଘୋରନରକ-ଗର୍ଭେ ବାସ ।
ଏ ଆଦି ଯେତେ ପାପଗଣ
ଭୋଗ ହୁଅଇ ନିଷ୍ଟେ ଜାଣ ।
ଏ ଯେଉଁ ସ୍ଥୂଳ ସୂକ୍ଷ୍ମ ହୋଇ
ଅଛନ୍ତି ଯେଉଁ ଦେହ ଦୁଇ ।
ତହିଁରୁ ଭିନ୍ନ ସ୍ୱରୂପରେ
ଅତ୍ମାକୁ ଜାଣି ଏ ପ୍ରକାରେ ।
ଦେହାଦ ମମତା ଛାଡ଼ିବ
ଅତ୍ମାର ଜ୍ଞାନକୁ ସାଧିବ ।
ଜାଗ୍ରତ ଆଦ କଥା ଗଣ
ଅତ୍ମାର ନାହିଁ ବୋଲି ଜାଣ ।
ସତ୍ୟ ଜ୍ଞାନାଦ ଯେତେମାନ
ଅତ୍ମାର ଅଟନ୍ତି ସେ ଚିହ୍ନ ।
ମାୟାରେ କୁହଇ ସେ ଯୁକ୍ତ
ସବୁ କାଳରେ ସେହୁ ଶାନ୍ତ ।
ଅତ୍ମାକୁ ଏରୂପେ ଜାଣିଣ
ଅଜ୍ଞାନ ହୁଅଇ ନିର୍ମାଣ ।
ଏମନ୍ତ ଯେ ମୋହ ଅଟଇ
ସେ ଯେଉଁ କାଳେ ନାଶ ଯାଇ ।
ତେବେ କରମ ଯୋଗେ ତାର
ଥାଉ ବା ପଡ଼ୁ ବା ଶରୀର ।
ଅଜ୍ଞାନ ହୁଅଇ ସଂଜାତ
ଯେ ସୁଖ ଦୁଃଖିଟି ଏମନ୍ତ ।

ଏହି ସକାଶୁଁ ଯୋଗୀମାନେ
ସେମାନ ନ ଦେନନ୍ତି ମନେ ।
ଏଣୁ ତୁ ଏ ଦେହ ସଙ୍ଗତେ
କର୍ମର କ୍ଷୟ ପରପନ୍ତେ ।
ଭାତ ଧରନ୍ତ ସର୍ପ ଯେସନ୍ତେ
ସ୍ୱଗରେ ଥିବା ହେଉ ତେସନ୍ତେ ।
ତୁମ୍ଭର ହିତକଥା ଅଜ
କହିବା ତା ଶୁଣିମା ହେଜ ।
ତ୍ରେତୟା ଯୁଗେ ନାରାୟଣ
ଦାଶରଥି ରାମ ରୂପେଣ ।
ରାବଣ ମରଣ ନିମିତ୍ତେ
ଜାନକୀ ଲକ୍ଷ୍ମଣ ସହିତେ ।
ଦଣ୍ଡକ ବନକୁ ଆସିବେ
ଶ୍ରୀରାମ ଲକ୍ଷ୍ମଣ ନ ଥିବେ ।
ସେ କାଳେ ଚୈର ପ୍ରାୟେ ହୋଇ
ରାବଣ ଜାନକୀଙ୍କି ନେଇ ।
ଲଙ୍କାରେ ପ୍ରବେଶ ହୋଇବ
ଅଶୋକ ବନେ ରଖିଥିବ ।
ସୁଗ୍ରୀବ ଆଜ୍ଞାରେ ବାନରେ
ବଇଦେହୀଙ୍କି ଖୋଜିବାରେ ।
ମିଳିବେ ସମୁଦ୍ର ତଟରେ
ତୁମ୍ଭର ତାଙ୍କ ସଙ୍ଗତରେ ।
କିଛି କାରଣେ ଭେଟ ହେବ
ଜାନକୀ ବାରତା କହିବ ।
ତେବେ ନବୀନ ହୋଇ ତୋର
ତେଣା ହୋଇବ ସ୍ୱଚ୍ଛବର ।

ସମ୍ପାତି ଉବାଚ

ଚନ୍ଦ୍ରମା ମୁନି ମୋ ଅଗରେ
କହି ଅଛନ୍ତି ଏ ପ୍ରକାରେ ।
ଦେଖିବା ହେଜ ସବୁ ହର
ଅତି କୋମଳ ହୋଇ କର ।
ହେଲ ନବୀନ ପକ୍ଷମାନ
ମୁଁ ଏବେ କରୁଛି ଗମନ ।
ତୁମ୍ଭର ମଙ୍ଗଳ ହୋଇବ
ନିକଟେ ସୀତାଙ୍କୁ ଦେଖିବ ।
ସମୁଦ୍ର ଯେ ଅଟେ ଅପାର
ତା ଲଙ୍ଘିବାକୁ ଯତ୍ନ କର ।
ଯା ନାମ କରି ସୁମରଣ
ଯେବଣ ଲୋକ ସେ ଦୁର୍ଜନ
ସଂସାର ସିନ୍ଧୁ ଯେ ତରନ୍ତି
ସୁଖରେ ବିଷ୍ଣୁପଦ ଯାନ୍ତି ।
ରକ୍ଷକ ତିନି ଜଗତର
ଏମନ୍ତ ଯେ ରାମ ତାଙ୍କର ।
ତୁମ୍ଭେମାନେ ତ ଅଟ ଭକ୍ତ
ଶଏ ଯୋଜନ ସିନ୍ଧୁ ମାତ୍ର ।
ଲଙ୍ଘି ନ ପାରିବ ବାନରେ
ଏମନ୍ତ ଚିନ୍ତୁଛ ମନରେ ।
ଅନନ୍ତ କରୁଣା ସମୁଦ୍ର
ଏମନ୍ତ ଯେଉଁ ରାମଚନ୍ଦ୍ର ।
ତାଙ୍କର ପାଦ ନିରନ୍ତର
ଚିନ୍ତା କରୁଛି ହଳଧର ।
ଶଏ ବତିଶ ପଦ ଗୀତ
ସଂସାର କରଇ ସେ ହିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
କିଷ୍କିନ୍ଧ୍ୟାକାଣ୍ଡେ ନାମ ଅଷ୍ଟମୋଽଧ୍ୟାୟଃ ।

## ନବମ ଅଧ୍ୟାୟ

### ବୃଷଧ୍ୱଜ ଉବାଚ

ଧୃଗ କହିଲେ ବୃଷଧ୍ୱଜ
ଏମନ୍ତ କହି ଗୃଧ୍ରରାଜ ।
କପିଙ୍କି ମେଲାଣି ମାଗିଲେ
ଆକାଶ ମାର୍ଗେ ସୁଖେ ଗଲେ ।
ସେ ସମୟରେ ସେ ବାନରେ
ସୀତାଙ୍କୁ ଦେଖିବା ଇଚ୍ଛାରେ ।
ହରଷେ ଉତ୍ସୁକ ସେ ହୋଇ
ଧାଅନ୍ତେ ସିନ୍ଧୁକୁ ଅନାଇ ।
ଦେଖିଲେ କୁମ୍ଭୀର ନକରେ
ପୂରଣ ଅଛନ୍ତି ତହିଁରେ ।
ସାନ ବଡ଼ ଲହରୀ ମାନ
ଉଠି ପଡ଼ୁଛି ଅବଚ୍ଛିନ୍ନ ।
ଆକାଶ ପର ସେ ଦୁରୁହ
ଦେଖିଲେ ହେଉଅଛି ଭୟ ।
ଏଣୁ ବାନରେ ପରସ୍ପରେ
ବିଚାର କଲେ କି ପ୍ରକାରେ
ଏ ଜଳନିଧି ପାରହେବା
ସୀତାଙ୍କୁ କେମନ୍ତେ ଦେଖିବା ।
ସେମାନ ଶୁଣି ତାରା ପୁତ୍ର
ତାହାଙ୍କୁ ବୋଇଲେ ଏମନ୍ତ ।
ତୁମ୍ଭେମାନେ ତ ବଳବନ୍ତ
ପ୍ରାକର୍ମ କରଛ ବହୁତ ।
ଯେ ପାର ହୋଇ କୀର୍ତ୍ତିରାଜ
କର ପାରିବ ରାଜ କାର୍ଯ୍ୟ ।
ସେ ବଡ଼ ଯଶ ଅରଜିବ
ସବୁ କପିଙ୍କି ପ୍ରାଣ ଦେବ ।
ମୋ ଅଗେ ଉଠୁ ସେ ବାନର
ସେ ଲେକ ରାମ ସୁଗ୍ରୀବର ।
ରକ୍ଷା କରତା ହୋଇ ହେବ
ତ୍ରୈଲୋକ୍ୟେ ତା କୀର୍ତ୍ତି ରହିବ ।
ଶୁଣନ୍ତେ ସମସ୍ତେ ଏମନ୍ତ
ସେ ଗୃହାଁଗୃହିଁ ହେଲେ ମାନ୍ଦ ।
କେହି କିଛି ହିଁ ନ କହିଲେ
ଏଥକୁ ଅଙ୍ଗଦ ବୋଇଲେ ।
ଯେ ଯାହା ପରାକ୍ରମ ମୋତେ
କହିବା ହେଉ ତ ସମସ୍ତେ ।
ଶୁଣିଲେ ଯୋଗ୍ୟ ସେ କାର୍ଯ୍ୟକୁ
ଯେ ହେବ ଜାଣିମା ତାହାକୁ ।
ଯନ୍ତୁଁ ତା କପିଏ ଶୁଣିଲେ
ଆପଣା ପ୍ରାକର୍ମ କହିଲେ ।
ଦଶ ଯୋଜନ ଠାରୁ ହର
ତେତେ ଲେଖାଏଁ ବୃଦ୍ଧି କର ।
ସମସ୍ତେ କ୍ରମରେ କହିଲେ
ଶୁଣି ତା ଜାମ୍ବବନ୍ତ ବୋଲେ ।
ଏକଶ ଯୋଜନକୁ ବୀର
କଛି ହିଁ ଉଣା ହେବ ମୋର ।
ପରମେଶ୍ୱର ବଳୀ ପାଇଁ
ଅବତାର ଯେ ଥିଲେ ହୋଇ ।
ପୂର୍ବକାଳେ ସେ ତ୍ରିବିକ୍ରମ
ପଯ୍ୟର କଲେ ପୃଥ୍ୱୀ ସମ ।
ତାହା ମୁଁ ଏକୋଇଶ ଥର
କରିଛି ପ୍ରଦକ୍ଷିଣ ବୀର ।
ଅଯୋଗ୍ୟ ଯାଇ ଆସିବାକୁ
ହେବ ମୁଁ ବୃଦ୍ଧ ହୋଇଲୁକୁ ।
ବୋଇଲେ ସେ ବାଳନନ୍ଦନ
ମୁଁ ଯିବ ଏ ଶଏ ଯୋଜନ ।

କେବଳ ସୁଗ୍ରୀବ ଏଥକୁ
ପୁଣି ଉଚ୍ଛାଳ ଅସିବାକୁ ।
ଶକ୍ୟ ହୋଇବ କି ନୋହିବ
ନଇଲେ ଯିବାର କି ହେବ ।
ଅଙ୍ଗଦ ମୁଖରୁ ଏମନ୍ତ
ଶୁଣି କହିଲେ ଜାମ୍ବବନ୍ତ ।
ତୁମ୍ଭେ ତ ନୃପତି ଆମ୍ଭର
ଆମ୍ଭେ ତ ସେବକ ତୁମ୍ଭର ।
ଯିବାକୁ ଏଣୁ କରି ବୀର
ସମର୍ଥ ହୋଇଲେ ତୁମ୍ଭର
ତୁମ୍ଭଙ୍କୁ ଦେବା ପଠାଇ
ଆମ୍ଭର ଉଚିତ ନୁହଇ ।
ଅଙ୍ଗଦ ଶୁଣନ୍ତେ ଏମନ୍ତ
ବୋଇଲେ ଅହେ ଜାମ୍ବବନ୍ତ ।
ଏମନ୍ତ ନିଶ୍ଚେ କଲ ଯେବେ
ପୂର୍ବ ପରାୟେ କର ତେବେ ।
ଅନଶନକୁ ଅନୁସରି
ଶୋଇବା କୁଶ ଶଯ୍ୟା କରି ।
ଯେବେ ଏ କାର୍ଯ୍ୟ ନ କରିବା
ତେବେ ତ ଜୀଇ ନ ପାରିବା ।
ଏଥକୁ ପୁଣି ଜାମ୍ବବାନ
ତାହାଙ୍କୁ କହିଲେ ଏସନ ।
ଯେ କାର୍ଯ୍ୟ କରିବ ଆମ୍ଭର
ତାହା ମୁଁ କହିବ ହେ ବୀର ।
ପାଖରେ ଥିଲେ ହନୁମନ୍ତ
ତାହାଙ୍କୁ ବୋଇଲେ ଏମନ୍ତ
ଏତେ କାର୍ଯ୍ୟରେ କାହିଁପାଇଁ
ବସିଛ ତୁମ୍ଭେ ତୁନି ହୋଇ ।
ଆପଣ ପରାକ୍ରମ ମାନ
ଦେଖାଅ ଏ କାଳେ ବହନ ।

ତୁମ୍ଭେ ତ ପବନ କୁମର
ତାଙ୍କସମାନ ବେଗ ତୋର ।
ଶ୍ରୀରାମ କାର୍ଯ୍ୟକୁ ସମ୍ଭୂତ
କରି ଅଛନ୍ତି ତୋତେ ଜାତ ।
ତୁମ୍ଭେ ଜନମ ହେବା କାଳେ
ରବି ଯେ ଉଦେ ହେଉ ଥିଲେ ।
ପାଚିଲା ଫଳ ପରକାର
ବୁଝି ଧରିବା ପାଇଁ ବୀର ।
ତୁମ୍ଭେ ଯେ ଲୀଳାରେ ଡେଇଁଲ
ପାଞ୍ଚଶ ଯୁଣ ଶୂନ୍ୟେ ଗଲ ।
ଦେବତା ତୁମ୍ଭଙ୍କୁ ଧଇଲେ
ଭୂମିତଳକୁ ଫିଙ୍ଗି ଦେଲେ ।
ଏଣୁ କରି ତୋ ପରାକ୍ରମ
କହିବାକୁ କେ ହେବ କ୍ଷମ ।
ଉଠିବା ହେଉ ତ ଆପଣ
ଶ୍ରୀରାମ କାର୍ଯ୍ୟ କର ପୂର୍ଣ୍ଣ ।
ବଡ଼ ବେଗରେ କପିବୀର
ଆମ୍ଭମାନଙ୍କୁ ରକ୍ଷା କର ।
ଜାମ୍ବବନ୍ତ ଠାରୁ ଏମନ୍ତ
ପୂର୍ବ ଚରିତ ହନୁମନ୍ତ ।
ଶୁଣନ୍ତେ ହରଷ ହୋଇଲେ
ସିଂହ ପରାଏ ନାଦ କଲେ ।
ଯେସନ୍ତେ ତ୍ରିବିକ୍ରମାବତାର
ସେ ରୂପେ ଦର୍ଶିଲା ଆକାର ।
ମହା ପର୍ବତ ପ୍ରାୟେ ହେଲେ
ଏମନ୍ତ ବଚନ କହିଲେ ।
ହେଳାରେ ଜଳନିଧି ତରି
ଲଙ୍କା କଟକ ଭସ୍ମ କରି ।
ସବଂଶ କରି ରାବଣକୁ
ମାରିଣ ଆଣିବି ସୀତାଙ୍କୁ ।

ନୋହିଲେ ରତ୍ନ ତା ଗଳାରେ
ଲଗାଇ ଟେରି ବାମ କରେ ।
ଲଙ୍କାକୁ ପର୍ବତ ସହିତେ
ଉପାଡ଼ି ଧରି ଆଣ ହସ୍ତେ ।
ଏମନ୍ତ କରି ଆଣି ବେଗେ
ପକାଇବି କି ରାମ ଆଗେ ?
ମାରୁତି ମୁଖରୁ ଏମନ୍ତ
ଶୁଣି କହିଲେ ଜାମ୍ବବନ୍ତ ।
ଜାନକୀ ଜୀବନେ ଥିବାର
ଦେଖି ଆସିବା ହେଉ ବୀର ।
ପଛେ ଆପଣେ ସେ ରାଘବ
ସଙ୍ଗତେ ବଳ ଦେଖାଇବ ।
ଆକାଶେ ଯିବା ବେଳେ ତୋର
ମଙ୍ଗଳ ହେଉ କପିବୀର ।
ଯିବାରେ ଶ୍ରୀରାମ କାର୍ଯ୍ୟରେ
ପବନ ହେଉ ତୋ ପଛରେ ।
ଏ ରୂପେ ଆଶୀର୍ବାଦ କଲେ
ସମସ୍ତେ ତା ଅନୁମୋଦିଲେ
ସବୁ ବାନରେ ଯେତେବେଳେ
ତାଙ୍କୁ ମେଲାଣି ପୁଣ ଦେଲେ ।
ସେ ହନୁମନ୍ତ ଅତି ଖରେ
ମହେନ୍ଦ୍ର ପର୍ବତ ଉପରେ ।
ହରଷ ହୋଇଣ ଉଠିଲେ
ଅତ୍ୟନ୍ତ ଅଦ୍ଭୁତ ଦିଶିଲେ ।
ସ୍ୱ ଗିରିବର ପ୍ରାୟ ମୂର୍ତ୍ତି
ଶୁଦ୍ଧ ସୁବର୍ଣ୍ଣ ପ୍ରାୟ ଜ୍ୟୋତି ।
ଶୋଭା ପାଉଅଛି ବଦନ
ତରୁଣ ଅରୁଣ ଯେସନ ।
ତୁଙ୍ଗ ଉରଗ ପ୍ରାୟ ହୋଇ
ଦୀର୍ଘ ହୋଇଛି ବାହୁ ଦୁଇ ।
ହନୁମନ୍ତଙ୍କ ଏ ପ୍ରକାରେ
ସମସ୍ତ ପ୍ରାଣୀ ନୟନରେ ।
ଅଦ୍ଭୁତ କରଣ ଦେଖିଲେ
ବହୁତ ଆଶ୍ଚର୍ଯ୍ୟ ପାଇଲେ ।
ଏଠାରୁ ଏକାଣ୍ଡ ଚରିତ
ଶୁଭରେ ହେଲା ସମାପତ ।
ବୋଲେ ଦୁର୍ବୁଦ୍ଧି ହଳଧର
ସମସ୍ତେ ଶୁଣ ମୋ ଉତ୍ତର ।
ଏ କ୍ଷିତି ପ୍ରାୟ ଅପ୍ରମିତ
ମୋ ଶିର ପିପିଲିକା ମତ ।
ଏ ସେନା ଯେତେ ମୁଁ ପାଇଲି
ତେତେକ ପରକାଶ କଲି ।
ଏ ଦେନି ନ ଦେଇମା ରୋଷ
କ୍ଷମା କରିବ ସବୁ ଦୋଷ ।
ଜାନକୀ ଯୁକ୍ତ ରଘୁବୀର
ମୋ ହୃଦେ ରହୁ ନିରନ୍ତର ।
ମୋ ତୁଣ୍ଡେ ରାମନାମ ଗାଉ
ନାମ କହିଣ ପ୍ରାଣ ଯାଉ ।
ଏ ଅଧ୍ୟା ବସୁଆଶୀ ପଦ
ସମସ୍ତ ଲୋକର ସୁଖଦ ।
ଏକୋଇଶ ପନ୍ଦର ଶତ
ଏ କାଣ୍ଡ ନ ଅଧ୍ୟାରେ ପ୍ରାନ୍ତ

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ କିଷ୍କିନ୍ଧ୍ୟାକାଣ୍ଡେ
ନାମ ନବମୋଽଧ୍ୟାୟଃ ।

# ସୁନ୍ଦର କାଣ୍ଡ

## ପ୍ରଥମ ଅଧ୍ୟାୟ

ଲଂଘ ଲଭିବା ଛଳେ ଚଢନ୍ତ ମୂଳରେ
ମଣି କନ୍ଦରେ ମାଲ୍ୟବନ୍ତ ପର୍ବତରେ ।
ପାଷାଣ ଗୋଷ୍ଠିକେ ବସିଲେ କରଚନ୍ଦ୍ର ରାମ
ମହା ମରକତମଣି ଅପଘନ ଶ୍ୟାମ ।
ପଙ୍କଜ ପଲାଶ ପ୍ରାୟେ ବିଲାସ ନୟନ
କଟିତଟେ ଶୋଭା ପାଉଅଛି କୃଷ୍ଣାଜିନ ।
ଜଗତସ୍ୱ କରଚନ୍ଦ୍ର ବୃକ୍ଷର ବଳ୍କଳ
ଶିରରେ ଶୋଭା ପାଉଛି ସ୍ୱଜଟା ମଣ୍ଡଳ ।
ପରମ ଶୋଭନ ଫୁଲ ପୁଣ୍ଡ୍ରୀକ ମାଳ
ଧରିବାରେ ରୁଚିର ଦିଶୁଛି ଉର ସ୍ଥଳ ।
ଦୁଇ ପାଶେ ଲକ୍ଷ୍ମଣ ସୁଗ୍ରୀବ ବୀର ବେନି
ଜଗି ହୋଇ ଅଛନ୍ତି ଶ୍ରୀକର ଧରେ ସେନି ।
ମେରୁ ଗିରିବର ବେନି ଶୃଙ୍ଗ ମଧ୍ୟ ଦେଶେ
ବଳାକାବଳୀ ସଂଯୁକ୍ତ ନବଘନ କି ସେ ।
କୋଟି କୋଟି ପରାକ୍ରମବନ୍ତ ଋକ୍ଷ ହରି
ଅଙ୍କୁ ରୁହିଁଣ ରୁଚି ପାଶେ ଛନ୍ତି ପୂରି ।
ଏମନ୍ତ ଶ୍ରୀରାମ ପାଦେ ସୀତା ସହିତରେ
ମନ ରହୁ ଆନ ନୋହୁ ଜନ୍ମ ଜନ୍ମାନ୍ତରେ ।
ଅହେ ପତିତପାବନ କରୁଣାନିଧାନ
ରଙ୍କ ବେଶେ ମୋହ ମନୋରଥ କର ପୂର୍ଣ୍ଣ ।
ଏବେ ଅଧ୍ୟାତ୍ମ ସୁନ୍ଦରକାଣ୍ଡ ରଘୁନାଥ
କରିବି ଗୀତ ପାମରେ ହୋଇବେ କୃତାର୍ଥ ।
ଅବଶ୍ୟ ହୋଇ ଏ ଅଛ ବେଦେ ନିର୍ଭି ପାଇ
ଏ ରୂପେ ହେ ସ୍ୱାମୀ ମୋହଠାରେ କୃପା ହେଉ ।
ବନ୍ଦଇ ପାର୍ବତୀ ଯୁକ୍ତ ଶିବ ଚରଣରେ
ଜୟ ହୋଇ ଏ ଗୀତ ସ୍ଫୁରୁ ମୋ ମନରେ ।

ଅହେ ଶ୍ରୀରାମ କିଙ୍କର ପବନକୁମାର
ତୁମ୍ଭଙ୍କୁ ସନ୍ତତେ କରୁଅଛୁ ନମସ୍କାର ।
ଯେତେ କଥା କରି ।ା ହୋଇଲା ଏ କାଣ୍ଡରେ
ସେମାନ ବହନ ସ୍ଫୁରୁ ମୋହର ମନରେ ।
ସୁଜନଜନ ନାଳର ସ୍ଥିର କର ଚିତ୍ତ
ଶୁଣିବା ହେବ ଏଠାରୁ ସୁନ୍ଦର ଚରିତ ।

ପାର୍ବତୀ ଉବାଚ

ଶିବ ପାଦେ ଶିର ଦେଇ ବୋଲେ ଭଗବତୀ
କି ପ୍ରକାରେ ଜଳନିଧି ତରିଲେ ମାରୁତି ।
ସୀତା ସ୍ଥଳେ ଭେଟ ହୋଇ କି କି କାର୍ଯ୍ୟ କଲେ
ଲେଉଟି ରାମଙ୍କୁ ବାର୍ତ୍ତା କି ରୂପେ କହିଲେ ।
ଏମାନ କଥା ବୋଲନ୍ତେ ବେଗେ ତ୍ରିଲୋଚନ
ତାଙ୍କୁ ତୋଳି ଧରି ସ୍ନେହେ କରି ଆଲିଙ୍ଗନ ।
ବୋଇଲେ ଗୋ ପ୍ରାଣ ପ୍ରିୟେ ଶୁଣ ମୋ ବଚନ
ଏଥୁ ଅନନ୍ତରେ ମହାବଳୀ ହନୁମାନ ।
ବିସ୍ତାର ଅଟଇ ସିନ୍ଧୁ ଶତେକ ଯୋଜନ
ଏମନ୍ତ ସମୁଦ୍ର ଲଙ୍ଘିବାକୁ କରି ମନ ।
ଆନନ୍ଦ ହୋଇ ପରମ ଆତ୍ମା ଶ୍ରୀରାମଙ୍କୁ
ଧ୍ୟାନ କରି କହିଲେ ସେ ବାନରମାନଙ୍କୁ ।
ରଘୁନାଥଙ୍କ ଅମୋଘ ଶର ପ୍ରାୟେ ମୋତେ
ଆକାଶରେ ଯାଉଥିବି ଦେଖିବ ସମସ୍ତେ ।
ଆଜ ମୁଁ ତାହାଙ୍କୁ ଦେଖି କୃତାର୍ଥ ହୋଇବି
ବେଗେ ଆସି ଶ୍ରୀରାମଙ୍କୁ ଦର୍ଶନ କରିବି ।
ପ୍ରାଣ ଛାଡ଼ିବା ସମୟେ ଯେଉଁ ରାମଚନ୍ଦ୍ର
ନାମ ଥରେ ମାତ୍ର ଧରି ସଂସାର ସମୁଦ୍ର ।
ହେଲେ ପାର ହୋଇ ପରମ ପଦ ଲଭଇ
ସେ ଶ୍ରୀରଘୁନନ୍ଦନଙ୍କ ଦୂତ ତ ଅଟଇ ।
ବିଶେଷେ ତାଙ୍କ ମୁଦ୍ରିକା ଅଛି ମୋହ ଠାରେ
ମନେ ସୁମରଣା କରୁଅଛୁ ନିରନ୍ତରେ ।

ଏ ଜନ୍ମରେ ଶହେ ଯୂଣ ପାରିବାର ନାର
କି ଷ୍ଟର କଥା ଏ ହୋଇ ନ ପାରିବ ପାର ।
ଏମନ୍ତ କହି ସେ ଦୁଇ ବାହୁ ପ୍ରସାରିଲେ
ଅତି ଦୀର୍ଘ କରି ଲାଞ୍ଜ ଲମ୍ବାଇଣ ଦେଲେ ।
ଧ୍ୱଜ ପ୍ରାୟେ କରି ଗ୍ରୀବା ଟେକି ସେ ଅଛନ୍ତି
ମୁଖ ଖୋଲି ଦୃଷ୍ଟି ଉପରକୁ କରିଛନ୍ତି ।
ଦୁଇ ଚରଣ ଅଳପ କରି ଲେଚ କଲେ
ଦକ୍ଷିଣକୁ ମୁଖ କରି ନଭକୁ ଡେଇଁଲେ ।
ଦେଖି ଯେ ସୁର ନିକରେ ଚିନ୍ତିଲେ ଏମନ୍ତ
ଲଙ୍କାରେ ପ୍ରବେଶ ହେବେ ଠିକ ହନୁମନ୍ତ ।
କିବା ନ ପାରିବ ଏହା ଜାଣିମା ବୋଇଲେ
ନାଗମାତା ସୁରସାକୁ ଡାକିଣ କହିଲେ ।
ବଳୀ ବଳୀମୁଖ ଯେ ଯାଉଛି କରି ଛନ୍ନ
ବୁଦ୍ଧି ବଳ ଜାଣି ତାର ଆସିବୁ ବହନ ।
ଶୁଣି ସେ ଯାଇ ବହନ ହନୁମନ୍ତ ଅଗେ
ମାର୍ଗେ ଅଗ ଓଗାଳି କହିଲା ତାଙ୍କୁ ରାଗେ ।
ବେଗ ହୋଇ ବାନର ରେ ପଶ ମୋ ମୁଖରେ
ଦେଖ କମ୍ପୁଅଛି ମୋର ଦେହ କ୍ଷୁଧାଗ୍ନିରେ ।
ସମସ୍ତ ଦେବତାମାନେ ଭକ୍ଷ୍ୟ କରି ତୋତେ
ନିଶ୍ଚେ ଅଜ ମର୍କଟରେ ଦେଇଛନ୍ତି ମୋତେ ।
ମାରୁତି ବୋଇଲେ ମାତ ଶୁଣ ମୋ ବଚନ
ରାମ ଆଜ୍ଞାରେ ଯାଉଛି ସୀତାଙ୍କ ଦର୍ଶନ ।
କରି ଶୁଭେ ଆସି ଶ୍ରୀରାମଙ୍କୁ ଜଣାଇବି
ସେ ଜନ୍ମରେ ତୁମ୍ଭ ମୁଖେ ପ୍ରବେଶ ହୋଇବି ।
ଏଣୁ କରି ମାର୍ଗ ବେଗେ ଛାଡ଼ିଦିଅ ମୋତେ
ସୁରସା ମୁଁ ନମସ୍କାର କରୁଅଛି ତୋତେ ।
ନାଗମାତା ବୋଇଲା ମୁଁ ହୋଇଛି କ୍ଷୁଧାର୍ତ୍ତି
ମୋ ମୁଖେ ପ୍ରବେଶ ହୋଇ ଯାଅ ହନୁମନ୍ତ ।
ନୋହିଲେ ମୁଁ ତୋତେ ଅଜ କରିବି ଆହାର
ଶୁଣି ମାରୁତି ବୋଇଲେ ବଦନ ବିସ୍ତାର ।

ତୋ ମୁଖେ ପ୍ରବେଶ ହୋଇପିବ ମୁଁ ବଦନ
ଏମନ୍ତେ କହି ଯୋଜନେ କଲେ ଅପଘନ ।
ଏରୂପେ ତାହାଙ୍କୁ ଦେଖି ସୁରସା ବଦନ
ପାଞ୍ଚଯୋଜନ ବିସ୍ତାର କଲେ ତା ବଦନ ।
ଏମନ୍ତ ଦେଖନ୍ତେ ପୁଣ ପବନ କୁମାର
ଦଶଯୋଜନ ସେ କଲେ ନିଜ କଳେବର ।
ସୁରସା ବଦନ କଲେ କୋଡ଼ିଏ ଯୋଜନ
ତିରିଶ ଯୋଜନ ପୁଣି ହେଲେ ହନୁମାନ ।
ପଞ୍ଚାଶ ଯୋଜନ ଦେବୀ କରନ୍ତେ ବଦନ
ଅଙ୍ଗୁଳି ପ୍ରମାଣ ହୋଇ ପବନ ନନ୍ଦନ ।
ସୁରସା ବଦନେ ପଶି ବାହାର ହୋଇଲେ
ଆକାଶରେ ରହି ତାଙ୍କୁ ଏମନ୍ତ କହିଲେ ।
ହେ ଦେବି ତୋ ମୁଖେ ପଶି ହୋଇଲି ବାହାର
ଆଜ୍ଞା ଦେବା ହେଉ ଯିବି ତୋତେ ନମସ୍କାର ।
ସୁରସା କହିଲେ ବାବୁ କର ତୁ ଗମନ
ରଘୁନାଥ କାର୍ଯ୍ୟ ଏବେ ସାଧ ଯା ବନ୍ଦନ ।
ସୁରଗଣେ ବୁଦ୍ଧି ବଳ ଜାଣିବା ନିମନ୍ତେ
ତୁମ୍ଭଠାକୁ ପଠିଅଇ ଦେଇଥିଲେ ମୋତେ ।
ଜାନକୀଙ୍କି ଦେଖି ଆସି ଦେଖିବ ରାମଙ୍କୁ
ଏମନ୍ତ କହିଣ ତାଙ୍କୁ ଗଲେ ସେ ସ୍ୱର୍ଗକୁ ।
ସେ ଉତ୍ତାରେ ହନୁମନ୍ତ ପୁଣି ଗଗନରେ
ଗରୁଡ଼ ପ୍ରକାରେ ଗଲେ ପବନ ମାର୍ଗରେ ।
ସାଗର ବୋଇଲେ ଅହେ ମୈନାକ ପର୍ବତ
ଯାଉ ଅଛନ୍ତି ଯେ ମହାବଳୀ ହନୁମନ୍ତ ।
ତୋର୍ ହୋଇ ଅଛନ୍ତି ସେ ରାମ କାର୍ଯ୍ୟ ପାଇଁ
ତାଙ୍କୁ ତୁମ୍ଭେ ବେଗେ ମାର୍ଗେ ସାହା ହୁଅ ପାଇଁ ।
ସଗର ନିକର ମୋତେ ଅଛନ୍ତି ବଢ଼ାଇ
ଏହି ସକାଶରୁଟି ମୁଁ ସାଗର ବୋଲାଇ ।
ସେହି ବଂଶେ ଦାଶରଥି ରାମ ହୋଇଛନ୍ତି
ତାଙ୍କ କାର୍ଯ୍ୟ ପାଇଁ ଏବେ ଯାଉଛନ୍ତି ମାରୁତି ।

ଏଣୁ ଜଳମଧ୍ୟୁ ବେଗେ ଉଠ ନଗବରେ
ତୋ ଠାରେ ବିଶୋଇ ଯାଉ ପବନ କୁମାର ।
ଏହା ଶୁଣି ମୈନାକ ବଢ଼ିଲେ ଜଳୁଁ ବେଗେ
ଶୋଭା ପାଉଛନ୍ତି ନାନା ରତ୍ନମୟ ଶୃଙ୍ଗେ ।
ନଗବର ଶୃଙ୍ଗ ନର ଆକାର ଧରିଲେ
ଉଚ୍ଚ କରି ମାରୁତଙ୍କୁ ଡାକିଣ କହିଲେ ।
ଆପଣ ବିଶୋଇ ଯିବା ପାଇଁ ହେ ମାରୁତ
ମୈନାକ ମୁଁ, ସିନ୍ଧୁ ମୋତେ ପଠାଇଅଛନ୍ତି ।
ଅସ ଅମୃତ ପ୍ରକାର ଫଳମାନ ଖାଇ
ଯିବା ହେଉ ପୁଣି କ୍ଷଣେ ମାତ୍ରକ ବିଶୋଇ ।
ଏମନ୍ତ ଶୁଣି ମାରୁତ କହିଲେ ତାହାଙ୍କୁ
ଯେଉଁ ଲୋକ ଯାଉଥିବ ଶ୍ରୀରାମ କାର୍ଯ୍ୟକୁ ।
କ୍ଷଣେ ବିଳମ୍ବ କି ସେ ଲୋକର ନର୍ଭା ପାଇ
ଏଣୁ ବେଗେ ଯାଉଅଛୁ ନ ପାରିବା ରହି ।
ଏମନ୍ତ କହି ଅଙ୍ଗୁଳି ଅଗ୍ରରେ ଶିଖର
ଛୁଇଁ ବେଗେ ତୋରା ହୋଇ ଗଲେ କପିବର ।
ପୁଣି କେତେଦୂର ଗଲା ଉତ୍ତାରେ ସେ ଜଳେ
ସିଂହିକା ନାମେ ରାକ୍ଷସୀ ଗୋଟାଏ ଦେଖିଲେ ।
ଆକାଶେ ଗଲା ଜନ୍ତୁର ଛାଇ ସେ ଧରଇ
ରହଇ ସେ ଜୀବ ତାକୁ ଆହାର କରଇ ।
ମାରୁତ ଛାଇ ସେ ଜଳେ ରାକ୍ଷସୀ ଧରନ୍ତେ
ହନୁମାନ ବିଚାରିଲେ ଆପଣାର ଚିତ୍ତେ ।
କେଉଁ ଲୋକ ବନ୍ଧ କଲା ମୋ ବେଗ ରୁନ୍ଧିଲା
ଏଥୁ ବଡ଼ ଅଦ୍ଭୁତ ମୋହର ହୋଇଲା ।
କଉଣସି ଦିଗରେ ତ କେହୁ ଦିଶୁ ନାହିଁ
ଏମନ୍ତ ବିଚାରି ସେ ତଳକୁ ଦେଲେ ଚାହିଁ ।
ସିଂହିକାକୁ ଦେଖି ଜଳେ ପଡ଼ି ହନୁମାନ
ଦୁଇ ପାଦେ ତାକୁ ମାରି ପକାଇ ବହନ ।
ପୁଣି ଆକାଶକୁ ଡେଇଁ ଦକ୍ଷିଣ ମୁଖରେ
ଗଲେ ହନୁମାନ ତୋରା ହୋଇ ଅତି ଖରେ ।

ନାନା ବୃକ୍ଷଲତାମାନେ ଅଛନ୍ତି ବହୁତ
ଫଳ ଫୁଲ ମାନଙ୍କରେ ହୋଇଛନ୍ତି ଯୁକ୍ତ ।
ମୃଗ ପକ୍ଷୀ ମାନଙ୍କରେ ହୋଇଛୁ ପୂରତ
ଏମନ୍ତ ଦକ୍ଷିଣ କୂଳେ ହେଲେ ହନୁମନ୍ତ ।
ବିବିଧ ପ୍ରକାରେ ପାଦପମାନେ ଅଛନ୍ତି
ଅନେକ ପକ୍ଷୀ ଗୃହଦ୍ୱାରେ ବେଢ଼ିଛନ୍ତି ।
ଏମନ୍ତ ଲଙ୍କା ତ୍ରିକୂଟ ପର୍ବତ ଶିଖରେ
ଦେଖି ହନୁମନ୍ତ ଚିନ୍ତା କଲେ ହୃଦୟରେ ।
କି ପ୍ରକାରେ ଅମ୍ଭେ ଏଥି ପ୍ରବେଶ ହୋଇବା
ନିଶ୍ଚୟ କଲେ ସାମାନ୍ୟ ରୂପ ହୋଇଯିବା ।
ଏହା ଚିନ୍ତି ଦିବସକ ସେଠାରେ ରହିଲେ
ସାମାନ୍ୟ ହୋଇଣ ରାତ୍ରେ ଲଙ୍କାଦ୍ୱାରେ ହେଲେ ।
ଲଙ୍କେଶ୍ୱରୀ ରାକ୍ଷସୀ ରୂପରେ ବୁଲୁଥିଲେ
ହନୁମନ୍ତଙ୍କୁ ଦେଖନ୍ତେ ତର୍ଜନା ସେ କଲେ ।
ବୋଲେ ମୁଁ ଲଙ୍କିନୀ ମୋତେ ଅନାଦର କରି
କେ ତୁ ରାତ୍ରେ ଚୋର ପ୍ରାୟେ କପି ରୂପ ଧରି ।
କି କାର୍ଯ୍ୟ ଇଚ୍ଛା କରୁଛୁ ପରବେଶ ହୋଇ
ଏମନ୍ତ କହି ସେ ଅତି କ୍ରୋଧ ଚିତ୍ତ ବହି ।
ବାମ ପାଦ ଟେକି କରି ତୋଇଠା ଗୋଟାଏ
ବେଗେ ପ୍ରହାରିଲେ ନେଇ ହନୁମନ୍ତ ଦେହେ ।
ମାରୁତ ତହିଁରେ କିଛୁ ବ୍ୟଥା ନ ପାଇଲେ
ବାମ କର ମୁଠା କରି ବିଧାଏ ମାଇଲେ ।
ରକତ ବାନ୍ତି କରି ସେ ଭୂମିରେ ପଡ଼ିଲେ
ପୁଣି ଜ୍ଞାନ ପାଇ ଉଠି ଏମନ୍ତ ବୋଇଲେ ।
ଅହେ ହନୁମନ୍ତ ତୁମ୍ଭେ ଯିବା ହେଉ ପୁଣ
ଲଙ୍କା କଟକ ଅଜହୁଁ ଜିଣିଲ ଆପଣ ।
ପୂର୍ବକାଳେ ବ୍ରହ୍ମା କହିଛନ୍ତି ମୋର ଆଗେ
ଅଷ୍ଟବିଂଶ ଚତୁର୍ଯୁଗ ମଧ୍ୟ ତ୍ରେତାଯୁଗେ ।
ଅମ୍ଭ ମାଗିଲାରୁ ଭୂମିଭାର ନାଶୋଇଁ
ନାରାୟଣ ହେବେ ଦାଶରଥି ନାମ ବହି ।

ସୀତା ନାମ ବହିଣ ଧରଣୀ ମଣ୍ଡଳରେ
ଯୋଗମାୟା ଜାତ ହେବେ ଜନକ ମନ୍ଦିରେ ।
ଭାର୍ଯ୍ୟା ଭାଇ ଛଳେ ବନେ ବୁଲନ୍ତେ ରାଘବ
ତହିଁରୁ ସୀତାଙ୍କୁ ହରନେବ ଦଶଗ୍ରୀବ ।
ରାମଚନ୍ଦ୍ର ମିତ୍ର ହେବେ ସୁଗ୍ରୀବ ସଙ୍ଗତେ
ସୁଗ୍ରୀବ ବଇଦେହୀଙ୍କି ଖୋଜିବା ନିମନ୍ତେ ।
ସବୁ ଦିଗକୁ ସେ କୀଶ ପଠିଥିବ ଯେବେ
ତହୁଁ କପି ଗୋଟାଏ ଦେଖିବ ତୋତେ ରାତ୍ରେ ।
ତୁ ସେ ମର୍କଟକୁ ଦେଖି ଭର୍ତ୍ସନା କରନ୍ତେ
ବାମକର ମୁଠା କରି ମାରିବ ସେ ତୋତେ ।
ସେ ମାଡ଼ରେ ବ୍ୟଥା ଯେବେ ତୋହର ହୋଇବ
ତେବେ ଜାଣିମୁଁ ନିକଟେ ରାବଣ ମରିବ ।
ଏଣୁ ଲଙ୍କା ଜୟ କଲ ପବନ ନନ୍ଦନ
ରାବଣର ଅନ୍ତଃପୁରେ ଅଛି କ୍ରୀଡ଼ାବନ ।
ଅଶୋକବନ ତହିଁରେ ଅଛି ହନୁମାନ
ଅଛି ତହିଁରେ ବହୁତ ଦିବ୍ୟ ବୃକ୍ଷମାନ ।
ବଡ଼ ଶିଂଶପାବୃକ୍ଷ ଗୋଟାଏ ଅଛି ତହିଁ
ଘୋର ରାକ୍ଷସୀମାନଙ୍କ ଗୋଚରେ ସେଠାଇଁ ।
ଜାନକୀ ଅଛନ୍ତି ତାଙ୍କୁ ଦେଖି କଥା ହୋଇ
ରାମ ଅଗେ ଅତି ବେଗେ ବାର୍ତ୍ତା କହ ଯାଇ ।
ସଂସାର ପାପନାଶନ ବହନ ଯେ ପୁଣି
ଏମନ୍ତ ପ୍ରକାରେ ଯେଉଁ ଶ୍ରୀରାମ ସ୍ମରଣ ।
ସେ ଏବେ ମୋହର ଏତେ କାଳେ ଭାଗ୍ୟ ହେଲା
ଧନ୍ୟ ହେଲି ମୁଁ ଏବେ ସୁକୃତ ମୋର ଥିଲା ।
ଅତଅନ୍ତ ଦୁର୍ଲ୍ଲଭ ଯେ ତାହାଙ୍କ ଭକତ
ବିଶେଷେ ହୋଇଲି ମୋର ତାଙ୍କ ସଙ୍ଗେ ଯୁକ୍ତ ।
ଦାଶରଥି ଅଟେ ଯେଉଁ ଶ୍ରୀ ରଘୁନନ୍ଦନ
ସବୁକାଳେ ସେ ମୋ ହୃଦେ ହେଉ ପରସନ ।
ପାର୍ବତୀଙ୍କି ବୁଝାଇ ପୁଣ ବୋଇଲେ ଶଙ୍କର
ହନୁମନ୍ତ ଯେତେବେଳେ ସିନ୍ଧୁ ହେଲେ ପାର ।

ସୀତା ରାବଣର ବାମ ବାହୁ ଯେ ନୟନ
ରାମର ଦକ୍ଷିଣ ଅଙ୍ଗ ସ୍ଫୁରିଲ୍ଲ ବହନ ।
ବୋଲେ ହଳଧର ଦାସ ରାମପାଦେ ମୋର
ସୀତା ସହିତେ ଭଗତ ହେଉ ନିରନ୍ତର ।
ଏ ଅଧ୍ୟା ପାଞ୍ଚ ଊଣର ଶହେ ପଦ ଗୀତ
ସବୁ କାଳେ ହରୁ ମୋର ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ସୁନ୍ଦରକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ପୁଣି ବୋଲେ ପଶୁପତି ଶୁଣ ଭଗବତୀ
ତହିଁ ଉତ୍ତାରେ ପାଚେରୀ ଡେଇଁଲେ ମାରୁତି ।
ଅତିଅଳ୍ପ ସାମାନ୍ୟ ମୂରତିଟିଏ ଧରି
ପରମ ଶୋଭନ ଅଟେ ଯେଉଁ ଲଙ୍କାପୁରୀ ।
ତହିଁରେ ପ୍ରବେଶ ହୋଇ ରାବଣ ସବୁ ସ୍ଥାନ
ଖୋଜି ରାଜ ସଦନରେ ହେଲେ ହନୁମାନ ।
ତହିଁ ଖୋଜି ସୀତାଙ୍କୁ ନ ଦେଖି କେଉଁ ସ୍ଥାନେ
ଲଙ୍କେଶ୍ୱରୀ ବୋଲି ସୁମରଣା କରି ମନେ ।
ବହନ ଅଶୋକ ବନେ ମିଳିଲେ ମାରୁତି
କଳ୍ପବୃକ୍ଷମାନେ ତହିଁ ଅନେକ ଅଛନ୍ତି ।
ରତନେ ଜଡ଼ିତ ହୋଇ ହେତୁ ସୋପାନ
ନାନା ମୃଗ ପକ୍ଷୀମାନେ ହୋଇଛନ୍ତି ପୂର୍ଣ୍ଣ ।
ସୁନାର ଜଗତିମାନେ ବହୁତ ଅଛନ୍ତି
ଫଳ ଭରେ ବୃକ୍ଷଶାଖାମାନେ ଲମ୍ବିଛନ୍ତି ।
ତହିଁ ସୀତାଙ୍କୁ ଖୋଜନ୍ତେ ଦେଖିଲେ ଏମନ୍ତ
ଏକଠାରେ ବୃକ୍ଷମାନେ ଅଛନ୍ତି ବହୁତ ।
ଦିବ୍ୟ ଜଗତି ଗୋଟିଏ ଅଛି ଯେ ସେଠାରେ
ବହୁତ ଶ୍ୱେତ ସୁବର୍ଣ୍ଣ ଖମ୍ବେ ଯୁକ୍ତ ହୋଇ ।

ତା ଦେଖି ମାରୁତି ବଡ ବିସ୍ମୟ ହୋଇଲେ
ତହିଁ କେତେ ଦୂର ଗଲା ଉତ୍ତାରେ ଦେଖିଲେ ।
ବଡ଼ ଶିଂଶପା ବୃକ୍ଷ ଗୋଟିଏ ଅଛି ତହିଁ
ପତ୍ରମାନେ ଅଛନ୍ତି ଅତ୍ୟନ୍ତ ଘଞ୍ଚ ହୋଇ ।
ଖରା ପଡ଼ୁ ନାହିଁ ତହିଁ ସୂର୍ଯ୍ୟର କିରଣ
ବହୁତ ଅଛନ୍ତି ତହିଁ ହେମ ପକ୍ଷୀଗଣ ।
ତହିଁ ତଳେ ସୀତା ଛନ୍ତି ରାକ୍ଷସୀଙ୍କ ମେଳେ
ଏମନ୍ତ କରି ତାହାଙ୍କୁ ମାରୁତି ଦେଖିଲେ ।
ଦେବ ସ୍ତ୍ରୀ ଭୂତଳେ ପଡ଼ିଥିଲା ପ୍ରାୟେ କରି
କୃଶ ହୋଇ ଏକ ବେଣୀ ଅଛନ୍ତି ସେ ଧରି ।
ପିନ୍ଧି ମଳିନ ବସନ ହୋଇଛନ୍ତି ଦୀନ
ଧରଣୀ ତଳରେ କରି ଅଛନ୍ତି ଶୟନ ।
ନିରନ୍ତର ଶ୍ରୀରାମ ଶ୍ରୀରାମ ବୋଲୁଛନ୍ତି
ରକ୍ଷନ୍ତା କଉଣ ଜଣେ ଦେଖୁଣ ନାହାନ୍ତି ।
ପ୍ରତି ଦିବସରେ କରିବାରୁ ଉପବାସ
କଳେବର ହୋଇଅଛି ଅତିଅନ୍ତ କୃଶ ।
ଏରୂପେ ଦେଖି ସେ ବୃକ୍ଷ ମଧ୍ୟ ଶାଖା ପତ୍ରେ
ଲୀନ ହୋଇ ହନୁମନ୍ତ ବିଚାରିଲେ ଚିତ୍ତେ ।
ନିସ୍ତରିଲି ନିସ୍ତରିଲି ସୀତାଙ୍କୁ ଦେଖିଲି
ପରମାତ୍ମା ଶ୍ରୀରାମର କାର୍ଯ୍ୟ ମୁଁ ସାଧିଲି ।
ଏମନ୍ତ ସମୟେ ଅନ୍ତଃପୁରର ଦିଗରେ
କୋଳାହଳ ଶବଦ ଗୋଟିଏ ଶୁଣି ଖରେ ।
କି କଥା ଏ ବୋଲି ପତ୍ରେ ଲୁଚିଲେ ମାରୁତି
ଦେଖିଲେ ବହୁତ ସ୍ତ୍ରୀ ଯେ ବେଢ଼ିଣ ଅଛନ୍ତି ।
ଆସନ୍ତେ ରାବଣ ଦିଶୁଅଛି ବଡ଼ ତେଜ
ଦଶଗୋଟି ମସ୍ତକ କୋଡ଼ିଏ ଗୋଟି ଭୁଜ ।
ପେଷିଲା କଜ୍ଜ୍ୱଳ ପ୍ରାୟେ ଦିଶୁଅଛି ବର୍ଣ୍ଣ
ଏମନ୍ତ ଦେଖି ବିସ୍ମୟ ହୋଇ ହନୁମାନ ।
ହୃଦୟରେ ଅନେକ ଆଶଙ୍କାମାନ କଲେ
ପୁଣି ଅତିଅନ୍ତ ପତ୍ର ଗହଳେ ଲୁଚିଲେ ।

ରାବଣ ଯେ ସର୍ବୁଦନେ ମନେ ଚିନ୍ତୁଥାଇ
ଶ୍ରୀରାମ ତ ଏଠାକୁ ନଇଲେ ସୀତା ପାଇଁ ।
କେମନ୍ତ ତାଙ୍କ ହସ୍ତୁଁ ହେବ ମୋ ମରଣ
ଏମନ୍ତ ସେ ରାମଙ୍କୁ ଚିନ୍ତନ୍ତେ ପୁଣ ପୁଣ ।
ମାରୁତ ଅଇଲା ରାତ ପାହାନ୍ତି ସମୟେ
ରାମ ତାଙ୍କୁ ଦେଖାଇଲେ ସ୍ୱପନ ଗୋଟାଏ ।
ଜଣେ କାମରୂପୀ କପି ଜଣେ ଅସି
ସୂକ୍ଷ୍ମରୂପେ ସୀତାଙ୍କ ଗୃହୁଁ ସ୍ଥ ବୃକ୍ଷେ ବସି ।
ଏମନ୍ତ ରୂପେ ଅଦ୍ଭୁତ କର ଦଶାନନ
ସ୍ୱପନ ଦେଖି ସେ ମନେ ଚିନ୍ତିଲା ଏସନ ।
ଏ ସ୍ୱପନ କେତେବେଳେ ସତ ହୁଏ ଅବା
ଅମ୍ଭେ ଆଜ ଏଥିପାଇଁ ଉପାୟେ କରିବା ।
ବଚନ ଶର ନିକରେ ବାନ୍ଧ ମୁଁ ସୀତାଙ୍କୁ
ଦୁଃଖ ଦେବ ଦେଖି କପି କହୁ ଶ୍ରୀରାମଙ୍କୁ ।
ଏମନ୍ତ ବିଚାର ସେ ଅସନ୍ତେ ତୋଷ ହୋଇ
ନୂପୁର କିଙ୍କିଣୀ ଧ୍ୱନି ଶୁଣି ବଇଦେହୀ ।
ମହାଭୟ ପାଇ ସବୁ ଅଙ୍ଗ କମ୍ପାଇଲେ
ଅପଣା ଦେହରେ ଲୀନ ହେଲା ପ୍ରାୟେ ହେଲେ ।
ଲୋତକ ନେତ୍ରୁ ବହୁନ୍ତି ଅଧୋମୁଖୀ ହୋଇ
ବସିଲେ ଶ୍ରୀରାମଚନ୍ଦ୍ର ଠାରେ ଚିତ୍ତ ଦେଇ ।
ଏମନ୍ତ ରୂପେ ସୀତାଙ୍କୁ ଦେଖି ଦଶାନନ
ବୋଇଲା ଗୋ ସୁମଧ୍ୟମେ ଶୁଣ ମୋ ବଚନ ।
ମୋତେ ଦେଖି ଏରୂପେ କାହିଁକି ପ୍ରାଣପ୍ରିୟେ
ହୃଦରେ ତୋର ହେଉ ଅଛଇ ମହାଭୟେ ।
ବନଚର ମାନଙ୍କ ମଧ୍ୟରେ ଅରଣ୍ୟରେ
ରାମଚନ୍ଦ୍ର ଅଛନ୍ତି ଲକ୍ଷ୍ମଣ ସଙ୍ଗତରେ ।
ନ ଦେଖନ୍ତି କେହି କସ୍ମେ କେ ଅବା ଦେଖଇ
ଅମ୍ଭେ ଯେ ବୁଲୁ ବରଗୁ ଦେଖିବାର ପାଇଁ ।
ବଡ଼ ଯତ୍ନକର ନ ନ ଦେଖନ୍ତି ସେମାନେ
ତୋଠାରେ ତ ରାମ ଭାବକତ ସର୍ବୁଦନେ ।

ଏଣୁ ତୋଠାରେ ତାର କି ହେବ ପ୍ରୟୋଜନ
ସବୁକାଳେ କଲେ ତୁ ତାହାଙ୍କୁ ଅଲିଙ୍ଗନ ।
ସେ ଅନୁବରତେ ଥିଲେ ତୋହ ସଙ୍ଗତରେ
ତାହାର ତୋଠାରେ ସ୍ନେହ ନାହିଁ ହୃଦୟରେ ।
ତୋ ସକାଶୁ ଯେଉଁ ସୁଖ ତୋର ଯେଉଁ ଗୁଣ
ଜାଣନ୍ତି ନାହିଁ ତା ଭୋଗ କର ସେ ନିର୍ଗୁଣ ।
ଯେଣୁ କୃତଘ୍ନ ନିର୍ଦ୍ଦୟ ଅଧମ ଅଟଇ
ଦେଖ ପତିବ୍ରତା ତୁ ଯେ ଥିଲୁ ଦୁଃଖୀ ହୋଇ ।
ମୁଁ ଯେ ପଞ୍ଚବଟୀରୁ ଆଣିଲି ତୋତେ ବଳେ
ତୋ ପାଖକୁ ଥରେ ସେ ନଇଲା ଏତେକାଳେ ।
ଶକତ ନ ଥିଲେ ସେ ଆସିବ କିବା ହୋଇ
ଦୁର୍ବଳ ସେ ତୋହଠାରେ ମମତାହିଁ ନାହିଁ ।
ମାନୀ ସେ ତୋ ଠାରେ ବଡ଼ ଅଟଇ ବିମୁଖ
ପଣ୍ଡିତ ମୁଁ ବୋଲି ଅହଙ୍କାର କରେ ମୂର୍ଖ ।
ଏ ଯେଣୁ ତାକୁ ତୁ କି କରିବୁ ଗୋ ସଙ୍ଗାତ
ତୋ ଠାରେ ମୁଁ ହୋଇଅଛି ଅତ୍ୟନ୍ତ ଆସକ୍ତ ।
ରାକ୍ଷସମାନଙ୍କ ମଧ୍ୟେ ଶ୍ରେଷ୍ଠ ମୁଁ ଅଟଇ
ଏ ଯେଣୁ ବଚନ ମୋତେ ଭଜ ବଇଦେହୀ ।
ଦେବତା ଗନ୍ଧର୍ବ ଯକ୍ଷ ନାଗ ଯେ ରାକ୍ଷସ
ଏତେ ଜାତ ସ୍ତ୍ରୀଏମାନେ ହେବେ ତୋର ବଶ ।
ଆଜ୍ଞାକାରୀ ହୋଇଥିବେ ସମସ୍ତେ ସତ୍ତତେ
କେବଳ ଜାନକୀ ଗୋ ଭଜିବୁ ଯେବେ ମୋତେ ।
ଏହା ଶୁଣି ବଇଦେହୀ ଅଧୋମୁଖୀ ହେଲେ
* ତୃଣ ମଧ୍ୟେ ରଖି କ୍ରୋଧ କରି ସେ ବୋଇଲେ ।
ଶ୍ରୀ ରାମଚନ୍ଦ୍ର ସକାଶୁ ମହାଭୟ ପାଇ
ସେକାଳେ ତ ଭଣ୍ଡାର ରୂପକୁ ଧରି ଯାଇ ।

* ଅନିବାର୍ଯ୍ୟ କାରଣ ବଶତଃ ଯଦି କୌଣସି ପତିବ୍ରତା ସ୍ତ୍ରୀକୁ ପରପୁରୁଷ ସହିତ ବାର୍ତ୍ତାଳାପ କରିବାକୁ ପଡ଼େ ତେବେ ସେ ଦୁହିଙ୍କ ମଧ୍ୟରେ ଏକ ଜଡ଼ ବସ୍ତୁ ରଖିବା ବିଧି ଶାସ୍ତ୍ର ସମ୍ମତ । ଏହି ନିୟମାନୁଯାୟୀ ସୀତା ମଝିରେ ତୃଣ ରଖିଥିଲେ ।

ଯଜ୍ଞମାନ ଯାଗଶାଳେ ନ ଥିବାରେ ଜେହ୍ନେ
ହବିର୍ଭାଗ ପେଟନେ କୁକୁର ଘେନି ଯାଇ ।
ସେହିରୂପେ ମନ୍ଦିରେ ନ ଥିଲେ ବେନି ଭାଇ
ସେଠାରୁ ତୁ ମୋତେ ଘେନି ଅଇଲୁ ସ୍ୱୈରଳ ।
ପୁତ୍ର ପଙ୍କଜ ବାହନ ବଳ ସହିତରେ
ସେ ଫଳ ତୁ ଶୀଘ୍ରେ ଲଭିବୁ ନିକଟରେ ।
ଯେଉଁ କାଳେ ତୋହ କଳେବର ଦଶଗ୍ରୀବ
ଶ୍ରୀରାମ ଶର ଜାଳରେ ବିଦାର ହୋଇବ ।
ସେକାଳେ ତୁ ଜାଣିବୁ ଅମାନବ ରାମଙ୍କୁ
ବେଗେ ତୋର ହୋଇ ଯିବୁ ଯମ ମନ୍ଦିରକୁ ।
ଶର ସମୂହରେ ରାମ ସିନ୍ଧୁ ଶୁଖାଇବେ
କି ଅବା ନୋହିଲେ ତହିଁ ବନ୍ଧ ପକାଇବେ ।
ଏ ରୂପେ ବାନର ସଙ୍ଗେ ଘେନି ଲକ୍ଷ୍ମଣଙ୍କୁ
ଆସିବେ ନିକଟେ ଶୀଘ୍ରେ ତୋତେ ମାରିବାକୁ ।
ରେ ରକ୍ଷ ଅଧମ ତୁ ଦେଖିବୁ ସେ କାଳରେ
ତୋତେ ନାଶ କରି ପୁତ୍ର ବଳ ସହିତରେ ।
ଏଣୁ ମୋତେ ଘେନିଯିବେ ଶୀଘ୍ରେ ରାଘବ
ସୀତା ନିଷ୍ଠୁର ବଚନ ଶୁଣି ଦଶଗ୍ରୀବ ।
ନ ସହି ସେ ଉତ୍ପନ୍ନ କ୍ରୋଧ ବହି ଚିତ୍ତେ ।
ଖଣ୍ଡା ଘେନି ତାଙ୍କୁ ମାରିବାକୁ ବରିବନ୍ତେ ।
ଏହା ଦେଖି ତାହାକୁ କହିଲେ ମନ୍ଦୋଦରୀ
ଶୁଣ ସ୍ୱାମୀ ଏ ମାନବୀ ଦୁଃଖୀ କୃଶୋଦରୀ ।
ଦେବତା ନାଗ ଗନ୍ଧର୍ବ ଏମାନଙ୍କ ସ୍ତ୍ରିୟ
ମଦମତ୍ତନୟନା ଏ ଅତ୍ୟନ୍ତ ଚତୁରା ।
ଏ ରୂପେ କହୁଛ ତୁମ୍ଭକୁ ସେ ବରଜନ୍ତି
ସେମାନଙ୍କ ସଙ୍ଗେ କ୍ରୀଡ଼ା କରି ଇଚ୍ଛାମତ ।
ମନ୍ଦୋଦରୀ ବୋଲେ ଦଶାନନ ଶାନ୍ତହୋଇ
କହିଲେ ବିକୃତମୁଖୀ ରାକ୍ଷସୀଙ୍କି ଚାହିଁ ।
ଯେମନ୍ତେ ଜାନକୀ ମୋତେ କରିବ ଭଜନା
ସେ ପ୍ରକାରେ ତୁମ୍ଭେମାନେ କରିବ ତର୍ଜନା ।

କୋମଳ କର କହୁଣ ଏ ରୂପେ ଯତ୍ନକର
ଦୁଇମାସ ଭିତରେ ସେ ବଶ ହେଲେ ମୋର ।
ସୁଖ ଭୋଗମାନ ଘେନି ରାଜ୍ୟ ବଇଦେହୀ
ଯତ୍ନେ ଭୋଗ କରିବ ମୋ କୁଳେ ସୁଖୀ ହୋଇ ।
ବଶ ନୋହିଲେ ଏହାକୁ କରିବ ବିନାଶ
ପ୍ରାତଃକାଳ ଭୋଜନକୁ ହେବ ଏହା ମାଂସ '
ଏମନ୍ତ କହି ବନିତାମାନଙ୍କ ସଙ୍ଗତେ
ଅନ୍ତଃପୁରକୁ ରାବଣ ଗମନ କରନ୍ତେ ।
ରାକ୍ଷସୀମାନେ ଜାନକୀ ସ୍ଥାନରେ ମିଳିଲେ
ତର୍ଜନାମାନଙ୍କେ ତାଙ୍କୁ ଭୟ କରାଇଲେ ।
ଜଣେ ରାକ୍ଷସୀ ବୋଇଲା ସୀତାଙ୍କୁ ଯେ ଚାହିଁ
ବୟସ ତୋର ବିଅର୍ଥ ହେଲା ବଇଦେହୀ ।
ରାବଣ ସଙ୍ଗେ ପୀରତି କରିବୁ ତୁ ଯେବେ
ଯଉବନ ସଫଳ ହୋଇବ ତୋର ତେବେ ।
ଏହା ଶୁଣି ଅନ୍ୟଜଣେ କୋଧ କରି ପୁଣ
ବୋଇଲା ବିଳମ୍ବ କାହିଁ ବେଗ କର ହାଣ ।
ଖଣ୍ଡି ଖଣ୍ଡି କରି କାଟି ମାଉଁସ ବାଣ୍ଟିବା
ସମସ୍ତେ ବସି ସୁଖରେ ଭୋଜନ କରିବା ।
ଏହା ଶୁଣି ପୁଣି ଜଣେ ଅତି କ୍ରୋଧ ହେଲା
ହାଣିମି ବୋଲି ଖଡ଼ଗ ଘେନିଣ ଧାଇଁଲା ।
ପୁଣି ଜଣେ କ୍ରୋଧକରି ତୁଣ୍ଡ ବିସ୍ତାରିଲା
ମୋତେ ସ୍ଥାନ ଦେ ହାଡ଼ ଚୋବାଇବି ବୋଇଲା ।
ଏମନ୍ତେ ବହୁତ ଭୟ କରାନ୍ତେ ସୀତାଙ୍କୁ
ନିବାରିଲା ତ୍ରିଜଟା କହିଲେ ସେମାନଙ୍କୁ ।
ଦୁଷ୍ଟା ରାକ୍ଷସୀମାନେ ଗୋ ଶୁଣ ମୋ ଉତ୍ତର
ଯାହା କହିବ ସେ ହିତ ଅଟଇ ତୁମ୍ଭର ।
ଦେଖି ଦୁଃଖ କରି କାହିଁକି ଯେ ବଇଦେହୀ
ନମସ୍କାର କରି ତାଙ୍କୁ ଭୟ ନ କରାଇ ।
ଏହିକ୍ଷଣି ଏ ରୂପେ ମୁଁ ଦେଖିଲି ସ୍ୱପନ
ଯଦୁଳେଜ ଅଟନ୍ତି ଯେ ଶ୍ରୀରଘୁନନ୍ଦନ ।

ଅଭିଷିବତ ଗଙ୍ଗର କଟରେ ଅଯୋଧ୍ୟା
ଲକ୍ଷ୍ମଣ ତୁଲେ ଏଠାରେ ପରବେଶ ହୋଇ ।
ଲଙ୍କା ଯାଇ ଦହି ରାବଣକୁ ଯୁଦ୍ଧେ ମାରି
ନଗ୍ରେ ବସିଛନ୍ତି ଜାନକୀଙ୍କି କୋଳେ ଧରି ।
ତ୍ରିବଣ ମନ୍ଦାର ମାଳ ଢଇଲ ସର୍ବାଙ୍ଗେ
ଦେଣ ଉଲଗ୍ନ ହୋଇ ସେ ପୁନ ନାଭି ସଙ୍ଗେ ।
ସ୍ନାନ କରୁଛନ୍ତି ଦେଖିଲି ଗୋମୟ ହ୍ରଦରେ
ବିଭୀଷଣ ରାମ ପାଦେ ଥାଇ ହରଷରେ ।
ଅତଅନ୍ତ ପରମ ଭକ୍ତିରେ ହୋଇ ଯୁତ
ପାଦେ ସେବା କରୁଛନ୍ତି ନିଷ୍ଠଳ କରି ଚିତ୍ତ ।
ଏଣୁ ଶ୍ରୀରାମ ସବଂଶ କରି ରାବଣକୁ
ନାଶି ଏ ରାଜ୍ୟ ସମର୍ପିଲେ ସେ ବିଭୀଷଣକୁ ।
ସୀତାଙ୍କ ଦେଣ ପ୍ରବକୁ କରିବେ ବିଜୟ
ଏ କଥାରେ ତୁମ୍ଭେମାନେ ନ କର ସଂଶୟ ।
ଏହା ଶୁଣି ସେ ରାକ୍ଷସୀମାନେ ଭୟକଲେ ।
କେତେବେଳ ଉତ୍ତାରେ ସମସ୍ତେ ନିଦ୍ରା ଗଲେ ।
ଶିବ ବୋଲେ ଉମା ସେ ଉତ୍ତାରେ ବଇଦେହୀ
ରାକ୍ଷସୀଙ୍କ ସକାଶେ ଏ ରୂପେ ଭୟ ପାଇ ।
ରକ୍ଷକ କରଣ ଜଣେ ଦେଖୁ ସେ ନାହାନ୍ତି
ଦୁଃଖ ଶୋକେ ମୋହ ହେଲ ପ୍ରାୟେ ହେଉଛନ୍ତି ।
ନୟନରୁ ବହିଯାଉଛି ଲୋତକମାନ
ମନେ ବିଚାରି ବୋଇଲେ ଏମନ୍ତ ବଚନ ।
ନିଶ୍ଚୟ ତ ସମସ୍ତ ରାକ୍ଷସୀ ପ୍ରଭାତରେ
ଖାଇବେ ମୋତେ ସଂଶୟ ନାହିଁ ଏ କଥାରେ ।
ଏଣୁ ମୋ ମରଣ ହେବ କେଉଁ ଉପାୟରେ
ଏ ରୂପେ ଦୁଃଖରେ ବୁଡ଼ି ସେ ଶୋକ ସାଗରେ ।
ରୋଦନମାନ କଲେ ବହୁତ ବେଳ ଯାଏଁ
ମନରେ ମରଣ କରି ଅଛନ୍ତି ନିଶ୍ଚୟେ ।
କଉଣସି ଉପାୟ ତ ଜାଣନ୍ତି ସେ ନାହିଁ
ରହିଲେ ସେ ବୃକ୍ଷ ଶାଖା ଧରି ଦୁଃଖୀ ହୋଇ ।।

ଏମନ୍ତ ସୀତା ସହିତେ ଶ୍ରୀରାମଙ୍କୁ ମୋର
ପ୍ରତିଦିନ ନିରନ୍ତରେ ହେଉ ନମସ୍କାର ।
ସୁଜନ ମାନେ ତ ତୁମ୍ଭେ କରୁଣାସାଗର
ଏଣୁ ହଳଧର ଦାସ ଦୋଷ କ୍ଷମା କର ।
ଏ ଅଧ୍ୟାୟରେ ହେଲା ଯେତିକି ଶତେ ପଦ ଗୀତ
ସବୁ ଶୁଣିଲେ ହରୁ ମୋର ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ସୁନ୍ଦରକାଣ୍ଡେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

## ତୃତୀୟ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ସେ ଉତ୍ତାରେ ପାର୍ବତୀଙ୍କି ଶଙ୍କର କହିଲେ
ଦୁଃଖେ ପୁଣି ଜାନକୀ ଏ ରୂପେ ଚିନ୍ତା କଲେ ।
ରଘୁନାଥ ବିନୁ ନିଷ୍ଟେ ଉତ୍ସୁକ ହୋଇବ
ତେଜିବି ଜୀବନ ନିଷ୍ଟେ ଧରି ନ ପାରିବି ।
ରାକ୍ଷସୀମାନଙ୍କ ମଧ୍ୟେ ଥିବାରୁ ଜୀବନ
ଶ୍ରୀରାମଙ୍କୁ ନ ଦେଖି ହେବ କି ପ୍ରୟୋଜନ ।
ଅତି ଲମ୍ବ ହୋଇ ବେଣୀ ଅଛି ମୋ ଶିରରେ
ଉଦ୍ଧୃତ ହୋଇବାକୁ ତ ହେବ ଏ ବୃକ୍ଷରେ ।
ଏ ପ୍ରକାରେ ଜାନକୀ ଯେ ମରଣ ନିମନ୍ତେ
ବାରମ୍ବାର ଭାବି ମନରେ ନିଶ୍ଚୟ କରନ୍ତେ ।
ଏମନ୍ତ ଶୁଣି ମାରୁତି ସୀତାଙ୍କୁ ଶୁଣାଇ
ମନ୍ଦ ମନ୍ଦ କରି କିଛି ଆରମ୍ଭିଲେ କହି ।
ଇକ୍ଷ୍ୱାକୁ ବଂଶରେ ଜାତ ଦଶରଥ ହୋଇ
ଅଯୋଧ୍ୟା ଦେଶରେ ମହାରାଜା ସେ ଅଟଇ ।
ତାହାଙ୍କର ଜାତ ଯେ ହୋଇଲେ ଗୁଣପୁତ୍ର
ସର୍ବ ଲକ୍ଷଣମାନଙ୍କେ ଅଟନ୍ତି ସଂଯୁତ ।
ଦେବତା ମାନଙ୍କରେ ସେ ଅଟନ୍ତି ସମାନ
ନାମ ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ।

ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ର ପିତାଙ୍କ ଆଜ୍ଞାରେ
ସୀତା ଲକ୍ଷ୍ମଣଙ୍କୁ ଘେନି ଆସି ଅରଣ୍ୟରେ ।
ଗୋଦାବରୀ ତଟେ ପଞ୍ଚବଟୀରେ ରହିଲେ
ବନେ ଯେ ରାମ ଲକ୍ଷ୍ମଣ ମୃଗୟାକୁ ଗଲେ ।
ଜନକ ରାଜାର ଯେ ଦୁହିତା ବଇଦେହୀ
ତାଙ୍କୁ ସେ କାଳେ ରାବଣ ଆଣିଲା ଚୋରାଇ ।
ସେ ଉତ୍ତାରେ ସୀତାଙ୍କୁ ଖୋଜିଲେ ରଘୁପତି
ଦେଖିଲେ ଜଟାୟୁ ବାଟେ ପଡ଼ିଣ ଅଛନ୍ତି ।
ତାହାଙ୍କୁ ଶ୍ରୀହସ୍ତେ ଛୁଇଁ ବୈକୁଣ୍ଠକୁ ଦେଲେ
ସେ ଉତ୍ତାରେ ଋଷ୍ୟମୂକେ ପ୍ରବେଶ ହୋଇଲେ ।
ତହିଁ ରାମ ସୁଗ୍ରୀବ ସଙ୍ଗତେ ମିତ୍ର ହୋଇ
ତା ଭାର୍ଯ୍ୟାକୁ ହରିଥିଲା ଯେ ତା ଜ୍ୟେଷ୍ଠ ଭାଇ ।
ସେ ବାଳିକି ମାରି ରାମ ମିତ୍ର କାର୍ଯ୍ୟ କଲେ
ସୁଗ୍ରୀବକୁ ଅଭିଷେକ କରି ରାଜ୍ୟ ଦେଲେ ।
କପିପତି ସେ ଉତ୍ତାରେ ବାନରମାନଙ୍କୁ
ବଡ଼ ବେଗେ ଆଣାଇ ସୀତାଙ୍କୁ ଖୋଜିବାକୁ
ସର୍ବ ଦିଗମାନଙ୍କୁ ସେ ଦେଲେ ପଠାଇ
ତାହାଙ୍କର ଶ୍ରେଷ୍ଠ ମନ୍ତ୍ରୀ କପି ମୁଁ ଅଟଇ ।
ସମ୍ପାତି ବୋଲନ୍ତୁ ଶତେ ଯୋଜନ ସାଗର
ହେଳାରେ ଲଙ୍ଘିଲି ନାମ ଧରି ଶ୍ରୀରାମର ।
ଲଙ୍କାପୁରେ କ୍ରମେ ସବୁ ସୀତାଙ୍କୁ ଖୋଜିଲି
ଶିଂଶପା ବୃକ୍ଷ ଅଶୋକ ବନରେ ଦେଖିଲି ।
ଶ୍ରୀରାମ ପଟ୍ଟମହିଷୀ ଏ ବୃକ୍ଷ ମୂଳରେ
ଦେଖିଲି ଶୋକ କରୁଛି ଅତି ଦୁଃଖରେ ।
ଆସିବାର ଏବେ ମୋର କୃତକାର୍ଯ୍ୟ ହେଲା
ଦେହ ବହିବାର ଆଜ ସୁଫଳ ହୋଇଲା ।
ପରମ ସୁବୁଦ୍ଧି ଯେ ଅଟନ୍ତି ହନୁମନ୍ତ
ତୁନି ହୋଇ ରହିଲେ ସେ କହିଣ ଏମନ୍ତ ।
କ୍ରମେ ଶୁଣି ସୀତା ଏହା ବଡ଼ ବିସ୍ମୟରେ
ବିଚାରିଲେ କି କଥା ଶୁଣିଲି ଆକାଶରେ ।

ପବନ ବନ୍ଦୁଲେ ଅବା କି ଅ୍ରା ସ୍ୱପନ
ନୋହିଲେ କି ଭ୍ରାନ୍ତ ଅବା ହେଉଅଛି ମୋମନ ।
ଏ କଥା ନୋହିଲେ ଅବା ସତ୍ୟହିଁ ଅଟଇ
ସ୍ୱପନ ଆହୁଁ ଅସିବ ନିଦ୍ରା ମୋର ନାହିଁ ।
ସବୁତ ଜାଣୁଛି ଭ୍ରମ ବୋଲିବା କପାଇଁ
କର୍ଣ୍ଣକୁ ସେ ଶୁଭିଲା ଅମୃତ ମତ ହୋଇ ।
ଏମନ୍ତ କହି ବଚନମାନ ମୋତେ ଯେହୁ
କହିଲା ସେ ପ୍ରିୟବାଦୀ ବେଗେ ଦେଖା ଦେଉ ।
ଶୁଣି ହନୁମନ୍ତ ପତ୍ରୁଁ ବାହାର ହୋଇଲେ
କଳିଦେହୀ ଅଗେ ବେଗେ ଉଭା ସେ ହୋଇଲେ ।
କଳେବର ହୋଇଅଛି ଭ୍ରମର ସମାନ
ବର୍ଣ୍ଣରଙ୍ଗ ପୀତବର୍ଣ୍ଣ ଦିଶୁଛି ଲୋଚନ ।
ସୀତାଙ୍କୁ ଦେଖି ସେ ବେଗେ କରି ନମସ୍କାର
ରହିଲେ ସମ୍ମୁଖରେ ଶିରେଦେଇ ବେନିକର ।
ଜାନକୀ ବିଚାରିଲେ ଏ ରାବଣ ଅବଶ୍ୟ
ଅଟଅନ୍ତ ମାୟାବନ୍ତ ଅଟଇ ରାକ୍ଷସ ।
ଏଣୁ ଏବେ ବାନର ଅକୃତ ଧରି ମୋତେ
ଅସିଅଛି ଏ ମୋହନ କରିବା ନିମନ୍ତେ ।
ଏମନ୍ତ ପ୍ରକାରେ ସେ ମନରେ ଚିନ୍ତାକଲେ
କିଛି ନ କହି ଭୂମିକି ଅନାଇ ରହିଲେ ।
ମାରୁତ ବୋଇଲେ ମାତ ତୁମ୍ଭେ ମୋହଠାଇଁ
ଯେଉଁ ଅଶଙ୍କା କରୁଛ ମୁଁ ଯେ ସେ ନୁହଇ
କୋଶଳ ଦେଶର ରାଜା ପରମାତ୍ମା ରାମ
ମୁଁ ତାହାଙ୍କ ଦାସ ହନୁମନ୍ତ ମୋର ନାମ ।
ସୁଗ୍ରୀବ ବୋଲିଣ ନାମ ଋଷିବଂଶ ପତି
ତାଙ୍କର ଅଟଇ ମୁଁ ବିଶ୍ୱାସୀ ଶ୍ରେଷ୍ଠ ମନ୍ତ୍ରୀ ।
ସବୁ ଭୂତମାନଙ୍କର ପ୍ରାଣ ଯେ ମରୁତ
ତାହାଙ୍କର ଅଟଇ ମୁଁ ଅଙ୍ଗରସ ପୁତ୍ର ।
ଶୁଣି ସୀତା ବୋଇଲେ ହେ ପବନକୁମାର
କି ରୂପେ ସଙ୍ଗ ହୋଇଲେ ମନୁଷ୍ୟ ବାନର ।

ବୋଇଲ ଯେ ଦାସ ମୁଁ ଅଟଇ ଶ୍ରୀରାମର
ଏ କଥା ଉତ୍ତମ କର କହ କପିବର ।
ଏମନ୍ତ ଶୁଣିଣ ପୁଣ କହିଲେ ମାରୁତ
ଶବରୀ କହିଲାକୁ ହର୍ଷରେ ରଘୁନାଥ ।
ଋଷ୍ୟମୂକ ପର୍ବତରେ ପ୍ରବେଶ ହୋଇଲେ
ତହିଁ ଚାରି ମନ୍ତ୍ରୀ ସଙ୍ଗେ ସୁଗ୍ରୀବ ଯେ ଥିଲେ ।
ରାମ ଲକ୍ଷ୍ମଣଙ୍କୁ ଦେଖି ସେ ତରସ୍ତ ହୋଇ
ମୋତେ ସେ ପେଷିଲେ ତାଙ୍କ ମନଜାଣ ଯାଇ ।
ବ୍ରହ୍ମଚାରୀ ବେଶଧରି ତାଙ୍କ ଠାକୁ ଗଲି
ଭଲକରି ତାଙ୍କ ସଦଭାବକୁ ଜାଣିଲି ।
ଏଣୁ ବେନି ଭାଇଙ୍କି ମୁଁ ବସାଇ କନ୍ଧରେ
କ୍ଷଣକେ ପ୍ରବେଶ କଲି ସୁଗ୍ରୀବ ଛାମୁରେ ।
ସେ ଦୁହିଁଙ୍କି ସଖାକଲି ଅଗ୍ନି ସାକ୍ଷୀକରି
ସୁଗ୍ରୀବ ଭାର୍ଯ୍ୟାକୁ ବାଳିବଳେ ଥିଲା ହରି ।
ତାହାକୁ ଶ୍ରୀରାମ ଏକ ଶରକେ ମାରିଲେ
ସୁଗ୍ରୀବଙ୍କୁ କପି ରାଜ୍ୟେ ଅଭିଷେକ କଲେ ।
ଦେବୀ ସୁଗ୍ରୀବ ତୁମ୍ଭଙ୍କୁ ଯେ ଖୋଜିବାକୁ
ଅଟାଇ ମହା ସମର୍ଥ ବାନର ମାନଙ୍କୁ ।
ଦଶଦିଗକୁ ଅନେକ ପଠିଅଇ ଦେଲେ
ମୁଁ ଆସିବା ବେଳେ ମୋତେ ଶ୍ରୀରାମ କହିଲେ ।
ଆଦର କରି ବୋଇଲେ ସବୁ କାର୍ଯ୍ୟ ମୋର
ତୁମ୍ଭଠାରେ ଅଛି ଅହେ ପବନ କୁମର ।
ଲକ୍ଷ୍ମଣ ସଙ୍ଗତେ ରାମ କୁଶଳେ ଅଛନ୍ତି
ଜାନକୀ ଆଗେ ଏମନ୍ତ କହିବ ମାରୁତ ।
ମୋ ନାମରେ ଅଙ୍କିତ ଯେ ମୁଦ୍ରିକା ଅଟଇ
ତାହାଙ୍କୁ ଏ ମୁଦ ଦେବ ପ୍ରତେ ଯିବାପାଇଁ ।
ଏହା କହି ଦେଲେ କରୁ ବାହାର କରଣ
ଅଣିଛି ମୁଁ ଯତ୍ନକରି ଦେଖ ତା ଆପଣ ।
ଏତେ କହି ମୁଦ ଦେଇ କରି ନମସ୍କାର
କ୍ଷଣେ ଦୂରେ ରହିଲେ ସେ ଯୋଡ଼ି ବେନିକର ।

ରାମ ନାମ ଅକ୍ଷରରେ ଅଙ୍କିତ ଅଛଇ
ଏମନ୍ତ ଦେଖିଣ ଶିରେ ଘେନି ବଇଦେହୀ ।
ଆନନ୍ଦରେ ଅଶ୍ରୁ ଜଳ ଯାଉଅଛି ବହି
ସର୍ବାଙ୍ଗ ପୁଲକ ଧରି ଗଦଗଦ ହୋଇ ।
ବୋଇଲେ ଅହେ ମାରୁତି ମୋ ବଚନ ଶୁଣ
ନିଶ୍ଚୟ ମୋ ଜୀବଦାତା ହୋଇଲ ଆପଣ ।
ତୁମ୍ଭେ ବଡ଼ ସୁବୁଦ୍ଧି ଅଛ ହେ କପିବୀର
ରାମଚନ୍ଦ୍ର ପାଦେ ବଡ଼ଭକ୍ତ ଅଛ ତୋର ।
ପ୍ରିୟକାରୀ ଅଛ ତୁମ୍ଭେ ନିଶ୍ଚେ ଶ୍ରୀରାମର
ତୁମ୍ଭଠାରେ ବହୁତ ବିଶ୍ୱାସ ତାହାଙ୍କର ।
ନୋହିଲେ କେମନ୍ତେ ରାମ ମୋହର ନିକଟକୁ
ପଠାଅନ୍ତେ କାହିଁ ସେହୁ ଅନ୍ୟ ପୁରୁଷକୁ ।
ମୋହର ଦୁଃଖ ତ ସବୁ ଦେଖିଲ ନେତ୍ରରେ
ଏହା ସବୁ କହିବ ଶ୍ରୀରାମ ଚରଣରେ ।
ଯେମନ୍ତ ମୋତେ ଦୟା କରିବେ ରାଘବ
ଆଉ ଦୁଇ ମାସ ଯିନା ପ୍ରାଣ ମୋର ଥିବ ।
ଏଥିଭିତରେ ଶ୍ରୀରାମ ଯେବେ ନ ଆସିବେ
ତେବେ ଏ ଲକ୍ଷ୍ମଣ ମୋତେ ନିଶ୍ଚୟ ଖାଇବେ ।
ଏଣୁ ସୁଗ୍ରୀବ ସହିତେ ଘେନି ବାନରଙ୍କୁ
ଆସି ଶୀଘ୍ର ନେଉଥିଲେ ମାରି ରାବଣକୁ ।
ଯେବେ ମୋତେ ଘେନି ଯିବେ ଏଥୁ ସେ ରାଘବ
ତେବେ ଆପଣାର ସମ କାର୍ଯ୍ୟକଲ୍ପ ହେବ ।
କହିବା ହେବ ଯେମନ୍ତେ ଶ୍ରୀରାମ ଅବଶ୍ୟ
ଦଶକଣ୍ଠକୁ ନିକଟେ କରିବେ ବିନାଶ ।
ମୋତେ ଯେମନ୍ତେ ଏଠାରୁ ସେ ରକ୍ଷା କରନ୍ତି
ସେ ରୂପେ ଯତ୍ନ କରିବା ହୋଇବ ମାରୁତି ।
ଆପଣ ଧର୍ମ ପାଇବା ହେବ ବଚନରେ
ଏହା ଶୁଣି ହନୁମନ୍ତ କହିଲେ ସଧୀରେ ।
ଯେବେ ଦେବୀ ତୁମ୍ଭଙ୍କୁ ମୁଁ ଦେଖିଲି ନେତ୍ରରେ
ଅଯୋଧ ଘେନି ଶ୍ରୀରାମ ଲକ୍ଷ୍ମଣ କୂଳରେ ।

ସୁଗ୍ରୀବ ସହିତେ କପି ସୈନ୍ୟ ମଧ୍ୟଭର
ଘେନି ସେ ଏଠାକୁ ଆସି ରାବଣକୁ ମାରି ।
ଅଯୋଧ୍ୟାକୁ ତୁମ୍ଭଙ୍କୁ ସେ ନେବେ ଗୋ ନିଶ୍ଚୟେ
ଏ କଥାରେ ଠାକୁରାଣୀ ନ କର ସଂଶୟେ ।
ଜାନକୀ ଶୁଣି ବୋଇଲେ ଅହେ ହନୁମାନ
ରାମଚନ୍ଦ୍ର ସଙ୍ଗତରେ ଯେନ କପି ସୈନ୍ୟ ।
କି ପ୍ରକାରେ ହୋଇବେଟି ପାରାବାର ପାର
ଏଥକୁ ପୁଣ କହିଲେ ପବନକୁମର ।
ଶ୍ରୀରାମ ଲକ୍ଷ୍ମଣ ଦୁହେଁ ବସି ମୋ କନ୍ଧରେ
ବିଜୟେ କରି ଆସିବେ ଆକାଶ ମାର୍ଗରେ ।
ସୁଗ୍ରୀବର ସଙ୍ଗତରେ ସୈନ୍ୟ ଯେନିଥିବେ
ସେହି ଏହି ପରକାରେ ଡେଇଁଣ ଆସିବେ ।
ରାକ୍ଷସମାନଙ୍କୁ ତୁମ୍ଭ ପାଇଁ ସେ ସଭୟେ
ମାରିବେ ନିଃଶେଷ କରି ନ କର ସଂଶୟେ ।
ଏବେ ମୋତେ ଆଜ୍ଞା ଦେବା ହେଉ ବଇଦେହୀ
ରାମ ଲକ୍ଷ୍ମଣଙ୍କୁ ଦେଖିବାକୁ ବେଗ ହୋଇ ।
ଯାଇ ସେ ଦୁଇ ଭାଇଙ୍କି ତୋଷ ମୁଁ କରିବି
ତୁମ୍ଭ ନିକଟକୁ ତାଙ୍କୁ ଘେନିଣ ଆସିବି ।
ରାମଚନ୍ଦ୍ର ଜାଣିମେ ମୁଁ ତୁମ୍ଭଙ୍କୁ ଦେଖିଲି
ଏ ନିମନ୍ତେ କିଛି ଚିହ୍ନ ଦିଅ ମହୀସ୍ଥଳୀ ।
ଉତ୍ତର ହେଉଛୁ ଦେବା ହେଉ ଯିବା ଘରେ
ଏହା ଶୁଣି ସୀତା ଚିନ୍ତି ବରୁର ମନରେ ।
କେଶରେ ଯେ ଥିଲା ମଥାମଣି ତାହା ଦେଲେ
ଆଉର କିଛି କହିବ ଶୁଣ ତୁ ବୋଇଲେ ।
ପୂର୍ବେ ଏକଦିନେ ଚିତ୍ରକୂଟ ଏକାନ୍ତରେ
ନିଦ୍ରାଗଲେ ରାମ ଶିର ଦେଇ ମୋ କୋଳରେ ।
ଐନ୍ଦ୍ରକାକ ଆସି ନଖ ଥଣ୍ଟରେ ବହନ
ରକ୍ତବର୍ଣ୍ଣ ଦେଖି ମୋ ପାଦ ଅଙ୍ଗୁଳି ମାନ ।
ମାଂସ ପ୍ରାୟେକ ବୁଝି ବିଦାରନ୍ତେ ମୋତେ
ଅପଣ୍ଡିତ ହୋଇ ରାମ ମୋ ପାଦ ଦେଖନ୍ତେ ।

ଏଣେ ଅପ୍ରିୟ କେ ମୋର କଲା ପକ୍ଷୀଛଳେ
କାକକୁ ଏ ସମୟରେ ଏରୂପେ ଦେଖିଲେ ।
ନଖ ଥଣ୍ଡ ହୋଇଅଛି ରକ୍ତବର୍ଣ୍ଣ ତାର
ମୋତେ ଗୋଡ଼ାଇବା ଦେଖି କ୍ରୋଧେ ରଘୁବୀର ।
ତୃଣ ଖଣ୍ଡେ ସେନ ଦିବ୍ୟ ଅସ୍ତ୍ରେ ଯୁକ୍ତ କଲେ
କାକ ଉପରକୁ ତାହା ବହନ ମାଇଲେ ।
ଅଗ୍ନି ପ୍ରାୟେ ଜଳି ସେ ତାହାକୁ ଗୋଡ଼ାଇଲା
ଭୟାକୁଳ ହୋଇଣ ସବୁ ଲୋକେ ସେ ଭ୍ରମିଲା ।
ବ୍ରହ୍ମା ଇନ୍ଦ୍ରାଦି ତେତିଶ କୋଟି ଦେବଗଣ
କେହି ରକ୍ଷା କରି ନ ପାରିଲାକୁ ସେ ପୁଣ ।
ଅତଏବ ତ୍ରସ୍ତ ହୋଇ ଲେଉଟି ଆଇଲା
ଦୟାଳୁ ଯେ ରାମ ତାଙ୍କ ପାଦରେ ପଡ଼ିଲା ।
ଶରଣାର୍ଥୀ ଭାବେ ପୁଣ ଦେଖି ବାୟସକୁ
କରୁଣାକର ଶ୍ରୀରାମ ଆଜ୍ଞା ଦେଲେ ତାକୁ ।
ଏ ଅସ୍ତ୍ର ମୋହର ଯେଣୁ ଅମୋଘ ଅଟଇ
ଏହାକୁ ନେତ୍ର ଗୋଟିଏ ଯାଅ ବେଗେ ଦେଇ ।
ଏହା ଶୁଣି କାକ ପୁଣ ବାମ ଚକ୍ଷୁ ଦେଲା
ଶ୍ରୀରାମ ପାଦେ ପ୍ରଣାମ କରି ସୁଖେ ଗଲା ।
ଏତେ ପରାକ୍ରମବନ୍ତ ଯେଉଁ ରଘୁପତି
ସେ ଏବେ କାହିଁକି ମୋତେ ତେଜିଲେ ମାରୁତି ।
ବଇଦେହୀ ବଦନରୁ ଶୁଣନ୍ତେ ଏମାନ
ତାଙ୍କୁ ପୁଣି ଏମନ୍ତ କହିଲେ ହନୁମାନ ।
ଭୋ ଦେବି ତୁମ୍ଭେ ଏଠାରେ ନିଶ୍ଚୟେ ଥିବାର
ଯେବେ ଏ କଥାକୁ ଜାଣିଥାନ୍ତେ ରଘୁବୀର ।
ତେବେ ଲଙ୍କା ସହିତରେ ସବୁ ରାକ୍ଷସଙ୍କୁ
ଭସ୍ମ କରି ଘେନ ଯାଇଥାନ୍ତେ ଆପଣଙ୍କୁ ।
ଜାନକୀ ବୋଇଲେ ତୁ ତ ଅଟୁ ଏଡ଼େ ସାନ
ରାକ୍ଷସଙ୍କୁ କେମନ୍ତେ ଯୁଝିବୁ ହନୁମାନ ।
ରାମଠାରେ ଅଛନ୍ତି ଯେ ଋକ୍ଷ ହରି ସୈନ୍ୟ
ସେହିମାନେ ହୋଇଥିବେ ତୁମ୍ଭରି ସମାନ ।

ସୀତାଠାରୁ ଏମନ୍ତ ଶୁଣନ୍ତେ ହନୁମନ୍ତ
ମେରୁ ମନ୍ଦର ପର୍ବତ ଆକାର ଯେମନ୍ତ ।
ଦେଖିଲା ମାତ୍ରେ ରାକ୍ଷସମାନେ ଭୟ ପାନ୍ତି
ଏମନ୍ତ ରୂପ ସେ ଧର ଅପଣା ଆକୃତି ।
ଜନକ‌ଦେହୀ ଅଗ୍ରତରେ ଛିଡ଼ା ସେ ହୋଇଲେ
ଯହୁଁ ତାଙ୍କ ନଗ ପ୍ରାୟେ କର ସେ ଦେଖିଲେ ।
ଅତ୍ୟନ୍ତ ହରଷ ହୋଇ ବୋଇଲେ ଏମନ୍ତ
ତୁମ୍ଭେ ବଡ଼ ସାମର୍ଥ୍ୟ ଅଛ ହେ ହନୁମନ୍ତ ।
ରାକ୍ଷସୀମାନେ ଦେଖିବେ ଯାଅ ବେଗେ ବୀର
ରାମଠାକୁ ଯାଅ ବାଟେ ଶୁଭ ହେଉ ତୋର ।
କ୍ଷୁଧାରେ ଅରତ ହୋଇ ପବନ କୁମର
ସୀତାଙ୍କୁ ବର ମାଗିଲେ ଯୋଡ଼ି ଦେନି କର ।
ଏହୁ ସ୍ଥାନେ ମୁଁ ଥିବା ପର୍ଯ୍ୟନ୍ତେ ଏହୁ ବନ
ପାଚିଲା ଫଳ ମାନଙ୍କେ ହୋଇଥିବ ପୂର୍ଣ୍ଣ ।
ପ୍ରସନ୍ନ ହୋଇ ତା ସୀତା ସ୍ୱୀକାର କଲେ
ମାରୁତି ବେଗେ ସେ ବନ ସେ ରୂପେ ଦେଖିଲେ ।
ସୀତା ପୁଣି ମେଲାଣି ତାହାଙ୍କୁ ଯହୁଁ ଦେଲେ
ହନୁମନ୍ତ ନମସ୍କାର କର ତାଙ୍କ ଗଲେ ।
କେତେଦୂର ଯାଇ ଚିନ୍ତା କଲେ ସେ ଏମନ୍ତ
କାର୍ଯ୍ୟ ନିମିତ୍ତରେ ଅସି ଥାଇ ଯେଉଁ ଦୂତ ।
ସେ ଯେବେ ସ୍ୱାମୀର କାର୍ଯ୍ୟ ବାଧ ନ କରଇ
ଆନ କିଛି ନ କର ସେ ଲେଉଟି ଅସଇ ।
ସେ ଲୋକଙ୍କୁ ଅଧମ ବୋଲନ୍ତି ସନ୍ତେ
ଏଣୁ କିଛି କାର୍ଯ୍ୟ କର ରାବଣ ସଙ୍ଗତେ ।
କଥାବାର୍ତ୍ତା ହୋଇପିବା ଶ୍ରୀରାମ ନିମନ୍ତେ
ଏହା ଚିନ୍ତୁର ସେ ଯାଇ ଅଶୋକ ବନକୁ ।
ସୀତା ଥି ‥ ଠାରେ ବୃକ୍ଷ ମାତ୍ର ସେ ରଖିଲେ
ଆଉ ସବୁ ଉପାଡ଼ଣ ନାଶ ଯହୁଁ କଲେ ।
ବନ ଭାଙ୍ଗିବାର ଦେଖି ରାକ୍ଷସୀ ନିକର
ସୀତାଙ୍କୁ ପଚ୍ଛରଲେ କେ ଏ ଦୁଷ୍ଟ ବାନର ।

ଏହା ଶୁଣି ଜାନକୀ ବୋଇଲେ ତାଙ୍କୁ ପୁଣ
ରାକ୍ଷସମାନଙ୍କ ମାୟା ତୁମ୍ଭେ ସିନା ଜାଣ ।
ଦୁଃଖ ସୁଖେ ଅକୁଳ ମୁଁ ହେଉଅଛୁ ସନ୍ତତେ
ତାହୁଁ ଏ ଅଜନ୍ମ କାହୁଁ ଜାଣିବ କେମନ୍ତେ ।
ଏମନ୍ତ ଶୁଣି ରାକ୍ଷସୀମାନେ ଭୟ ପାଇ
ରାଜା ନବରକୁ ଯାଇ ଅତି ତୋରା ହୋଇ ।
ହନୁମନ୍ତ ଯେତେ ଯେତେ କର୍ମମାନ କଲେ
ସବୁ ଦଶକନ୍ଧର ଆଗ୍ରେ ଜଣାଇଲେ ।
ହେ ଦେବ ରାବଣ ତ୍ରିଭୁବନେ ବିଜୟୀ
କେ ଜଣେ ବଡ଼ ସମର୍ଥ କପି ଦେହ ବହି ।
ଆସିଣ ଜାନକୀ ସଙ୍ଗେ କି କି କଥା ହୋଇ
ଅଶୋକ ବନ କ୍ଷଣକେ ଉପାଡ଼ି ପକାଇ ।
ଜଗତ ଭାଙ୍ଗି ଜଗିଅ ବଳ କରି ହତ
ବସିଣ ଏବେ ସେଠାରେ ହୋଇଛି ନିଶ୍ଚିନ୍ତ ।
ଏମନ୍ତ ଶୁଣି ରାବଣ ଅତି କ୍ରୋଧ ହୋଇ
ଦଶ ଲକ୍ଷ କିଙ୍କର ଯେ ଦେଲା ପଠାଇ ।
ଗର୍ଜି ଧାଇଁ ତେଇଁ ଯାଇଁ ଦେଖିଲେ ଏମନ୍ତ
ବୃକ୍ଷପନ୍ତି ଜଗତ ଭାଙ୍ଗିଣ ହନୁମନ୍ତ ।
ଲୋହସ୍ତମ୍ଭ ଗୋଟିଏ ଘେନିଣ ବସିଛନ୍ତି
ଲାଞ୍ଜ ଟେକି ଅଳ୍ପ କରି ଲମ୍ବାଇ ଅଛନ୍ତି ।
କ୍ରୋଧେ ଅତି ରକ୍ତବର୍ଣ୍ଣ ଦିଶୁଛି ବଦନ
ଶରୀର ହୋଇଛି ମହା ପର୍ବତ ସମାନ ।
ଏରୂପେ ଯେ ବସିଥିଲେ ପବନକୁମର
ଦେଖିଲେ ଯହୁଁ ବହୁତ ସୈନ୍ୟ ଆସିବାର ।
ସିଂହ ପ୍ରାୟେ କରି ସେ ଗର୍ଜନ ମାନ କଲେ
ସେ ନାଦ ଶୁଣି ରାକ୍ଷସମାନେ ମୋହ ଗଲେ ।
ସେ ଉତ୍ତାରେ ପୁଣି ହନୁମନ୍ତ ନିକଟରେ
ଅନେକ ପ୍ରକାର କରିଣ ବେଢ଼ିଲେ କିଙ୍କରେ ।
ନାନା ପ୍ରକାରରେ ଅତି ଘୋର ଶସ୍ତ୍ରମାନ
ସର୍ବାଙ୍ଗରୁ ସମସ୍ତେ ମାରିଲେ ବହନ ।

ଏମନ୍ତ ଦେଖି ମାରୁତି ଅତି କ୍ରୋଧ କରି
ଉଠିଲେ ବହନ ଲୋହ ମୁଦ୍ଗର ଧରି ।
ମତ୍ତହସ୍ତୀ ମଶାମାନ ଦଳଇ ଯେମନ୍ତ
ସେ ପ୍ରକାରେ ସବୁ ପେଷି ଦେଲେ ହନୁମନ୍ତ ।
କିଙ୍କର ଗଣଙ୍କ ନାଶ ଶୁଣି ସେ ରାବଣ
କୋପେ ପାଞ୍ଚ ସେନାପତି ପେଷି ଦେଲା ପୁଣ ।
ସେମାନେ ପ୍ରବେଶ ହୋଇ ଘୋର ଯୁଦ୍ଧ କଲେ
ତାଙ୍କୁ ହନୁମନ୍ତ ଲୋହ ସ୍ତମ୍ଭରେ ମାଇଲେ ।
ଏହା ଶୁଣି ପୁଣି କ୍ରୋଧ ହୋଇ ଦଶଶିର
ପେଷି ଦେଲା ସେ ସପତ ମନ୍ତ୍ରୀର କୁମର ।
ଅଶ୍ୱମାନ ଚଢ଼ି ନାନା ଶସ୍ତ୍ର ଧରି ଗଲେ
ମାରୁତି ସଙ୍ଗତେ ସେ ଅନେକ ଯୁଦ୍ଧ କଲେ ।
ହନୁମନ୍ତ କ୍ରୋଧ ହୋଇ ଲୌହ ସ୍ତମ୍ଭ ଧରି
ମାଇଲେ କ୍ଷଣକେ ତାଙ୍କୁ ନିଃଶେଷ ସେ କରି ।
ଅଜ ଅସୁରଙ୍କୁ ମାରିବାକୁ କରି ଚିତ୍ତେ
କ୍ରୋଣାସ୍ତମ୍ଭ ଉପରେ ସେ ବସିଲେ ନିଶ୍ଚିନ୍ତେ ।
ଏମନ୍ତ ଶୁଣି ରାବଣ ବଡ଼ କ୍ରୋଧ ହେଲେ
ଅକ୍ଷୟ କୁମରକୁ ଅନେକ ସୈନ୍ୟ ଦେଲେ ।
ସେ କପିକି ମାରି ବୋଲି ପଠାଇ ଦେଲେ
ଆଜ୍ଞା ପାଇ ଅଶୋକ ବନରେ ସେ ମିଳିଲେ ।
ବହୁତ ସୈନ୍ୟ ଆସିବା ଦେଖି ହନୁମାନ
କ୍ରୋଣସ୍ତମ୍ଭ ଉପରୁ ଉଠିଲେ ସେ ବହନ ।
ଅତି ଉଚ୍ଚ ହୋଇ ଆକାଶକୁ ଡେଇଁଗଲେ
ପରିଘ ଘେନି ଅକ୍ଷୟ ଶିରରେ ପିଟିଲେ ।
ତାହା ମୁଣ୍ଡ ଶତେ ଖଣ୍ଡ ହୋଇ ଫାଟିଗଲା
ପ୍ରାଣ ଛାଡ଼ି ବେଗେ ସେହୁ ଭୂମିରେ ପଡ଼ିଲା ।
ସେ ଉତ୍ତାରେ ନିଃଶେଷ କରିଣ ହନୁମାନ
ଲଞ୍ଜେ ପାଦେ ପରିଘେ ମାଇଲେ ସବୁ ସୈନ୍ୟ ।
ଅକ୍ଷୟ କୁମାର ବଧ ଶୁଣିଣ ରାବଣ
ଅନେକ ଶୋକ ସେ କଲା ସୁମରିଣ ଗୁଣ ।

ପୁଣ ପୁଣ ପୁତ୍ର ଶୋକେ ଅତି କ୍ରୁଦ୍ଧ ହେଲା
ଇନ୍ଦ୍ରଜିତଙ୍କୁ ଗୃହି ସେ ଏମନ୍ତ କହିଲା ।
ପୁତ୍ର ବଧକର ଶତ୍ରୁ ଅଛି ଯେଉଁ ଠାଇଁ
ସେଠାକୁ ମୁଁ ଏବେ ଯାଉଅଛି ଛୋଡ଼ ହୋଇ ।
ମାର ଅବା ବାନ୍ଧ ଅବା ସେ କପିଙ୍କ ବେଗେ
ଏହିକ୍ଷଣି ଘେନି ଆସି ଦେଉ ତୁମ୍ଭ ଆଗେ ।
ପିତାଠାରୁ ମେଘନାଦ ଶୁଣି ଏ ଉତ୍ତର
ବୋଇଲା ଶୋକ ଛାଡ଼ନ୍ତୁ ହେ ଲଙ୍କେଶ୍ୱର ।
ଇନ୍ଦ୍ରଜିତ ଜୀବନେ ଥାଅନ୍ତେ ଲଙ୍କସାଇଁ
ଏରୂପେ ଦୁଃଖ ବଚନ କହୁ କାହିଁପାଇଁ ।
ବହନ ବ୍ରହ୍ମ ପାଶରେ ବାନ୍ଧ ବାନରକୁ
ଏହିକ୍ଷଣି ଘେନି ମୁଁ ଆସିବ ତୁମ୍ଭଠାକୁ ।
ରଥ ଚଢ଼ି ସୈନ୍ୟ ଘେନି ବେଗେ ଇନ୍ଦ୍ରଜିତ
ପ୍ରବେଶ ହୋଇଲେ ଯହିଁଛନ୍ତି ହନୁମନ୍ତ ।
ମାରୁତଙ୍କ ଦେଖି ବେଗେ ଗରୁଡ଼ ଗତିରେ
ଗୋଡ଼ାଇଲା ମେଘନାଦ ଆକାଶ ମାର୍ଗରେ ।
ବହୁତ ତାହାକୁ ବାନ୍ଧ ରାବଣ କୁମାର
ବୀରକୁ ପ୍ରହାର କଲା ପୁଣି ଆଠ ଶର ।
ହୃଦୟ ମଧ୍ୟକୁ ବେନି ଚରଣକୁ ପୁଣ
ଭୁଜ ଗୋଟି ଲେଖାଁ ଏ ବାଜିଲା ଛଅ ବାଣ ।
ଲଙ୍ଘିକୁ ସେ କାଣ୍ଡେ ବାନ୍ଧ କଲା ସିଂହଧ୍ୱନି
ମାରୁତ ହରଷ ହୋଇ ଲୋହ ସ୍ତମ୍ଭ ଘେନି ।
ମେଘନାଦ ରଥ ଅଶ୍ୱ ସାରଥୀ କୁଳରେ
କୋପେ ପିଟି ଚୂନାକର ପକାଇଲେ ଖରେ ।
ଇନ୍ଦ୍ରଜିତ ବେଗେ ଆନରଥେ ବସି ପୁଣ
ବ୍ରହ୍ମପାଶ ବାନ୍ଧ ହନୁମନ୍ତଙ୍କୁ ବାନ୍ଧଣ ।
ସେ ହରଷ ହୋଇ ପୁଣ ସିଂହନାଦ କଲା
ରାବଣ ସମ୍ମୁଖକୁ ପୁଣ ଘେନାଇ ଚଳିଲା ।
ଯାହା ନାମ ନିରନ୍ତରେ କରଣ କୀର୍ତ୍ତନ
ଅଜ୍ଞାନ କୃତ ଅଟଇ ସେ ଯେଉଁ ବନ୍ଧନ ।

ଉଜ୍ଜ୍ୱଳ ତା ନାଶି କୋଟି ସୂର୍ଯ୍ୟ ପ୍ରାୟେ ହୋଇ
ତେଜବନ୍ତ ଯେଉଁ ରାମ ତା ପଦ ଲଭଇ ।
ସେ ରାମଚରଣ ହୃଦପଦ୍ମେ କରି ଧ୍ୟାନ
ସବୁ ବନ୍ଧମାନ କାଟିଛନ୍ତି ହନୁମାନ ।
ଏ ସ୍ଥୂଳ ଇତର ପାଶେ ବନ୍ଧା ହୋଇଛନ୍ତି
ଏ କଥା କିପାଇଁ ଅବା ବୋଲ ଗୋ ପାର୍ବତୀ ।
ବୋଲେ ଦାସ ହଳଧର ଜାନକୀ ସହିତ
ଶ୍ରୀରାମ ଚରଣେ କରୁଅଛି ଦଣ୍ଡବତ ।
ଏ ଅଧ୍ୟା ହୋଇଲା ଶହେ ତେଷଠି ପଦ
ଏହି କଥା ହେଉ ମୋର ସମସ୍ତ ସମ୍ପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ସୁନ୍ଦର କାଣ୍ଡେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ପୁଣି ଶିବ ବୋଲେ ବନ୍ଧା ହୋଇ ସେ ମାରୁତି
ଭୟଙ୍କର ବେଳ ପାରୁଷକୁ ଗୃହୁଁଛନ୍ତି ।
ପୁର ଲୋକେ ବେଢ଼ି ତାଙ୍କ ସ୍ଥୂର ଦାରୁଷରେ
କେ ମୁଥେ କେ ମୁଷ୍ଟିଡ଼େ ମାରନ୍ତି ରୋଷଭରେ ।
ବ୍ରହ୍ମପାଶ ତାଙ୍କ ଅଙ୍ଗେ କ୍ଷଣେମାତ୍ର ଥିଲା
ସେହି ବ୍ରହ୍ମା ବରଦାନ୍ତ ତେଜ ପୁଣ ଗଲା ।
ସାମାନ୍ୟଦଉଡ଼ି ମାନଙ୍କରେ ବନ୍ଧା ହୋଇ
ଜାଣି ସେ ଗଲେ ଶ୍ରୀରାମଙ୍କର କାର୍ଯ୍ୟ ପାଇଁ ।
ଝଡ଼େ କରଅଛନ୍ତି ସଭାରେ ଲଙ୍କସାଇଁ
ତାଙ୍କ ଆଗେ ନେଇ ହନୁମନ୍ତଙ୍କୁ ପକାଇ ।
ଇନ୍ଦ୍ରଜିତ ଜଣାଇଲା ଶିରେ କର ଦେଇ
ବ୍ରହ୍ମପାଶେ ବାନ୍ଧ ସେନ ଅଇଲି ଗୋସାଇଁ ।

ବହୁତ ରାକ୍ଷସ ଏ ମାରିଲା ରଣଧୀର
ଏଣୁ ସାଧାରଣ ନୁହଇଟି ଏ ବାନର ।
ମନ୍ତ୍ରୀ ସଙ୍ଗତ ସଙ୍ଗତେ କରଣ ବିଶ୍ୱର
ଏହାକୁ ଦଣ୍ଡ ଦେବାକୁ ହେଉ ଲଙ୍କେଶ୍ୱର ।
ଏମନ୍ତ ଶୁଣି ରାବଣ ପ୍ରଶସ୍ତକୁ ଚାହିଁ
ଅଜ୍ଞା ଦେଲା ତାହାକୁ ଏମନ୍ତ କ୍ରୋଧ ହୋଇ ।
ଏହାକୁ ପଚାର କେଉଁଠାରୁ ଏ ବାନର
ଅଇଲା କପି ଏଠାରେ କି କାର୍ଯ୍ୟ ଏହାର ।
ନାଶକଲା କି ନିମନ୍ତେ ଏ ଅଶୋକ ବନ
ରାକ୍ଷସମାନଙ୍କୁ କଲା କାହିଁକି ନିଧନ ।
ଏମନ୍ତ ଶୁଣି ପ୍ରଶସ୍ତ କପିଙ୍କି ଚାହିଁଲା
ଅତିଅନ୍ତ ଆଦର କରଣ ପଚାରିଲା ।
କେଉଁ ଲୋକ ତୋତେ ଦେଇଅଛୁ ପଠାଇ
କହ ତାହା ମନେ କିଛି ଭୟକୁ ନ ପାଇ ।
ମହାରାଜାଧି ରାଜା ଏ ଅଟନ୍ତି ଦଶାନନ
କହିଲେ ଏହାଙ୍କ ଆଗେ ତୁ ସତ୍ୟବଚନ ।
ମୁଁ ତୋତେ ଫିଟାଇ ଦେବି ବୋଇଲନ୍ତେ ପ୍ରଶସ୍ତ
ତାହାଠାରୁ ଏମନ୍ତ ଶୁଣନ୍ତେ ହନୁମନ୍ତ ।
ତିନିଲୋକର କଣ୍ଟକ ଅଟଇ ରାବଣ
ତାକୁ ଚାହିଁ ଶ୍ରୀରାମଙ୍କୁ କର ସୁମରଣ ।
ରଘୁନାଥ କଥା କହିବାକୁ କରି ମନ
ବୋଇଲେ ରେ ଦେବଶତ୍ରୁ ଶୁଣ ମୋ ବଚନ ।
ସମସ୍ତଙ୍କ ହୃଦରେ ଅଛନ୍ତି ଯେଉଁ ରାମ
ତାହାଙ୍କର ଦୂତ ମୁଁ ରେ ରାକ୍ଷସ ଅଧମ ।
ତୁ ନିଷ୍ଟେ ଆପଣାର ନାଶ ହେବା ପାଇଁ
ଯାଗଘରୁ ହବି ଯେସନେ କୁକୁର ନିଅଇ ।
ସେ ରୂପେ ତ କର ଯତ୍ନ ହରିଲୁ କାନ୍ତାକୁ
ତେଣୁ ସେ ଶ୍ରୀରାମ ଅଟି ମତଙ୍ଗ ନାଗକୁ ।
ହୁତାଶନ ସାକ୍ଷୀକରି ସୁଗ୍ରୀବ ସଙ୍ଗରେ
ମିତ୍ରହୋଇ ବାଳିକି ମାରିଲେ ଏକଶରେ ।

ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାରେ ଅଭିଷେକ କଲେ
ସେ ସୁଗ୍ରୀବ ଏବେ ନିଜ କପିଙ୍କର ଭୂଲେ ।
ଶ୍ରୀରାମ ଲକ୍ଷ୍ମଣ ଦୁହିଁଙ୍କର ସଙ୍ଗତରେ
କୁଶଳେ ଅଛନ୍ତି ପ୍ରସ୍ରବଣ ଗିରିବରେ ।
ଜାନକୀଙ୍କି ଖୋଜିବା ପାଇଁ ସେ କପୀଶ୍ୱର
ଦଶଦିଗକୁ ପେଷିଣଅଛନ୍ତି ବାନର ।
ମୁଁ ତାଙ୍କ ମଧ୍ୟରୁ ଜଣେ ନାମ ହନୁମନ୍ତ
ପବନ ଦେବତାଙ୍କର ଅଟଇ ମୁଁ ସୁତ ।
ସବୁ ଦିଗ ଖୋଜନ୍ତେ ମୁଁ ଏଠାକୁ ଆଇଲି
ପଦ୍ମପତ୍ରାକ୍ଷୀ ସୀତାଙ୍କୁ ତୋ ପୁରେ ଦେଖିଲି ।
ମର୍କଟ ସ୍ୱଭାବସ୍ଥ ମୁଁ ନାଶ କଲି ବନ
ମୋତେ ମାରିବାକୁ ଧନୁଶର ଧର ସୈନ୍ୟ ।
ଯହୁଁ ବହୁତ ଆଇଲେ ଦେଖି ଭୟ କଲି
ମୋ ଦେହ ରଖିବି ବୋଲି ତାହାଙ୍କୁ ମାଇଲି ।
ଦେହୀ ଲୋକମାନଙ୍କର ଯେଣୁ ଲଙ୍କସାଇଁ
ଆପଣା ଦେହେ ବହୁତ ପୀରତି ହୁଅଇ ।
ମେଘନାଦ ମୋତେ ବ୍ରହ୍ମପାଶରେ ବାନ୍ଧିଲା
ସେ ବ୍ରହ୍ମାବରେଣ ମୋତେ ଛୁଇଁ ମାଛି ଗଲା ।
ତଥାପି ବନ୍ଧା ହୋଇଣ ସହୁଛି ରାବଣ
ତୋତେ ଦୟାକରି କହୁଛି କହିବା ତା ଶୁଣ ।
ବିବେକରେ କର ବୁଝ ଲୋକ ଗତାଗତ
ରାକ୍ଷସ ବୁଦ୍ଧି ଛାଡ଼ିବା ହେଉ ଲଙ୍କପତି ।
ହେତୁ ଅଟେ ଯେ ସଂସାର ମୋକ୍ଷ ହୋଇବାକୁ
ଏମନ୍ତେ ଯେଉଁ ଦଇବାଙ୍ଗନ ଅଛି ତାକୁ ।
ଆପଣା ହିତ ନିମନ୍ତେ ବେଗେ ଆଶ୍ରେକର
ବ୍ରହ୍ମାଂଶେ ବିସର୍ଦ୍ଧାଋଷିର ତୁ କୁମର ।
ଏଣୁ ଦେହେ ଆତ୍ମବୁଦ୍ଧି ନ କର ରାବଣ
ଅତ୍ମଜ୍ଞାନ ସାଧ ରକ୍ଷ ନୋହୁ ତ ଅପଣ ।
ଶରୀର ବୁଦ୍ଧି ଇନ୍ଦ୍ରିୟ ଏଣୁ ଯେଉଁ ଦୁଃଖ
ତହିଁ ତୋର କିଛି କାର୍ଯ୍ୟ ନାହିଁ ଦଶମୁଖ ।

ଯେଣୁ କର ଆତ୍ମା ସେ ଅଟଇ ନିର୍ବିକାର
ଏମାନ ସବୁ ଅଜ୍ଞାନ ମୂଳ ଦାଶରଥିର ।
ଯେମନ୍ତ ଶୋଇଲା ଲୋକ ଦେଖଇ ସ୍ୱପନ
ସେ ରୂପେ ସଂସାରେ ଦେଖୁଅଛୁ ତୁ ଏମାନ ।
ଏ କଥା ସତ୍ୟ ତୁମ୍ଭର ଏ ବିକାର ନାହିଁ
ଯେଣୁ କର ସବୁ ଆତ୍ମା ଏକ ଲକ୍ଷସାଇଁ ।
ଏ ଯେଣୁ ସେ ଯହୁଁ ବିକାରକୁ ହେତୁ ନାହିଁ
ଯେମନ୍ତ ହୋଇ ଅକାଶ ସବୁଠାରେ ଥାଇ ।
କାହିଁ ନ ଲାଗେ ସେ ରୂପେ ଆତ୍ମା ସବୁଠାଇଁ
ନିରନ୍ତରେ ଅଛୁ ରହି କାହିଁ ନ ଲାଗଇ ।
ଦେହ ପ୍ରାଣଇନ୍ଦ୍ରିୟ ଏହାଙ୍କ ସଙ୍ଗ ପାଇ
ଦେହୀ ମୁଁ ବୋଲି ଦେହରେ ଯେଉଁ ବୁଦ୍ଧିହୋଇ ।
ସଂସାର ବନ୍ଧ ନିଶ୍ଚୟେ ଲଭଇ ସେ ନର
ଚଇତନ୍ୟ ସ୍ୱରୂପ ମୁଁ ଅଜ ମୁଁ ଅକ୍ଷର ।
ଆନନ୍ଦସ୍ୱରୂପ ମୁହିଁ ନିଶ୍ଚୟ ଅଟଇ
ଏ ପ୍ରକାରେ ବୁଦ୍ଧି ହେଲେ ମୁକତି ଲଭଇ ।
ଦେହ ଜାତ ହୋଇଛୁ ପୃଥ୍ୱୀ ବିକାର ବହୁ
ପ୍ରାଣହିଁ ତ ପବନର ବିକାର ଅଟଇ ।
ଅହଙ୍କାର ବିକାରରୁ ହୋଇଅଛୁ ମନ
ବୁଦ୍ଧି ପ୍ରକୃତିରୁ ହୋଇଅଛୁ ଦଶାନନ ।
ଏଣୁ କର ନିଶ୍ଚୟେ ସେ ତୁହଇ ଶରୀର
ଆତ୍ମା ଅଟେ ଶଦାନନ୍ଦ ମୟ ଅବିକାର ।
ଦେହାଦିରୁ ଭିନ୍ନ ହୋଇଅଛୁ ନିରାକାର
ସମସ୍ତ ଉପାଧିମାନଙ୍କରୁ ସେ ଅନ୍ତର ।
ଏ ରୂପେ ଯେତେବ ଆତ୍ମାକୁ ଅପଣ ଜାଣିମ
ଏଥି ଏହି ସକାଶରୁ କର ମୋକ୍ଷ ହେବ ।
ଅତଅନ୍ତ ମୋକ୍ଷର ସେ ଅଟଇ ସାଧନ
କହିବା ତା ଶୁଣ ଏବେ ହୋଇ ସାବଧାନ ।
ମନକୁ ବସ୍ତୁ ଭଗତି ନିର୍ମଳ କରଇ
ନିର୍ମଳ ଜ୍ଞାନ ପୁଣି ସେ ଉତ୍ତରେ ହୁଅଇ ।

ସେ ଭକ୍ତିରେ ତତ୍ତ୍ୱ ପୁଣି କରି ଅନୁଭବ
ତତ୍ତ୍ୱମୀକର ବସ୍ତୁକୁ ଜାଣି କରି ଜୀବ ।
ଅନାୟାସେ ସେ ଲୋକ ପରମ ପଦ ପାଇ
ଏହୁ ସବାଶରୁ କହ ଏବେ ଲଙ୍କାଦାଇ ।
ରମାର ଅଟନ୍ତି ବର ପ୍ରକୃତିରୁ ପର
ପ୍ରିୟ ବାନ୍ଧବ ଶରଣାଗତ ଲୋକଙ୍କର ।
ଏମନ୍ତ ଶ୍ରୀରାମ ଚରଣରେ ବଂଶଧ୍ୱଜ
ଶତ୍ରୁ ଭାବ ଛାଡ଼ି ଏବେ ଭକ୍ତି ଭାବେ ଭଜ ।
ପୁତ୍ର ବନ୍ଧୁ ତୁଲେ ବେଗେ ଯାଇ ଦଶଶିର
ଶ୍ରୀରାମ ଚରଣ ତଳେ କର ନମସ୍କାର ।
ସୀତାଙ୍କୁ ତାହାଙ୍କ ପାଦେ କର ସମର୍ପଣ
ସଂସାର କଷ୍ଟରୁ ମୁକ୍ତ ହୁଅ ତୁ ଆପଣ ।
ରାମ ପରମାତ୍ମା ସବୁ ହୃଦେ ଛନ୍ତି ପୂରି
ଯେଉଁ ଲୋକ ତାଙ୍କୁ ଧ୍ୟାନ ଭକ୍ତିରେ ନ କରି ।
ଦୁଃଖ ସମୂହ ସେ ଯେଉଁ ଲହରୀ ଅଟଇ
ଏମନ୍ତ ସଂସାର ସିନ୍ଧୁ ତରିବ ସେ କାହିଁ ।
ଏହା ନ କଲେ ଅଜ୍ଞାନମୟ ଅନଳରେ
ଆତ୍ମା ଯେ ଦଗ୍ଧ ହେଉଛି ଅନବରତରେ ।
ଆପଣାର ପାପସମୂହରେ କରି ତାକୁ
ନଷ୍ଟ ଯେଣୁ ଯିବାକୁ ହୋଇବ ନରକକୁ ।
ତୁମ୍ଭେ ମୋକ୍ଷ ହୋଇବ ଏମନ୍ତ ଆଶା କାହିଁ
କେବେହେଁ ତ ମୋହର ମନକୁ ନ ଆସଇ ।
ଅମୃତ ପ୍ରାୟେ ଅଟଇ ମାରୁତି ବଚନ
ତାହା ଶୁଣି ସହି ନ ପାରିଲା ଦଶାନନ ।
ନେତ୍ର ରଙ୍ଗ କରି କ୍ରୋଧେ ବୋଇଲା ଲଙ୍କସାଇଁ
ଏଡ଼େ ଦୁଷ୍ଟ ତୁ ମର୍କଟ ଅପକୃଷ୍ଟ ହୋଇ ।
ଆମ୍ଭ ଆଗେ କେତେ କଥୁଅଛୁରେ ବଡ଼ାଇ
ରାମ ତୋର କେ ଅବା ସୁଗ୍ରୀବ କେ ଅଟଇ ।
ସୁଗ୍ରୀବ ସହିତ କରି ରାମକୁ ମାରିବି
ତୋତେ ଆଗେ ମାରି ପଛେ ସୀତାକୁ ହାଣିବି ।।

ତହିଁ ଉତ୍ତାରେ ବଧ କରବ ସୁଗ୍ରୀବକୁ
ସେ ଉତ୍ତାରେ ମାରବ ଶ୍ରୀରାମ ଲକ୍ଷ୍ମଣକୁ ।
ଏହା ଶୁଣି କ୍ରୋଧ ହୋଇ କେ ଇଲେ ମାରୁତ
ମୋ ସମାନେ ଯେ କୋଟିଏ ରାବଣ ହୁଅନ୍ତୁ ।
ଶ୍ରୀରାମ ଦାସ ମୁଁ ବଡ଼ ପରାକ୍ରମବନ୍ତ
ଏହା ଶୁଣି କୋଧ ହୋଇ ମନ୍ଦୋଦରୀକାନ୍ତ ।
ପାଶେ ଥିଲା ରାକ୍ଷସ ମାନଙ୍କୁ ଅନାଇଲା
ତହିଁ ମଧ୍ୟୁଁ ଜଣକୁ ଏମନ୍ତ ଆଜ୍ଞା ଦେଲା ।
ଏ ପାପୀ କପିଙ୍କ ଖଣ୍ଡ ଖଣ୍ଡ କର ଏବେ
କାଟି ପକା ଏ ସମସ୍ତ ଦାଇତଙ୍କ ଅଗ୍ରେ ।
ସେ ରାକ୍ଷସ ମାରୁତଙ୍କ ମାରିବା ନିମନ୍ତେ
ଖଡ଼ଗ ଧରି ବହନ ବାହାର ହୁଅନ୍ତେ ।
ବିଭୀଷଣ ତାହା ନିବର୍ତ୍ତାଇ ରହାଇଲେ
ଦୁଇ କର ଯୋଡ଼ି ରାବଣକୁ ଜଣାଇଲେ ।
ହେ ଦେବ ଦୁତାଗ୍ରବନ୍ତ ଯେଉଁ ନରପତି
ପରରାଜ୍ୟ ଦୂତଙ୍କୁ ସେମାନେ ନ ମାରନ୍ତି ।
କପି ଜାତି ଦୁଣି ଦୂତ ଅବଧ୍ୟ ଅଟଇ
ଏ ମଲେ ରାମଙ୍କୁ ବାର୍ତ୍ତା କେ କହିବ ଯାଇ ।
ଆପଣ ତ ଦୈତ୍ୟଙ୍କୁ ମାରିବା ନିମନ୍ତେ
ଉଦଯୋଗ କରିବାକୁ ହେଉଛ ସନ୍ତତେ ।
ଏଣୁ ବଧ ସମ କରି ଦଣ୍ଡ ଦେବା ହେଉ
ସେ ଚିହ୍ନ ଘେନି ଏ ଏବେ ବମଠାକୁ ଯାଉ ।
ତେବେ ସୁଗ୍ରୀବକୁ ଘେନି ଆସିବେ ଶ୍ରୀରାମ
ତାଙ୍କ ସଙ୍ଗେ କରିବାକୁ ହୋଇବ ସଂଗ୍ରାମ ।
ଏହା ଶୁଣି ପୁଣି ଆଜ୍ଞା ଦେଲା ଲଙ୍କପତି
କପିମାନଙ୍କର ଯେ ଲାଙ୍ଗୁଳରେ ବଡ଼ ପ୍ରୀତି ।
ଏ ଲାଙ୍ଗୁଳର ତହିଁରେ ବେଢ଼ାଇ ବସନ
ତଇଳ ସିଞ୍ଚି ବହନ ଜାଳ ହୁତାଶନ ।
ଦେଖନ୍ତୁ ରାକ୍ଷସେ ସବୁ ନଗରେ ବୁଲାଇ
ରାଜ୍ୟରୁ ବାହାର କରି ଦିଅ ବେଗେ ନେଇ ।

ରାବଣ ମୁହଁେ ରାକ୍ଷସେ ଶୁଣନ୍ତେ ଏମନ୍ତ
ଅଣାଇ ବହୁତ ଛଣପଟ ଅଉ ତେଲ ।
ଢାଳିଲେ ତାହା ବୁଡ଼ାଇ ଲଞ୍ଜେ ଗୁଡ଼ାଇ
ପ୍ରଖର କରି ବହ୍ନି ଦହନ ଲଗାଇ ।
କରି ରାକ୍ଷସ ନଗରେ ରଜ୍ଜୁମାନଙ୍କରେ
ଦୃଢ଼କରି ବାନ୍ଧି ତାଙ୍କୁ ଓଟାରିଲେ ଘରେ ।
ନାନା ବାଦ୍ୟ ମାନ ଆଗେ ବଜାଇ ଅଛନ୍ତି
ଚୋର ଏ ବୋଲିଣ ଜୟ କରି କହୁଛନ୍ତି ।
ମାଡ଼ମାନ ମାରୁଛନ୍ତି ବିବିଧ ପ୍ରକାରେ
ଏ ପ୍ରକାରେ ବୁଲାଇଲେ ତାଙ୍କୁ ସବୁଠାରେ ।
ମନେ କିଛି କାର୍ଯ୍ୟ ଚିନ୍ତା କରି ହନୁମାନ
କିଛି କାହାକୁ ନ କହି ସହିଲେ ସେ ମାନ ।
ପଶ୍ଚିମ ଦ୍ୱାର ସଳଖେ ହୋଇଲେ ସାମାନ୍ୟ
ବନ୍ଧନୁ ଗଳି ବାହାର ହେଲେ ହନୁମାନ ।
ପୁଣି ବଡ଼ ପର୍ବତ ଗୋଟାଏ ପ୍ରାୟେ ହେଲେ
ଡେଇଁ ସେହି ପୁରଦ୍ୱାର ଉପରେ ବସିଲେ ।
ବନ୍ଧନ ଖମ୍ବ ଗୋଟାଏ ତହୁଁ ଉପାଡ଼ିଲେ
ତହିଁ ସବୁ ଜଗିଆଙ୍କୁ ପିଟି ପକାଇଲେ ।
ଏବେ କି କରିବା ବୋଲି ମନରେ ବିଚାରି
ଅତି ବେଗେ ସେ ଅଟ୍ଟାଳି ଯୋଡ଼ି ଦେଇ କରି ।
ପ୍ରଳୟ ଅନଳ ପ୍ରାୟେ ହୋଇ ସେ ମାରୁତି
ପ୍ରତି ପୁର ଉପରେ ସେ ଡେଇଁ ବସୁଛନ୍ତି ।
ପ୍ରାସାଦ ଅଟ୍ଟାଳି କୋଣ ଜଗତି ମନ୍ଦିର
ସବୁ ଏ ରୂପେ ପୋଡ଼ନ୍ତେ ପବନ କୁମର ।
ହେ ତାତ ହେ ନାଥ ଅହେ ପୁତ୍ର ବୋଲି ଘରେ
ଜଗତୀ ଉପରୁ ପଡ଼ି ରାକ୍ଷସ ନିକରେ ।
ସ୍ୱର୍ଗୁ ଦେବତା ପଡ଼ିଲ ପରାୟେ ଦିଶନ୍ତି
ବିଭୀଷଣ ଘର ମାତ୍ର ଛାଡ଼ିଣ ମାରୁତି ।
ଆଉ ସବୁ ଭସ୍ମ କରି ସମୁଦ୍ରକୁ ଗଲେ
ଲାଞ୍ଜ ତହିଁ ଧୋଇ ଅତି ସୁସ୍ଥ ଚିତ୍ତ ହେଲେ ।

ସଖାହିଁ ତ ଅଟନ୍ତି ପବନ ହୁତାଶନ
ସୀତାହିଁ ତ ଅନଳଙ୍କୁ କଲେ ଜଳସମାନ ।
ଏଣୁକରି ନିଜ ଲାଙ୍ଗୁଳେ ଲାଗିଲା ଅନଳ
ହନୁମନ୍ତଠାରେ ସେହୁ ହୋଇଲେ ଶୀତଳ ।
ଯେଉଁ ରାମନାମ ଥରେ କଲେ ସୁମରଣ
ବହନ ପାପଚୟଙ୍କୁ କ୍ଷୟ କରେ ପୁଣ ।
ତାପତ୍ରୟ ଅଗ୍ନି ହେତୁ ମନୁଷ୍ୟ ଲୋକରେ
ତତ୍କାଳ ପ୍ରତ୍ୟକ୍ଷ ତେଜୁ ଅଛନ୍ତି ପାମରେ ।
ସେ ରାମର ପ୍ରିୟଦୂତ ହୋଇ ହନୁମନ୍ତ
ସାମାନ୍ୟ ଅନଳେ କିପାଁ ହେବେ ସନ୍ତପତ ।
ବୋଲେ ହଳଧର ଅହେ ଶ୍ରୀନନ୍ଦନନ୍ଦନ
ତାପତ୍ରୟାନଳ ମୋତେ ଜଳଇ ବହନ ।
ତୁମ୍ଭ ପଦ ନହଉ ମୋର ସମସ୍ତ ସମ୍ପଦ
ଏ ଅଧ୍ୟା ହୋଇଲା ଶଏ ନିଃକ୍ଷତ୍ରର ପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ସୁନ୍ଦରକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ

ଉମାଙ୍କୁ ପୁଣି ଶଙ୍କର କହିଲେ ଏମନ୍ତ
ତଦନ୍ତେ ସୀତା ସମ୍ମୁଖେ ଯାଇ ହନୁମନ୍ତ ।
ନମସ୍କାର କରି ଜଣାଇଲେ ତାଙ୍କ ଆଗେ
ଆଜ୍ଞା ଦେବା ହେଉ ରାମଠାକୁ ଯିବି ବେଗେ ।
ଗଲେ ମୁଁ ତୁମ୍ଭଙ୍କୁ ଦେଖିବାକୁ ତ୍ୱରା ହୋଇ
ରାମଚନ୍ଦ୍ର ଏଠାକୁ ଆସିବେ ବଇଦେହୀ ।
ଏହା କହି ତିନିଥର କରି ପ୍ରଦକ୍ଷିଣ
ପାଦେ ପଡ଼ିଯିବା ବେଳେ କହିଲେ ସେ ପୁଣ ।
ବେଗେ ଦେବି ଯାଉଛୁ କପିମାନଙ୍କ ସଙ୍ଗତେ
ରାମ ଲକ୍ଷ୍ମଣ ସୁଗ୍ରୀବଙ୍କୁ ଦେଖିବଇଁ ନେନେ ।
ଏମନ୍ତ ବଚନ ଶୁଣି ପୁଣି ବଇଦେହୀ
କହିଲେ ତାହାଙ୍କୁ ଅତ୍ୟନ୍ତ ଦୁଃଖୀ ହୋଇ ।

ତୋତେ ଦେଖି ଦୁଃଖ ମୁଁ ପାସୋରି ଥିଲି ଚିତ୍ତେ
ଏବେ ରାମ ବାର୍ତ୍ତା କହି ଯାଇବ କେମନ୍ତେ ।

ମାରୁତିରୁବାଚ

ମାରୁତି ବୋଇଲେ ତେବେ ବସ ମୋ କନ୍ଧରେ
କ୍ଷଣକେ କରିବି ନେଇ ଶ୍ରୀରାମ ଛାମୁରେ ।

ସୀତୋବାଚ

ଏହା ଶୁଣି ଜାନକୀ ବୋଇଲେ ରାମଚନ୍ଦ୍ର
ବାଣଗଣ ବିନ୍ଧ କରି ଶୁଖାଇ ସମୁଦ୍ର ।
ନୋହିଲେ ବନ୍ଧ ବନ୍ଧାଇ ଝଟକେ କରି ବେଗେ
ସୁଗ୍ରୀବ ଲକ୍ଷ୍ମଣ କପି ସେନା ଥିବେ ସଙ୍ଗେ ।
ଯୁଦ୍ଧେ ରାବଣକୁ ମାରି ନେଇ ଯିବେ ମୋତେ
ତେବେ ସିନା ତାଙ୍କ କୀର୍ତ୍ତି ରହିବ ଜଗତେ ।
ଏଣୁ ତୁମ୍ଭେ ଯିବା ହେଉ ପବନ ନନ୍ଦନ
କଷ୍ଟେ କଷ୍ଟେ ଧରି ଥାଇ ସିନା ମୁଁ ଜୀବନ ।
ମେଲାଣି ପାଇ ସେ ପୁଣି କରି ନମସ୍କାର
ସିନ୍ଧୁ ତରିବାକୁ ଗଲେ ପବନ କୁମର ।
ସୁବଳ ଗିରି ଉପରେ ଉଠି ହନୁମନ୍ତ
ଡେଇଁବା ବେଳକୁ ପାଦ ଭରେ ସେ ପର୍ବତ ।
ଧରଣୀ ତଳକୁ ଯାଇ ହେଲା ଭୂ ସମାନ
ଯେ ପୁଣି ଉଚ୍ଚ ଅଛଇ ତିରିଶ ଯୋଜନ ।
ପବନ ପ୍ରାୟେ ମାରୁତି ଆକାଶରେ ଗଲେ
ଅତି ବଡ଼ ଶବଦ ଟୋକାଏ ସେତୁ କଲେ ।
ତାହା ଶୁଣି ଅଙ୍ଗଦାଦି ସମସ୍ତ ବାନରେ
ମାରୁତି ନଷ୍ଟେ ଅଛଲେ ବୋଲି ହରଷରେ ।
ସେ ସମସ୍ତେ ଅକାଶକୁ ଗ୍ରହିଣ ବଦନ
ଅତି ଉଚ୍ଚ କରି କଲେ ଗରଜନ ମାନ ।
ଏ ଶବଦୁ ଜାଣୁଥାଇ ନିଶ୍ଚୟେ ଏମନ୍ତ
କୃତକାର୍ଯ୍ୟ ହୋଇ ଅସୁଛନ୍ତି ହନୁମନ୍ତ ।
ଅଇଲେ ମାରୁତି ଦେଖି ଦେଖି ଏ ସମସ୍ତେ
ଏ ରୂପେ ସେମାନେ କଥା ବାରତା ହୁଅନ୍ତେ ।

ପବନନନ୍ଦନ ଅଛି ପର୍ବତେ ପଡ଼ିଲେ
ତଳକୁ ଓହ୍ଲାଇ ବେଗେ ତାହାଙ୍କୁ କହିଲେ ।
ସୀତାଙ୍କୁ ଦେଖି ରାବଣ ତୁଲେ କଥା ହେଲି
ଲଙ୍କାବନ ତୁଲେ ନାଶ କରଣ ଅଇଲି ।
ଏବେ ଚାଲ ଯିବା ରାମ ସୁଗ୍ରୀବଙ୍କ ଠାକୁ
ଏମନ୍ତ ଶୁଣି ସମସ୍ତେ ବେଢ଼ିଲେ ତାହାଙ୍କୁ ।
କେଉଁମାନେ ଅତି ସ୍ନେହେ ଆଲିଙ୍ଗନ କଲେ
ଲଞ୍ଜ ଧରି ଥୋକାଏ ତ ଚୁମ୍ବମାନ ଦେଲେ ।
କେ ତହିଁ ଲମ୍ଫୁକ ହୋଇ ନୃତ୍ୟମାନ କଲେ
ମାରୁତଙ୍କ ଆଗ କରି ରାମଠାକୁ ଗଲେ ।
ବାଟେ ଯାନ୍ତେ ଦେଖିଲେ ସୁଗ୍ରୀବ ମଧୁବନ
କପିମାନେ ଅଙ୍ଗଦଙ୍କୁ କହିଲେ ଏସନ ।
ଅହେ ବୀର ଅଙ୍ଗଦେବା ହେଜ ତାରାସୁତ
ଅମ୍ଭେମାନେ ହୋଇଅଛୁ କ୍ଷୁଧାରେ ଆରତ ।
ଅମୃତ ସମାନ ଫଳ କରିବୁ ଭୋଜନ
ଏ ବନରୁ ମଧୁପାନ କରିବୁଁ ଯେ ପାନ ।
ସନ୍ତୋଷ ହୋଇଣ ଶୀଘ୍ର କରିବା ଗମନ
ଅଜ ରାମ ଲକ୍ଷ୍ମଣଙ୍କୁ କରିବା ଦର୍ଶନ ।

## ଅଙ୍ଗଦ ଉବାଚ

ବୋଇଲେ ଅଙ୍ଗଦ ହସି ଶୁଣନ୍ତେ ଏସନ
କୃତକାର୍ଯ୍ୟ ହୋଇ ତ ଅଛନ୍ତି ହନୁମାନ ।
ତାହାଙ୍କର ପ୍ରସାଦରୁ ସବୁ କପିମାନେ
ଫଳ ଖାଅ ମଧୁପାନ କର ତୋଷମନେ ।
ଶୁଣି କପିମାନେ ମଧୁବନରେ ପଶିଲେ
ରକ୍ଷୀ ଲୋକଙ୍କୁ ନ ମାନି ମଧୁପାନ କଲେ ।
ଏମନ୍ତ ବାରତା ପାଇ ଦଧିମୁଖ ରାଗେ
ଅନେକ କପି ସେ ପଠାଇ ଦେଲା ବେଗେ ।
ସେମାନେ ମଧୁବନରେ ପ୍ରବେଶ ହୋଇଲେ
ଭୋଜନ କଲାବେଳେ ଏମାନଙ୍କୁ ମାଇଲେ ।

ଅଙ୍ଗଦ ଅଦ ମର୍କଟେ ତାହାଙ୍କୁ ଧରିଲେ
ମୁଥ ପଦାଘାତ କରି ମଧୁପାନ କଲେ ।
ସେ ଉତ୍ତରେ ସୁଗ୍ରୀବ ମାତୁଳ ଦଧିମୁଖ
ଜଗିଥିଲା ସଙ୍ଗେ ଘେନି ମନେ କରି ଦୁଃଖ ।
କ୍ରୋଧଭରେ ଅତଅନ୍ତ ଚୋଟ ହୋଇଗଲା
ସୁଗ୍ରୀବ ସ୍ଥାନରେ ମିଳି ଏମନ୍ତ କହିଲା ।
ହେ ଦେବ ଅପାର କାଳୁଁ ଯେଉଁ ମଧୁବନ
ଯତ୍ନେ ରଖିଥିଲ ତା ଅଙ୍ଗଦ ହନୁମାନ ।
ସବୁ କପିଙ୍କୁ ଘେନିଣ ତାହା ନାଶ କଲେ
ସୁଗ୍ରୀବ ଶୁଣି ହରଷ ହୋଇଣ କହିଲେ ।
ସୀତାଙ୍କୁ ଦେଖି ମାରୁତ ଆଇଲେ ନିଶ୍ଚୟ
ଏ କଥାରେ ତୁମ୍ଭେମାନେ ନ କର ସଂଶୟ ।
ନୋହିଲେ ମୋ ମଧୁବନ ଦେଖିବାକୁ କେହି
ତିନି ଲୋକ ମଧ୍ୟେ ତ ସମର୍ଥ ଜଣେ ନାହିଁ ।
ସେ କପିମାନଙ୍କ ମଧ୍ୟେ ଏ କାର୍ଯ୍ୟ ନିଶ୍ଚୟେ
ହନୁମନ୍ତ କଲେ ଏଥି ନାହିଁ ନା ସଂଶୟେ ।
ଏହା ଶୁଣି ରାମ ହସି ବୋଇଲେ ଏମନ୍ତ
ସୀତା ବାର୍ତ୍ତା କି କହିବାହେଉଅଛ ମିତ ।
ଏହା ଶୁଣି ସେ କଥା ସୁଗ୍ରୀବ ଜଣାଇଲେ
ହନୁମନ୍ତାଦ ସୀତାଙ୍କୁ ଦେଖିଣ ଆଇଲେ ।
ମଧୁବନେ ପଶି ରକ୍ଷୀ ଲୋକଙ୍କୁ ମାଇଲେ
ଫଳ ମୂଳ ଖାଇ ମଧୁପାନ ପାନ କଲେ ।
ତୁମ୍ଭ କାର୍ଯ୍ୟ ନ କରି ହେ ସ୍ୱାମି-ରଘୁପତି
ବନ ମୋର ଦେଖିବାକୁ ସମର୍ଥ ନୁହନ୍ତି ।
ଏ ଘେନି ସେମାନେ ନିଶ୍ଚେ ଦେଖିଲେ ସୀତାଙ୍କୁ
ଏ ଉତ୍ତରେ କହିଲେ ସେ ରକ୍ଷକମାନଙ୍କୁ ।
ତୁମ୍ଭମାନଙ୍କର ଏ କଥାରେ ଭୟ ନାହିଁ
ଏବେ ମୋର ଆଜ୍ଞା ଘେନି ବଡ଼ ବେଗେ ଯାଇ ।
ଅଙ୍ଗଦ ଆଦ ସମସ୍ତ ବାନର ମାନଙ୍କୁ
ଅତି ବେଗେ ଘେନି ଆସ ଦେଖିବା ତାହାଙ୍କୁ ।

ଏହା ଶୁଣି ସେମାନେ ପବନ ପ୍ରାୟେ ଗଲେ
ସେ ମଧୁବନରେ ମିଳି ତାହାଙ୍କୁ କହିଲେ ।
ରାଜା ଆଜ୍ଞା ଦେଇଛନ୍ତି ଦେଖିବେ ତୁମ୍ଭଙ୍କୁ
ତତ୍କାଳ ଆସିବା ହେଉ ସମସ୍ତେ ସେଠାକୁ ।
ସୁଗ୍ରୀବ ଲକ୍ଷ୍ମଣ ସଙ୍ଗତରେ ରଘୁପତି
ତୁମ୍ଭଙ୍କୁ ଦେଖିବା ପାଇଁ ଇଚ୍ଛା କରିଛନ୍ତି ।
ଚୋର ହୋଇଛନ୍ତି ସେ ହରଷ ଜଳୁକରେ
ଏ ବଚନ ଶୁଣି ସେହୁ ସମସ୍ତ ବାନରେ ।
ଅଙ୍ଗଦ ହନୁମନ୍ତ ଦୁହିଙ୍କୁ କରି ଆଗେ
ଆକାଶ ମାର୍ଗେ ସମସ୍ତେ ଯାଇ ଅତି ବେଗେ ।
ରାମ ସୁଗ୍ରୀବ ଦୁହିଙ୍କ ସ୍ଥମ୍ଭରେ ମିଳିଲେ
ମାରୁତି ରାମଙ୍କୁ ବେଗେ ଦଣ୍ଡବତ କଲେ ।
ପଛେ ପୁଣି ସୁଗ୍ରୀବଙ୍କୁ କରି ନମସ୍କାର
ଶ୍ରୀରାମ ଚରଣେ ଜଣାଇଲେ ଯୋଡ଼ିକର ।
ହେ ସ୍ୱାମି ଉତ୍ତମ କରି ଦେଖିଲି ସୀତାଙ୍କୁ
କୁଶଳ ପ୍ରଶ୍ନ ସେ କରିଅଛନ୍ତି ତୁମ୍ଭଙ୍କୁ
ଅଶୋକ ବନେ ଶିଂଶପା ବୃକ୍ଷ ମୂଳେ ଛନ୍ତି
ବହୁ ରାକ୍ଷସୀ ସୀତାଙ୍କୁ ବେଢ଼ିଣ ଅଛନ୍ତି ।
ନିରାହାରେ କୃଶ ହୋଇଅଛୁ ଅପଘନ
ପିନ୍ଧିଛନ୍ତି ଅତିଅନ୍ତ ମଳିନ ବସନ ।
ହା ରାମ ହା ରାମ ବୋଲି କରୁଛନ୍ତି ଶୋକ
ନେତ୍ରୁ ହୃଦେ ପଡ଼ି ବହି ଯାଉଛି ଲୋତକ ।
ଏକ ବେଣୀ ଧରିଛନ୍ତି ଏ ରୂପେ ଦେଖିଲି
ମନ୍ଦ ମନ୍ଦ କରି ଆଶ୍ୱାସନା କରାଇଲି ।
ଅତିଅନ୍ତ ସାମାନ୍ୟ ମୂରତିଟିଏ ହୋଇ
ବୃକ୍ଷ ଶାଖା ପତ୍ର ମଧ୍ୟେ ଲୁଚି କରି ରହି ।
ଜନ୍ମଠାରୁ ଦଣ୍ଡକ ଅରଣ୍ୟ ପର୍ଯ୍ୟନ୍ତେ
ତୁମ୍ଭର ଏହା ମଧ୍ୟରେ ହେଲା ଯେତେ ଯେତେ ।
ତୁମ୍ଭେ ଦୁହେଁ ନ ଥିଲା ବେଳରେ ଯାହା ତାଙ୍କୁ
ରାବଣ ଚୋରାଇ ଯାହା ନେଲା ତା ପୁରକୁ ।

ଆପଣ ଯା ସୁଗ୍ରୀବ ସଙ୍ଗତେ ସଖା ହେଲ
ବାଳିଙ୍କ ଯେମନ୍ତ କର ବାଣରେ ମାରିଲ ।
ସୁଗ୍ରୀବ ଯେମନ୍ତ କର ତାଙ୍କୁ ଖୋଜିବାକୁ
ପଠିଅଇଲେ ସମର୍ଥ ବାନରମାନଙ୍କୁ ।
ସେ ବାନରମାନଙ୍କ ମଧ୍ୟରେ ଯେଣୁ ମୁହିଁ
ସୁଗ୍ରୀବର ମନ୍ତ୍ରୀ ରାମ ଦାସ ମୁଁ ଅଟଇ ।
ଏମାନ କହି ବୋଇଲି ସୀତାଙ୍କୁ ଦେଖିଲି
ଆସିବା ଶ୍ରମହିଁ ଏବେ ସଫଳ ମୁଁ କଲି ।
ଏମନ୍ତ ଶୁଣି ଜାନକୀ ହରଷ ହୋଇଲେ
ମୋହ ଥିବା ଦଗକୁ ସେ ଗୃହିଣ ବୋଇଲେ ।
କର୍ଣ୍ଣକୁ ମୋର ଅଟଇ ଅମୃତ ସମାନ
ଏରୂପେ କହିଲ ମୋତେ ଯେତ୍ତ ଏ ବଚନ ।
ମୋ ଆଗକୁ ଆସ ବେସ ଏ କଥା ଯେବେ ସତ
ବଇଦେହୀ ଶ୍ରୀମୁଖରୁ ଶୁଣନ୍ତେ ଏମନ୍ତ ।
ସାନ ଭଙ୍ଗିଟିଏ ହୋଇ ନମସ୍କାର କଲି
କୃତାଞ୍ଜଳି ହୋଇ ଖଣ୍ଡେ ଦୂରରେ ରହିଲି ।
ସେ ଜଙ୍ଗଲରେ ସୀତା ମୋତେ ବିସ୍ତାର ବହୁତ
ପଚାରିଲେ ପୁଣ ପୁଣ ତୁମ୍ଭର ଚରିତ ।
ମୁଁ ସେମାନ ସବୁ ତାଙ୍କୁ ଉପରେ କହିଲ
ସେ ଜଙ୍ଗଲରେ ମୁଦ୍ରିକା ବାହାର କରି ଦେଲି ।
ତାହା ଦେଖି ସେ ମୋଠାରେ ବିଶ୍ୱାସକୁ ପାଇ
ଯୋଡ଼ହସ୍ତ ପୁଣି ଏମନ୍ତ କହିଲେ ବଇଦେହୀ ।
କଷ୍ଟ ଦିନ ଦହୁ ମୁଁ ହେଉଛୁ ପ୍ରତିଦିନେ
ଦେଖିଲ ତ ତର୍ଜୁଛନ୍ତି ଏ ରାକ୍ଷସୀମାନେ ।
ଏହା ସବୁ ଜଣାଇବ ଶ୍ରୀରାମ ଛାମୁରେ
ମୁଁ ପୁଣି କହିଲି ତାଙ୍କୁ ଏଥି ଅନନ୍ତରେ ।
ତୁମ୍ଭର ଚିନ୍ତାରେ ରାମଚନ୍ଦ୍ର ରଘୁପତି
ଶୋକ କରୁଛନ୍ତି ବାର୍ତ୍ତା ନ ପାଇ ଅଛନ୍ତି ।
ଏବେ ତୁମ୍ଭ ଏ ବାର୍ତ୍ତା କହିଲେ ଯାଇଁ ମୁହିଁ
ଶୁଣିଲା ମାତ୍ରେ ସୁଗ୍ରୀବ ତୁଲେ ବେଗଇ ।

ବହୁତ ବାନର ସେନା ସଙ୍ଗତରେ ଥିବେ
ଏରୂପେ ସେ ତୁମ୍ଭଠାରୁ ନିକଟେ ଆସିବେ ।
ସବଂଶ କରିଣ ସେହୁ ମାରି ରାବଣକୁ
ତୁମ୍ଭଙ୍କୁ ନିଶ୍ଚେ ନେଇ ଫେରି ଅଯୋଧ୍ୟାକୁ ।
ପୁଣି ବୋଇଲି ତୁମ୍ଭଙ୍କୁ ଦେଖିଲି ଅବଶ୍ୟ
ଏହା ଯେଉଁରୂପେ ରାମ କରିବେ ବିଶ୍ୱାସ ।
ଏଥିପାଇଁ ଚିହ୍ନ ଦେବା ହେଉ ବଇଦେହୀ
ଏଥକୁ ସେ ମୋହଠାରେ ଚୂଡ଼ାମଣି ଦେଇ ।
ଶିରକୁଟେ କାକ ଯାହା କଲା ତାହା କହି
ଦୁଇ ନୟନରୁ ଲୁହ ଯାଉଥିଲା ବହି ।
ପୁଣି ମୋତେ ବୋଇଲେ ହେ ପବନ ନନ୍ଦନ
ରାମ ସ୍ୱାମୀରେ କହିବୁ କୁଶଳ ପ୍ରଶନ ।
ଲକ୍ଷ୍ମଣଙ୍କୁ କହିବୁ ମୁଁ ଅଜ୍ଞାନ ଭାବରେ
ଯେଉଁ ଦୁଷ୍ଟ ବଚନ କହିଲି ତାଙ୍କ ଠାରେ ।
ସେ ଦୁଃଖ ବଚନ ଆଉ ମନେ ନ ଘେନିବେ
ମାଗୁଅଛି ଏବେ ମୋତେ କ୍ଷମା ସେ କରିବେ ।
ରାମ କୃପା କରି ମୋତେ ଯେମନ୍ତେ ତାରନ୍ତି
ସେ କଥା ତୁମ୍ଭେ କରିବ ଯେମନ୍ତେ ପାରୁଛ ।
ଏହା କହି ଦୁଃଖେ ଶୋକ କଲେ ମୈଥିଳୀ
ମୁଁ ତୁମ୍ଭ ବାରତା କହି ଶାନ୍ତ କରାଇଲି ।
ସେ ଉତ୍ତାରେ ସୀତା ମୋତେ ମେଲାଣି ଦିଅନ୍ତେ
କେତେ ଦୂର ଆସି କିଛି ବିଚାରିଲି ଚିତ୍ତେ ।
ଅଶୋକ ବନ୍ର ବହୁତ ବୃକ୍ଷ ଉପାଡ଼ିଲି
କ୍ଷଣକେ ଅନେକ ରକ୍ଷ ବିନାଶ ମୁଁ କଲି ।
ରାବଣ ପୁତ୍ର ଅକ୍ଷୟକୁମାରକୁ ମାରି
ଦଶାନନଠାରୁ ଯାଇ ସମ୍ଭାଷଣ କରି ।
ଲଙ୍କାପୁର ନିଃଶେଷ କରିଣ ପୋଡ଼ି ଦେଲି
ସେ ଉତ୍ତାରେ ପୁଣ ତୁମ୍ଭ ଛାମୁକୁ ଆଇଲି ।
ପାର୍ବତୀକି ଗୁହ୍ୟ ପୁଣ ଶଙ୍କର କହିଲେ
ଶୁଣି ରାମ ବଡ଼ ହରଷରେ ଅଙ୍କ ଦେଲେ ।

ଯେତେ ଯେତେ କଥା କଲେ ପବନ କୁମର
ଦେବତାମାନଙ୍କର ଏ ଅଟଇ ଦୁଷ୍କର ।
ତୁମ୍ଭେ ବଡ଼ ଉପକାର କଲ ଅମ୍ଭ ଠାଇଁ
ପ୍ରତି ଉପକାରକୁ ତ କଛି ଦିଶୁନାହିଁ ।
ଏବେ ମୋ ସର୍ବସ୍ୱ ତୋତେ ଦେଉଛି ମାରୁତ
ଏହା ବୋଲି ତାଙ୍କୁ କଲେ ଅଣି ରଘୁପତ ।
ଗାଢ଼ କରି ଅତି ସ୍ନେହେ କଲେ ଅଲିଙ୍ଗନ
ଆନନ୍ଦେ ନେତ୍ରୁ ବହୁଛି ଅଶ୍ରୁଧାର ମାନ ।
ଏମନ୍ତ ହୋଇଣ ସେ ଲଭିଲେ ଅତି ପ୍ରୀତି
ଭକ୍ତବତ୍ସଳ ଯେ ଅଟନ୍ତି ରଘୁପତି ।
ପୁଣି ତାଙ୍କୁ ସ୍ନେହରେ ବୋଇଲେ ହନୁମାନ
ପରମାତ୍ମା ଯେ ମୁଁ ମୋର ଏହୁ ଅଲିଙ୍ଗନ ।
ଲୋକରେ ଏ ଦୁର୍ଲ୍ଲଭ ଅଟଇ ଅତିଅନ୍ତ
ତୁମ୍ଭେ ଯାହା ଲଭିଲ ଯେଣୁ ମୋ ପ୍ରିୟଭକ୍ତ ।
ଶଙ୍କର ବୋଲନ୍ତି ପୁଣି ତୁଳସୀ ଦଳରେ
ଯେଉଁ ରାମପାଦ ପୂଜା କଲ୍ଲ ମାନବରେ ।
ଯେବଣ ବସ୍ତୁ ପ୍ରଦବୀ ଅତୁଲ୍ୟ ଅଟଇ
ପାମର ଲୋକହିଁ ତାହା ଅନାୟାସେ ଲଭଇ ।
ସେ ରାମ ସାକ୍ଷାତେ ଯେବେ କଲେ ଅଲିଙ୍ଗନ
ତେବେ କି ସୁକୃତ କରିଥିଲେ ହନୁମାନ ।
ତା ନିକି କହୁ ପାରିବ କାହାର ବଦନ
ଏଠାରୁ ସୁନ୍ଦରକାଣ୍ଡ ହୋଇଲ୍ଲ ସମ୍ପୂର୍ଣ୍ଣ ।
ଏ ତ ଶେଷ ହୋଇ ନୋହେ ଶିବେ ଅଗୋଚର
ମୁଁ ତ ଜଗତରେ ହୀନ ମାତର ପାମର ।
ଏଣୁ ଯେତେ ବୁଝିଲି କହିଲି ସେ ପ୍ରକାରେ
ଏ ବେଳ ମୋ ଦୋଷ କ୍ଷମାକର ସୁଜନରେ ।
ପତିତ ପାବନ ଦୟାନିଧି ରାବଣାରି
ମୋର ସବୁ ଭବବେଗ ବେଗେ ନାଶ କର ।
ସୀତା ସହିତେ ପଙ୍କଜଚରଣେ ତୁମ୍ଭର
ନିରନ୍ତରେ ଭକ୍ତି ହେଉ ଏହି ଆଜ୍ଞା କର ।

ତୁମ୍ଭ ପାଦ ଦାସ ଦାସ ଦାସର କିଙ୍କର
ଏଥି ଅନ ଅନ ନ ବୋଲଇ ହଳଧର ।
ତୋ ଚରଣ ସର୍ବକାଳେ ମୋ ଶରଣ ହେଉ
ଜନ୍ମ ଜନ୍ମାନ୍ତରେ ସ୍ୱାମି ଏଥୁ ଅନ ନୋହୁ ।
ଏ ଅଧ୍ୟା ଗୋଟି ଅନ୍ତଇ ଶହେ ତେର ପଦ
ନିରନ୍ତରେ କାଟୁ ମୋର ସମସ୍ତ ଆପଦ ।
ପାଞ୍ଚଅଧ୍ୟା ପାଞ୍ଚଶ ପଞ୍ଚାଅଣୀ ପଦ ଗୀତ
ଏତେକରେ ପୂର୍ଣ୍ଣ ହେଲା ସୁନ୍ଦର ଚରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ସୁନ୍ଦରକାଣ୍ଡେ ନାମ ପଞ୍ଚମୋଽଧ୍ୟାୟଃ ।

# ଲଙ୍କାକାଣ୍ଡ

ବନ୍ଦଇ ଶ୍ରୀରାମ ଚରଣ
ଯେ ସର୍ବଭୂତର ଶରଣ ।
ସମସ୍ତ ଅଘ ନିବାରଣ
ସଂସାରସିନ୍ଧୁରୁ ତାରଣ ।
ଯେଉଁ ଉଦକ ଶିରେ ଧରି
ଧନ୍ୟ ହୋଇଲେ ତ୍ରିପୁରାରି ।
ସନ୍ତତେ ଧରି ହୃଦୟରେ
ତହିଁ ମହିମା ନିରନ୍ତରେ
ଉମାଙ୍କ ଆଗେ କହୁଛନ୍ତି
ଶ୍ରବଣ କରନ୍ତି ପାର୍ବତୀ ।
ହୃଦରେ କରି ତା ବିଧାନ
ଯହିଁକି କରୁଛନ୍ତି ଧ୍ୟାନ ।
କ୍ଷୀର ସମୁଦ୍ର ତୀରେ ସ୍ତୁତି
ଯହିଁକି କରି ପ୍ରଜାପତି ।
ଅଭୟ ବରଦାନ ପାଇଁ
ଧରାକୁ ସେ ଶାନ୍ତ କରାଇ ।
ଦେବଙ୍କ ହରଷକୁ କଲେ
ନିଶ୍ଚିନ୍ତ ହୋଇ ସୁଖେ ଗଲେ ।
ଯା ଜନ୍ମ ମାନବେ କୌଶଲ୍ୟା
ଦେଖି ଯହିଁକି ସ୍ତୁତି କଲା ।
ଲାଗନ୍ତେ ଯହିଁ ରଜ ମାତ୍ର
ଅହଲ୍ୟା ଶାପୁ ହେଲା ମୁକ୍ତ ।
ଧଉତ କରି ଯା ଉଦକ
ଶିରରେ ସେଚିଲେ ଜନକ ।
ପରଶୁରାମ ପୁଣ୍ୟମାନ
ଯହିଁରେ କରି ନିବେଦନ ।

ଅଜହୁଁ ଭଲ୍ଲୁକୀ ହୋଇ
ସେହି ଦେହରେ ଛନ୍ତି ରହି ।
ଭରତ ଯେଉଁ ପାଦୁକା ଗ୍ରହି
ଗଢ଼ିଲେ ଅନନ୍ଦିତ ହୋଇ ।
ଯାହା ଅରଣ୍ୟେ ପ୍ରତିଦିନ
ଲକ୍ଷ୍ମଣ କରନ୍ତି ମାର୍ଜନ ।
ଶରଭଙ୍ଗ ଯା ହୃଦେ ଚିନ୍ତି
ତତ୍କାଳ ଲଭିଲେ ମୁକତି ।
ଦଣ୍ଡକାରଣ୍ୟ ବାସୀ ଋଷି
ଯହିଁ ଆସି ଶରଣ ପଶି ।
ରାକ୍ଷସ ଭୟୁ ନାଶ କଲେ
ନିଶ୍ଚିନ୍ତ ହୋଇଣ ରହିଲେ ।
ହୃଦେ ଯା ଅନୁକ୍ଷଣେ ଚିନ୍ତି
ଦେଖି ଅଗସ୍ତି କଲେ ସ୍ତୁତି ।
ଅଜ୍ଞାନ ତୁଚ୍ଛ-ଜାତି ନାରୀ
ଏମନ୍ତ ହୋଇଲେ ଶବରୀ ।
ଯହିଁରେ ପୂଜା କଲାମାତ୍ର
ତତ୍କାଳ ଲଭିଲେ ମୁକତି ।
ଯହିଁରେ ପଶନ୍ତେ ଚରଣେ
ନାଶ ବିପତ୍ତିଗଣ ପୁଣ ।
ସୁଗ୍ରୀବ ରାଜା ଭୋଗ କଲା
ପ୍ରାନ୍ତରେ ବୈକୁଣ୍ଠକୁ ଗଲା ।
ଯହିଁରେ କରି ଦୃଢ଼ ଭକ୍ତି
ଅଜହୁଁ ଅଛନ୍ତି ମାରୁତି ।
ଦେବତାମାନେ ଆସି ନିତି
ତାହାଙ୍କୁ ପୂଜା କରୁଛନ୍ତି ।

ଯାହାଙ୍କି ସେବା ରକ୍ଷ ହର
ମରଣନ୍ତୁ ଲେଭନ୍ତି ଭବ ।
ଇହଲୋକରେ ସୁଖେ ଥିଲେ
ସଙ୍ଗେ ସେ ବୈକୁଣ୍ଠକୁ ଗଲେ ।
ଯାହାରେ ଅସି ବିଭୀଷଣ
ପଶିଲା ମାତ୍ରକେ ଶରଣ ।
ସମସ୍ତ ଭୟ ନାଶ ଗଲା
ଅମର ହୋଇଣ ରହିଲା ।
ଶ୍ରୀରାମ ନାମ ଥିବା ଯାଏ
ରାଜ୍ୟହିଁ ଭୁଞ୍ଜିଲେ ନିଶ୍ଚୟେ ।
ନାଶିଣ ସମସ୍ତ ବିପଦ
ଲଭିଲେ ସେ ପରମପଦ ।
ଯାହାଙ୍କି ହୃଦେ କରି ଚିନ୍ତା
ରାକ୍ଷସ ପୁରେ ଥାଇ ସୀତା ।
ସମସ୍ତ ଭୟ ନାଶ କଲେ
ପୁଣି ଶ୍ରୀରାମଙ୍କୁ ଲଭିଲେ ।
ଯାହାଙ୍କି ଚିତ୍ତେ ଅନୁକ୍ଷଣ
ଶତ୍ରୁଭାବେ ଭଜି ରାବଣ ।
କଳସ ପ୍ରସାଦ ବାନ୍ଧବ
ସବୁରି ଛୁଲେ ଦଶଗ୍ରୀବ ।
ବଇକୁଣ୍ଠକୁ ସୁଖେ ଗଲା
ବିଷ୍ଣୁର ପାରିଷଦ ହେଲା ।
ଯା ସନକାଦି ମୁନିଗଣେ
ହୃଦେ ଭାବନ୍ତି ଅନୁକ୍ଷଣେ ।
କଳ୍ପବୃକ୍ଷ ପ୍ରାୟେ ଅଟଇ
ଯେ ତାହିଁ ଭକତି କରଇ ।
ତାହାରେ କାମଧେନୁ ହୋଇ
ଚିନ୍ତିତ ଫଳକୁ ଦିଅଇ ।
ଏମନ୍ତ ଯେଉଁ ରାମ ପଦ
ସେ ହେଉ ମୋ ସର୍ବସମ୍ପଦ ।

ହେ ରାମ ତ୍ରୈଲୋକ୍ୟ ଈଶ୍ୱର
ଜାନକୀ ସହିତେ ତୁମ୍ଭର ।
ଦିବ୍ୟ ପଙ୍କଜ ଚରଣରେ
ଭକତି ହେଉ ନିରନ୍ତରେ ।
ତୋ ଦାସ ଦାସର କିଙ୍କର
ଏମନ୍ତ ସାଧୁମାନଙ୍କର ।
ଚରଣମାନରେ ସନ୍ତତ
ସେବା କରୁ ମୋ ବେନି ହସ୍ତ ।
ସବୁ ଜନ୍ମରେ ଅନ ନୋହୁ
ଏ ରୂପେ ସ୍ୱାମୀ ଅଙ୍ଗ ହେଉ ।
ଏବେ ତୋ ଅଧ୍ୟାତ୍ମ ଚରିତ
କରିବି ଲଙ୍କାକାଣ୍ଡ ଗୀତ ।
ଏଥିରେ କିଛି ବିଘ୍ନ ନୋହୁ
ଉତ୍ତମ ହୋଇ ନିର୍ବହ ହେଉ ।
ହେ ସ୍ୱାମି କରୁଣାସାଗର
ଏ ମନୋରଥ ପୂର୍ଣ୍ଣ କର ।
ସୀତା ସହିତେ ଏ ନିମିତ୍ତେ
ସତତ ନମସ୍କାର ତୋତେ ।
ଭବାନୀସୁତ ଦିଗବାସ
କ୍ଷମା କର ସମସ୍ତ ଦୋଷ ।
ପାର୍ବତୀପତି ଶୂଳଧର
ଖଣ୍ଡନ୍ତୁ ବିପତ୍ତି ମୋହର ।
ମୋଠାରେ ଅନୁଗ୍ରହ କର
ତୁମ୍ଭ ଦୁହିଁଙ୍କି ନମସ୍କାର ।
ଏ କାଣ୍ଡ ସବୁ କଥାମାନ
ମୋ ମନେ ସ୍ଫୁରୁ ଦିନୁଦିନ ।
ବଡ଼ ବେଗରେ ନିର୍ବା ପାଉ
ଏ ରୂପେ ସ୍ୱାମୀ ଅଙ୍ଗ ହେଉ ।
ସୁଜନେ ଏହୁଠାରୁ ଶୁଣ
ଯୁଦ୍ଧକାଣ୍ଡ ଚରିତ ମାନ ।

ପାର୍ବତୀ ଉବାଚ

ପୁଣି ଶଙ୍କରଙ୍କୁ ଭବାନୀ
ବୋଇଲେ ଯୋଡ଼ି କର ବେନି ।
ବାରତା ପାଇ ରାମଚନ୍ଦ୍ର
କି ରୂପେ ତରିଲେ ସମୁଦ୍ର ।
କେମନ୍ତେ ଅପି ବିଭୀଷଣ
ରାମଙ୍କୁ ପଶିଲା ଶରଣ ।
କି ରୂପେ ମଲା ସେ ରାବଣ
ରାଜ୍ୟ ପାଇଲେ ବିଭୀଷଣ ।
ଅନଳ ମଧ୍ୟୁଁ ବଇଦେହୀ
ବାହାର ହୋଇଲେ କି ହୋଇ ।
କି ରୂପେ ଅଯୋଧ୍ୟାକୁ ଗଲେ
ଭରତ ଶୁଣି କି ବୋଇଲେ ।
କି ରୂପେ ହେଲେ ଅଭିଷେକ
କହ ସ୍ୱାମୀ ଏତେକ ଯାକ ।

ଶିବ ଉବାଚ

ଏମନ୍ତ ଶୁଣି କୃତ୍ତିବାସ
ହୋଇଣ ପରମ ସନ୍ତୋଷ ।
ରାମଙ୍କୁ ହୃଦେ ଚିନ୍ତା କଲେ
ଏମନ୍ତ ବଚନ କହିଲେ ।
ଶୁଣ ଗୋ ହେମାଦ୍ରି ଦୁଲାଳୀ
ଏଥିଉତ୍ତାରୁ ରାବଣାରି ।
ପରମ ହରଷ ହୋଇଲେ
ପୁଣି ଏମନ୍ତ ଆଜ୍ଞା ଦେଲେ ।
ଯେମନ୍ତ କଲେ ଏ ମାରୁତ
ଏହା ତ ଦେବେ ନ ପାରନ୍ତି ।
ଏ କଥା ଅନ ଲୋକମାନେ
ବିଚାର ନ ପାରିବେ ମନେ ।
ଶହେ ଯୋଜନ ଯେ ଅଟଇ
ସେ ସିନ୍ଧୁ ତରି କେ ପାରଇ ।
ରାକ୍ଷସମାନଙ୍କରେ ରକ୍ଷିତ
ଯେବଣ ଲଙ୍କା ସେ ଏମନ୍ତ ।
ମାରୁତ ବିନୁ ଆନ କେହୁ
ଏ ରୂପେ ତରିସି ପାରଇ ।
ନିଃଶେଷ କରିଣ ପ୍ରଭୁର
କାର୍ଯ୍ୟ ତ କଲେ କପିବର ।
ଏ ରୂପେ ଆଉ ଜଣେ କେହୁ
ସୁଗ୍ରୀବଠାରେ ଆଉ ନାହିଁ ।
ତଳେହିଁ ଏ ରୂପେ ନ ଥିବ
ଉପରେ ଏ ରୂପେ ନୋହିବ ।
ଏ ଯାହା ସୀତାଙ୍କୁ ଦେଖିଲା
ଏଥିରୁ ଏତେ କଥା ହେଲା ।
ମୋତେ ରଘୁବଂଶ ଲକ୍ଷ୍ମଣ
ସୁଗ୍ରୀବ ସହିତେ କରଣ ।
ମାରୁତ ରଖିଲେ ନିଷ୍ଟୟେ
ନାହିଁ ଏ କଥାରେ ସଂଶୟେ ।
ସୀତାଙ୍କ ଖୋଜ ଠାବ କଲା
ଏ କଥା ଉତ୍ତମ ହୋଇଲା ।
କେବଳ ମାତ୍ର ଦୁଃଖ ପୁଣି
ହେଉଛୁ ସିନ୍ଧୁ କଥା ଶୁଣି ।
କୁମ୍ଭୀର ମଗରରେ ପୂର୍ଣ୍ଣ
ଏ ରୂପେ ଯେ ଶହେ ଯୋଜନ ।
କି ରୂପେ କର ତା ତରିବ
ଶତ୍ରୁକୁ କି ରୂପେ ମାରିବା ।
ଏମନ୍ତ ବୋଇଲେ ରାଘବ
ତାହାଙ୍କୁ କହିଲେ ସୁଗ୍ରୀବ ।
ସମୁଦ୍ର ପାର ହୋଇ ଯିବା
ଲଙ୍କାହିଁ ଦଗଧ କରିବା ।
ନାଶ କରିବା ରାକ୍ଷସଙ୍କୁ
ଆପଣ ତେଜ ଏ ଚିନ୍ତାକୁ ।

ଶକ୍ତାଟି ସବୁ କାର୍ଯ୍ୟମାନ
ଜାଣଇ ଶ୍ରୀ ରଘୁନନ୍ଦନ ।
ଦେଖିବା ହେଉ ରଘୁବୀର
ସମର୍ଥ ଏ କପି ନିକର ।
ତୁମ୍ଭ ନିମିତ୍ତେ ପ୍ରାଣ ଦେବେ
ଅନଳ ହୋଇଲେ ପଡ଼ିବେ ।
ଏ ବେଳ ସିନ୍ଧୁ ହେବା ପାର
ପ୍ରଥମେ ବେଗେ ଯତ୍ନ କର ।
ଲଙ୍କା ଦେଖିବା ମାତ୍ରେ ବୀର
ଜାଣିମ ମଲ୍ଲ ଦଶଶିର ।
ଯେବେ ଆପଣ ସଂଗ୍ରାମରେ
କୋଦଣ୍ଡ ଧରି ଥିବ କରେ ।
ତେବେ ତୋ ଆଗେ ଯୋଦ୍ଧାହୋଇ
ତିନି ଭୁବନେ କେଣେ ନାହିଁ ।
ରହି ପାରିବ ରଘୁସାଇଁ
ଏ ରୂପେ ତ ମୁଁ ଦେଖୁ ନାହିଁ ।
ଯେଉଁ ଲକ୍ଷ୍ମଣ ସୀତାକାନ୍ତ
ଦେଖି ଅଛୁ ମୁଁ ଏ ନିମିତ୍ତ ।
ନିଶ୍ଚେ ଅମ୍ଭର ହେବ ଜୟ
ଏଥିରେ ନ କର ସଂଶୟ ।
ଭକ୍ତବାର୍ଯ୍ୟ ସୁଗ୍ରୀବ ବାଣୀ
ସଂଯୁତ କରି ରାମ ଶୁଣି ।
ସେ କଥା ସିଜକାର କଲେ
ମାରୁତକୁ ସେ ଆଜ୍ଞା ଦେଲେ ।
ଯେଉଣସି ପ୍ରକାରେ ବୀର
ପାରାବାରକୁ ହେବା ପାର ।
ଦେବ ଦାନବ ମାନଙ୍କର
ଦୁଃସାଧ୍ୟ ଯେଉଁ ଲଙ୍କାପୁର ।
ତହିଁ ସ୍ୱରୂପ ଏବେ ବେଗେ
କହିବା ହେଉ ଅମ୍ଭ ଆଗେ ।

ତା ଜାଣି ତହିଁକି ହେ ବୀର
କରିବାଟିକି ପ୍ରତିକାର ।
ଏହା ଶୁଣି ବିନୟ ହୋଇ
ମାରୁତ ଯୋଡ଼ି କର ଦୁଇ ।
ବୋଇଲେ ଶୁଣ ସୀତାକାନ୍ତ
କହିବ ଦେଖିଛୁ ଯେମନ୍ତ ।
ତ୍ରିକୁଟ ଶିଖେ ସେ ନଗରୀ
କନକମୟ ସେ ପାଚେରୀ
ନାନାପ୍ରକାରେ ହୋଇ ଯନ୍ତ୍ର
ତହିଁରେ ଅଛନ୍ତି ବହୁତ ।
ନିର୍ମଳ ଜଳେ ହୋଇ ପୂର୍ଣ୍ଣ
ଅଛି ବହୁତ ଜଳୀମାନ ।
ନାନାପ୍ରକାରେ ତୋଟାମାନ
ଅଛି ଯେସନେ ଇନ୍ଦ୍ରବନ ।
ପଦ୍ମ କୁମୁଦେ ହୋଇ ଯୁତ
ପୋଖରୀ ଅଛନ୍ତି ବହୁତ ।
ନାନା ବିଚିତ୍ର ଶୋଭା ବହି
ମଣିଖମ୍ବରେ ଯୁତ ହୋଇ ।
ପ୍ରାସାଦ ଜଗତି ମନ୍ଦିର
ଅନେକ ଅଛି ରଙ୍ଗଦ୍ୱାର ।
ସହସ୍ର ସହସ୍ର ମାହୁନ୍ତ
କରରେ ଧରି ନାନାଶସ୍ତ୍ର ।
ଚଢ଼ି ସମସ୍ତେ ମତ୍ତ ଦନ୍ତୀ
ପଶ୍ଚିମ ଦ୍ୱାର ଜଗିଛନ୍ତି ।
ଉତ୍ତର ଦ୍ୱାରେ ରଘୁପତି
ଅଶ୍ୱାରୋହିମାନେ ପଦାତି ।
ଘେନି ଅନେକ ଅସ୍ତ୍ର ଶସ୍ତ୍ର
ବହୁତ ଅଛନ୍ତି ଅଯୂତ ।
ଏ ରୂପେ ଶ୍ରୀରଘୁନନ୍ଦନ
ପୂର୍ବ ଦ୍ୱାରରେ ଛନ୍ତି ସୈନ୍ୟ ।

ଚୈତନ୍ୟ ସ୍ୱରୂପ ଅଟଇ
ପରମାତ୍ମା ସନାତନ ସେହୁ ।
ରାମ ସ୍ୱରୂପ ତତ୍ତ୍ୱ କର
ଜାଣଇ ଯେ ହୃଦେ ବରୀର ।
ତାହାଙ୍କୁ କଦାଚିତ ହୋଇ
ଦୁଃଖ ସମ୍ବନ୍ଧ ନ ଛୁଅଁଇ ।
ଅଟନ୍ତି କେବଳ ଆନନ୍ଦ-
ସ୍ୱରୂପ ଯେଉଁ ରାମଚନ୍ଦ୍ର ।
ତାଙ୍କର କି ଦୁଃଖ ଗୋ ସତ୍ୟ
ଏହା ବୋଲିବା କାହିଁପାଇଁ ।
ଦୁଃଖ ହରଷ ଭୟ କ୍ରୋଧ
ଲୋଭ ମୋହ ଇତ୍ୟାଦି ମଦ ।
ଏମାନ ଅଜ୍ଞାନର ଚିହ୍ନ
ଯେଉଁ ଶ୍ରୀରାମ ଚଇତନ୍ୟ ।
ସ୍ୱରୂପ ଅଟେ ତାହା ଠାଇଁ
ଏ କାହୁଁ ଅଇବ ଗୋ ସତ୍ୟ ।
ଦେହାଭିମାନୀ ଯେଉଁ ଲୋକ
ତାଠାରେ ଥାଇ ଦୁଃଖ ଶୋକ ।
ପରମାତ୍ମା ଯେ ଅଶରୀର
ଅଦ୍ୱିତୀୟ ସର୍ବାଶ୍ରୁ ତାର ।

ସୁଖ ସ୍ୱରୂପ ମାତ୍ର ତେଣୁ
ସୁଷୁପ୍ତିରେ ବୁଦ୍ଧ୍ୟାଦି ଯେଣୁ ।
ନ ଥିଲାକୁ ଦୁଃଖହିଁ ନାହିଁ
ଦୁଃଖାଦି ବୁଦ୍ଧିରୁ ହୁଅଇ ।
ସେ ପୁଣି ବୁଦ୍ଧିର ଅଧାର
ପରମାତ୍ମା ଯେ ରଘୁବୀର ।
ପୁରାଣ ପୁରୁଷ ଅଟଇ
ନିତ୍ୟ ସୁଖ ଯେ ନିତ୍ୟ ଥାଇ ।
ଚେଷ୍ଟା ନାହିଁ ହେଲେ ଏମନ୍ତ
ହେଲାକୁ ମାୟା ଗୁଣେ ଯୁକ୍ତ ।
ତାଙ୍କୁ ଅଜ୍ଞାନ ଲୋକମାନେ
ଶୁଣି ଦୁଃଖୀଏ ବୋଲି ମନେ ।
ନିତ୍ୟେ ଭାବନା କରୁଥାନ୍ତି
ସେ ସୁଖ ରୂପ ଗୋ ପାର୍ବତି ।
ସେ ପ୍ରଭୁ ଦୟାମୟ ହରି
ପରମଆତ୍ମା ଦଇତ୍ୟାରି ।
ହେ ଦୀନବନ୍ଧୁ ରଘୁବୀର
ହଳଧରର ଦୁଃଖ ହର ।
ଏ ଶଏ ତେଯାଣୋଇ ପଦ
ହେଉ ମୋ ସମସ୍ତ ସମ୍ପଦ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ମହେଶ୍ୱର ଉବାଚ

ଶିବ ବୋଇଲେ ଉମା ଶୁଣ
ଏହୁ ସମୟରେ ରାବଣ ।
ଦେବତା ମାନଙ୍କ ଦୁସ୍ତର
ଅଟଇ ଏମନ୍ତ ପ୍ରକାର ।

ମାରୁତ କର୍ମମାନ ଚିନ୍ତି
ଲଜ୍ଜେ ତଳକୁ ମୁଖ ପୋତି ।
ମନ୍ତ୍ରିମାନଙ୍କୁ ଡକାଇଣ
ଦୁଃଖିତ ହୋଇ ସେ କହିଲା ।

ଏକା ହୋଇ ମାରୁତି ଯାହା!
କଲା ଦେଖିଲଟି ତାହା ।
ଏ ଲଙ୍କା ଅଟଇ ଦୁର୍ଦ୍ଧର୍ଷ
ଏଥି ସେ ହୋଇ ପରବେଶ ।
ଜାନକୀ ସ୍ଥଳେ କଥା ହେଲା
ବହୁତ ଦଇତ ମାରିଲା ।
ମୋ ପ୍ରାଣପ୍ରିୟା ମନ୍ଦୋଦରୀ
ତା ପୁଅ ଅକ୍ଷୟକୁ ମାରି ।
ବନ ଭାଙ୍ଗି ଏ ଲଙ୍କାପୁରୀ
ପୋଡ଼ି ଦେଇ ନିଃଶେଷ କରି ।
ତୁମ୍ଭଙ୍କୁ ଅନାଦର କଲା
ସମୁଦ୍ର ଲଙ୍ଘି ପୁଣ ଗଲା ।
ବିଚାରରେ ତ ତୁମ୍ଭେମାନେ
ପଣ୍ଡିତ ଅଟ ସବୁଦିନେ ।
ଏବେ ଏଠାରେ କଲେ ଯାହା
ଆମ୍ଭର ହିତ ହେବ ତାହା ।
ବିଚାର କରି କହ ମୋତେ
ଶୁଣି ସେ ରାକ୍ଷସ ସମସ୍ତେ ।
କହିଲେ ଶୁଣ ହେ ରାବଣ
ତ୍ରୈଲୋକ୍ୟ ଯାକ ତ ଅପଣ ।
ପୂର୍ବକାଳରେ ଅଛ ଜିଣି
ଏବେ ଏ ରୂପେ କପିଁ ପୁଣି ।
ଶାର୍ବ୍‌ମଠାରେ ଲଙ୍କେଶ୍ୱର
ଅଶଙ୍କା ହେଉଛି ତୁମ୍ଭର ।
ତୁମ୍ଭ ପୁଅଟି ସଂଗ୍ରାମରେ
ଇନ୍ଦ୍ରଙ୍କୁ ବାନ୍ଧିଣ ହେଳାରେ ।
ଆଣିଲେ ଏ ଲଙ୍କାପୁରକୁ
ତୁମ୍ଭେଟି ଜିଣି କୁବେରକୁ ।
ଆଣିଲ ପୁଷ୍ପକ ବିମାନ
ଭୋଗ କରୁଛ ଦଶାନନ ।

କରିଛ କୃତାନ୍ତକୁ ଜୟ
ଖଣ୍ଡିଛ କାଳଦଣ୍ଡ ଭୟ ।
ଜିଣି ବରୁଣ ଦେବତାଙ୍କୁ
ଅନ୍ୟାନ୍ୟ ରାକ୍ଷସମାନଙ୍କୁ ।
ହୁଙ୍କାର ଗୋଟାଏ କରଣ
ଜିଣିମା ହୋଇଛ ଅପଣ ।
ମୟ ଦୈତ୍ୟଟି ଲଙ୍କସାଇଁ
ଭୟେ ତୁମ୍ଭଙ୍କୁ କନ୍ୟା ଦେଇ ।
ଦେଖିବା ହେଉ ସେ ଅଜହୁଁ
ଅଛି ତୁମ୍ଭର ବଶ ହୋଇ ।
ଅଜ ତା ଅସୁରଙ୍କ ରୀତି
କହୁ କି ହେବ ଲଙ୍କପତି ।
ଯେମନ୍ତ କଲେ ହନୁମାନ
ସେ କଥା ଅମ୍ଭ ଅଚେତନ ।
ବାନର ସିନା ଏହି ପାଇଁ
ଆପଣା ପୌରୁଷ ଦେଖାଇ ।
କି କାର୍ଯ୍ୟ ହେବ ବୋଲି ଚିନ୍ତେ
ବିଚାର କଲ ଯେ ସମସ୍ତେ ।
ଗଲା ସେ ଅମ୍ଭଙ୍କୁ ଭଣ୍ଡାଇ
ଯେବେ ଥାଆନ୍ତୁ ମନ ଦେଇ ।
ତେବେ ସେ କପିଁ ଯା'ନ୍ତା ଜୀବ
ମାରନ୍ତୁ ଅବଶ୍ୟ ଗୋସାଇଁ ।
କପି କରନ୍ତୁ ଅମ୍ଭେ ନାଶ
ଜଗତ ଯାକ ଅମନୁଷ୍ୟ ।
ଜଣକେ ଠାଏ ଠାଏ ବୀର
ଅନୁଜ୍ଞା ଦିଅ ଦଶଶିର ।
ନୋହିଲେ ଯେବେ ଅଜ୍ଞା ଦେବୁ
ସମସ୍ତେ ଏକଠାକୁ ଯିବୁ ।
ଜନିଦ୍ର ହୋଇ ଯେ ସେ ଦନ
ସେଠାରେ ଥିଲେ କୁମ୍ଭକର୍ଣ୍ଣ ।

ଏ ରୂପେ ବହୁତ ପାଇକ
ମାତଙ୍ଗ ଚଢ଼ିଣ ଅନେକ ।
ନାନା ଅୟୁଧ ଧରି କରେ
ଅଛନ୍ତି ଦକ୍ଷିଣ ଦୁଆରେ ।
ଗଡ଼ ମଧ୍ୟରେ ମତ୍ତହସ୍ତୀ
ଶତାଙ୍ଗ ତୁରଙ୍ଗ ପଦାତି ।
କୁଶଳ ନାନା ଅସ୍ତ୍ର ଶସ୍ତ୍ରେ
ଅୟୁତମାନ ଧରି ହସ୍ତେ ।
କଟି ଅଛନ୍ତି ନିରନ୍ତର
ନୋହିବ ସଂଖ୍ୟା କହି ବୀର ।
ଅପାର ଶତଘ୍ନୀମାନ
ହୋଇଛି ସବୁ ଦଗେ ପୂର୍ଣ୍ଣ ।
ସଂକ୍ରମମାନ ପୂର୍ଣ୍ଣ ହୋଇ
ବହୁତ ଅଛି ବଢ଼ୁସାଇଁ ।
ଏମନ୍ତ ହେଲେ ତହିଁ ପୁଣି
ମୁଁ ଯାହା କଲି ତାହା ଶୁଣ ।
ରାବଣ ସୈନ୍ୟ ଏକା ହୋଇ
ଚଉଠେ ମାରିଲି ଗୋସାଇଁ ।
ଲଙ୍କାଯାକ ମୁଁ ଦଗ୍ଧ କଲି
ସୁବର୍ଣ୍ଣ ପାଚେରି ଭାଙ୍ଗିଲି ।
ପୋଲି ସେତୁ ସୋପାନ କୁଳ
ଭାଙ୍ଗିଣ ଅଇଲି ସକଳ ।
ତୁମ୍ଭ ଦେଖିଲା ମାତ୍ରେ ବୀର
ଭସ୍ମ ହୋଇବ ଲଙ୍କାପୁର ।
ବହନ ଅନୁକୂଳ କର
ଯେନଣ ବାନର ନିକର ।
କବଣ ସିନ୍ଧୁ ତଟେ ଯାଇଁ
ପ୍ରବେଶ ହୋଇବା ଗୋସାଇଁ ।
ଏମନ୍ତେ ଶୁଣି ସୀତାକାନ୍ତ
ବୋଇଲେ ସୁଗ୍ରୀବକୁ ମିତ ।

ବହନ ସେନାନୀମାନଙ୍କୁ
ଅନୁଜ୍ଞା ଦିଅ ସେ ଯିବାକୁ ।
ହୋଇଛି ବିଜୟ ମୁହୂର୍ତ୍ତ
ଏହି ମୁହୂର୍ତ୍ତେ ଗଲେ ମିତ ।
ଲଙ୍କା ସହିତେ ରାକ୍ଷସଙ୍କୁ
ନାଶ କରିବା ରାବଣକୁ ।
ଦକ୍ଷିଣ ଚକ୍ଷୁ ତଳ ମୋର
ସ୍ଫୁରୁଅଛି ହେ କପିବର ।
ସୀତାଙ୍କୁ ଅଣିମା ନିଶ୍ଚୟେ
ନାହିଁ ଏ କଥାରେ ସଂଶୟେ ।
ଏବେ ଅନୁକୂଳ ବହନ
କରନ୍ତୁ ଏ ବାନର ସୈନ୍ୟ ।
ସେନାନୀମାନେ ତାହାଙ୍କର
ଗୃର ପାର୍ଶ୍ୱେ ଥାଇ ବୀର ।
ତାହାଙ୍କୁ ରକ୍ଷା କରୁଥିବେ
ଏ ରୂପେ ବାହାର ହୋଇବେ ।
ଅମ୍ଭେ ମାରୁତକ ଅବେକ୍ଷି
ବିଜେ କରିବୁ କପିସାଇଁ ।
ଲକ୍ଷ୍ମଣ ଅଙ୍ଗଦ କନ୍ଧରେ
ଅବେକ୍ଷି ଥିବେ ମୋ ପଛରେ ।
ଆପଣ ଅମ୍ଭ ସଙ୍ଗତରେ
ଥିବାକୁ ହେବ ନିରନ୍ତରେ ।
ମଇନ୍ଦ ଦ୍ୱିବିଦ ଗବୟେ
ଗବାକ୍ଷ ନଳ ନୀଳ ଗୟେ ।
ତାର-ସୁଷେଣ ଜାମ୍ବବନ୍ତ
ଏ ସେନାଧ୍ୟକ୍ଷମାନେ ମିତ ।
ଗୁରୁ ପାଶରେ ଥିବେ ରହି
ଏମନ୍ତ ରୂପେ ଆଜ୍ଞା ଦେଇ ।
ସୁଗ୍ରୀବ ଲକ୍ଷ୍ମଣର ତୁଲେ
ଏରୂପେ ବିଜେ କରି ଗଲେ ।

ହସ୍ତୀ ଅଦ୍ଭୁତ ପ୍ରାୟେ କପି
ସର୍ବେ ଅଟନ୍ତି କାମରୂପୀ ।
ନାଚନ୍ତି କୁଦନ୍ତି ଗର୍ଜନ୍ତି
ଫଳ ମୂଳ ଯେ ଖାଉଛନ୍ତି ।
ଆଜ ମାରିବା ରାବଣକୁ
କହୁଅଛନ୍ତି ଶ୍ରୀରାମଙ୍କୁ ।
ଏମନ୍ତ ପ୍ରକାରେ ସକଳେ
ଦକ୍ଷିଣ ମୁଖ ହୋଇ ଗଲେ ।
ମାରୁତି ଅଙ୍ଗଦ କାନ୍ଧରେ
ରାମ ଲକ୍ଷ୍ମଣ ସସୈନ୍ୟରେ ।
ଦିଶିଲେ କି ନକ୍ଷତ୍ର ବୃନ୍ଦ
ମଧ୍ୟେ ଉଦୟ ସୂର୍ଯ୍ୟ ଚନ୍ଦ୍ର ।
ଧରଣୀ କମ୍ପଣ ଅଛନ୍ତି
ପିଟୁ ଅଛନ୍ତି ଲାଞ୍ଜମାନ ।
ବୃକ୍ଷମାନ ଘେନି ଅଛନ୍ତି
ଗିରିମାନଙ୍କେ ଉଠୁଛନ୍ତି ।
ପବନ ବାୟୁ ବେଗବନ୍ତ
ରାମରେ ଅଟନ୍ତି ପାଳିତ ।
ଅତ୍ୟନ୍ତ ହରଷ ସେ ହୋଇ
କାହିଁରେ କ୍ଷଣେହେଁ ନ ରହି ।
ଏ ପରକାରେ ଦିବା ରାତ୍ରି
ଚଳୁଅଛନ୍ତି ଅବିରତ ।
ଅରଣ୍ୟ ଦେଖିଣ ବାନରେ
ମିଳିଲେ ଯାଇ ସିନ୍ଧୁ ତୀରେ ।
ସେଠାରେ ମାରୁତି ଅଙ୍ଗଦ
କହି ଲକ୍ଷ୍ମଣ ରାମଚନ୍ଦ୍ର ।
ଓହ୍ଲାଇ ସୁଖେ ବିଜେ କଲେ
ମିତ୍ରଙ୍କୁ ଶ୍ରୀରାମ କହିଲେ ।
ସମସ୍ତେ ସମୁଦ୍ର ତଟରେ
ପ୍ରବେଶ ହୋଇଲେ ସତ୍ବରେ ।

ଏଠାରୁ ଉପାୟ ନ କର
ଯିବାକୁ ଏ ସମୁଦ୍ର ତର ।
କାହା'ର ତ ଶକତ ନାହିଁ
ସୈନ୍ୟଙ୍କୁ ଏଠାରେ ରୁହାଇ ।
ସମୁଦ୍ର ଯେମନ୍ତେ ତରିବା
ତହିଁର ଉପାୟ କରିବା ।
ଏମନ୍ତ ଶୁଣି ରମାକାନ୍ତ
ଗରିଷ୍ଠ ବାନରେ ରକ୍ଷିତ ।
ଏମନ୍ତେ କପି ସୈନ୍ୟ ନେଲେ
ସମୁଦ୍ର ତଟେ ରୁହାଇଲେ ।
ସେମାନେ ଦେଖିଲେ ସାଗର
ଦିଶୁଛି ଅତି ଭୟଙ୍କର ।
ଲହରୀମାନ ଉଚ୍ଚ ହୋଇ
ଉଠୁଛି ଆକାଶକୁ ଛୁଇଁ ।
କୁମ୍ଭୀର ତିମିଙ୍ଗିଳ କୁଳ
ଏଥିରେ ଭୟ ଦିଶେ ଜଳ ।
ହୋଇଛି ଅତ୍ୟନ୍ତ ଗମ୍ଭୀର
ଦିଶୁଛି ଆକାଶ ପ୍ରକାର ।
ଏରୂପେ ଦେଖି ସେ ବାନରେ
ବିସ୍ମୟ କଲେ ହୃଦୟରେ ।
ଏ ଅପ କିରୂପେ ତରିବା
ଶତ୍ରୁକୁ କି ରୂପେ ମାରିବା ।
ଚିନ୍ତା କରି ସେ ଅକୂଳରେ
ବସିଲେ ରାମ ନିକଟରେ ।
କାର୍ଯ୍ୟେ ମନ୍ତ୍ରିଷ୍ୟ ହୋଇଛନ୍ତି
ଏମନ୍ତେ ଯେଉଁ ରଘୁପତି ।
ସୀତାଙ୍କୁ ଚିନ୍ତି ହୃଦୟରେ
ସନ୍ତପ୍ତ ହୋଇଣ ଦୁଃଖରେ ।
ଶୋକ କରନ୍ତେ ବହେ ଲୁହ
ସେ ପୁଣି ଅଟେ ଅଦ୍ୱିତୀୟ ।

ଚୈତନ୍ୟ ସ୍ୱରୂପ ଅଟଇ
ପରମାତ୍ମା ସନାତନ ସେହୁ ।
ରାମ ସ୍ୱରୂପ ତତ୍ତ୍ୱ କର
ଜାଣଇ ଯେ ହୃଦେ ବରୂର ।
ତାହାଙ୍କୁ କଦାଚିତ ହୋଇ
ଦୁଃଖ ସମ୍ବନ୍ଧ ନ ଛୁଅଁଇ ।
ଅଟନ୍ତି କେବଳ ଆନନ୍ଦ-
ସ୍ୱରୂପ ଯେଉଁ ରାମଚନ୍ଦ୍ର ।
ତାଙ୍କର କି ଦୁଃଖ ଗୋ ସତ୍ୟ
ଏହା ବୋଲିବା କାହିଁପାଇଁ ।
ଦୁଃଖ ହରଷ ଭୟ କ୍ରୋଧ
ଲୋଭ ମୋହ ଇତ୍ୟାଦି ମଦ ।
ଏମାନ ଅଜ୍ଞାନର ଚିହ୍ନ
ଯେଉଁ ଶ୍ରୀରାମ ଚଇତନ୍ୟ ।
ସ୍ୱରୂପ ଅଟେ ତାହା ଠାଇଁ
ଏ କାହୁଁ ଅଛିବ ଗୋ ସତ୍ୟ ।
ଦେହାଭିମାନୀ ଯେଉଁ ଲୋକ
ତାଠାରେ ଥାଇ ଦୁଃଖ ଶୋକ ।
ପରମାତ୍ମା ଯେ ଅଶରୀର
ଅଦ୍ୱିତୀୟ ସବାଶ୍ରୁ ତାର ।

ସୁଖ ସ୍ୱରୂପ ମାତ୍ର ତେଣୁ
ସୁଷୁପ୍ତିରେ ବ୍ରହ୍ମ୍ୟାଦି ଯେଣୁ ।
ନ ଥିଲେ ଦୁଃଖହିଁ ନାହିଁ
ଦୁଃଖାଦି ବୁଦ୍ଧିରୁ ହୁଅଇ ।
ସେ ପୁଣି ବୁଦ୍ଧିର ଅଧାର
ପରମାତ୍ମା ଯେ ରଘୁବୀର ।
ପୁରାଣ ପୁରୁଷ ଅଟଇ
ନିତ୍ୟ ସୁଖ ଯେ ନିତ୍ୟ ଥାଇ ।
ଚେଷ୍ଟା ନାହିଁ ହେଲେ ଏମନ୍ତ
ହେଲେ ମାୟା ଗୁଣେ ଯୁକ୍ତ ।
ତାଙ୍କୁ ଅଜ୍ଞାନ ଲୋକମାନେ
ଶୁଣି ଦୁଃଖୀଏ ବୋଲି ମନେ ।
ନିତ୍ୟେ ଭାବନା କରୁଥାନ୍ତି
ସେ ସୁଖ ରୂପ ଗୋ ପାର୍ବତି ।
ସେ ପ୍ରଭୁ ଦୟାମୟ ହରି
ପରମଆତ୍ମା ଦଇତ୍ୟାରି ।
ହେ ଦୀନବନ୍ଧୁ ରଘୁବୀର
ହଳଧରର ଦୁଃଖ ହର ।
ଏ ଶଏ ତେଷ୍ଠାଣୋଇ ପଦ
ହେଉ ମୋ ସମସ୍ତ ସମ୍ପଦ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ମହେଶ୍ୱର ଉବାଚ

ଶିବ ବୋଇଲେ ଉମା ଶୁଣ
ଏହି ସମୟରେ ରାବଣ ।
ଦେବତା ମାନଙ୍କ ଦୁସ୍ତର
ଅଟଇ ଏମନ୍ତ ପ୍ରକାର ।

ମାରୁତ କର୍ମମାନ ଶତ୍ରୁ
ଲଙ୍କେ ତଳକୁ ମୁଖ ପୋତ ।
ମନ୍ତ୍ରିମାନଙ୍କୁ ଉଚାରସ
ଦୁଃଖିତ ହୋଇ ସେ କହିଲା ।

ଏକା ହୋଇ ମାରୁତ ଯାହା!
ଭଲ ଦେଖିଲଟିକ ତାହା ।
ଏ ଲଙ୍କା ଅଟଇ ଦୁର୍ଦ୍ଧର୍ଷ
ଏଥି ସେ ହୋଇ ପରବେଶ ।
ଜାନକୀ ଭୁଲେ କଥା ହେଲା
ଚତୁର ଦଇତ ମାରଇ ।
ମୋ ପ୍ରାଣପ୍ରିୟା ମନ୍ଦୋଦରୀ
ତା ସୁଅ ଅକ୍ଷୟକୁ ମାରି ।
ବନ ଭାଙ୍ଗି ଏ ଲଙ୍କାପୁରୀ
ପୋଡ଼ି ଦେଇ ନିଃଶେଷ କରି ।
ତୁମ୍ଭଙ୍କ ଅନାଦର କଲା
ସମୁଦ୍ର ଲଙ୍ଘି ପୁଣ ଗଲା ।
ବିଚାରରେ ତ ତୁମ୍ଭେମାନେ
ପଣ୍ଡିତ ଅଟ ସବୁଦିନେ ।
ଏବେ ଏଠାରେ କଲେ ଯାହା
ଆମ୍ଭର ହିତ ହେବ ତାହା ।
ବିଚାର କରି କହ ମୋତେ
ଶୁଣି ସେ ରାକ୍ଷସ ସମସ୍ତେ ।
କୋଇଲେ ଶୁଣ ହେ ରାବଣ
ତ୍ରୈଲୋକ୍ୟ ଯାକ ତ ଆପଣ ।
ପୂର୍ବକାଳରେ ଅଛ ଜିଣି
ଏବେ ଏ ରୂପେ କପି ପୁଣି ।
ଶ୍ରୀରାମଠାରେ ଲଙ୍କେଶ୍ୱର
ଅଶଙ୍କା ହେଉଛି ତୁମ୍ଭର ।
ତୁମ୍ଭ ପୁତ୍ରଟି ସଂଗ୍ରାମରେ
ଇନ୍ଦ୍ରଙ୍କୁ ବାନ୍ଧଣ ହେଳାରେ ।
ଅଣିଲେ ଏ ଲଙ୍କାପୁରକୁ
ତୁମ୍ଭେଟି ଜିଣି କୁବେରକୁ ।
ଅଣିଲ ପୁଷ୍ପକ ବିମାନ
ଭୋଗ କରୁଛ ଦଶାନନ ।
କରୁଛ କୃତାନ୍ତକୁ ଜୟ
ଖଣ୍ଡିଛ କାଳଦଣ୍ଡ ଭୟ ।
ପୁଣି ବରୁଣ ଦେବତାଙ୍କ
ଅନ୍ୟାନ୍ୟ ରାକ୍ଷସମାନଙ୍କ ।
ହୁଙ୍କାର ଗୋଟାଏ କରଣ
ଜିଣିମା ହୋଇଛ ଆପଣ ।
ମୟ ଦୈତ୍ୟଟି ଲଙ୍କସାଇଁ
ଭୟେ ତୁମ୍ଭଙ୍କୁ କନ୍ୟା ଦେଇ ।
ଦେଖିବା ହେଉ ସେ ଅଳହ୍ନି
ଅଛୁ ତୁମ୍ଭର ବଶ ହୋଇ ।
ଅଜ ତା ଅସୁରଙ୍କ ସ୍ୱତ
କହୁ କି ହେବ ଲଙ୍କଟତ ।
ଯେମନ୍ତ କଲେ ହନୁମନ
ସେ କଥା ଅଳ୍ପ ଅଟେଟନ ।
ବାନର ସିନା ଏହ୍ନି ପାଇଁ
ଆପଣା ପୌରୁଷ ଦେଖାଇ ।
କି କାର୍ଯ୍ୟ ହେବ ବୋଲି ଶତ୍ରେ
ବିଚାର କଲ ଯେ ସମସ୍ତେ ।
ଗଲା ସେ ଆମ୍ଭଙ୍କୁ ଭଣ୍ଡାଇ
ଯେବେ ଥାଆନ୍ତୁ ମନ ଦେଇ ।
ତେବେ ସେ କପି ଯାଆନ୍ତା କାହିଁ
ମାରନ୍ତୁ ଅବଶ୍ୟ ଗୋସାଇଁ ।
କପି କରନ୍ତୁ ଅମ୍ଭେ ନାଶ
ଜଗତ ଯାକ ଅମନୁଷ୍ୟ ।
ଲକ୍ଷକେ ଠାଏ ଠାଏ ବୀର
ଅନୁଜ୍ଞା ଦିଅ ଦଶଶିର ।
ନୋହିଲେ ଯେବେ ଆଜ୍ଞା ଦେବୁ
ସମସ୍ତେ ଏକଠାକୁ ଯିବୁ ।
କନିଦ୍ର ହୋଇ ଯେ ସେ ଦିନ
ସେଠାରେ ଥିଲେ କୁମ୍ଭକର୍ଣ୍ଣ ।

ଶୁଣି ସେ ଏମନ୍ତ ବଚନ
ବୋଇଲେ ଅହେ ଦଶାନନ ।
ଏ ଯେଉଁ କର୍ମ ଆରମ୍ଭିଲ
ଏକଥା ନିଷ୍ଟୟେ କେବଳ ।
ଆପଣା ନାଶ ହେବା ପାଇଁ
କରବା ହୋଇଲ ଗୋସାଇଁ ।
ସେକାଳେ ଯାହା ସୀତାକାନ୍ତ
ତୁମ୍ଭଙ୍କୁ ନ ଦେଖିଲେ ଭ୍ରାତ ।
ଏ କଥା ଭାଗ୍ୟଟି ତୁମ୍ଭର
ଯେବେ ଦେଖନ୍ତେ ରଘୁବୀର ।
ତୁମ୍ଭଙ୍କୁ ମାରନ୍ତେ ଅବଶ୍ୟ
ରାମ ଯେ ନୁହନ୍ତି ମନୁଷ୍ୟ ।
ସାକ୍ଷାତ ନାରାୟଣ ସେହି
ଲକ୍ଷ୍ମୀ ଅଟନ୍ତି ବଇଦେହୀ ।
ରାକ୍ଷସକୁଳ ନାଶ ପାଇଁ
ସୀତାଙ୍କୁ ଆଣିଲ ବୈରାଇ ।
ମହା ମତ୍ସ୍ୟ ବିଷ ଖାଇଲେ
ଯେପରି ମରେ ଅବହେଳେ ।
ତଥା ଏ ଜାନକୀ କମିତ୍ତ
ନିଷ୍ଟେ ହୋଇବ ପ୍ରାଣେ ନାଶ ।
ଏଥି ଉତ୍ତରେ ଅଭ ପୁଣ
କି କଥା କେବଟି ରାବଣ ।
ତଥାପି ଯେବେ ନ ଜାଣିଲ
ଆପଣ ଅସଙ୍ଗତ କଲ ।
ଭଲ କରବା ତାହା ଅଟେ
ନିଶ୍ଚିନ୍ତ ହୋଇ ଥାଅ ତୁମ୍ଭେ ।
ଏ ରୂପେ ଶୁଣି ଇନ୍ଦ୍ରଜିତ
ପିତାଙ୍କୁ କହିଲ ଏମନ୍ତ ।
ଅନୁଜ୍ଞା ଦେବା ହେଉ ମୋତେ
ଲକ୍ଷ୍ମଣ ସୁଗ୍ରୀବ ସହିତେ ।
କପିମାନଙ୍କୁ ମଧ୍ୟ କର
ରାମଙ୍କୁ କ୍ଷଣକେ ସଂହାର ।
ଆସିବ ନ କର ସଂଶୟେ
ସଭାରେ ଏମନ୍ତ ସମୟେ ।
ବୈଷ୍ଣବ ଶ୍ରେଷ୍ଠ ଯେ ଅଟନ୍ତି
ଶ୍ରୀରାମ ପାଦେ ଦୃଢ଼ ଭକ୍ତି ।
ଅତ୍ୟନ୍ତ ସୁବୁଦ୍ଧି ସଜ୍ଜନ
ଏମନ୍ତ ଯେଉଁ ବିଭୀଷଣ ।
ସେ ଆସି ପ୍ରବେଶ ହୋଇଲେ
ରାଜାଙ୍କୁ ନମସ୍କାର କଲେ ।
ତାହାଙ୍କ ଅସନ୍ତୁ ନିତ୍ରନ
ଏମନ୍ତ ଆସନେ ବସିଣ ।
କୁମ୍ଭକର୍ଣ୍ଣ ଆଦ ଦଇତେ
ବେଢ଼ିଣ ଅଛନ୍ତି ସମସ୍ତେ ।
କାମାର୍ତ୍ତି କର ରାବଣକୁ
ଦେଖନ୍ତେ କହିଲେ ତାହାଙ୍କୁ ।
ଶୁଣ ମୋ ବଚନ ରଜେନ୍ଦ୍ର
ଏ କୁମ୍ଭକର୍ଣ୍ଣ ମେଘନାଦ ।
ମହାପାରଶ୍ୱ ମହୋଦର
କୁମ୍ଭ ନିକୁମ୍ଭ ବେଳବୀର ।
ଅତିକାୟ ଆଦ ସଭିଏଁ
ଶ୍ରୀରାମ ଛାମୁରେ ନିଷ୍ଟୟେ ।
ଯୁଦ୍ଧ ନିମନ୍ତେ କ୍ଷଣପତି
ଏ କେହି ସମର୍ଥ ନୁହନ୍ତି ।
ସୀତା ନାମରେ ଗ୍ରହଟିଏ
ତୁମ୍ଭଙ୍କୁ ଗ୍ରାସିଲ ନିଷ୍ଟୟେ ।
ତହିଁରୁ ଅଭ ଯେ ଆପଣ
ନିଷ୍ଟୟୁ ନୁହ ମୁକ୍ତ ପୁଣ ।
ସୀତାଙ୍କୁ ଧନ ମାନ ଦେଇ
ସହାର କରଣ ଗୋସାଇଁ ।

ସମର୍ପି ରାମଠାରେ ଦେଇ
ରହିବା ହେଉ ସୁଖୀ ହୋଇ ।
ଯେତେବେଳ ଯାକେ ରାମର
ଅତି ତୀକ୍ଷ୍ଣଶର ନିକର ।
ଲଙ୍କାରେ ପଡ଼ିଣ ରାକ୍ଷସ-
ମାନଙ୍କ ନ କରନ୍ତି ନାଶ ।
ଏଥି ଭିତରେ ରାମଠାରେ
ସୀତାଙ୍କୁ ଦିଅ ନେଇ ଖରେ ।
ଯେତେବେଳ ଯାଏ ରାଜନ
ପର୍ବତ ପ୍ରାୟେ ଦେହ ମାନ ।
ହରୀନ୍ଦ୍ର ସମାନ ଅଛନ୍ତି
ନଖରେ ଦନ୍ତରେ ଯୁଝନ୍ତି ।
ଏମନ୍ତ ରକ୍ଷ ହରି ବୀର
ନାଶ ନ କରନ୍ତି ଲଙ୍କାପୁର ।
ସୀତାଙ୍କୁ ବେଗେ ଲଙ୍କସାଇଁ
ରାମ ସମ୍ମୁଖରେ ଦିଅ ନେଇ ।
ଯେତେବେଳେହେଁ ମହେଶ ସହିତେ
ଦେବତା ଶ୍ରେଷ୍ଠମାନେ ତୋତେ ।
ସହାୟ ହେବେ ରାମଠାରୁ
ଜୀଇଁ ନ ଅସିବୁ ଯୁଦ୍ଧରୁ ।
ମହେନ୍ଦ୍ର ତୁମ୍ଭଙ୍କୁ ରାଜନ
କରି ଥିଲେହେଁ ଆଲିଙ୍ଗନ ।
ପାତାଳେ ତୁ ଲଶିଲେ ଯାଇଁ
ନ ବଞ୍ଚୁ ରାମ ଠାରୁ ଭାଇ ।
ଅଛଇ ଆପଣାର ହିତ
ଅତ୍ୟନ୍ତ ପରମ ପଥ୍ୟକ ।
ଏମନ୍ତ ପ୍ରକାରେ ବଚନ
ଶୁଣିଲା ନାହିଁ ଦଶାନନ ।
ମରିବା ଲୋକ ଯେସନେ ହୋଇ
ଉତ୍ତମ ଔଷଧି ତେଜଇ ।

କାଳବଶ ହୋଇ ରାବଣ
ନ ସହୁ ସକ୍ରୋଧ ହୋଇଣ ।
ଲକ୍ଷ୍ୟ କରି ବିଭୀଷଣଙ୍କୁ
କହିଲା ରାକ୍ଷସମାନଙ୍କୁ ।
ମୁଁ ଦେଇଅଛି ଯେଉଁ ଭୋଗ
ତହିଁ ପୁଷ୍ଟି କରଛି ଅଙ୍ଗ ।
ମୋହ ପାଖରେ ବସିଥାଇ
ମୁଁ ଏହା ହିତୈଷୀ ଅଛଇ ।
ଅମ୍ଭର ନାଶ ଏ ସନ୍ତତେ
ବିଚାର କରୁଥାଇ ଚିତ୍ତେ ।
ମିତ୍ର ଭାବରେ ଶତ୍ରୁ ଏହୁ
ଜାଣିଛି ସଂଶୟ ଯେ ନାହିଁ ।
ନାସ୍ତିକ କୃତଘ୍ନ ଅଟଇ
ଏହା ସଙ୍ଗେ ମୋ କାର୍ଯ୍ୟ ନାହିଁ ।
ଜ୍ଞାତିଙ୍କ ଠାରେ ସର୍ବଦନେ
ନାଶ ଇଚ୍ଛନ୍ତି ଜ୍ଞାତିମାନେ ।
ଏଠାରେ ଏହିମାନ ଯେବେ
ବୋଲନ୍ତା ଆନ ଜଣେ ତେବେ ।
ତାହାକୁ ଏ ଖଣ୍ଡାରେ ହାଣି
ନିଷ୍ଟେ ପକାନ୍ତି ଏହିକ୍ଷଣି ।
ରେ ଅଧମ କୁଳ ପାଂଶୁଳ
ଧିକ ହେଉ ତୁ ଏଥୁ ଚଳ ।
ନିଷ୍ଠୁର ବଚନ ରାବଣ
ବୋଲନ୍ତେ ଶୁଣି ବିଭୀଷଣ ।
ଆପଣ ଚାରି ମନ୍ତ୍ରୀ ସଙ୍ଗେ
ଉଠିଲେ ଗଦା ଘେନି ବେଗେ ।
ଆକାଶେ ରହି କ୍ରୋଧ ବହି
କହିଲେ ରାବଣଙ୍କୁ ଚାହିଁ ।
ତୁମ୍ଭର ନାଶ ନୋହୁ ବୋଲି
ପ୍ରିୟ ବଚନ ମୁଁ କହିଲି ।

ହିତ କରି ତା ନ ସେବିଲି
ଧିକାର ମୋତେ ପୁଣ କଲି ।
ଯେଉଁ ସକାଶୁ ଜ୍ୟେଷ୍ଠ ଭାଇ
ପିତାର ସମାନ ଅଟଇ ।
ଏ ବୋଲ ତୁମ୍ଭଙ୍କୁ ଗୋସାଇଁ
କହୁ ତ ମୁଁ ବୋଲିବି ନାହିଁ ।
କାଲ ଯେ ଦଶରଥ ଘରେ
ଜନ୍ମିଲେ ଶ୍ରୀରାମ ରୂପରେ ।
ସୀତା ନାମେଣ୍ଟି କାଳରାତ୍ରି
ହେଲେ ଜନକରାଜା ପୁତ୍ରୀ ।
ସେ ଦୁହେଁ ଅଇଲେ ଏଠାକୁ
ଧରଣୀ ଭାର ନାଶିବାକୁ ।
କାଲ ସକାଶୁଁ ଦଶାନନ
ନ ଶୁଣ ହିତୈଷୀ ବଚନ ।
ସବୁ କାଳରେ ରଘୁପତି
ପ୍ରକୃତ ପାରରେ ଅଛନ୍ତି ।
ସବୁର ଅନ୍ତର ବାହାରେ
ରହି ଅଛନ୍ତି ସମାନରେ ।
ସେ ନାନା ରୂପ ଭେଦ କରି ।
ନାନା ପ୍ରକାରେ ମୂର୍ତ୍ତି ଧରି ।
ପରତେ ହେଜ ଚନ୍ତ୍ର ସେହି ।
ଏକା ଅନଳ ଯେସ୍ନେ ହୋଇ ।
ଅଞ୍ଜନ ଲୋକଙ୍କ ନେତ୍ରରେ
ବିବିଧ ବୃକ୍ଷ ମାନଙ୍କରେ ।
ଅକୃତ ଭେଦମାନ ବହି
ନାନା ପ୍ରକାରେ ସେ ଦିଶଇ ।
ନିର୍ମଳ ସ୍ଫଟିକ ଯେମନ୍ତ
ଅନ୍ୟ ବର୍ଣ୍ଣ ମାନଙ୍କେ ଯୁକ୍ତ
ହେଲେ ସେ ନୀଳ ପୀତ ହୋଇ
ସମସ୍ତ ନେତ୍ରକୁ ଦିଶଇ ।
ପଞ୍ଚକୋଶର ଭେଦେ ରାମ
ଦିଶନ୍ତି ତେମନ୍ତ ଉପାମ ।
ନିତ୍ୟ ମୁକତ ହୋଇଲେଣି
ସ୍ୱମାୟା ପ୍ରତିବମ୍ବେ ପୁଣି ।
ସେ କାଳେ ପ୍ରକୃତ ପୁରୁଷ
ବ୍ୟକତ ଏ ରୂପେ ଅବଶ୍ୟ ।
ଗୁଣ ପ୍ରକାରେ ରୂପ ଧରି
ପ୍ରକୃତ ପୁରୁଷରେ କରି ।
ଜଗତ ସର୍ଜନା କରନ୍ତି
କାଳ ରୂପରେ ସଂହାରନ୍ତି ।
ସେ କାଳରୂପୀ ଭଗବାନ
ଅଟନ୍ତି ଶ୍ରୀ ରଘୁନନ୍ଦନ ।
ତୁମ୍ଭଙ୍କ ବଧ କରିବାକୁ
ବ୍ରହ୍ମା ଯେ ମାଗିଲେ ଏହାଙ୍କୁ
ତେଣୁ ସେ ରାମ ରୂପ ହେଲେ
ଏଠାକୁ ଆପଣ ଅଇଲେ ।
ଆପଣା ସଙ୍କଳ୍ପ ରାଘବ
କାହୁଁ ସେ ଅନ୍ୟଥା କରିବ ।
ତନୟ ବଳର ସହିତେ
ନିଶ୍ଚୟ ମାରିବ ସେ ତୋତେ ।
ଏ ରୂପେ ତୁମ୍ଭଙ୍କୁ ରାଘବ
ମାରୁ ଯେ ଥିବେ ଦଶଗ୍ରୀବ ।
ତାହା ମୁଁ ସହି ନ ପାରିବି
ରାମ ଛାମୁକୁ ଏଣୁ ଯିବି ।
ମୁଁ ଏବେ ଯାଉଅଛୁ ବୀର
ସୁଖେ ପୁରରେ କ୍ରୀଡ଼ାକର ।
ଏମନ୍ତ କହି ବିଭୀଷଣ
ତେଜି ମନ୍ଦିର ଦାରା ଧନ ।
ଶ୍ରୀରାମ ନାମ ଗାଇ ଗାଇ
ପରମ ସୁଖେ ସେ ଚଳଇ ।

ଶ୍ରୀରାମ ପାଦେ ସେବା ପାଇଁ
ଗଲେ ପରମ ସୁଖୀ ହୋଇ ।
ବୋଲଇ ହଳଧର ଦାସ
ସ୍ୱଜନ ଜନେ ବେଗେ ଆସ ।

ଏ ବିଭୀଷଣ ପଛେ ଯିବା
ରାମଙ୍କ ଶରଣ ପଶିବା ।
ଶତ ପଞ୍ଚାଶ ପଦ ଗୀତ
ହରୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ଶ୍ରୀମହାଦେବ ଉବାଚ

ଶଙ୍କର ବୋଲେ ଉମା ଶୁଣ
ଏଥି ଉତ୍ତାରେ ବିଭୀଷଣ ।
ଚାରି ମନ୍ତ୍ରୀଙ୍କି ଘେନି ସଙ୍ଗେ
ଆକାଶେ ରହି ରାମ ଆଗେ ।
ଉଚ୍ଚେ କହିଲେ ସେ ଏସନ
ହେ ରାମ ରାଜୀବ ଲୋଚନ ।
ତୁମ୍ଭର ବନିତା ଚୋରାଇ
ନେଇଛି ଯେଉଁ ଲଙ୍କସାଇଁ ।
ମୁଁ ସାନ ଭାଇ ତାହାଙ୍କର
ନାମ ଯେ ବିଭୀଷଣ ମୋର ।
ସେ ଭ୍ରାତା ତ୍ୟାଗ କଲା ମୋତେ
ଶରଣ ପଶିଲି ମୁଁ ତୋତେ ।
କହିଲି ହିତକଥା ତାକୁ
ସୀତାଙ୍କୁ ତୁମ୍ଭଙ୍କୁ ଦେବାକୁ ।
ଏମନ୍ତ କରି ପୁଣ ପୁଣି
କହନ୍ତେ ବହୁତ କରଣ ।
କାଳପାଶରେ ହୋଇ ବଶ
ସେ କଥା ନ ଘେନି ରାକ୍ଷସ ।
କ୍ରୋଧରେ ଖଡ଼ଗ ଧଇଲା
ମାରିବା ନିମନ୍ତେ ଧାଇଁଲା ।

ଏ ଚାରିମନ୍ତ୍ରୀଙ୍କ ତୁଲରେ
ସତ୍ୱରେ ଆସି ସେକ୍ଷଣରେ ।
ସଂସାରୁ ମୋକ୍ଷ ହୋଇବାକୁ
ଶରଣ ପଶିଲି ତୁମ୍ଭଙ୍କୁ ।
ସୁଗ୍ରୀବ ଶୁଣି ଏ ବଚନ
ବୋଇଲେ ହେ ରଘୁନନ୍ଦନ ।
ସୀତାଙ୍କୁ ଯେ ନେଲା ଚୋରାଇ
ଏ ରାକ୍ଷସ ତା ସାନ ଭାଇ ।
ଏ ବଡ଼ ମାୟାବୀ ଅଟଇ
ବିଶ୍ୱାସକୁ ଏ ଯୋଗ୍ୟ ନୋହି ।
ମନ୍ତ୍ରୀ ଅଛନ୍ତି ସଙ୍ଗତରେ
ଆୟୁଧ ମାନ ଅଛି କରେ ।
ଛିଦ୍ରକୁ ଚାହିଁ ଏ ଅବଶ୍ୟ
କରିବ ଏ ଅମ୍ଭ ବିନାଶ ।
ଏ ଘେନି ଆଜ୍ଞା ଦିଅ ଗିରେ
ଏହାକୁ ମାରନ୍ତୁ ବାନରେ ।
ଏ ରୂପେ ମନକୁ ମୋହର
ଅଛୁ ତ ଅଛି ରଘୁବୀର ।
ତୁମ୍ଭ ଶତ୍ରୁକୁ ଏ କେମନ୍ତ
ଅସୁ ଅଛି ହେ ସୀତାକାନ୍ତ ।

ଏମନ୍ତ ଶୁଣନ୍ତେ ରାଘବ
ହସି ବୋଇଲେ ହେ ସୁଗ୍ରୀବ ।
ଇଚ୍ଛା କରନ୍ତୁ ଅମ୍ଭେ ଯେବେ
ଅର୍ଦ୍ଧ ନିମିଷକରେ ତେବେ ।
ସବୁ ଲୋକପାଳମାନଙ୍କୁ
ଚଉଦ ଭୁବନ ଲୋକଙ୍କୁ ।
ସଂହାର ଅଙ୍ଗୁଳିର ଅଗ୍ରେ
ପୁଣ ଜାତ କରନ୍ତୁ ବେଗେ ।
ପ୍ରସନ୍ନ ଥରେ ମାତ୍ର ହୋଇ
ମୁଁ ତୋର ଯେ ମୋତେ ବୋଲଇ
ସମସ୍ତ ଲୋକରୁ ଅଭୟେ
ତାହାକୁ ଦଅଇ ନିଶ୍ଚୟେ ।
ଏ ରୂପେ ଅଛି ମୋର ବ୍ରତ
ଏ ଘେନ କର ଅହେ ମିତ୍ର ।
ଅଭୟ ଦେଲି ମୁଁ ତାହାକୁ
ବହନ ଘେନି ଆସ ତାକୁ ।
ସୁଗ୍ରୀବ ଶୁଣି ହରଷରେ
ବିଭୀଷଣକୁ ଆଣି ଖରେ ।
ଶ୍ରୀରାମଚରଣ ଲେ କମ
ତାଙ୍କ ଦର୍ଶନ କରାଇଲେ ।
ସାଷ୍ଟାଙ୍ଗ ଦଣ୍ଡବତ କରି
ଅଶ୍ରୁ -ଳଚକୁଳ ଧରି ।
ଅତି ଭକ୍ତିରେ ସ୍ତୁତ ହେଲା
ଶ୍ରୀରାମରୂପକୁ ଚୁହିଁଲା ।
ନବୀନଘନ ପ୍ରାୟେ ବର୍ଣ୍ଣ
ଶୋଭନ ବିଶାଳନୟନ ।
ପ୍ରସନ୍ନ ବଦନ ନଳିନ
କରରେ ଶର ଶରାସନ ।
ଅଟନ୍ତି ଅତିଅନ୍ତ ଶାନ୍ତ
ଲକ୍ଷ୍ମଣଙ୍କ ହୋଇ ସହିତ

ଏରୂପେ ଦେଖି ନୟନରେ
କରଯୁଗଳ ଦେଇ ଶିରେ ।
ହରଷେ ଗଦଗଦ ହେଲା
ସ୍ତୁତିକରି ସେ ଆରମ୍ଭିଲା ।

ବିଭୀଷଣ ଉବାଚ

ଅହେ ରାଜେନ୍ଦ୍ର ରଘୁବୀର
ତୁମ୍ଭଙ୍କୁ ମୋର ନମସ୍କାର ।
ସୀତାର ଅଟ ମନୋହର
ତୁମ୍ଭଙ୍କୁ ମୋର ନମସ୍କାର ।
ପ୍ରଚଣ୍ଡକୋଦଣ୍ଡ ଯାହାର
ସେ ଶ୍ରୀରାମଙ୍କୁ ନମସ୍କାର ।
ଭଗତ ବତ୍ସଳ ଆପଣ
ବନ୍ଦୁଛି ମୁଁ ତୁମ୍ଭଚରଣ ।
ତୁମ୍ଭେ ଅଟ ଅନନ୍ତ ଶାନ୍ତ
ତୁମ୍ଭ ପାଦକୁ ଦଣ୍ଡବତ ।
ଅପରମିତ ତେଜ ଯାର
ସେ ଶ୍ରୀରାମଙ୍କୁ ନମସ୍କାର ।
ସୁଗ୍ରୀବ ମିତ୍ର ରଘୁବୀର
ତୁମ୍ଭ ପାଦକୁ ନମସ୍କାର ।
ହେ ପ୍ରଭୁ ରଘୁବଂଶେଶ୍ୱର
ତୁମ୍ଭଙ୍କୁ ମୋର ନମସ୍କାର ।
ଜଗତ ଉତ୍ପତ୍ତି ସଂହାର
କାରଣ ଅଟ ଯେ ତହିଁର ।
ଏମନ୍ତ ଶ୍ରୀରାମଙ୍କୁ ମୋର
ଅନବରତ ନମସ୍କାର ।
ତ୍ରୈଲୋକ୍ୟ ରକ୍ଷକ ହେ ରାମ
ବନ୍ଦୁଛି ତୁମ୍ଭ ପାଦପଦ୍ମ
ଅନାଦି ପୁରୁଷ ହେ ବୀର
ତୁମ୍ଭଙ୍କୁ ମୋର ନମସ୍କାର ।

ଅତଏ ତୁ ଜଗତ ଯାଙ୍କର
କାରଣ ଅଟ ତତ୍ପର ।
ପ୍ରାନ୍ତରେ ଶ୍ରୀରଘୁନନ୍ଦନ
ଆପଣଙ୍କି ନିଦାନ ସ୍ଥାନ ।
ସ୍ୱଚ୍ଛେ ବାହାର ସୀତାକାନ୍ତ
ଚର ଅଚର ଯେତେ ଭୂତ ।
ତାହାଙ୍କ ଅନ୍ତର ବାହାରେ
ଶୋଭା ପାଉଛ ନିରନ୍ତରେ ।
ରଘୁନନ୍ଦନ ଯେଣୁ ପୁଣ
ଜଗତ ସ୍ୱରୂପ ଆପଣ ।
ଅଜ୍ଞାନ ତୁମ୍ଭର ମାୟାରେ
ହୋଇ ଆଅନ୍ତି ଯେଉଁ ନରେ ।
ଦୁରତ ଦୁଷ୍କୃତ ବଶେଣ
ଲଭନ୍ତି ସେ ଜନ୍ମ ମରଣ ।
ଜ୍ଞାନଲୋଚନେ ଯେତେଦିନ
ତୋତେ ନ ଜାଣିଥାନ୍ତି ଜନ ।
ସେଦିନ ଯାଏ ଶାମୁକରେ
ରୂପା ବୁଦ୍ଧି ହେଲା ପ୍ରକାରେ ।
ତାହାକୁ ସତ୍ୟମତ ହୋଇ
ଜଗତ ଦିଶେ ହେଉଥାଇ ।
ଏ ରୀତି ନ ଜାଣି ତୁମ୍ଭଙ୍କୁ
ବନିତା ସୁତ ମନ୍ଦିରକୁ ।
ଭଜିଲା ପ୍ରାଣୀ ପ୍ରାନ୍ତେ ପୁଣ
ଦୁଃଖଦ ଅଟଇ ସେବଣ ।
ବିଷୟମାନ ଅଛି ଯହିଁ
ରମନ୍ତି ଅତି ମୋହ ହୋଇ ।
ଇନ୍ଦ୍ର ଅନଳ ଦଣ୍ଡଧର
ନୈଋତ ବରୁଣ ସମୀର ।
ବାଇଶ୍ରବଣ ସଦାଶିବ
ଏସବୁ ଆପଣ ବୈଭବ ।

ପରମାଣୁରୁ ଅଟ ସୂକ୍ଷ୍ମ
ସ୍ଥୂଳରୁ ସ୍ଥୂଳ ଅଟ ରାମ ।
ସବୁ ଲୋକର ତୁମ୍ଭେ ପିତା
ତୁମ୍ଭେହିଁ ନିଶ୍ଚେ ମାତା ଧାତା ।
ତୁମ୍ଭର ଅଦ୍ୟ ମଧ୍ୟ ପ୍ରାନ୍ତ
ଏ ତିନି ନାହିଁ ସୀତାକାନ୍ତ ।
ସମସ୍ତଠାରେ ପରିପୂର୍ଣ୍ଣ
ଅଚ୍ୟୁତ ହେ ରଘୁନନ୍ଦନ ।
କର ପୟର ନେତ୍ର କର୍ଣ୍ଣ
ତୁମ୍ଭର ନାହାନ୍ତି ଏମାନ ।
ଶୁଣୁଛ ଦେଖୁଛ ଘେନୁଛ
ତୁମ୍ଭେହିଁ ବେଗେ ଯାଉଅଛ ।
ତୁ ପଞ୍ଚକୋଷରୁ ବାହାର
ତୁମ୍ଭେ ନିର୍ଗୁଣ ରଘୁବୀର ।
ନିର୍ବିକଳ୍ପ ତୁ ନିରାକାର
ନିଶ୍ଚେଷ୍ଟ ନିରୁପାଧି ବୀର ।
ତୁମ୍ଭର ନାହିଁ ଷଡ଼ଭାବ
ଅନାଦି ପୁରୁଷ ରାଘବ ।
ପ୍ରକୃତିରୁ ପର ଆପଣ
ମାୟାରେ ଅବୃତ୍ତ ହୋଇଣ ।
ଦିଶ ମନୁଷ୍ୟ ପ୍ରାୟେ ହୋଇ
ନିର୍ଗୁଣୀ ତୁମ୍ଭେ ତୁମ୍ଭଙ୍କୁହିଁ ।
ଜାଣିଲେ ବାଇଷ୍ଣବ ବୃନ୍ଦେ
ବସନ୍ତି ବୈକୁଣ୍ଠେ ଆନନ୍ଦେ ।
ତୋ ପାଦ ପଦ୍ମେ ସୀତାପତି
ହୋଇଲା ଯେଉଁ ଅସକତି ।
ସେ ନିଃଶ୍ରେଣୀକି ପାଇ ପୁଣ
ଜ୍ଞାନ ଯୋଗକୁ ଅରୋହଣ ।
କରିବି ଏ ରୂପେ ମୋହର
ଇଚ୍ଛା ହେଉଛି ରଘୁବୀର ।

ହେ ରଘୁପତି ତୋତେ ମୋର
ଅନବରତେ ନମସ୍କାର ।
କରୁଣାବନ୍ତ ମଧ୍ୟେ ରାମ
ତୁ ଶ୍ରେଷ୍ଠ ତୋତେ ନମୋନମ ।
ହେ ରାବଣାରି ନିରନ୍ତର
ତୁମ୍ଭଙ୍କୁ ମୋର ନମସ୍କାର ।
ମୋତେ ଏ ସଂସାର ସାଗର
ଦୁଃଖରୁ ବେଗେ ଉଦ୍ଧାକର ।
ଏମନ୍ତ ଶୁଣି ପ୍ରସନ୍ନ ହୋଇ
ଭକ୍ତବତ୍ସଳ ରଘୁସାଇଁ ।
ବୋଇଲେ କୌସଲ୍ୟା ନନ୍ଦନ
ମୁଁ ତୋତେ ହେଲି ପରସନ୍ନ ।
ମନେ କରୁରୁ ବାଞ୍ଛା ଯାହା
ସେ ବର ମାଗ ଦେବି ତାହା ।
ଶୁଣି କହିଲେ ସେ ଏମନ୍ତ
ମୁଁ ଧନ୍ୟ ହେଲି ସୀତାକାନ୍ତ ।
କୃତ୍ୟ କୃତ୍ୟହୁ ମୁଁ ହୋଇଲି
ସମସ୍ତ କାର୍ଯ୍ୟହିଁ ପ ଇଲି ।
ଦେଖି ମୁଁ ତୁମ୍ଭ ପାଦପଦ୍ମ
ମୁକ୍ତ ହୋଇଲି ହେ ଶ୍ରୀରାମ ।
ନିଶ୍ଚେ ଏ କଥାରେ ଗୋସାଇଁ
ତିଳହିଁ ସଂଶୟ ଯେ ନାହିଁ ।
ମୁଁ ଅତି ସୁକୃତ ଅଟଇ
ସତ୍ୱରଠାରୁ ଶୁଦ୍ଧ ମୁହିଁ ।
ମୋହ ସମାନ ଜଣେ କେହି
ଚଉଦ ବ୍ରହ୍ମାଣ୍ଡରେ ନାହିଁ ।
ଯେଉଁ ସକାଶୁ ରଘୁପତି
ଦର୍ଶନ କଲି ତୁମ୍ଭ ମୂର୍ତ୍ତି ।
କର୍ମବନ୍ଧର ନାଶ ପାଇ
ତୁମ୍ଭ ଭକ୍ତିରେ ଯୁକ୍ତ ହୋଇ ।

ଯେ ଜନ ଶ୍ରୀରଘୁନନ୍ଦନ
ପରମାର୍ଥ ତୋ ଯେଉଁ ଧ୍ୟାନ ।
ହେ ରାମ ଏହି କଥା ମୋତେ
ଅଜ୍ଞା ଦେବାକୁ ହେଉ ନିତ୍ୟେ ।
ଅହେ ରାଜେନ୍ଦ୍ର ରଘୁସାଇଁ
ବିପକ୍ଷ ସୁଖ ମାଗୁ ନାହିଁ ।
ତୋ ପାଦ ପଦ୍ମେ ଅସକତ
ହୋଇ ମୋରେ ଭକ୍ତି ସନ୍ତତ ।
ହେଉ ଏ ରୂପେ ଅଜ୍ଞା କର
ଏମନ୍ତ ଶୁଣି ରଘୁବୀର ।
ତାଠାରେ ଅତି ପ୍ରୀତ ହେଲେ
ସନ୍ତତ କରଣେ କହିଲେ ।
ଯେ ନିଷ୍ଟେଁ ରହସ୍ୟ ମୋହର
ତାହା କହିବା ଶୁଣ ବୀର ।
ମୋହର ଅଟନ୍ତି ଭଗତ
ସନ୍ତତ ହୋଇଥାନ୍ତି ଶାନ୍ତ ।
ଯୋଗ ଅଭ୍ୟାସ କରୁଥାନ୍ତି
କାହିଁରେ ନ କରନ୍ତି ପ୍ରୀତି ।
ଏମନ୍ତ ଲୋକଙ୍କ ହୃଦରେ
ସୀତା ସହିତେ ନିରନ୍ତରେ ।
ରହିଥାଇ ମୁଁ ପ୍ରୀତ ହୋଇ
ସଂଶୟ ଏ କଥାରେ ନାହିଁ ।
ଏ ଲୋକ ତୁ ସବୁ କାଳରେ
ଶାନ୍ତ ହୋଇଣ ସବୁଠାରେ ।
ତେଜି କାମନା କର୍ମ ମାନ
ମୋତେ ସନ୍ତତେ କର ଧ୍ୟାନ ।
ଏ ଘୋର ସଂସାର ସାଗର
ସୁଖେ ତରିବା ହେବ ବୀର ।
ଏ ସ୍ତୁତି ପ୍ରିୟ ଅଟେ ମୋର
ମୋହ ପ୍ରୀତିରେ ଯେଉଁ ନର ।

ଏ ସ୍ତବ ଲେଖିଣ ପଢ଼ିବ
କି ଅବା ଶ୍ରଦ୍ଧାରେ ଶୁଣିବ ।
ସେ ମୋର ସାଯୁଜ୍ୟ ଲଭିବ
ଏମନ୍ତ କହିଣ ରାଘବ ।
ଭକତ ଠାରେ ଭକ୍ତ ମତ
ଏମନ୍ତ ଶ୍ରୀ ଜାନକୀ କାନ୍ତ ।
ସେ ପୁଣି ଲକ୍ଷ୍ମଣଙ୍କୁ ଚାହିଁ
କହିଲେ ହସ ହସ ହୋଇ ।
ମୋ ଦରଶନ ତ ଲକ୍ଷ୍ମଣ
ଫଳ ଲଭୁ ଏ ବିଭୀଷଣ ।
ସାଗରୁ ଅଣାଇ ଉଦକ
ଏହାକୁ କର ଅଭିଷେକ ।
ଯେତେକାଳ ଏ ଚନ୍ଦ୍ରାଦିତ୍ୟ
ସ୍ଥିତ ମୋ କଥା ଥିବ ଭ୍ରାତ ।
ଲଙ୍କାରାଜ୍ୟରେ ତେତେକାଳ
କର ଏହାକୁ ମହୀପାଳ ।
କହୁ ସେ ଲକ୍ଷ୍ମଣର କରେ
ଜଳ ଅଣାଇ କଳଶରେ ।
ଲକ୍ଷ୍ମଣ ସବୁ ମନ୍ତ୍ରୀଙ୍କର
ତୁଲେ ତାହାଙ୍କୁ ରଘୁବୀର ।
ଲଙ୍କା ରାଜ୍ୟରେ ଅଭିଷେକ
କଲେ ସେ ହୋଇଣ ଉତ୍ସୁକ ।
ହରଷ କୀଶବଂଶ ହେଲେ
ରାମଙ୍କୁ ସାଧୁ ସାଧୁ କଲେ ।
ସୁଗ୍ରୀବ ଏଥୁ ଅନନ୍ତରେ
ଆନନ୍ଦ ହୋଇଣ ସ୍ନେହରେ ।
ବିଭୀଷଣକୁ ଆଲିଙ୍ଗନ
କରି ସେ କହିଲେ ଏସନ ।
ପରମାତ୍ମା ଯେ ରଘୁବୀର
ଅମ୍ଭେ ସମସ୍ତେ ତା କିଙ୍କର ।

ଶ୍ରୀରାମଠାରେ ଲଙ୍କପତି
ତୁମ୍ଭର ଅଛି ବଡ଼ଭକ୍ତି ।
ବହୁତ ଅନୁଗ୍ରହ ବୀର
ତୋ ଠାରେ ଅଛି ତାହାଙ୍କର ।
ସଭିଏ ମଧ୍ୟେ ବିଭୀଷଣ
ଅଧିକ ହୋଇଲ ଆପଣ ।
ରାବଣ ବଧ ଉପଯୁକ୍ତ
ସହାୟ ହୁଅ ଶ୍ରୀରାମଙ୍କୁ ।
ଏମନ୍ତ ଶୁଣି ବିଭୀଷଣ
କହିଲେ ସୁଗ୍ରୀବଙ୍କୁ ପୁଣ ।

ବିଭୀଷଣ ଉବାଚ

ଜଗନ୍ନାଥ ଯେ ରଘୁବୀର
ତୁମ୍ଭେ ଅମ୍ଭେ ନିଜ ତାଙ୍କର ।
ହୋଇ ପାରିବା ସାହା ହୋଇ
କେବଳ ତୁମ୍ଭ ତୁଲେ ଥାଇ
ଯେତେ ଭଗତ ଶକ୍ତି ମୋର
ସେ ଅନୁରୂପେ ଶ୍ରୀରାମର ।
କରିବି ମୁଁ ସେବକ ପଣ
ଶିବ ବୋଇଲେ ଉମା ଶୁଣ ।
ରାବଣ ବୋଲେ ଏହିକ୍ଷଣେ
ଶୁକ ନାମରେ ଚାର ଜଣେ ।
ଆସି ସେ ଆକାଶରେ ରହି
କହିଲା ସୁଗ୍ରୀବଙ୍କୁ ଚାହିଁ ।
ରାକ୍ଷସରାଜା ଯେ ରାବଣ
ତାହାଙ୍କ ଭ୍ରାତା ସେ ଅପକ୍ଷ ।
ତୁମ୍ଭଠାକୁ ସେ ଲଙ୍କପତି
ଅମ୍ଭଙ୍କୁ ପେଷିଣ ଅଛନ୍ତି ।
କର କୁଶଳ ପରଶନ
କହୁ ଅଛନ୍ତି ସେହିମାନ ।

ଏମନ୍ତ ଶୁଣନ୍ତେ ରାଘବ
ହସି ବୋଇଲେ ହେ ସୁଗ୍ରୀବ ।।
ଇଚ୍ଛା କରିବୁ ଅମ୍ଭେ ଯେବେ
ଅର୍ଦ୍ଧ ନିମିଷକରେ ତେବେ ।
ସବୁ ଲୋକପାଳମାନଙ୍କୁ
ଚଉଦ ଭୁବନ ଲୋକଙ୍କୁ ।
ସଂହାର ଅଙ୍ଗୁଳିର ଅଗ୍ରେ
ପୁଣ ଜାତ କରିବୁ ବେଗେ ।
ପ୍ରସନ୍ନ ଚିତ୍ତରେ ମାଗ ହୋଇ
ମୁଁ ତୋର ପେ ମୋତେ ବୋଲଇ
ସମସ୍ତ ଲୋକରୁ ଅଭୟେ
ତାହାକୁ ଦେଅଇ ନିଶ୍ଚୟେ ।
ଏ ରୂପେ ଅଛି ମୋର ବ୍ରତ
ଏ ଘେନି କରି ଅହେ ମିତ ।
ଅଭୟ ଦେଲି ମୁଁ ତାହାକୁ
ବହନ ଘେନି ଆସ ତାକୁ ।
ସୁଗ୍ରୀବ ଶୁଣି ହରଷରେ
ବିଭୀଷଣକୁ ଆଣି ଖରେ ।
ଶ୍ରୀରାମଚରଣ କମଳ
ତାଙ୍କୁ ଦର୍ଶନ କରାଇଲେ ।
ସାଷ୍ଟାଙ୍ଗ ଦଣ୍ଡବତ କରି
ଅଶ୍ରୁଜଳ ଆକୁଳ ଧରି ।
ଅତି ଭକ୍ତିରେ ଯୁତ ହୋଇ
ଶ୍ରୀରାମରୂପକୁ ଗ୍ରହିଲା ।
ନବୀନଘନ ପ୍ରାୟେ ବର୍ଣ୍ଣ
ଶୋଭନ ବିଶାଳନୟନ ।
ପ୍ରସନ୍ନ ବଦନ ନଳିନ
କରରେ ଶର ଶରାସନ ।
ଅନନ୍ତ ଅତିଅନ୍ତ ଶାନ୍ତ
ଲକ୍ଷ୍ମଣଙ୍କେ ହୋଇ ସଂଯୁତ
ଏରୂପେ ଦେଖି ନୟନରେ
କରଯୁଗଳ ଦେଇ ଶିରେ ।
ହରଷେ ଗଦଗଦ ହୋଇ
ସ୍ତୁତିକରି ସେ ଆରମ୍ଭିଲା ।।

### ବିଭୀଷଣ ଉବାଚ

ଅହେ ରାଜେନ୍ଦ୍ର ରଘୁବୀର
ତୁମ୍ଭଙ୍କୁ ମୋର ନମସ୍କାର ।
ସୀତାର ଅଟ ମନୋହର
ତୁମ୍ଭଙ୍କୁ ମୋର ନମସ୍କାର ।
ପ୍ରଚଣ୍ଡକୋଦଣ୍ଡ ଯାହାର
ସେ ଶ୍ରୀରାମଙ୍କୁ ନମସ୍କାର ।
ଭକତ ବତ୍ସଳ ଆପଣ
ବନ୍ଦୁଛି ମୁଁ ତୁମ୍ଭଚରଣ ।
ତୁମ୍ଭେ ଅଟ ଅନନ୍ତ ଶାନ୍ତ
ତୁମ୍ଭ ପାଦକୁ ଦଣ୍ଡବତ ।
ଅପରମିତ ତେଜ ଯାର
ସେ ଶ୍ରୀରାମଙ୍କୁ ନମସ୍କାର ।
ସୁଗ୍ରୀବ ମିତ ରଘୁବୀର
ତୁମ୍ଭ ପାଦକୁ ନମସ୍କାର ।
ହେ ପ୍ରଭୁ ରଘୁବଂଶେଶ୍ୱର
ତୁମ୍ଭଙ୍କୁ ମୋର ନମସ୍କାର ।
ଜଗତ ଉତ୍ପତ୍ତି ସଂହାର
କାରଣ ଅଟ ଯେ ତହିଁର
ଏମନ୍ତ ଶ୍ରୀରାମଙ୍କୁ ମୋର
ଅନବରତେ ନମସ୍କାର ।
ତ୍ରୈଲୋକ୍ୟ ରକ୍ଷକ ହେ ରାମ
ବନ୍ଦୁଛି ତୁମ୍ଭ ପାଦପଦ୍ମ
ଅନାଦି ପୁରୁଷ ହେ ବୀର
ତୁମ୍ଭଙ୍କୁ ମୋର ନମସ୍କାର ।

ଅଦ୍ ତୁ ଜଗତ ଯାବର
କାରଣ ଅଟ ତ ତହିଁର ।
ପ୍ରାନ୍ତରେ ଶ୍ରୀରଘୁନନ୍ଦନ
ଅପଣଟି ନିଦାନ ସ୍ଥାନ ।
ସ୍ୱଚ୍ଛେ ବାହର ସୀତାକାନ୍ତ
ଚର ଅଚର ଯେତେ ଭୂତ ।
ତାହାଙ୍କ ଅନ୍ତର ବାହାରେ
ଶୋଭୁ ପାଉଛ ନିରନ୍ତରେ ।
ରଘୁନନ୍ଦନ ଯେଣୁ ପୁଣ
ଜଗତ ସ୍ୱରୂପ ଆପଣ ।
ଅଜ୍ଞାନ ତୁମ୍ଭର ମାୟାରେ
ହୋଇ ଥାଆନ୍ତି ଯେଉଁ ନରେ ।
ଦୁରତ ଦୁଷ୍କୃତ ବଶେଣ
ଲଭନ୍ତି ସେ ଜନ୍ମ ମରଣ ।
ଜ୍ଞାନଲୋଚନେ ଯେତେଦିନ
ତୋତେ ନ ଜାଣିଥାନ୍ତି ଜନ ।
ସେଦିନ ଯାଏ ଶାମୁକରେ
ରୂପା ବୁଦ୍ଧି ହେଲା ପ୍ରକାରେ ।
ତାହାକୁ ସତ୍ୟମତ ହୋଇ
ଜଗତ ପୂତେ ହେଉଥାଇ ।
ଏ ଯେଣୁ ନ ଜାଣି ତୁମ୍ଭଙ୍କୁ
ବନିତା ସୁତ ମନ୍ଦିରକୁ ।
ଭଜିଲା ପ୍ରାଣୀ ପ୍ରନ୍ତେ ପୁଣ
ଦୁଃଖଦ ଅଟଇ ଯେବଣ ।
ବିଷୟମାନ ଅଛୁ ଯହିଁ
ରମନ୍ତି ଅତି ମୋହ ହୋଇ ।
ଇନ୍ଦ୍ର ଅନଳ ଦଣ୍ଡଧର
ନୈଋତ ବରୁଣ ସମୀର ।
ବଇଶ୍ରବଣ ସଦାଶିବ
ଏସବୁ ଆପଣ ସ୍ୱଭାବ ।

ପରମାଣୁରୁ ଅଟ ସୂକ୍ଷ୍ମ
ସ୍ଥୂଳରୁ ସ୍ଥୂଳ ଅଟ ରାମ ।
ସବୁ ଲୋକର ତୁମ୍ଭେ ପିତା
ତୁମ୍ଭେଟି ନିଶ୍ଚେ ମାତା ଧାତା ।
ତୁମ୍ଭର ଆଦ୍ୟ ମଧ୍ୟ ପ୍ରାନ୍ତ
ଏ ତିନି ନାହିଁ ସୀତାକାନ୍ତ ।
ସମସ୍ତଠାରେ ପରିପୂର୍ଣ୍ଣ
ଅଚ୍ୟୁତ ହେ ରଘୁନନ୍ଦନ ।
କର ପଦ୍ମର ନେତ୍ର କର୍ଣ୍ଣ
ତୁମ୍ଭର ନାହାନ୍ତି ଏମାନ ।
ଶୁଣୁଛ ଦେଖୁଛ ଘେନୁଛ
ତୁମ୍ଭେଟି ବେଗେ ଯାଉଅଛ ।
ତୁ ପଞ୍ଚକୋଷରୁ ବାହାର
ତୁମ୍ଭେ ନିର୍ଗୁଣ ରଘୁବୀର ।
ନିର୍ବିକଳ୍ପ ତୁ ନିରାକାର
ନିଶ୍ଚେଷ୍ଟ ନିରୁପାଧିବୀର ।
ତୁମ୍ଭର ନାହିଁ ଷଡ଼ଭାବ
ଅନାଦି ପୁରୁଷ ରାଘବ ।
ପ୍ରକୃତିରୁ ପର ଆପଣ
ମାୟାରେ ଆବୃତ୍ତ ହୋଇଣ ।
ଦିଶ ମନୁଷ୍ୟ ପ୍ରାୟେ ହୋଇ
ନିର୍ଗୁଣୀ ତୁମ୍ଭେ ତୁମ୍ଭଙ୍କୁହିଁ ।
ଜାଣିଲେ ବଇଷ୍ଣବ ବୃନ୍ଦେ
ବସନ୍ତି ବୈକୁଣ୍ଠେ ଆନନ୍ଦେ ।
ତୋ ପାଦ ପଦ୍ମେ ସୀତାପତି
ହୋଇଲା ଯେଉଁ ଅପଚିତ ।
ସେ ନିଃଶ୍ରେଣୀଙ୍କି ପାଇ ପୁଣି
ଜ୍ଞାନ ଯୋଗକୁ ଅରୋହଣ ।
କରିବି ଏ ରୂପେ ମୋହର
ଇଚ୍ଛା ହେଉଛି ରଘୁବୀର ।

ଏ ସ୍ତବ ଲେଖିବ ପଢ଼ିବ
କି ଅବା ଶ୍ରଦ୍ଧାରେ ଶୁଣିବ ।
ସେ ମୋର ସାଯୁଜ୍ୟ ଲଭିବ
ଏମନ୍ତ କହୁଣ ରାଘବ ।
ଭଗତ ଠାରେ ଭକ୍ତ ମତ
ଏମନ୍ତ ଶ୍ରୀ ଜାନକୀ କାନ୍ତ ।
ସେ ପୁଣି ଲକ୍ଷ୍ମଣଙ୍କୁ ଚାହିଁ
କହିଲେ ହସ ହସ ହୋଇ ।
ମୋ ଦରଶନ ତ ଲକ୍ଷ୍ମଣ
ଫଳ ଲଭୁ ଏ ବିଭୀଷଣ ।
ସାଗରୁ ଅଣାଇ ଉଦକ
ଏହାଙ୍କୁ କର ଅଭିଷେକ ।
ଯେତେକାଳ ଏ ଚନ୍ଦ୍ରାଦିତ୍ୟ
କ୍ଷିତି ମୋ କଥା ଥିବ ଭ୍ରାତ ।
ଲଙ୍କାରାଜ୍ୟରେ ତେତେକାଳ
କରି ଏହାଙ୍କୁ ମହୀପାଳ ।
କହି ସେ ଲକ୍ଷ୍ମଣର କରେ
ଜଳ ଅଣାଇ କଳଶରେ ।
ଲକ୍ଷ୍ମଣ ସବୁ ମନ୍ତ୍ରୀଙ୍କର
ତୁଲେ ତାହାଙ୍କୁ ରଘୁବୀର ।
ଲଙ୍କା ରାଜ୍ୟରେ ଅଭିଷେକ
କଲେ ସେ ହୋଇଣ କଉତୁକ ।
ହରଷ କୀଶଗଣ ହେଲେ
ରାମଙ୍କୁ ସାଧୁ ସାଧୁ କଲେ ।
ସୁଗ୍ରୀବ ଏଥୁ ଅନନ୍ତରେ
ଆନନ୍ଦ ହୋଇଣ ସ୍ନେହରେ ।
ବିଭୀଷଣଙ୍କୁ ଆଲିଙ୍ଗନ
କରି ସେ କହିଲେ ଏସନ ।
ପରମାତ୍ମା ଯେ ରଘୁବୀର
ଆମ୍ଭେ ସମସ୍ତେ ତା କିଙ୍କର ।
ରାମଙ୍କଠାରେ ଲଙ୍କପତି
ତୁମ୍ଭର ଅଛି ବଡ଼ଭକ୍ତି ।
ବହୁତ ଅନୁଗ୍ରହ ବୀର
ତୋ ଠାରେ ଅଛି ତାହାଙ୍କର ।
ସବୁର ମଧ୍ୟେ ବିଭୀଷଣ
ଅଧିକ ହୋଇଲ ଆପଣ ।
ରାବଣ ବଧ ଉପଯୁକ୍ତ
ସହାୟ ହୁଅ ଶ୍ରୀରାମଙ୍କ ।
ଏମନ୍ତ ଶୁଣି ବିଭୀଷଣ
କହିଲେ ସୁଗ୍ରୀବଙ୍କୁ ପୁଣ ।

ବିଭୀଷଣ ଉବାଚ

ଜଗନ୍ନାଥ ଯେ ରଘୁବୀର
ତୁମ୍ଭେ ଆମ୍ଭେ ନିଜ ତାଙ୍କର ।
ହୋଇ ପାରିବା ସାହା ହୋଇ
କେବଳ ତୁମ୍ଭ ତୁଲେ ଥାଇ
ଯେତେ ଭଗତ ଶକ୍ତି ମୋର
ସେ ଅନୁରୂପେ ଶ୍ରୀରାମର ।
କରିବି ମୁଁ ସେବକ ପଣ
ଶିବ ବୋଇଲେ ଉମା ଶୁଣ ।
ରାବଣ ବୋଲେ ଏହୁକ୍ଷଣେ
ଶୁକ ନାମରେ ଚାର ଜଣେ ।
ଆସି ସେ ଆକାଶରେ ରହି
କହିଲା ସୁଗ୍ରୀବଙ୍କୁ ଚାହିଁ ।
ରାକ୍ଷସରାଜା ଯେ ରାବଣ
ତାହାଙ୍କ ଭ୍ରାତା ସେ ଆପଣ ।
ତୁମ୍ଭଠାରୁ ସେ ଲଙ୍କପତି
ଆମ୍ଭଙ୍କୁ ପେଷିଣ ଅଛନ୍ତି ।
କରି କୁଶଳ ପରଶନ
କହି ଅଛନ୍ତି ଯେଉଁମାନ ।

ତାହା ମୋ ଠାରୁ କପିସାଇଁ
ଶୁଣିବା ହେଉ ମନଦେଇ ।
ଉତ୍ତମ କୁଳ ତ ତୁମ୍ଭର
ରାଜା ବାନର ମାନଙ୍କର ।
ଅମ୍ଭର ସମ ଭ୍ରାତା ତୁମ୍ଭେ
ତୁମ୍ଭର ଅକାର୍ଯ୍ୟ ତ ଅମ୍ଭେ ।
କୌଣସି ରୂପେ ତ ନ କଲ
ରାମପତ୍ନୀ ସିନା ହରିଲ ।
ତୁମ୍ଭର କି ଗଲା ଏଥକୁ
ଏବେ ଆପଣ କିଷ୍କିନ୍ଧ୍ୟାକୁ ।
ବାହୁଡ଼ି ଯାଅ ଯା ବହନ
ସଙ୍ଗତେ ଘେନି କପିସୈନ୍ୟ ।
ଲଙ୍କାକୁ ଆସିବାର ପାଇଁ
ଦେବତାଙ୍କର ଶକ୍ୟ ନାହିଁ ।
ଅତି ଦୁର୍ବଳଟି ବାନରେ
ସେ ଆସିବେଟି କି ପ୍ରକାରେ ।
କହନ୍ତେ ସେ ଏମନ୍ତ ତର
ମର୍କଟେ ନେଇଁ ତାକୁ ଧର ।
ଭୂମିରେ ପକାଇ ବହନ
ପ୍ରହାର କଲେ ମୁଖମାନ ।
ଶୁକ ଅନେକ ଶୋକ କଲା
ଅତ୍ୟନ୍ତ ଉଚ୍ଚରେ କହିଲା ।
ହେ ପ୍ରଭୁ ରଘୁକୁଳ ପତି
କେହି ଦୂତକୁ ନ ମାରନ୍ତି ।
ଏ ଘେନି ବହନ ଗୋସାଇଁ
ଛପିଙ୍କି ଦଅ ନିବର୍ତ୍ତାଇ ।
ଏମନ୍ତ ଶୁଣି ରଘୁବୀର
ବୋଇଲେ ଏହାକୁ ନ ମାର ।
ସେ ଶୁକ ପୁଣି ଶୂନ୍ୟେ ରହି
କହିଲା ସୁଗ୍ରୀବଙ୍କୁ ଚାହିଁ ।

ହେ ରାଜା ଯାଉଛୁ ଲଙ୍କାକୁ
କି କହିବି ମୁଁ ରାବଣକୁ
ସେ କଥା କହ କପୀଶ୍ୱର
ଶୁଣି ସୁଗ୍ରୀବ ସେ ଉତ୍ତର ।

ସୁଗ୍ରୀବ ଉବାଚ

ବୋଇଲେ କହିବୁ ଏମନ୍ତ
ଯେମନ୍ତ ବାଳି ଅମ୍ଭ ଭ୍ରାତ ।
ସେ ରୂପେ ସିନା ଲଙ୍କସାଇଁ
ଆପଣ ଅଟ ଅମ୍ଭ ଭାଇ ।
ଏଣୁ ବାହନ ପୁଜ ନାଥ
ସଙ୍ଗେ ତୁମ୍ଭଙ୍କୁ ଲଙ୍କପତ ।
ମାରବି ନିଶ୍ଚେ ଯତ୍ନ କର
ଦେଖିବା ହେବ ଯମପୁର ।
ଶ୍ରୀରାମ ରାମ କାନ୍ତାକୁ
ଯିବାକୁ ହେବ ବୈକୁଣ୍ଠକୁ ।
ପୁଣି ଶୁକ ରାମକୁ ବୋଲେ
ବାନରେ ବାନ୍ଧଣି ରଖିଲେ ।
ଶାରଣହି ଯେ ଶୁକ ତୁଲେ
ଆସିଣ ଥିଲା ରାଜା ବୋଲେ ।
ପ୍ରଥମେ ଦେଖି ବାନରଙ୍କୁ
କହିଲା ଯାଇ ରାବଣକୁ ।
ଶୁଣି ସେ ମହାଭୟ ପାଇ
ବହୁତ ନିଃଶ୍ୱାସ ପକାଇ ।
ବଡ଼ ଚିନ୍ତାରେ ଯୁକ୍ତ ହେଲା
ତଳକୁ ଅନାଇ ବସିଲା ।
ଏଥି ଉତ୍ତାରେ ରଘୁସାଇଁ
କ୍ରୋଧରେ ସମୁଦ୍ରକୁ ଚାହିଁ ।
ବେନି ଲୋଚନ ରଙ୍ଗକଲେ
ଲକ୍ଷ୍ମଣଙ୍କୁ ଚାହିଁ କହିଲେ ।

ହେ ବତ୍ସ ଦେଖ ଏ ଜଳଧି
ଅତ୍ୟନ୍ତ ଦୁଷ୍ଟ ଏ ଦୁର୍ବୁଦ୍ଧି ।
ମୁଁ ଆସି ହେଲି ଏହାଠାରେ
ଏ ମୋତେ ଦେଖା ଦେଉନାହିଁ ।
ଏମନ୍ତ ବିଚାରୁଛନ୍ତି ଶଠେ
ମନୁଷ୍ୟ ବୋଲି ସିନା ମୋତେ ।
ଋଷିଙ୍କ ମେଳେ ତ ରାଘବ
ରହୁଛି ମୋତେ କି କରିବ ।
ଏ ଯେନ ଦେଖ ଏବେ ବୀର
ଅଜ ଶୁଖାଇବି ସାଗର ।
ନିଶ୍ଚିନ୍ତ ହୋଇ ଏ ବାନରେ
ଯାଆନ୍ତୁ ଚାଲି ଚରଣରେ ।
ଲକ୍ଷ୍ମଣଙ୍କୁ କହି ଏମନ୍ତ
ରକତ ମତ କରି ନେତ୍ର ।
ଗୁଣ ଚଢ଼ାଇ କୋଦଣ୍ଡରେ
ଧରି ଅଛନ୍ତି ବାମକରେ ।
ପ୍ରଳୟକାଳ ଅଗ୍ନି ପ୍ରାୟେ
ଦିଶୁ ଅଛନ୍ତି ତେଜମୟେ ।
ଟଙ୍କାର କରି ଧନୁର୍ଗୁଣ
ବାହାର କରି ତୋଣୁ ବାଣ ।
କୋଦଣ୍ଡ ଗୁଣେ ତା ସନ୍ଧିଲେ
ପୁଣି ଏମନ୍ତ ଅଜ୍ଞା ଦେଲେ ।
ରାମର ପ୍ରାକ୍ରମ ନୟନେ
ଦେଖନ୍ତୁ ଅଜ ପ୍ରାଣୀମାନେ ।
ଏହାକୁ ଏହିକ୍ଷଣି ଭସ୍ମ
କରିବି ବୋଲନ୍ତେ ଶ୍ରୀରାମ ।
ବନଗିରିରେ ଯୁତ ହୋଇ
ଭୂମି କମ୍ପିଲା ଭୟ ପାଇ ।
ଗଗନ ସବୁ ଦିଗମାନ
ଅନ୍ଧାରେ ହୋଇଲା ଅଚ୍ଛନ୍ନ ।

ସାଗର ମହାଭୟ କଲେ
କୁଳୁ ଯୋଜନେ ଘୁଞ୍ଚିଗଲେ ।
ତିମି କୁମ୍ଭୀର ମୀନ କୁଳ
ସନ୍ତପ୍ତ ହୋଇଣ ସକଳ ।
ତ୍ରାସ ପାଇଲେ ହୃଦୟରେ
ସମୁଦ୍ର ଏହି ସମୟରେ ।
ଧରିଣ ଦିବ୍ୟ କଳେବର
ଅଛି ସମସ୍ତ ଅଳଙ୍କାର ।
ଅପଣା ତେଜେ ଦିଗ ଦିଗ
କରୁଅଛନ୍ତି ପରକାଶ ।
ବହୁତ ରତ୍ନ ଘେନି ବେଗେ
ପ୍ରବେଶ ହେଲେ ରାମ ଅଗେ ।
ପାଦତଳେ ତା ପକାଇଲେ
ଭୂମିରେ ଦଣ୍ଡବତ କଲେ ।
ରକତ ମତ ନେତ୍ର ପ୍ରାନ୍ତ
ଏମନ୍ତ ଯେଉଁ ସୀତାକାନ୍ତ ।
ତାହାଙ୍କ ମୁଖକୁ ସେ ଚାହିଁ
କହିଲେ କୃତାଞ୍ଜଳି ହୋଇ ।
ତ୍ରୈଲୋକ୍ୟ ରକ୍ଷକ ହେ ବୀର
ହେ ଜଗନ୍ନାଥ ରକ୍ଷାକର ।
ଯେବେ ଏ ଜଗତ ଅପଣ
କରିବା ହୋଇଲା ନିର୍ମାଣ ।
ସେ କାଳେ ମୋତେ ତ ଶ୍ରୀରାମ
କରିଛ ଜଡ଼ କରି ଜନ୍ମ ।
ଦେବତାରେ ନିର୍ମିତ ହୋଇ
ଯେଉଁ ସ୍ୱଭାବ ହୋଇଥାଇ ।
କେ ଅବା ସେ କଥା ରାଘବ
ଅନ୍ୟଥା କରିଣ ପାରିବ ।
ସ୍ଥୂଳ ଯେତିକି ପଞ୍ଚଭୂତ
ସେ ଜଡ଼ ଅଟେ ସ୍ୱଭାବତଃ ।

ଏମନ୍ତ ପ୍ରକାରେ ନିର୍ମାଣ
କରିବା ହୋଇଛ ଆପଣ ।
ତୁମ୍ଭ ଆଜ୍ଞାରେ ରଘୁସାଇଁ
ଲଙ୍ଘି ପାରନ୍ତ ନାହିଁ କେହି ।
ତାମସ ଅହଙ୍କାରୁ ସିନା
ସମସ୍ତ ଭୂତର ରଚନା ।
ସେହି କାରଣୁ ରଘୁପତି
ଭୂତମାନେ ଜଡ଼ ଅଟନ୍ତି ।
ତୁମ୍ଭେ ନିର୍ଗୁଣ ନିର୍ବିକାର
ଲୀଳାରେ କରୁଛ ବିହାର ।
ମାୟା ଗୁଣକୁ ଅନୁସରି
ତେଣୁ ବିରାଟ ନାମ ଧରି ।
ତୋଠାରୁ ସତ୍ତ୍ୱଗୁଣେ ରାମ
ଦେବତାମାନେ ହୋନ୍ତି ଜନ୍ମ ।
ରଜଗୁଣରେ ରଘୁପତି
ପ୍ରଜାପତିମାନେ ହୁଅନ୍ତି ।
ତମ ଗୁଣରୁ ପୁଣି ରୁଦ୍ର
ଜାତ ହୁଅନ୍ତି ରାମଚନ୍ଦ୍ର ।
ମାୟାରେ ଆଚ୍ଛାଦିତ ହୋଇ
ଲୀଳାରେ ନର ରଘୁସାଇଁ ।
ନର ଆକୃତି ଅଟୁ କହି
ସ୍ୱଭାବେ ତୁମ୍ଭେ ନିର୍ଗୁଣହିଁ ।
ସହଜେ ଜଡ଼ ମୂର୍ଖ ମୁହିଁ
ବୁଝି ମୋ ଜଡ଼ ତ ଅଟଇ ।
ଏ ଭେଦ କରି ମୁଁ କେମନ୍ତେ
ଜାଣି ପାରିବି ସ୍ୱାମୀ ତୋତେ ।
ଅହେ ଅମର ବୀରବର
ମୂର୍ଖଙ୍କୁ ପ୍ରଭୁ ମାନଙ୍କର ।
ଦଣ୍ଡ ହୋଇଲେ ରଘୁସାଇଁ
ଉତ୍ତମ ମାର୍ଗକୁ ଆଅଇ ।
ପଶୁ ସମୂହ ସେ ଯେମନ୍ତ
ଲଗୁଡ଼େ ହୁଅନ୍ତି ଆୟତ୍ତ ।
ତେମନ୍ତ ପ୍ରକାରରେ ମୁହିଁ
ଦଣ୍ଡକୁ ଯୋଗ୍ୟ ରଘୁଶାୟୀ ।
ହେ ଭକ୍ତ ବତ୍ସଳ ଈଶ୍ୱର
ହେ ଶରଣ୍ୟ ହେ ରଘୁବୀର ।
ତୁମ୍ଭର ପଙ୍କଜଚରଣେ
ଏଥି ମୁଁ ପଶିଲି ଶରଣେ ।
ଅଭୟ ଦେବା ହେଉ ମୋତେ
ଲଙ୍କା ମାର୍ଗ ମୁଁ ଦେବି ତୋତେ ।

## ଶ୍ରୀରାମ ଉବାଚ

ରାମ ବୋଇଲେ ହେ ସାଗର
ଅମୋଘ ଅମୋଘ ଏ ଶର ।
ଏ ଶର ପେଷିବି ମୁଁ କାହିଁ
ଏଥକୁ ଲକ୍ଷ ଦିଅ କହି ।
ଶୁଣି ସେ ଶ୍ରୀରାମ ଉତ୍ତର
ଦେଖି ଅମୋଘ ଦିବ୍ୟ ଶର ।
ମହା ତେଜସ୍ୱୀ ଯେ ସମୁଦ୍ର
ସେ ବୋଇଲେ ହେ ରାମଚନ୍ଦ୍ର ।
ଉତ୍ତରେ ଦ୍ରୁମ କୁଲ୍ୟ ହୋଇ
ସ୍ଥାନ ଯେ ଅଛି ରଘୁସାଇଁ ।
ପାତକୀ ତହିଁରେ ଅଛନ୍ତି
ସେ ମୋତେ ସନ୍ତତେ ବାଟନ୍ତି ।
ତହିଁରେ ପକାଅ ଏ ଶର
ପୁଣି କହିଲେ ରଘୁବୀର ।
କ୍ଷଣକ ଭିତରେ ସେ ବାଣ
ଆଭୀର ମଣ୍ଡଳ ନାଶିଣ ।
ପୁଣି ସେ ଲେଉଟି ଆଇଲା
ଶ୍ରୀରାମ ତୋଣେ ସମ୍ଭାଇଲା ।

ତହିଁ ଉତ୍ତରେ ସିନ୍ଧୁ ପୁଣ
ବହୁତ ବିନୟ ହୋଇଣ ।
କର ଯୁଗଳ ଦେଇ ଶିରେ
କହିଲେ ଶ୍ରୀରାମ ଛାମୁରେ ।
ନଳ କରେ ନୀରେ ମୋହର
ସେତୁ ବନ୍ଧାଅ ରଘୁବୀର ।
ଏ ବିଶ୍ୱକର୍ମାଙ୍କର ସୁତ
ବଡ଼ ସୁବୁଦ୍ଧି ଶୂରବନ୍ତ ।
ଏମନ୍ତ କାର୍ଯ୍ୟରେ ଗୋସାଇଁ
ପୂର୍ବେ ଏ ବର ଛନ୍ତି ପାଇ ।
ପାପନାଶନ ଅଟେ ବୀର
ଏମନ୍ତ କୀରତି ତୁମ୍ଭର ।
ସମସ୍ତ କାଳ ଅନନ୍ଦରେ
କୀର୍ତ୍ତନ କରୁଥାନ୍ତୁ ନରେ ।
ଏମନ୍ତ କହି ସେ ସାଗର
ରାମଙ୍କୁ କରି ନମସ୍କାର ।
ତ୍ରିବାର ପ୍ରଦକ୍ଷିଣ କରେ
ସେଠାରୁ ଅନ୍ତର୍ଦ୍ଧାନ ହେଲେ ।
ଶ୍ରୀରାମଚନ୍ଦ୍ର ସେ ଉତ୍ତରେ
ସୁଗ୍ରୀବ ଲକ୍ଷ୍ମଣ ତୁଲରେ ।
କପିଙ୍କ ସଙ୍ଗତେ ନଳଙ୍କୁ
ବୋଇଲେ ସେତୁ ବାନ୍ଧିବାକୁ ।
ବଡ଼ ହରଷ ନଳ ହୋଇ
କପିଙ୍କ ସଙ୍ଗତରେଁ ଯାଇ ।
ଅଣାଇ ଗିରି ବୃକ୍ଷମାନ
ଦୀର୍ଘ କରଣ ଶହେ ଯୁଣ୍ଡ ।
ପ୍ରସ୍ଥ ସ୍ଥୂଳଶ କୋଶ କଲେ
ସେତୁ ଏ ପ୍ରକାରେ ବାନ୍ଧିଲେ ।
ସୀତା ସହିତେ ଶ୍ରୀରାମର
ଚରଣ ଚିନ୍ତେ ହଳଧର ।
ଦୁଇଶତ ଏ ବୟାଳିଶ
ପଦ ଏ ଅଧ୍ୟା ଅନ୍ତରସ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

ମହାଦେବ ଉବାଚ

ପୁଣି କହିଲେ ବାମଦେବ
ଲୋକ ହିତ ପାଇଁ ରାଘବ ।
ଶ୍ରୀରାମେଶ୍ୱର ବୋଲି ଲିଙ୍ଗେ
ସେଠାରେ ପୂଜା କରି ବେଗେ ।
ଅରମ୍ଭ ସେତୁବନ୍ଧ କଲେ
ନଳ ତା ତୁରିଣ ବାନ୍ଧିଲେ ।
ସେ ରାମେଶ୍ୱର ମହେଶଙ୍କୁ
ଦର୍ଶନ କରି ଯେ ସେତୁକୁ ।
ଭକ୍ତିରେ କରି ନମସ୍କାର
ସେ ଶିବ ମହିମାରୁ ତାର ।
ବ୍ରହ୍ମହତ୍ୟାଦି ପାପ କୁଳ
ନାଶ ହୁଅଇ ତତକାଳ ।
ସେତୁବନ୍ଧରେ କରି ସ୍ନାନ
କରି ସେ ଶିବଙ୍କ ଦର୍ଶନ ।
ଯେ ପୁଣ ସଂକଳ୍ପ କରଇ
ବାରଣସୀକୁ ସେହି ଯାଇ ।

ତହିଁରୁ ଅଣି ଗଙ୍ଗୋଦକ
ରାମେଶ୍ୱରଙ୍କ ଅଭିଷେକ ।
କରି ସେ ପାଦୋଦକ ନେଇ
ସମୁଦ୍ରରେ ଯେବେ ପକାଇ ।
ତେବେ ସେ ବ୍ରହ୍ମକୁ ଲଭଇ
ସଂଶୟ ଏ କଥାରେ ନାହିଁ ।
ସେତୁବନ୍ଧକୁ ଆଦ୍ୟ ଦିନ
ବାନ୍ଧିଲେ ଚଉଦ ଯୋଜନ ।
ଦ୍ୱିତୀୟ ଦିନ କଲେ ପୁଣ
କୋଡ଼ିଏ ଯୋଜନ ପ୍ରମାଣ ।
ତୃତୀୟ ଦିନ କପିକୁଳେ
ଏକବିଂଶତ ପୂର୍ଣ କଲେ ।
ବାଇଶ ଯୋଜନ ବାନରେ
କଲେ ଚତୁର୍ଥ ଦିବସରେ ।
ତଦନ୍ତେ ସେ ପଞ୍ଚମ ଦିନ
ହୋଇଲା ତେଇଶ ଯୋଜନ ।
ଶହେ ଯୋଜନ ଏ ପ୍ରକାରେ
ନଳ କଲେ ପାଞ୍ଚ ଦିନରେ ।
ଏମନ୍ତେ ବନ୍ଧ ନିର୍ମା ହେଲା
ସୁବଳ ଶଇଳେ ଲାଗିଲା ।
ଅସଂଖ୍ୟ ହୋଇଣ ବାନରେ
ହରଷ ହୋଇ ସେ ବନ୍ଧରେ ।
କହୁ କହୁ ତୋରା ହୋଇଗଲେ
ସୁବଳ ଶଇଳେ ଉଠିଲେ ।
ମାରୁତି ଅଙ୍ଗଦ କନ୍ଧରେ
ରାମ ଲକ୍ଷ୍ମଣ ଯାଇ ଖରେ ।
ଲଙ୍କା ଦେଖିବା ପାଇଁ ବେଗେ
ବିଜେ କଲେ ସେ ନଗ ଶୃଙ୍ଗେ ।
ଦେଖିଲେ ସେ ଲଙ୍କା ନଗର
ହୋଇଛି ବହୁତ ବିସ୍ତାର ।

ନାନାବିଧ ଶଙ୍ଖ ଶଙ୍ଖ
ପତାକା ଅଛନ୍ତି ବହୁତ ।
ପ୍ରାସାଦ ବୃନ୍ଦ ରତ୍ନଯୁତ
ଏ ରୂପେ ହୋଇଛୁ ପୂରିତ ।
ସବୁହିଁ ସୁନାର ପାଚେରି
ତୋରଣମାନେ ଛନ୍ତି ପୂରି ।
ଉଲୀଣ ଭୂଅ ମାନେ ତହିଁ
ଅନେକ ଅଛି ପୂର୍ଣ୍ଣ ହୋଇ ।
ଯୁଦ୍ଧ ନିମିତ୍ତେ ସ୍ଥାନେ ସ୍ଥାନେ
ଅଛନ୍ତି ଶତଘ୍ନୀମାନେ ।
ଏକ ପ୍ରାସାଦ ଶିଖେ ତହିଁ
ବହୁତ ବିସ୍ତାରକୁ ପାଇ ।
ଅଟ୍ଟାଳି ହୋଇଛି ନିର୍ମାଣ
ତହିଁରେ ବସିଛି ରାବଣ ।
ମନ୍ତ୍ରୀମାନେ ଛନ୍ତି ପାଖରେ
ମୁକୁଟ ଅଛି ଦଶଶିରେ ।
ଶ୍ୟାମଳ ନଗ ଶୃଙ୍ଗାକାର
ଦିଶୁଛି ତାହାର ଆକାର ।
ମେଚକ ମେଘର ସମାନ
ଦିଶୁଛି ତାର ଅପଘନ ।
ରତ୍ନ ଦଣ୍ଡରେ ହୋଇ ଯୁତ
ବହୁତ ଅଛି ଶ୍ୱେତଛତ୍ର ।
ବନ୍ଧାଇ ଥିଲେ ଯେ ଶୁକକୁ
ଏମନ୍ତ ସମୟେ ତାହାକୁ ।
ଗୁଣ୍ଡ ଦିଅନ୍ତେ ବନ୍ଧୁସାଇଁ
ବାନରେ ତା ପଛେ ଗୋଡ଼ାଇ ।
ମାରୁଅଛନ୍ତି ମୁଠମାନ
ପଳାଇ ଯାଇ ସେ ବହନ ।
ରାବଣ ସମ୍ମୁରେ ମିଳିଲା
ପ୍ରଣାମ କରି ଜଣାଇଲା ।

ଯେଝେ ରାଜା ତୋ ଅଙ୍କରେ ଗଲି
ସିନ୍ଧୁ ଉତ୍ତର କୂଳେ ହେଲି ।
ସୁଗ୍ରୀବ ଅଗେ ହେ ରାଜନ
କହନ୍ତେ ତୁମ୍ଭ ଚାଣ୍ଡିମାନ ।
ବାନରେ ଧରି ନେଇ ମୋତେ
ମାରନ୍ତେ ମୁଟିଅ ନଖେ ଦନ୍ତେ ।
ରକ୍ଷ ରକ୍ଷ ମୁଁ ଶ୍ରୀରାମଙ୍କୁ
ଡାକନ୍ତେ ସେ କପିମାନଙ୍କୁ ।
ଛାଡ଼ ଦେବାକୁ ଆଜ୍ଞା ଦେଲେ
ସେମାନେ ମୋତେ ତ୍ୟାଗ କଲେ ।
ତହିଁ ଉତ୍ତାରେ କପି ସୈନ୍ୟ
ଦେଖିଣ ଭୟରେ ବହନ ।
ମୁଁ ତୁମ୍ଭ ଛାମୁକୁ ଅଇଲି
ଶୁଣ ମୁଁ ଯେମନ୍ତ ଦେଖିଲି ।
ଦେବତା ଦାନବ ଯେସନ
କପି ଦୈତ୍ୟଙ୍କର ତେସନ ।
ପ୍ରୀତ ନୋହିବ ନାହିଁ କେବେ
ଏ ଲଙ୍କା ପାଟେଶ୍ୱରଙ୍କୁ ଏବେ ।
ଅସୁଅଛନ୍ତି କପିସୈନ୍ୟ
କଥାଟିଏ କର ବହନ ।
ସୀତାଙ୍କୁ ଦିଅ ଶ୍ରୀରାମଙ୍କୁ
ନୋହିଲେ ଯୁଦ୍ଧ ଦିଅ ତାଙ୍କୁ ।
ତୁମ୍ଭ ଅଗେ ସେ ରଘୁପତି
କହିବା ପାଇଁ ବୋଲିଛନ୍ତି ।
ଯେଉଁ ବଳକୁ ଅଣେ ହରି
ସୀତାଙ୍କୁ ନେଲୁ ଚୋରି ହରି ।
ସୈନ୍ୟ ତନୟ ନାତି ସଙ୍ଗେ
ସେ ବଳ ଦେଖାଅ ତୁ ଏବେ ।
କାଲି ଲଙ୍କା କୋଣା ପାଚେରି
ଦୈତ୍ୟ ବଳ ସହିତ କରି ।

ନାଶିବ ବନ୍ଧ ବାଣଗଣ
ଦେଖିବୁ ରେ ପାପୀ ରାବଣ ।
କନିଷ୍ଠ ତୋଠାରେ ବଂଶଭଙ୍ଗ
ଦେଖାଇବ ମୋ ନିଜ ତେଜ ।
ଏଣୁକରି ତୋ ପରାକ୍ରମ
ଧରିଥା ରାକ୍ଷସ ଅଧମ ।
ପଦ୍ମନେତ୍ର ଯେ ରଘୁସାଇଁ
ନିବର୍ତ୍ତିଲେ ସେ ଏତେ କହି ।
ଏକାଠାରେ ଯେ ଗୃହଜଣ
ଦେଖିଲି ଶୁଣ ତା ଅପଣ ।
ଶ୍ରୀରାମଚନ୍ଦ୍ର ଶ୍ରୀଲକ୍ଷ୍ମଣ
ରାଜା ସୁଗ୍ରୀବ ବିଭୀଷଣ ।
ଲଙ୍କା ନାଶିବାକୁ ନିଶ୍ଚୟେ
ସମର୍ଥ ଅଟନ୍ତି ସର୍ବେଁ ଏ ।
ଉପାଡ଼ି ଭସ୍ମ ଲଙ୍କାପୁରୀ
କରିବା ପାଇଁ ଇଷ୍ଟ ହରି ।
ବାନ୍ଧୁର କର ରହିଛନ୍ତି
ଏଥକୁ ଯୋଗ୍ୟ ସେ ଅଟନ୍ତି ।
ରାମର ବଳ ରୂପ ତେଜ
ଯାହା ଦେଖିଲି ବଂଶଭଙ୍ଗ ।
ତାଙ୍କ ବିନା ସେ ନିଶ୍ଚୟେ
ଲଙ୍କାର ନାଶକୁ ଏକା ଏ ।
ଯୋଗ୍ୟ ଅଟନ୍ତି ରଘୁସାଇଁ
ସଂଶୟ ଏ କଥାରେ ନାହିଁ ।
ଦେଖିବା ହେତୁ ଦଶାନନ
ପୂରି ଅଛନ୍ତି କପି ସୈନ୍ୟ ।
ପର୍ବତ ପ୍ରାୟେ ଦେହ ମାନ
କରନ୍ତି ଘୋର ଗରଜନ ।
ସବୁ ତ ଗଣିବାକୁ ମୋର
ଶକ୍ୟ ନୋହିବ ଦଶଶିର ।

ଉହିଁରୁ ଥୋକାଏ ପ୍ରଧାନ
କହୁବ ଶୁଣ ତା ରାଜନ ।
ଯେ ନାଦ ମାନ କରୁଅଛି
ଲଙ୍କାକୁ ଚାହିଁଣ ରହୁଛି ।
ଲକ୍ଷେକ ଯୂଥପ ଏହାର
ଏ ସେନାପତି ସୁଗ୍ରୀବର ।
ନାମ ଏହାର ଅଟେ ନୀଳ
ଏହା ର ଜନକ ଅନଳ ।
ଶରୀର ଶୃଙ୍ଗର ସମାନ
ପଦ୍ମକେଶର ପ୍ରାୟେ ବର୍ଣ୍ଣ ।
ଲାଙ୍ଗୁଳ ପୁନଃ ପୁନଃ କରି
ପିଟୁଣି ଅଛି ଯେଉଁ ହରି ।
ଯୁବରାଜ ଅଙ୍ଗଦ ବୋଲି
ବୋଲାଇ ସେ ଯେ ମହାବଳୀ ।
ବାଳିର ଅଟଇ କୁମର
ଏ ବଡ଼ ପ୍ରିୟ ଶ୍ରୀରାମର ।
ଯେ ଅପି ସୀତାଙ୍କୁ ଦେଖିଲା
ତୁମ୍ଭ ପୁତ୍ରକୁ ମାରିଗଲା ।
ରାମର ବଲ୍ଲଭ ଅଟଇ
ସେ ମାରୁତି ଏ ଲଙ୍କସାଇଁ ।
ଯେ ଦିଶୁଅଛି ଅତି ଶ୍ୱେତ
ଯେସନ୍ତ ରଜତ ପର୍ବତ
ବଡ଼ ସମର୍ଥ ବୁଦ୍ଧି ବର
କର୍ଣ୍ଣରେ କହେ ସୁଗ୍ରୀବର ।
ଅସୁଛି ପୁଣି ଯାଉଅଛି
କେଶରୀ ପରାୟେ ଦିଶୁଛି ।
ଏହାର ପ୍ରାକ୍ରମକୁ କେହୁ
ସମାନ ହୋଇ ଜଣେ ନାହିଁ ।
ଲଙ୍କାକୁ ନାଶିବାର ପାଇଁ
ସମର୍ଥ ଏ ହନୁ ଅଟଇ ।

ଲଙ୍କା ଦହିଲା ପ୍ରାୟେ କରି
ଚାହୁଁଣ ଅଛି ଯେଉଁ ହରି ।
ଶରଭ ଅତିଅନ୍ତ ବୀର
କୋଟିଏ ଯୂଥପ ଏହାର ।
ଦେଖ ଏ ପନସ ଗବାକ୍ଷ
ମଇନ୍ଦ ଦ୍ୱିବିଦ ଏ ଗୟ ।
ସୁଷେଣ ତାର ଜାମ୍ବବନ୍ତ
କେଶରୀ ଏ ମାରୁତି ତାତ ।
ବିଶ୍ୱକର୍ମାର ଏ କୁମର
ସେତୁ କଲା ଏ ନଳବୀର ।
ଏ ଜଣ ଜଣକେ ଅବଶ୍ୟ
କରି ପାରନ୍ତି ଲଙ୍କା ନାଶ ।
କପିମାନଙ୍କ ବଳ ନାମ
କେ କହିବାକୁ ହେବ କ୍ଷମ ।
ସବୁରି ଅଙ୍ଗ ନଗ ସମ
ସମସ୍ତେ ଲୋଡ଼ନ୍ତି ସଂଗ୍ରାମ ।
ରାକ୍ଷସ ବଂଶ ମଧ୍ୟ କରି
ଚୂନା କରିବେ ଲଙ୍କା ପୁରୀ ।
ଏଥକୁ ସମର୍ଥ ସଭିଏଁ
ମନରେ ନ କର ସଂଶୟେ ।
ଜଣ ଜଣକେ ଏହାଙ୍କର
କହିବି ସୈନ୍ୟ ସଂଖ୍ୟା ବୀର ।
କୋଟିଏ ସହସ୍ର କାହାର
ଏଥିରେ କେଉଁ ମାନଙ୍କର ।
ତେତେକେ ନବ ପଞ୍ଚ ପଦ୍ମେ
ଗୁଣିଲେ ହେବ ଜେତେ ଜେତେ
ଶଙ୍ଖକୁ ସହସ୍ରେ ଗୁଣିବ
ଶଙ୍ଖକୁ ବୃନ୍ଦେ ଦଶଗ୍ରୀବ ।
ଗୁଣିଲେ ହେବ ଯେତେ ବୀର
ସୁଗ୍ରୀବ ମନ୍ତ୍ରୀ ମାନଙ୍କର ।

ସଇନମାନ ହେବ ଯେତେ
ଅଭ୍ର ମାନଙ୍କ ବଳ ଯେତେ ।
ତାହା ତ କହିବାକୁ ମୋର
ଶକ୍ୟ ନୋହିବ ଦଶଶିର ।
ମନୁଷ୍ୟ ନୋହେ ସୀତାକାନ୍ତ
ସେ ନାରାୟଣ ସେ ସାକ୍ଷାତ ।
ଜଗତ ସ୍ୱରୂପ ଅଟନ୍ତି
ବିସ୍ତାର ଯେଉଁ ଜ୍ଞାନଶକ୍ତି ।
ସେ ସ୍ୱରୂପଟି ବଇଦେହୀ
ନଷ୍ଟେ ଟି ଏହି ଦୁହେଁ ହୋଇ ।
ସ୍ଥାବର ଜଙ୍ଗମ ଜଗତ
କରୁଅଛନ୍ତି ନଷ୍ଟେ ଜାତ ।
ଏଣୁକରି ଏ ରାମ ସୀତା
ସମସ୍ତଙ୍କର ପିତାମାତା ।
ତାହାଙ୍କ ସଙ୍ଗେ ଦଶଗ୍ରୀବ
ବଇରୀ କି ରୂପେ ହୋଇବ ।
ଜଗତମାତା ବଇଦେହୀ
ତାହାଙ୍କୁ ନ ଜାଣି ଗୋସାଇଁ ।
ଆଣିବା ହେଲ ନୃପବର
କ୍ଷଣବିନାଶୀ ତ ସଂସାର ।
ତହିଁ ମଧ୍ୟେ ତ ଏ ଶରୀର
ଅଟଇ ତ କ୍ଷଣଭଙ୍ଗୁର ।
ତହିଁରେ ପଞ୍ଚମହାଭୂତ
ଅଛନ୍ତି ପଞ୍ଚବିଂଶ ତତ୍ତ୍ୱ ।
ମାଉଁସ ମଳ ମୂତ୍ର ହାଡ଼
ଏଣୁ ଅତି ଦୁର୍ଗନ୍ଧ ଜଡ଼ ।
ଏ ଅହଙ୍କାର ସ୍ୱରୂପହିଁ
ଦେହ ତ ଏମନ୍ତ ଅଟଇ ।
ଆତ୍ମା ତ ଶରୀରରୁ ଭିନ୍ନ
ତୁମ୍ଭର କାହିଁକି ରାଜନ ।
ଆତ୍ମା ହୋଇଛୁ ଏ ଦେହରେ
ଆପଣ ଯେଉଁ ନିମିତ୍ତରେ ।
ବ୍ରହ୍ମହତ୍ୟାଦ ଯେ ପାତକ
କରିବା ହୋଇଛ ଅନେକ ।
କରିବ ଯେଉଁ ଭୋଗମାନ
ଏମନ୍ତ ଯେଉଁ ଅଘଜନ ।
ସେ ପୁଣି ନଷ୍ଟେ ଦଶଗ୍ରୀବ
ଏଠାରେ ତ ପଡ଼ି ରହିବ ।
ସୁଖର ଦୁଃଖର କାରଣ
ସେ ଯେଉଁ ପାପପୁଣ୍ୟଗଣ ।
ଜୀବ ସଙ୍ଗେ ସେ ଯାଉଛନ୍ତି
ଦେହାଦ ଆତ୍ମାର ତ କିଛି ।
କରନ୍ତି ନାହିଁ ହେ ରାବଣ
ଯେତେକ ବେଳେ ଯାଏ ପ୍ରାଣ ।
କର୍ତ୍ତା ମୁଁ, ଶରୀର ମୋହର
ଏମନ୍ତ ବୋଲି ଯେଉଁ ନର ।
କରଇ ଆତ୍ମାକୁ ଅବଶ
ସେହି ଅଭ୍ୟାସରୁ ଅବଶ୍ୟ ।
ଲଭଇ ସେ ଜନ୍ମମରଣ
ଏ ଯେଣୁ କର ହେ ରାବଣ ।
ମମତା ଦେହାଦରୁ ପୁଣ
ଛାଡ଼ିବା ହେଲ ହେ ରାବଣ ।
ଆତ୍ମା ନିର୍ମଳ ସ୍ୱପ୍ରକାଶ
ଜ୍ଞାନ ସ୍ୱରୂପ, ନୋହେ ନାଶ ।
ଏମନ୍ତ ହେଲେ ଦଣ୍ଡଧାରୀ
ଅଜ୍ଞାନବଶରୁ ସେ କର ।
ମାୟାବନ୍ଧରୁ ସେହୁ ପାଇ
ସନ୍ତତ କର ମୋହ ଯାଇ ।
ବିଶୁଦ୍ଧ କରଣ ଆତ୍ମାକୁ
ଜାଣି ସ୍ମରଣ କର ତାକୁ ।

ବନିତା ଧନ ଘର ସୁତ
ଏଥିରେ ହୁଅ ବିରକତ ।
ନରକେ ଘୁଷୁରି କୁକ୍କୁର
ଶରୀର ଭୋଗ ଅଛି ଯାର ।
ବିବେକ ଯୁତ ନର ବୀର
ଯେ ପାଇଥିବ କଳେବର ।
ବିଶେଷେ ଥିବ ବିପ୍ର ହୋଇ
କରମ ଭୂମି ଯେ ଅଟଇ ।
ଭାରତ ଖଣ୍ଡରେ ଜନ୍ମିବ
ଶରୀର ସୁସ୍ଥ ହୋଇଥିବ ।
ତଦନ୍ତେ ବିଶେଷରେ ପୁଣ
ଜ୍ଞାନୀହିଁ ହୋଇଥିବ ପୁଣି ।
ସେ ଲୋକ ନିଜ ଏ ଶରୀର
ଭୋଗର ବଶ ହୁଏ ବୀର ?
ତୁମ୍ଭେ ତ ବ୍ରାହ୍ମଣ ରାଜନ
ବିଶ୍ରବା ଋଷିଙ୍କ ନନ୍ଦନ ।
ଅଜ୍ଞାନୀ ଲୋକ ପ୍ରାୟେ ହୋଇ
ବିଅର୍ଥ କଥାରେ ଗୋସାଇଁ ।
କାହିଁକି ଭୋଗମାନ ଚିତ୍ତେ
ଇଚ୍ଛା ତ କରୁଛ ସନ୍ତତେ ।
ତେଜି ସମସ୍ତ ସଙ୍ଗ ମାନ
ପରମାତ୍ମା ଯେ ରଘୁନନ୍ଦନ ।
ଭଗତ ଭାବେ ତାଙ୍କୁ ବାଛ
ସମସ୍ତ କାଳେ ଆଶ୍ରେ କର ।
ସୀତାଙ୍କୁ ଶ୍ରୀରାମଙ୍କୁ ଦିଅ
ସେବକ ତାଙ୍କ ପାଦେ ହୁଅ ।

ସମସ୍ତ ପାପୁଁ ମୁକ୍ତ ହୁଅ
ବିଷ୍ଣୁ ଲୋକକୁ ସୁଖେ ଯାଅ ।
ଏ କଥା ନ କଲେ ଗୋସାଇଁ
ଯହୁଁ ଲେଉଟି ଅସିନାହିଁ ।
ଏମନ୍ତ ନରକେ ଗୋସାଇଁ
ପଡ଼ିବା ହେବ ନିଷ୍ଟେ ଯାଇ ।
ହିତ ମୁଁ କହୁଅଛି ବୀର
ମୋ ବୋଲ କର ସ୍ୱୀକାର ।
ଏବେ ପ୍ରଥମେ ଦଶଶିର
ବନ୍ଦନ ସାଧୁ ସଙ୍ଗ କର ।
ଅବିଦ୍ୟା ବିନାଶ କରନ୍ତି
ଶରଣଯୋଗ୍ୟ ସେ ଅଟନ୍ତି ।
ସୁମରକତ ପରକାର
ଶରୀର ପରମ ସୁନ୍ଦର ।
ସୀତାରେ ସହିତ ଅଟନ୍ତି
କୋଦଣ୍ଡ କାଣ୍ଡ ଧରିଛନ୍ତି ।
ଯା ପାଦେ ସୁଗ୍ରୀବ ଲକ୍ଷ୍ମଣ
ସେବା କରନ୍ତି ବିଭୀଷଣ ।
ଏମନ୍ତ ରାମଙ୍କୁ ବନ୍ଦନ
ଭଜିବା ହେଜ ଦଶାନନ ।
ବୋଲେ ପଣ୍ଡିତ ହଳଧର
ହେ ରାମ କରୁଣାସାଗର ।
ଶୁଭ କହ୍ଲାର ମୂର୍ତ୍ତି ତୋର
ମୋ ହୃଦେ ରହୁ ନିରନ୍ତର ।
ଏ ଶବ୍ଦେ ଭଜନ ପଦ
ଛାଡୁ ମୋ ସମସ୍ତ ଆପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।

# ପଞ୍ଚମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଶଙ୍କର ଏଥୁ ଅନନ୍ତରେ
କହୁଛନ୍ତି ପାର୍ବତୀ ଆଗରେ ।
ନାଶଇ ଯେ ଘୋର ଅଜ୍ଞାନ
ଏମନ୍ତ ସେ ଶୁକ ବଚନ ।
ରାବଣ ଶୁଣି କ୍ରୋଧେ ପୂରି
କହିଲା ନେତ୍ର ରଙ୍ଗ କରି ।
ଏତେ ଦୁର୍ବୁଦ୍ଧି ହେଲୁ ଶୁକ
ଆମ୍ଭର ହୋଇ ତୁ ସେବକ ।
ମନରେ ଭୟକୁ ନ ଧରି
କହୁଛୁ ଗୁରୁ ପ୍ରାୟେ କରି ।
ଆମ୍ଭେ ତ ଅତ୍ୟନ୍ତ ବୀର
ଦଣ୍ଡକରତା ତ୍ରିଲୋକର ।
ଏରୂପେ ଶିକ୍ଷା ଦେଉ ମୋତେ
ସଙ୍କୋଚ ପାଉ ନାହୁଁ ଚିତ୍ତେ ।
ବଧକୁ ଯୋଗ୍ୟ ତୁ ନିଶ୍ଚୟେ
ହାଣନ୍ତି ତୋତେ ଏହି ଠାଏ ।
କେବଳ ପୂର୍ବ ଉପକାର
ସୁମରି ରଖିଲି ଏଥର ।
ଏଠାରୁ ଯା ତୁ ଏ କଥାହିଁ
ଶୁଣିବା ଉଚିତ ନୁହଇ ।
ଶୁକ ଯେ ଭୟେ କମ୍ପୁଥିଲା
'ଯେମନ୍ତ ଆଜ୍ଞା' ବୋଲି ଗଲା ।
ଶୁକ ଜନନାସ୍ତ ହୋଇଣ
ପୂର୍ବେ ହୋଇଥିଲା ବ୍ରାହ୍ମଣ ।
ସେ ବାନପ୍ରସ୍ଥ ଦୀକ୍ଷା ବହି
ବନରେ ତପ କରୁଥାଇ ।
ଦେବତାଙ୍କର ବୃଦ୍ଧି ହେବ
ରାକ୍ଷସ କୁଳ ନାଶ ଯିବ ।

ଯେଣୁ ଦେବଙ୍କ ହିତ କଲା
ତେଣୁ ଦୈତ୍ୟଙ୍କ ଶତ୍ରୁ ହେଲା
ଶୁକକୁ ମାରିବାର ପାଇଁ
ରାକ୍ଷସ ବଜ୍ରଦଂଷ୍ଟ୍ର ଯାଇ ।
ଅନ୍ତବରତେ ସେ ଅସୁର
ଛିଦ୍ରକୁ ଚାହିଁ ଥାଇ ତାର ।
ଅଗସ୍ତ୍ୟ ଏକ ଦିବସରେ
ମିଳିଲେ ଶୁକ ଆଶ୍ରମରେ ।
ତାହାଙ୍କୁ ଦେଖି ବେଗେ ଶୁକ
ପୂଜା ସେ କରିଣ ଅନେକ ।
ଅନ୍ନ ଭୋଜନ କରିବାକୁ
କରନ୍ତେ ନିମନ୍ତ୍ରଣ ତାଙ୍କୁ ।
ମୁନି ତା ସ୍ୱୀକାର କଲେ
ନଦୀକି ସ୍ନାନ କରି ଗଲେ ।
ଏହି ସମୟେ ସେ ରାକ୍ଷସ
ଧରିଣ ଅଗସ୍ତ୍ୟଙ୍କ ବେଶ ।
ପ୍ରବେଶ ଶୁକଠାରେ ହେଲା
ତାହାଙ୍କୁ ଏମନ୍ତ କହିଲା ।
ଅପାର କାଳୁ ହେଲା ଅନ୍ନ
ନ କରି ଅଛୁ ମୁଁ ଭୋଜନ ।
ଏଣୁ ସେ ସଙ୍ଗତେ ଅବଶ୍ୟ
ମିଶାଇ ଦେବ ଛେଳି ମାଂସ ।
ଶୁକ ତା ସ୍ୱୀକାର କଲେ
ବହୁତ ମାଂସ ରନ୍ଧାଇଲେ ।
ଅଗସ୍ତ୍ୟ ଆସି ଯେତେବେଳେ
ଭୋଜନ ନିମିତ୍ତେ ବସିଲେ ।
ସେ କାଳେ ବଜ୍ରଦଂଷ୍ଟ୍ର ପୁଣି
ସେ ଶୁକ ଭାର୍ଯ୍ୟା ସ୍ୱରୂପେଣ ।

ବଡ଼ ସୁନ୍ଦର ହୋଇଅଛୁ
ମୁନିଙ୍କି ମୋହ କରାଉଛୁ ।
ଏମନ୍ତ ରୂପେ ସେ ରାକ୍ଷସ
ସୁପକ୍ୱ କଲା ନରମାଂସ ।
ଅନ୍ନ ସଙ୍ଗତେ ତାଙ୍କୁ ଦେଲା
ସେଠାରୁ ଅନ୍ତର୍ଦ୍ଧାନ ହେଲା ।
ମଣିଷ ମାଂସ ତ ଅମେଧ୍ୟ
ଦେଖି ତା ହୋଇ ଅତି କ୍ରୋଧ ।
ଅଗସ୍ତ୍ୟ ବୋଇଲେ ଶୁକକୁ
ବ୍ରାହ୍ମଣ ହୋଇଣ ଅମ୍ଭଙ୍କୁ ।
ଦେଲୁ ଅଭକ୍ଷ୍ୟ ନର ମାଂସ
ଖାଉଥା ହୋଇ ତୁ ରାକ୍ଷସ ।
ଶୁକ ଏରୂପେ ଶାପ ପାଇ
ମହା ଭୟରେ ଯୁକ୍ତ ହୋଇ ।
ମୁନିଙ୍କି ବୋଇଲା ଯେ ପୁଣ
ଅପଣ ଅସି ଏହୁକ୍ଷଣ ।
ମୋତେ ତ ମାଂସକୁ ମାଗିଲ
ଦେଲକୁ କିମ୍ପା ଶାପ ଦେଲ ।
ଶୁଣି ଅଗସ୍ତ୍ୟ ମହାଋଷି
ମୁହୂର୍ତ୍ତି ମାତ୍ର ଧ୍ୟାନେ ବସି ।
ରାକ୍ଷସ କଲବ ଜାଣିଲେ
ପୁଣି ସେ ଶୁକକୁ କହିଲେ ।
ଘୋର ଶତ୍ରୁ ଯେଉଁ ଦଇତ୍ୟ
ମାୟାରେ କଲା ସେ ଏମନ୍ତ ।
ଅମ୍ଭେ ତା ବିଚାର ନ କଲୁ
ଏ ପ୍ରକାରେ ତ ଶାପ ଦେଲୁ ।
ମୋ ବୋଲ ଆନ ତ ନୋହିବ
ଏଣୁ ଏମନ୍ତ କଷ୍ଟେ ହେବ ।
ରାବଣଠାରେ ମନ୍ତ୍ରୀ ହୋଇ
ଥାଅ ରାକ୍ଷସ ଦେହ ବହି ।

ଶ୍ରୀରାମ ଯେଉଁ ସମୟରେ
ରାବଣ ବଧ ନିମିତ୍ତରେ ।
ସଙ୍ଗତେ ଘେନି ବାନରଙ୍କୁ
ଆସିବେ ଲଙ୍କା କଟକକୁ ।
ସେକାଳେ ରାବଣ ତୁମ୍ଭଙ୍କୁ
ଗୁପ୍ତ ଚର ରାମ ଛାମୁକୁ ।
ପଠାଇବେ ତୁ ବେଗେ ଯିବୁ
ଦେଖି ଏ ଶାପ ମୁକ୍ତ ହେବୁ ।
ସେଠାରୁ ଆସି ଦଶାନନ
ଆଗରେ କହି ତତ୍ତ୍ୱଜ୍ଞାନ ।
ସଂସାର କଷ୍ଟୁ ମୁକ୍ତ ହେବୁ
ପରମ ପଦହିଁ ଲଭିବୁ ।
ଏମନ୍ତ କହନ୍ତେ ଅଗସ୍ତ୍ୟ
ଶୁକ ଚଳିଲେ ହୋଇ ଦୈତ୍ୟ ।
ଥିଲା ଯେ ସେ ରାବଣଠାରେ
ଯାଇଣ ଗୁପ୍ତ ସ୍ୱରୂପରେ ।
ଦେଖି ସେ ରାମ ଲକ୍ଷ୍ମଣଙ୍କୁ
ଜ୍ଞାନ କହିଲା ରାବଣକୁ ।
ପୂର୍ବପ୍ରାୟ ବ୍ରାହ୍ମଣ ହେଲା
ଋଷିଙ୍କ ସଙ୍ଗତେ ରହିଲା ।
ରାବଣଠାରେ ଏଥୁ ଅନ୍ତେ
ବଡ଼ ସୁବୁଦ୍ଧି ନୀତି ଶାସ୍ତ୍ରେ ।
ନିପୁଣ, ବୃଦ୍ଧ ଅତିଅନ୍ତ
ଆପଣା ଅଜା ମାଲ୍ୟବନ୍ତ ।
ସେ ଅସି ମିଳିଲେ ବହନ
ଅତି ତୀବ୍ର ଯେ ଦଶାନନ ।
ତାହାଙ୍କୁ ଶାନ୍ତଅସ୍ଥା ହୋଇ
ବୋଇଲେ ଯୋଡ଼ି କର ଦୁଇ ।
ହେ ରାଜା ଶୁଣ ମୋ ଉତ୍ତର
ଯେମନ୍ତ ଇଚ୍ଛା ତାହା କର ।

ଯେଉଁଦନ୍ତ ରାମକାନ୍ତାଙ୍କୁ
ଅଣିମା ହୋଇଲ ଲଙ୍କାକୁ ।
ସେହୁ ଦିନରୁ ହେ ରାଜନ
ନାଶର ହେତୁ ଯେଉଁ ଚିହ୍ନ ।
ସେ ଘୋର ଉତପାତମାନ
ଦେଖୁଅଛଇ ପ୍ରତଦିନ ।
ମୁଁ ଏବେ କହୁବ ସେମାନ
ଶୁଣି ତା ହୋଇ ସାବଧାନ ।
ଜଳଦବୃନ୍ଦ ପ୍ରତଦିନ
କରଣ ଭୟଦ ଗର୍ଜନ ।
ସନ୍ତତେ ବେଢ଼ି ଲଙ୍କାପୁର
ବର୍ଷୁଛନ୍ତି ଉଷ୍ଣ ରୁଧିର ।
ପ୍ରତମାମାନେ ହେଲେ ଶୀର୍ଣ୍ଣ
ବହୁଛି ଅଙ୍ଗୁ ଝାଳମାନ ।
କମ୍ପାଉଛନ୍ତି ଅପଘନ
ଉଠନ୍ତି ଛାଡ଼ି ସିଂହାସନ ।
ସ୍ତ୍ରିୟା ଗୋଟାଏ କୃଷ୍ଣବର୍ଣ୍ଣ
ଶ୍ୱେତବର୍ଣ୍ଣ ତା ଦନ୍ତମାନ ।
ଦାନ୍ତ ନିକଟି ସେ ହସଇ
ଅଗରେ ଛିଡ଼ାହୋଇ ଥାଇ ।
ଗାଈଙ୍କଠାରୁ ଲଙ୍କପତ
ଗଧ ଜନମ ହେଉଛନ୍ତି ।
ନକୁଳ ମାର୍ଜାର ସଙ୍ଗତେ
ମୂଷିକ ଯୁଝୁଛନ୍ତି ନିତ୍ୟେ ।
ଗରୁଡ଼ ପକ୍ଷୀଙ୍କ ସଙ୍ଗରେ
ସର୍ପ ଯୁଝନ୍ତି ନିରନ୍ତରେ ।
ଜଲଗ୍ନ କରାଳ ପ୍ରଚଣ୍ଡ
କୃଷ୍ଣ ପିଙ୍ଗଳ ଲଣ୍ଡାମୁଣ୍ଡ ।
ଏମନ୍ତ ପ୍ରକାରରେ ବେଶ
ହୋଇଣ ଯେ କାଳସ୍ୱରୂପ ।

ସବୁର ମନ୍ଦରମାନରେ
ବୁଲୁଛି ପ୍ରତ ଦିବସରେ ।
ଏହୁ ବାହାରେ ଉତପାତ
ଅଧୁର ହେଉଛି ବହୁତ ।
ଏ ଯେବେ କୁଳରକ୍ଷା ପାଇ
ଶାନ୍ତ କରଅ ଲଙ୍କସାଇଁ ।
ସତ୍କାର କରଣ ସୀତାଙ୍କୁ
ବହନ ଦିଅ ଶ୍ରୀରାମଙ୍କୁ ।
ରାମଙ୍କୁ ବିଷ୍ଣୁ କର ଜାଣ
ତାʼଠାରୁ ଛାଡ଼ ଶତ୍ରୁପଣ ।
ଯାହାର ପାଦଭେଳା ବୀର
ଅଶେ କର ଜ୍ଞାନୀ ନିକର ।
ଭକ୍ତିରେ ପବିତ୍ର ହୁଅନ୍ତି
ସଂସାର ସାଗରୁ ତରନ୍ତି ।
ଏଣୁକରି ହେ ଲଙ୍କପତ
ଶ୍ରୀରାମ ମନୁଷ୍ୟ ନୁହନ୍ତି ।
ସମସ୍ତ ହୃଦରେ ଅଛନ୍ତି
ଏମନ୍ତ ଯେଉଁ ସୀତାପତ ।
ତାହାଙ୍କ ଭକ୍ତିରେ କଳଙ୍କେ
ଅପକ୍ଷ ଦୁରଦୃଷ୍ଟ ହେଲେ ।
ଭକ୍ତିରେ କର ଦଶଗ୍ରୀବ
ନିଷ୍ଠୟେ ପବିତ୍ର ହୋଇବ ।
ହେବାକୁ କୁଳର କୁଶଳ
କରବା ହେଉ ମୋର ବୋ ।
ହୃତ କଥାହିଁ ଶୁଣି ପୁଣ
କାଳବଶରୁ ସେ ରାବଣ ।
ସେ କଥା ସହୁ ନ ପାରଲେ
ବଡ଼ କ୍ରୋଧ ହୋଇ କହୁଲେ ।
ରାମ ତ ମନୁଷ୍ୟ ଅଟଇ ।
ଦୁଃଖୀ ସେ ଅଛୁ ଏକା ହୋଇ ।

ଅଶେଷ କରନ୍ତି ବାନରଙ୍କୁ
ଅଯୋଗ୍ୟ ବୋଲି ପିତା ତାଙ୍କୁ ।
ଦେଲନ୍ତି ତ ବାହାର କରି
ଏ ଯେଣୁ ମୁନିବେଶ ଧରି ।
ଋଷିଙ୍କ ତୁଲେ ପ୍ରୀତ ହୋଇ
ଅରଣ୍ୟ ମଧ୍ୟେ ଅଛି ରହି ।
ଏମନ୍ତ ରାମଙ୍କୁ ଆପଣ
ସମର୍ଥ କରି କପି ମଣ ।
ନିଷ୍ଠୁରେ ତୁମ୍ଭଠାରୁ ଦୂତ
ପଠିଅଛନ୍ତି ସୀତାକାନ୍ତ ।
ଏ ଯେଣୁ ଅନର୍ଗଳ କରି
ଛନ୍ତିଛ ତାହା ପକ୍ଷଧରି ।
ଆପଣ ପ୍ରିୟ ବନ୍ଧୁ ମୋର
ଅତ୍ୟନ୍ତ ଜୀର୍ଣ୍ଣ କଳେବର ।
ଏ ଯେଣୁ ସହିଲି ଏମାନ ।
ମୋ ଅଗ୍ରୁ ଯାଅ ଯା ବହନ ।
ଶୁଣନ୍ତେ ତୁମ୍ଭର ବଚନ
ପୋଡ଼ି ଉଠୁଛି ଅମ୍ଭ କର୍ଣ୍ଣ ।
ମାଲ୍ୟବନ୍ତଙ୍କୁ ଏହା କହି
ସର୍ବ ମନ୍ତ୍ରୀଙ୍କ ତୁଲେ ଯାଇ ।
ବସି ସେ ଜଗତୀ ଉପରେ
କପି ସୈନ୍ୟଙ୍କୁ ଦେଖି ଖରେ ।
ବୋଇଲେ ରାକ୍ଷସମାନଙ୍କୁ
ତାଙ୍କ ସଙ୍ଗତେ ଯୁଝିବାକୁ ।
ଏହି ସମୟେ ସୀତାକାନ୍ତ
ଲକ୍ଷ୍ମଣ ତୁଲେ ହୋଇ ଯୁକ୍ତ ।
କୋଦଣ୍ଡ କାଣ୍ଡ ଅଛି କରେ
ଦେଖିଲେ ଜଗତୀ ଉପରେ ।
ସୁଖରେ ବସିଛି ରାବଣ
ପାଶେ ଅଛନ୍ତି ମନ୍ତ୍ରୀଗଣ ।
ମୁକୁଟ ଦଶଶିରେ ଯୁତ
ବହୁତ ଅଛି ଶ୍ୱେତଛତ୍ର ।
ଶ୍ରୀରାମ ଦେଖନ୍ତେ ଏମନ୍ତ
କ୍ରୋଧରେ ହୋଇ ଅଣାୟତ୍ତ ।
ବିନ୍ଧିଲେ ଅର୍ଦ୍ଧଚନ୍ଦ୍ର ବାଣ
ଦଶ ମୁକୁଟ ଛତ୍ରଗଣ ।
କାଟିଲେ ଅର୍ଦ୍ଧ ନିମିଷକେ
ଅଦ୍ଭୁତ ହେଲା ସେ ତ୍ରୈଲୋକ୍ୟେ ।
ସେଠାରୁ ଲଙ୍କପାଳ ପୁଣ
ପୁରକୁ ଯାଇଣ ରାବଣ ।
ପ୍ରହସ୍ତ ଆଦି ରାକ୍ଷସଙ୍କୁ
କପିଙ୍କ ସଙ୍ଗେ ଯୁଝିବାକୁ ।
ଯାଅ ବୋଲିଣ ଆଜ୍ଞାଦେଲେ
ସେମାନେ ବେଗେ ସଜ ହେଲେ ।
ଭେରୀ ମୃଦଙ୍ଗାଦି ଆନକ
ପଣବ ଗୋମୁଖୀ ଅନେକ ।
ଏରୂପେ ଯେତେ ବାଦ୍ୟମାନ
ସମସ୍ତ ବଜାଇ ବହନ ।
ମହିଷ ଗଧ ଓଟମାନ
କେଶରୀ ଶାର୍ଦ୍ଦୂଳ ବାହନ ।
କାର୍ମୁକ ଶୂଳ ପାଶ ଶର
ଅଙ୍କୁଶ ଖଡ଼୍ଗ ତୋମର ।
ଖଡ଼ଗ ଲଗୁଡ଼ ଏମାନ
ଘେନି ସମସ୍ତ ରକ୍ଷଗଣ ।
ସଂଗ୍ରାମ ନିମିତ୍ତେ ଲଙ୍କାରୁ
ବାହାର ହେଲେ ଶୀଘ୍ର ଦ୍ୱାରୁ ।
ଅଗ ଭର ସେ ବାନରଙ୍କୁ
ଲଙ୍କା କଟକେ ବେଢ଼ିବାକୁ ।
ଅନୁଜ୍ଞା ଦେଇଥିଲେ ରାମ
ପାଷାଣ ନଗ ଶୃଙ୍ଗ ଦ୍ରୁମ ।

ଅନେକ ସେନା ସେ ସମସ୍ତେ
ଶ୍ରୀରାମର ପ୍ରୀତି ନିମନ୍ତେ ।
ଦେଖିଲେ ଦଇତ୍ୟନିକରେ
ଉଠିଲେ ଲଙ୍କା ପାଚେରିରେ ।
କାହାର ଶହେ ଯୂଥପତି
କାହାର ସହସ୍ରେ ଅଛନ୍ତି ।
କୋଟିଏ କେଉଁମାନଙ୍କର
ଶତ କୋଟିଏ ବା କାହାର ।
କେ ଧାଇଁ କେ ଡେଇଁ ଆସନ୍ତି
କେ ଶିର ମାରି କେ ନାଚନ୍ତି
ହସୁ ଅଛନ୍ତି ଗାଉଛନ୍ତି
ଚରଣ ଘାତେ କମ୍ପେ କ୍ଷିତି ।
ନିକୁଟି ଅଛନ୍ତି ଦଶନ
ତରାଟୁ ଅଛନ୍ତି ନୟନ ।
ପ୍ରଳୟକାଳ ଘନ ଯେସନ୍ତେ
ଗର୍ଜନ କରୁଛନ୍ତି ତେସନ୍ତେ ।
ଅତିବଳ ଯେ ରଘୁପତି
ସେ ଜୟଯୁକ୍ତ ହୋଇଛନ୍ତି ।
ମହାବଳ ଯେ ସଉମିତ୍ରୀ
ସେ ଜୟଯୁକ୍ତ ହୋଇଛନ୍ତି ।
ରାମରେ ପାଳିତ ହୋଇଣ
ରାଜା ଯେ ସୁଗ୍ରୀବ ସେ ପୁଣ ।
ଜୟରେ ଯୁକ୍ତ ହୋଇଛନ୍ତି
ସମସ୍ତେ ଏମନ୍ତ ବୋଲନ୍ତି ।
ବଜାଉଛନ୍ତି ବାଦ୍ୟମାନ
ଲଙ୍କା ବେଢ଼ିଲେ ସେ ବହନ ।
ଶରଭ ହନୁମନ୍ତ ନଳ
କେଶରୀ ଦଧିମୁଖ ନୀଳ ।
ଜାମ୍ବବ ଯେ ତାର ଅଙ୍ଗଦ
ଗଇନ୍ଦ ଦ୍ୱିବିଦ କୁମୁଦ ।

ଏ ଆଦି ଯୂଥପ ସମସ୍ତେ
ଏ ବାହାରେ ସମର୍ଥ ଯେତେ ।
ସମସ୍ତେ ଆଗ ହୋଇଗଲେ
ଗୃହଦ୍ୱାରେ ବେଢ଼ି ବସିଲେ ।
ପାଷାଣେ ବୃକ୍ଷେ ନଗଶୃଙ୍ଗେ
ନଖେ ଦଶନେ ଶାଖାମୃଗେ ।
ରାକ୍ଷସମାନଙ୍କୁ ମାଇଲେ
ସେମାନେ ଭିନ୍ଦପାଳେ ଶୂଳେ ।
ଖଡ଼ଗେ ପରଶୁ ଅଙ୍କୁଶେ
ମାଇଲେ ବାନରଙ୍କୁ ରୋଷେ ।
କାଶେ ରାକ୍ଷସେ ଏ ପ୍ରକାରେ
ଯୁଦ୍ଧ କରନ୍ତି ପରସ୍ପରେ ।
ପଡ଼ି ରକତ ମାଂସ ବସା
ଅତି କର୍ଦ୍ଦମ ହେଲା ରସା ।
ସେ ଦୁଇ ସୈନ୍ୟ ଯେ ମିଶିଲେ
ଅତି ଅଦ୍ଭୁତ ଯୁଦ୍ଧ କଲେ ।
ଶତାଙ୍ଗ ତୁରଙ୍ଗ ମାତଙ୍ଗେ
ଚଢ଼ି ରାକ୍ଷସ ସୈନ୍ୟ ବେଗେ ।
କରି ବିବିଧ ନାଦମାନ
ଦଶ କକୁଭ କରି ପୂର୍ଣ୍ଣ ।
ଏମନ୍ତେ କରି ଗତାଗତ
କରନ୍ତେ ବାନରଙ୍କୁ ହତ ।
ମର୍କଟେ ରାକ୍ଷସଙ୍କୁ ଧରି
ଭୂମିରେ ମାଡ଼ି ବସି କରି ।
ମୁଣ୍ଡକୁ ମୁଣ୍ଡମାନ ମାରି
ନଖରେ ଦଶନେ ବିଦାରି ।
କଣ୍ଠ ପକାଇ ଲଞ୍ଜରେ
ମାଇଲେ ଗୋଇଠା ମୁଥରେ ।
ରାକ୍ଷସେ ମାରନ୍ତି କାଶଙ୍କୁ
କାଶେ ମାରନ୍ତି ରାକ୍ଷସଙ୍କୁ ।

ସେ ଦୁଇ ସୈନ୍ୟ ମିଶିଗଲେ
ଅତ୍ୟନ୍ତ ଘୋର ଯୁଦ୍ଧ କଲେ ।
ଦେବତା ମାନଙ୍କ ଅଂଶେତ
ବାନର ହୋଇଛନ୍ତି ଜାତ ।
ବିଶେଷେ ଅନୁଗ୍ରହ ନେତ୍ରେ
ଶ୍ରୀରାମ ତାହାଙ୍କୁ ଚାହାନ୍ତେ ।
ଅମୃତ ପାନ କଲେ ଯେହ୍ନେ
ସମର୍ଥ ହୋଇ କପି ତେହ୍ନେ ।
ସୀତା ହରଣ ପାପେ ଜାଣି
ଯୁକ୍ତ ହୋଇଛି ଯେ ରାବଣି
ସେ ଯାହା କରଇ ପାଳନା
ଏମନ୍ତ ଯେଉଁ ରକ୍ଷସେନା ।
ତହିଁରୁ ବିରାଗ ମାଇଲେ
ଅପଣା ସୈନ୍ୟ ନାଶ ଗଲେ ।
ଏମନ୍ତ ଦେଖି ଇନ୍ଦ୍ରଜିତ
କ୍ରୋଧ ସେ ହୋଇ ଅତିଅ[illegible] ।
ବ୍ରହ୍ମାଙ୍କ ବର ଦାନେ ଖଳ
ବ୍ରହ୍ମା ସେ ଅତ୍ୟନ୍ତ କୁଶଳ ।
ରଥରେ ଥାଇ ଦୂରେ ନୋହି
ବେଗେ ସେ ଯାଇଁ ନଭେ ର[illegible] ।
ବ୍ରହ୍ମାସ୍ତ୍ର ଆଦି ଅସ୍ତ୍ରମାନ
ସନ୍ଧିରେ କରି ତା ସନ୍ଧାନ ।
ସମସ୍ତ କପିଙ୍କ ଉପରେ
ପ୍ରହାର କରନ୍ତି କ୍ରୋଧରେ ।
ତାହା ଜାଣିଲେ ରାବଣାଅ
ବ୍ରହ୍ମାସ୍ତ୍ରକୁ ସେ ମାନ୍ୟ କ[illegible] ।
ମୂର୍ଚ୍ଛେ ନିବର୍ତ୍ତି ରହିଲେ
ସମସ୍ତ ବାନର ପଡ଼ିଲେ ।
ଏମନ୍ତ ଦେଖି କ୍ରୋଧ ହୋଇ
କହିଲେ ଲକ୍ଷ୍ମଣଙ୍କୁ ଚାହିଁ ।

ହେ ବତ୍ସ ଧନୁଶର ଅଣ
ବହନ ବ୍ରହ୍ମାସ୍ତ୍ରରେ ପୁଣ ।
କରିବି ରାକ୍ଷସଙ୍କୁ ଭସ୍ମ
ଦେଖ ମୋହର ପରାକ୍ରମ ।
ଏମନ୍ତ ଶୁଣି ଇନ୍ଦ୍ରଜିତ
ତରସ୍ତ ହୋଇ ଅତି ଅନ୍ତ ।
ମନରେ ମହାଭୟ କଲା
ସଂଗ୍ରାମ ସ୍ଥାନୁ ପଳାଇଲା ।
କପିଙ୍କ ପଡ଼ିବାର ଦେଖି
ଶ୍ରୀରାମ ହୋଇ ଅତି ଦୁଃଖୀ ।
ବୋଇଲେ ସେ ହନୁମନ୍ତଙ୍କୁ
ଯାଅ ତୁ କ୍ଷୀରସମୁଦ୍ରକୁ ।
ଉତ୍ତମ ଔଷଧି ମାନରେ
ସଞ୍ଜିତ ହୋଇ ଯେ ତହିଁରେ ।
ଦ୍ରୋଣ ନାମରେ ପରବତ
ଗୋଟିଏ ଅଛି ହନୁମନ୍ତ ।
ବେଗେ ତା ଘେନି ଆସ କାଳ
ଏ କାଳ କଣ ରକ୍ଷାକର ।
ନିଶ୍ଚଳ ହୋଇ ତୁମ୍ଭ କୀର୍ତ୍ତି
ରହିଣ ଥିବ ହେ ମାରୁତି ।
ଯେମନ୍ତ ଆଜ୍ଞା ସେ ବୋଇଲେ
କ୍ଷୀର ସିନ୍ଧୁକୁ ବେଗେ ଗଲେ ।
ସେ ଗିରି ଆଣି ତୋଷ ହୋଇ
ବାନର ମାନଙ୍କୁ ଜୀଆଇ ।
ପୁଣି ସେ ନଗ ବେଗେ ନେଇ
ନିଜ ସ୍ଥାନେ ରଖି ଥଇଲେ ।
ପୂର୍ବ ପରାୟେ ସେ ରାବଣ
ଘୋର କପିନାଦ ଶୁଣିଣ ।
ସେ ଅତି ବିସ୍ମୟକୁ ପାଇ
କହିଲା ରାକ୍ଷସଙ୍କୁ ଚାହିଁ ।

ବ୍ରହ୍ମାରେ ହୋଇଣ ନିମିତ୍ତ
ମୋ ଶତ୍ରୁ ଅଟେ ସୀତାକାନ୍ତ ।
ତାହାକୁ ମାରିବା ନିମିତ୍ତେ
ମନ୍ତ୍ରୀ ଯୂଥପ ଏ ସମସ୍ତେ ।
ମୋ ପ୍ରିୟ ଇଚ୍ଛାକର ଯେବେ
ସମସ୍ତେ ଏକାବେଳେ ତେବେ ।
ମୋହ ଅନ୍ନରେ ଭୋଗ୍ୟ ହୋଇ
ସଂଗ୍ରାମ କର ବେଗେ ଯାଇ ।
ପ୍ରାଣକୁ ଯେ ଭୟ କରିବ
ଯୁଦ୍ଧକୁ ବାହାର ନୋହିବ ।
ମୋ ଆଜ୍ଞା ଲଙ୍ଘନ କଲେକୁ
ନିଶ୍ଚୟେ ମାରିବି ମୁଁ ତାକୁ ।
ପଣ୍ଡିତ ଅଟନ୍ତ ଯୁଦ୍ଧରେ
ଏମନ୍ତ ଯେ ଦୈତ୍ୟ ନିକଟରେ ।
ସେମାନେ ଶୁଣି ଭୟ କଲେ
ଯୁଦ୍ଧକୁ ବାହାର ହୋଇଲେ ।
ପ୍ରହସ୍ତ ଅତିକାୟ ବୀର
ମହାପାର୍ଶ୍ୱ ମହୋଦର ।
ଦେବତା ଶତ୍ରୁ ଦେବାନ୍ତକ
କୁମ୍ଭ ନିକୁମ୍ଭ ନରାନ୍ତକ ।
ଏ ଆଦି ପାତ୍ରମାନ ଯେତେ
ସମର୍ଥ ଥିଲେ ସେ ସମସ୍ତେ ।
କେ ରଥେ କେ ଗଜେ କେ ଅଶ୍ୱେ
ଚଢ଼ିଣ ଅସଂଖ୍ୟ ରାକ୍ଷସେ ।
ସଂଗ୍ରାମ ଭୂମିରେ ମିଳିଲେ
ବାନର ସଇନ ମନ୍ଥିଲେ ।
ଭୁଷୁଣ୍ଡି ଭିନ୍ଦିପାଳ ଶର
ପଟ୍ଟିଶ ଖଣ୍ଡା ମୁଦ୍ଗର ।
ଶକତି ତୋମର ମୁଷଳ
ପରିଘ ଗଦା ଚକ୍ର ଶୂଳ ।

ଏ ଆଦି ନାନା ଅସ୍ତ୍ର ଶସ୍ତ୍ରେ
କପିଙ୍କି ମାଇଲେ ସମସ୍ତେ ।
ସେ ନଗଶୃଙ୍ଗ ପାଶେ ଶରେ
ବୃକ୍ଷେ ନଖେ ଦନ୍ତେ ମୁଥରେ ।
ପାଦରେ କଗୃଡ଼ ଲଞ୍ଜରେ
ଜଙ୍ଘା ଜଙ୍ଘି ହୋଇ ବାନରେ
ମାଇଲେ ରାକ୍ଷସମାନଙ୍କୁ
ଶ୍ରୀରାମ ନାଶିଲେ ତାହାଙ୍କୁ ।
ସୁଗ୍ରୀବ ଥୋକାଏ ରାକ୍ଷସ
ବିବିଧ ରୂପେ କଲେ ନାଶ ।
କେତେଁମାନଙ୍କୁ ହନୁମାନ
ଯୂଥମାନଙ୍କେ କଲେ ଚୂର୍ଣ୍ଣ ।
ଥୋକାଏ ଲୋକଙ୍କୁ ଅଙ୍ଗଦ
ମାଇଲେ କରି ଘୋରନାଦ ।
କେତେ ଯୂଥପତି ଲକ୍ଷ୍ମଣ
ନାଶିଲେ ବିନ୍ଧି ବାଣ ଗଣ ।
ଯେ ଶେଷେ ଥିଲେ ସେ ରାକ୍ଷସ
ତାହାଙ୍କୁ କରଣ ନିଃଶେଷ
ସମସ୍ତ ଯୂଥପତି ଖରେ
ମାଇଲେ ନାନା ପରକାରେ ।
ଏମନ୍ତ ପ୍ରକାରେ ଯେ ନାଶ
ହୋଇଣ ସମସ୍ତ ରାକ୍ଷସ ।
ଶ୍ରୀରାମ ତେଜେ ସେତୁ କରି
ସମର୍ଥ ହେଲେ ରକ୍ଷହରି ।
ନ ଥିଲେ କି ସେ ରାମଶକ୍ତି
ବାନରେ ରକ୍ଷଙ୍କୁ ମାରନ୍ତି ।
ଜଗତ ସ୍ୱରୂପ ଶ୍ରୀରାମ
ଜଗତମୟ ପରଂବ୍ରହ୍ମ ।
ଜଗତ ବିଧାତା ନିଶ୍ଚୟେ
ସତତ ଚିଦାନନ୍ଦ ମୟେ ।

ଏଣୁ ମାୟାରେ ରଘୁପତି
ମନୁଷ୍ୟ ଭାବ ବହିଛନ୍ତି ।
ସତ୍ୟବ୍ରତରେ ହୋଇ ବ୍ରତୀ
ସତ୍ୟ ମହିମା ବିସ୍ତାରନ୍ତି ।
ଯୁଦ୍ଧାଦି ଲୀଳାରୂପ ବହି
ଯେବଣ ମାୟା ସେଁ ଇଚ୍ଛଇ ।
ସେ ମାୟାକୃଷ୍ଟ ରଘୁବୀର
କଲେ ଏ ପ୍ରକାରେ ବିସ୍ତାର ।
ରାମଙ୍କୁ ଜାନକୀ ସହିତେ
ଚିନ୍ତୁଛି ହଳଧର ନିତ୍ୟେ ।
ଦୁଇଶ ତେର ପଦ ଗୀତ
ଏ ଅଧ୍ୟା ପରମ ପବିତ୍ର ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ପଞ୍ଚମୋଽଧ୍ୟାୟଃ ।

---

## ଷଷ୍ଠ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଉମାଙ୍କୁ ବୋଲେ ତ୍ରିଲୋଚନ
ଗୋ ପ୍ରିୟେ ଶୁଣ ମୋ ବଚନ ।
ପ୍ରହସ୍ତ ଆଦି ସବୁ ସୈନ୍ୟ
ବିନାଶ ଶୁଣି ଦଶାନନ ।
ଦୁଃଖରେ ହୋଇଣ ସନ୍ତପ୍ତ
ବହୁତ କ୍ରୋଧେ ହୋଇ ଯୁକ୍ତ ।
ଇନ୍ଦ୍ରଜିତଙ୍କୁ ଲଙ୍କାପୁରେ
ଜଗାଇ ରଥେ ବସି ଖରେ ।
ଶ୍ରୀରାମ ସଙ୍ଗେ ଯୁଝିବାକୁ
ଗଲା ସେ ଘେନି ରାକ୍ଷସଙ୍କୁ ।
ଚଢ଼ି ଶତାଙ୍ଗ ଗଜେ ଅଶ୍ୱେ
ଶସ୍ତ୍ରାସ୍ତ୍ର ଘେନିଣ ରାକ୍ଷସେ ।
ଅସଂଖ୍ୟ ହୋଇଣ ସେ ଗଲେ
ଶ୍ରୀରାମ ନିକଟେ ମିଳିଲେ ।
ଅତ୍ୟନ୍ତ କ୍ରୋଧେ ଦଶଶିର
ସର୍ପ ପରିସ୍ୱେ ଶରବାର ।
ଶ୍ରାବଣୀ ବରଷା ଯେସନ
ବର୍ଷ ସେ ପ୍ରକାରେ ବହନ ।
ମାରି ଋକ୍ଷବର ଅନେକ
ସୁଗ୍ରୀବାଦି ଶ୍ରେଷ୍ଠ ଯେତେକ ।
ତାହାଙ୍କୁ ମୋହ କରଣରେ
ପକାଇ ଧରଣୀ ଉପରେ ।
ଦେଖିଲା ଗଦାପାଣି ହୋଇ
ଆସନ୍ତେ ବିଭୀଷଣ ଧାଇଁ ।
ପୁଣି ଅତ୍ୟନ୍ତ କ୍ରୋଧ ହେଲା
ମୟ ଦାନବ ଦେଇଥିଲା ।
ଏମନ୍ତ ଏକଘ୍ନୀ ଶକ୍ତି
କରରେ ଘେନି ଲଙ୍କପତି ।
ତୁଳନ୍ତେ ଧରଣୀ କମ୍ପିଲା
ତା ବିଭୀଷଣକୁ ମାରିଲା ।
ସେ ଶକ୍ତି ଆକାଶେ ଆସନ୍ତେ
ଲକ୍ଷ୍ମଣ ଚିନ୍ତିଲେ ଚିତ୍ତେ ।
ବିଭୀଷଣକୁ ରଘୁପତି
ଅଭୟ ବର ଦେଇଛନ୍ତି ।
ବଧକୁ ଯୋଗ୍ୟ ତ ରାବଣ
ଏ ଘେନି ଧରି ଧନୁର୍ବାଣ ।

ଅଚଳ ପରଭାରେ ବେଗେ
ବହିଲେ ବିଭୀଷଣ ଅଗେ ।
ମାୟାରେ ଯେତେ ଶକ୍ତିମାନ
ଅଛି ସେ ସମସ୍ତଙ୍କ ସ୍ଥାନ ।
ନିଶ୍ଚୟେ ଅଛନ୍ତି ଲକ୍ଷ୍ମଣ
ଏମନ୍ତ ହୋଇଲେ ହେ ପୁଣ ।
ଅମୋଘ ବୋଲି ସେ ଅଇଲା
ଲକ୍ଷ୍ମଣ ହୃଦରେ ଭେଦିଲା ।
ସେ ଶକ୍ତେ ଶକ୍ତିଲେ ଏମନ୍ତ
ଅମ୍ଭେ ତ ଶେଷ ଅଂଶେ ଯୁକ୍ତ ।
ବିଶେଷେ ବିଷ୍ଣୁ ଅବୟବ
ଏ ମାୟାଶକ୍ତି କି କରିବ ।
ଏମନ୍ତ ପ୍ରକାରେ ବିସ୍ମର
ଶକ୍ତିକି ସୀକାର କର ।
ମନୁଷ୍ୟ ଭାବୁ ମୋହ ହେଲେ
ଧରଣୀ ତଳରେ ପଡ଼ିଲେ ।
ତାହାଙ୍କୁ ଘେନ ଯିବା ପାଇଁ
ରାବଣ ରଥରୁ ଓହ୍ଲାଇ ।
କୋଡ଼ିଏ ବାହୁ ବଳେ ଧରି
ଭୂମିରୁ ସେ ତୋଳି ନ ପାରି ।
ବିସ୍ମୟ ହୋଇଲା ଅପାର
ଯେ ସବୁ ଜଗତର ସାର ।
ସାକ୍ଷାତ ଯେ ବିଶ୍ୱମୟ
ସମସ୍ତ ଲୋକର ଆଶ୍ରୟ ।
ଏମନ୍ତ ନାରାୟଣ ଯେହୁ
ତାଙ୍କୁ ଶରୀର ବଳେ କାହୁଁ ।
ସ୍ଥିର ରାକ୍ଷସ ଦଶଗ୍ରୀବ
କେମନ୍ତେଟି ତୋଳି ପାରିବ ।
ରାବଣ ନେବ ଲକ୍ଷ୍ମଣଙ୍କୁ
ଉଦ୍ୟମ କରୁଛି ଏଥିକୁ ।

ଏମନ୍ତ ଦେଖି ହନୁମାନ
ତାହାର ହୃଦରେ ବହନ ।
ବଜ୍ର ସମାନ ମୁଠି କରି
ମାଇଲେ ଅତି କ୍ରୋଧ ହୋଇ ।
ବାଜି ସେ ତଳେ ମୋହ ଯାଇ
ପଡ଼ିଲା ଜାନୁଭରି ଦେଇଁ ।
ପୁଣି କ୍ଷଣକେ ପାଇ ଜ୍ଞାନ
ଶ୍ରବଣ ବଦନ ନୟନ ।
ଏଥିରୁ ଝର ଝର ହୋଇ
ଶୋଣିତ ସାରିଅଛି ବହି ।
ନୟନ ହେଉଛି ଘୂମାଇଁ
ଏରୂପେ କଷ୍ଟେ କଷ୍ଟେ ଯାଇ ।
ବସିଲା ରଥାଙ୍ଗ ଉପରେ
ମାରୁତି ଏଥୁ ଅନନ୍ତରେ ।
ତଳରୁ ତୋଳି ଲକ୍ଷ୍ମଣଙ୍କୁ
ବହନ କଲେ ଅନ୍ୟଠାକୁ ।
ହନୁମନ୍ତର ଯେଣୁ ପ୍ରୀତି
ବିଶେଷେ ପରମ ଭଗତି ।
ଏ ଘେନି ତା ଠାରେ ଲକ୍ଷ୍ମଣ
ଚଳୁରୁ ଲଘୁ ହେଲେ ପୁଣ ।
ହୋଇଲେ ଅତ୍ୟନ୍ତ ଲଘୁସ
ଏ ନିଶ୍ଚେ ନାରାୟଣ ଅଂଶ ।
ସେ ଶକ୍ତି ଜାଣିଲେ ଏମନ୍ତ
ତେଜି ସେ ଲକ୍ଷ୍ମଣଙ୍କ ଗାତ୍ର ।
ମିଳିଲା ଦଶାନନ କରେ
ସେ ପୁଣି ଏଥୁ ଅନନ୍ତରେ ।
ଅଳପ ଅଳପ ହୋଇଣ
ସଚେତ ହୋଇକରି ପୁଣ ।
କାର୍ମୁକ ଶର ଧରି କରେ
ମିଳିଲେ ଶ୍ରୀରାମ ସ୍ଥମୁରେ ।

ଜଗନ୍ନାଥ ଯେ ସୀତାସାଇଁ
ତାହାଙ୍କ ମୁଖକୁ ଅନାଇଁ ।
ଅତ୍ୟନ୍ତ କ୍ରୋଧରେ ସତ୍ୱରେ
ଚଢ଼ି ସେ ମାରୁତ କନ୍ଧରେ ।
ରାବଣ ଥିବ ଯେ ରଥରେ
ପ୍ରବେଶ ହୋଇ ତା ଅଗରେ ।
କୁଳଶ ସମାନ ଶବଦ
କରି କୋଦଣ୍ଡ ଗୁଣ ନାଦ ।
ଘନ ଗମ୍ଭୀର ଗରଜନ
ପରାୟେ କହିଲେ ବଚନ ।
ରେ ରକ୍ଷ ଅଧମ ତୁ ଅଜ
ଏଠାରେ ରହ ବିଂଶଭୁଜ ।
ସମସ୍ତଠାରେ ମୁଁ ସମାନ
ଅମ୍ଭଠାର ରେ ଦଶାନନ ।
ଦୋଷ କରି ଏ ପରକାରେ
ପଡ଼ିଲୁ ଅମ୍ଭ ଅଗ୍ରତରେ ।
କାହିଁକି ଯିବୁ ଦଶଶିର
ଜନ ସ୍ଥାନରେ ଯେଉଁ ଶର ।
ବଧ ମୁଁ ଅନେକ ରାକ୍ଷସ
ତୋହର କରିଛି ବିନାଶ ।
ମାରିବ ତୋତେ ସେହି ବାଣେ
ରହ ତୁ ମୋ ଅଗରେ କ୍ଷଣେ ।
ଏମନ୍ତ ଶୁଣନ୍ତେ ରାବଣ
କ୍ରୋଧରେ ତୀକ୍ଷ୍ଣ ବାଣ ମାନ ।
ବିନ୍ଧିଲା ମାରୁତ ଶିରକୁ
ସେ ତହିଁ ପୀଡ଼ା ପାଇଲାକୁ ।
ତେଜ ବଢ଼ାଇ ହନୁମାନ
କଲେ ସେ ଘୋର ଗରଜନ ।
ମାରୁତ ଶିରେ ବ୍ରଣ ଦେଖି
ଶ୍ରୀରାମଚନ୍ଦ୍ର ହୋଇ ଦୁଃଖୀ ।

ପ୍ରଳୟ କାଳେ ରୁଦ୍ର ଯେହ୍ନେ
ଅତ୍ୟନ୍ତ କୋପ ହୋଇ ତେହ୍ନେ ।
ରାବଣ ରଥ ଘୋଡ଼ା ଛନ୍ଦ
ସାରଥି ଧ୍ୱଜ ସବୁ ଶସ୍ତ୍ର ।
ପତାକା ଧନୁ ସହିତରେ
ଏତେକ ବିନ୍ଧି ତୀକ୍ଷ୍ଣ ଶରେ ।
କାଟି ପକାଇ ରଘୁବୀର
କୁଳିଶ ସମ ଏକ ଶର ।
ଧନୁର୍ଗୁଣରେ ଯୁକ୍ତ କଲେ
ରାବଣ ମୁଖକୁ ବିନ୍ଧିଲେ ।
ସେ ତହିଁ ପୀଡ଼ିତ ହୋଇଲା
କ୍ଷୋଭିତ ହୋଇ ମୋହ ଗଲା ।
ହସ୍ତୁ ପଡ଼ିଲା ଧନୁଶର
ଏମନ୍ତ ଦେଖି ରଘୁବୀର ।
ବିନ୍ଧିଣ ଅର୍ଦ୍ଧଚନ୍ଦ୍ର ବାଣ
ସୂର୍ଯ୍ୟ ପ୍ରାୟେ ଅଟେ କିରଣ ।
ତାହାର ଏମନ୍ତ ପ୍ରକାରେ
ଦଶମୁକୁଟ ଥିଲା ଶିରେ ।
ସବୁ ତା କାଟି ପକାଇଲେ
ତାହାକୁ ଏମନ୍ତ କହିଲେ ।
ମୁଁ ଆଜ୍ଞା ଦେଉଛି ରେ ଦୈତ୍ୟ
ଶରେ ତ ହୋଇଲୁ ପୀଡ଼ିତ ।
ଲେଉଟି ଯାଅରେ ରାକ୍ଷସ
ଲଙ୍କାରେ ହୁଅ ପରବେଶ ।
କାଲି ପୁଣି ମୋ ପରାକ୍ରମ
ଦେଖିବୁ ରାକ୍ଷସ ଅଧମ ।
ରାମ ଶରେ ପୀଡ଼ିତ ହୋଇ
ଗରବ ଛାଡ଼ି ଲାଜ ପାଇ ।
ଅତି ଆତୁରେ ଢୋଗ୍ରି ହୋଇ
ମିଳିଲା ଲଙ୍କାପୁରେ ଯାଇ ।

ଶ୍ରୀରାମ ଯାଇ ସେ ଉତ୍ସୁରେ
ମିଳି ଲକ୍ଷ୍ମଣ ସନ୍ନିଧିରେ ।
ଦେଖିଲେ ସେ ମୂର୍ଚ୍ଛିତ ହୋଇ
ଧରଣୀ ତଳେ ଛନ୍ତି ଶୋଇ ।
ମନୁଷ୍ୟ ସ୍ୱରୂପ ଧରଣାର
ଲୀଳାରେ ଶୋକମାନ କରି ।
ବୋଇଲେ ସେ ହନୁମନ୍ତଙ୍କୁ
ବେଗେ ଯା କ୍ଷୀରସମୁଦ୍ରକୁ ।
ଔଷଧ ଅଣି ଲକ୍ଷ୍ମଣଙ୍କୁ
ପୂର୍ବ ପରାୟେ ବାନରଙ୍କୁ ।
ଜୀଅଅ ବେଗେ କପିବୀର
ସେ ତାହା କରି ସ୍ୱୀକାର ।
ପବନ ପ୍ରାୟେ ବେଗେ ଗଲେ
କ୍ଷଣକେ ସାଗର ତରଲେ ।
ଶୁଣ ଏମନ୍ତ ସମୟରେ
କହିଲ ରାବଣ ଘୃମୂରେ ।
ଶୁଣ ଦେବ ଶୁଣ ଲଙ୍କପତି
ଶ୍ରୀରାମ ଅଜ୍ଞାରେ ମାରୁତି ।
ଔଷଧି ଅଣି ଲକ୍ଷ୍ମଣଙ୍କୁ
ସମସ୍ତ ବାନରମାନଙ୍କୁ ।
ଜୀଅଇବାକୁ ଲଙ୍କସାରି
ଯାଉଛି ଅତି ଡୋଗ୍ରା ହୋଇ ।
ଏମନ୍ତ ଶୁଣି ସେ ରାବଣ
ବହୁତ ଚିନ୍ତା କରି ପୁଣ ।
ଏକା ହୋଇଣ ସେ ରାତ୍ରରେ
ମିଳିଲେ କାଳନେମୀଠାରେ ।
ପୁରକୁ ଅଇଲେ ରାବଣ
ଦେଖି ସେ ଅଶ୍ଚର୍ଯ୍ୟ ଲଭିଣ ।
ପୁଣି ଅର୍ଘ୍ୟାଦ ଉପଚ୍ଚାରେ
କରି ପୂଜିଲ ଦେଇ ଶିରେ ।
ମନରେ ମହାଭୟ କଲ
ଏମନ୍ତ ବଚନ କହିଲ ।
ଅହେ ରାଜେନ୍ଦ୍ର କି ନିମନ୍ତେ
ଅସିବା ହେଲ କହ ମୋତେ ।
କି କାର୍ଯ୍ୟ କରିବୁ ତୁମ୍ଭର
ସେ କଥା କହ ଲଙ୍କେଶ୍ୱର ।
ରାବଣ ଶୁଣି ଦୁଃଖୀ ହୋଇ
କହିଲେ ନିଃଶ୍ୱାସ ପକାଇ ।
ଏମନ୍ତ କାଳବଶ କଲ
ମୋହର କଷ୍ଟ ଦଶା ହେଲ ।
ମାରିଛି ଲକ୍ଷ୍ମଣଙ୍କୁ ଶକ୍ତି
ସେ ଭୂମିତଳେ ପଡ଼ିଛନ୍ତି ।
ଜୀଅଇବାକୁ ପୁଣି ତାଙ୍କୁ
ମାରୁତି କ୍ଷୀର ସମୁଦ୍ରକୁ ।
ଔଷଧ ଅଣିବାର ପାଇଁ
ଯାଉଛି ଅତି ଡୋଗ୍ର ହୋଇ ।
ଯେଉଁରୂପେ ତା ହେବ ବିଘ୍ନ
ଅପଣେ କରି ତା ବହନ ।
ମାୟାରେ ମୁନିବେଶ ଧରି
ହନୁମନ୍ତଙ୍କୁ ମୋହ କରି ।
ବିଳମ୍ବ ନ କରି ଅପଣ,
ଅସିବ ମନ୍ଦିରକୁ ପୁଣ ।
ଏମନ୍ତ କାଳନେମୀ ଶୁଣି
କହିଲ ରାବଣଙ୍କୁ ପୁଣି ।
ମୋହ ବଚନ ଦଶାନନ
ଶୁଣି ତା ଭଲକରି ସେନ ।
କହୁଛି ତୁମ୍ଭ ଭଲ ପାଇଁ
ମୋ ପ୍ରାଣ ପାଇଁ କହୁ ନାହିଁ ।
ପୂର୍ବକାଳରେ ଜନସ୍ଥାନେ
ମାରୀଚ ମୃଗ ରୂପେ ଯେଉଁନେ ।

ନାଶ ହୋଇଲା ଲଙ୍କସାଇଁ
ସେ ରୂପେ ନାଶଗିବ ମୂର୍ହି ।
ସୁହୃଦ ବନ୍ଧୁ ପୁତ୍ର ନାତ
ସବୁ ତ ମଲେ ଲଙ୍କପତ ।
ସମୂଳେ କୁଳକୁ ମରାଇ
ଜୀବନ ରାଜ୍ୟ ବଇଦେହୀ ।
ଜଡ଼ାତ୍ମା ଯେଉଁ କଳେବର
ଏଥିରେ କି କାର୍ଯ୍ୟ ତୁମ୍ଭର ।
ସୀତାଙ୍କୁ ଦିଅ ଶ୍ରୀରାମଙ୍କୁ
ରାଜ୍ୟଦେଇ ବିଭୀଷଣଙ୍କୁ ।
ମୁନିମାନଙ୍କର ଯେ ସ୍ଥାନ
ତହିଁକି ଯାଅ ଦଶାନନ ।
ପ୍ରଭାତୁ ଶୁଦ୍ଧ ଜଳେ ସ୍ନାନ
ସନ୍ଧ୍ୟାଦି ନିତ୍ୟ କର୍ମମାନ ।
ଏତେକ କରି ସୁଖାସନ
ଗୋଷ୍ଠିକେ ବସି ଦଶାନନ ।
ଛାଡ଼ି ସମସ୍ତ ସଙ୍ଗମାନ
ଏକାନ୍ତେ ହୋଇଣ ମଉନ ।
ବାହାରୁ ସବୁ ଇନ୍ଦ୍ରିୟଙ୍କୁ
ନେଇଣ ଅନ୍ତଃକରଣକୁ ।
ଆତ୍ମାରୁ ପ୍ରକୃତି ଅନ୍ତର
ବିଗ୍ଭର ଏ ପ୍ରକାରେ କର ।
ଚର ଅଚର ଯେତେ ଭୂତ
ଶରୀର ସହିତେ ଯେତେକ ।
ବୁଦ୍ଧି ଇନ୍ଦ୍ରିୟ ଆଦି ଯେତେ
ବ୍ରହ୍ମରୁ ସ୍ତମ୍ଭ ପର୍ଯ୍ୟନ୍ତେ ।
ଦେଖିବା ଶୁଣିବା ଯେତେକ
ମାୟା ସ୍ୱରୂପଟି ଏତେକ ।
ତାଙ୍କୁଟି ବୋଲନ୍ତି ପ୍ରକୃତି
ସଂସାର ସର୍ଜନାର ସ୍ଥିତି ।
ସଂହାର ସହିତରେ ବୀର
କାରଣ ଏ ତିନି କଥାର ।
ଲୋହିତ ବର୍ଣ୍ଣ ଶ୍ୱେତ ଶ୍ୟାମ
ଏରୂପେ କରେ ପ୍ରଜନନ ।
କାମ କ୍ରୋଧାଦି ଏହା ସବୁ
ହିଂସା ତୃଷ୍ଣାଦି ଏହା ହିଁଅ ।
ଆତ୍ମାକୁ ଆପଣା ଗୁଣରେ
ମୋହ କରାଇ ନିରନ୍ତରେ ।
ଜଡ଼ିଆ ଭ୍ରେକଧା ଅଧ ହୋଇ
ଯେ ସୁଖ ସମୂହ ଭୁଞ୍ଜଇ ।
ଏ ଅଟେ ଆପଣାର ଗୁଣ
ତାହା ଈଶ୍ୱରଠାରେ ପୁଣ ।
କରଇ ନେଇ ଅରୋପଣ
ତହିଁରେ ସେ ତଣ କରଣ ।
ସର୍ବଦା ତାଙ୍କ ସଙ୍ଗ ପାଇ
ସେ ପୁଣ କ୍ରୀଡ଼ା କରୁଥାଇ ।
ଆତ୍ମା ବିଶୁଦ୍ଧ ସେ ମାୟାର
ସଙ୍ଗତେ ଲଭଇ ହେ ବୀର ।
ଦେଖୁଥିଲେ ହେ ଆପଣାକୁ
ପାସୋର ସେ ମାୟାଗୁଣକୁ ।
ମନୁଷ୍ୟ ଅନୁଗତ ହୋଇ
ତହିଁରେ କରି ମୋହ ପାଇ ।
ଥିଲେ ଅସଦ ଗୁଣ ତଣ
ଯେତେ ତା କହିଲି ରାବଣ ।
ଏତେକ ଯେବେ ସେ ବୁଝଇ
ତେତେ ତା ମନ ନିବର୍ତ୍ତିଇ ।
ଆତ୍ମାକୁ ପ୍ରକାଶ କରଣ
ନିଶ୍ଚୟ ଦେଖଇ ଆପଣ ।
ଜୀବନ ମୁକତ ଲଭଇ
ମାୟା ଗୁଣରୁ ମୁକ୍ତ ହୋଇ ।

ତୁମ୍ଭେ ଯେ ରୂପେ ଲଙ୍କସାଇଁ
ମୋହ କଥାକୁ ହେତୁ ପାଇ ।
ଇନ୍ଦ୍ରସ୍ଥ ସମ୍ମୁଖକୁ ଜଣି
ଅସ୍ମାକୁ ବିସ୍ମୃତ କରଣ ।
ଅସ୍ମା ପ୍ରକୃତ ଏ ଅନ୍ତର
ଜାଣି ମୁକତ ହେବ ବୀର ।
ଯେତେକ କହିଲ ବାଚଣ
ଏରୂପେ ନ ପାରିଲେ ପୁଣି ।
ସଗୁଣ କର ଦଶଶିର
ସେ ଈଶ୍ୱରଙ୍କ ଅଶେଷର ।
ହୃଦୟ ପଙ୍କଜ ମଧ୍ୟରେ
କର୍ଣ୍ଣିକା ଅଛି ଯେ ତହିଁରେ ।
ଅତ୍ୟନ୍ତ କୋମଳ ଅଟଇ
ମଣିମାନଙ୍କେ ଯୁତ ହୋଇ ।
ତହିଁରେ ସୁବର୍ଣ୍ଣ ଆସନ
ଶୋଭା ପାଉଛି ଦଶାନନ ।
ଜାନକୀ ତୁଲେ ସେ ଆସନେ
ବସି ଅଛନ୍ତି ବୀରାସନେ ।
ବିଶାଳ କମଳ ନୟନ
ବିଜୁଳି ପରାୟେ ବସନ ।
କିରୀଟି ମକର କୁଣ୍ଡଳ
କୌସ୍ତୁଭ ହାର ବନମାଳ ।
ନୂପୁର କେୟୂର କଙ୍କଣ
ଅଛଇ ଆଦି ଆଭରଣ ।
କୋଟି କନ୍ଦର୍ପ ପ୍ରାୟେ ଶୋଭା
ଲକ୍ଷ ଆଦିତ୍ୟଜିତ ପ୍ରଭା ।
ଲକ୍ଷ୍ମଣ ଧନୁଶର ଧରି
ପାଶେ ଅଛନ୍ତି ସେବାକରି ।
ସମସ୍ତ ହୃଦରେ ଅଛନ୍ତି
ପରମ ଅତ୍ମା ଯେ ଅଟନ୍ତି ।

ସେ ଶ୍ରୀରାମଙ୍କୁ ଏ ପ୍ରକାରେ
ଚିନ୍ତିଣ ସମସ୍ତ କାଳରେ ।
ପରମ ଭକତ ନିଷ୍ଠାୟେ
ଲଭିବ ନ କର ସଂଶୟେ ।
ଭକତମାନଙ୍କ ତୁଲରେ
ସଙ୍ଗ ହୋଇବ ନିରନ୍ତରେ ।
ଶ୍ରୀରାମ କଥା ପ୍ରତିଦିନ
ଶ୍ରବଣ କର ଦଶାନନ ।
ଏମନ୍ତ କଲେ ହେ ରାଜନ
ଯେତେକ ମହାପାପ-ାନ ।
ସବୁ ଜନ୍ମରେ କରିଥାଇ
କ୍ଷଣେକେ ସେ ନାଶ ହୁଅଇ ।
ଅନଳ ଲାଗି ଯେସନ୍ତେ ହୋଇ
ତୃଣ ସମୂହ ନାଶ ଯାଇ ।
ସମ୍ପୂର୍ଣ୍ଣ ନାମ ଯେ ଅଟନ୍ତି
ହୃଦେ ଭାବନା ରୂପ ମୂର୍ତ୍ତି ।
ଯାହାର ନାମ ରୂପ ନାହିଁ
ପୁରାଣ ପୁରୁଷ ଅଟଇ ।
ଏମନ୍ତ ଯେଉଁ ରାମଚନ୍ଦ୍ର
ତାହାଙ୍କ ଚରଣେ ରାଜେନ୍ଦ୍ର ।
ବଇର ଛାଡ଼ି ବଂଶ ଭଜ
ଅତ୍ମା ଭାବନା କର ଭଜ ।
ମାଗଇ କ୍ଷୁଦ୍ର ହଳଧର
ହେ ରାମ କରୁଣାସାଗର ।
ସୀତା ଲକ୍ଷ୍ମଣ ସହିତରେ
ତୁମ୍ଭ ଚରଣ ପଙ୍କଜରେ ।
ମୋ ମନ ନିରନ୍ତରେ ରହୁ
ଏମନ୍ତ ରୂପେ ଅଙ୍ଗୀ ହେଉ ।
ଏ ଶତେ ଅଠଷଠି ପଦ
ସମସ୍ତ ଜନର ସୁଖଦ ।

ନାଶ ହୋଇଲ ଲଙ୍କସାଇଁ
ସେ ରୂପେ ନାଶଯିବ ମୁହିଁ ।
ସୁହୃଦ ବନ୍ଧୁ ପୁତ୍ର ନାତି
ସବୁ ତ ମଲେ ଲଙ୍କପତି ।
ସମୂଳେ କୁଳକୁ ମରାଇ
ଜୀବନ ରାଜ୍ୟ ବଇଦେହୀ ।
ଜଡ଼ାତ୍ମା ଯେଉଁ କଳେବର
ଏଥିରେ କି କାର୍ଯ୍ୟ ତୁମ୍ଭର ।
ସୀତାଙ୍କୁ ଦିଅ ଶ୍ରୀରାମଙ୍କୁ
ରାଜ୍ୟଦେଇ ବିଭୀଷଣଙ୍କୁ ।
ମୁନିମାନଙ୍କର ଯେ ସ୍ଥାନ
ତହିଁକି ଯାଅ ଦଶାନନ ।
ପ୍ରଭାତୁ ଶୁଦ୍ଧ ଜଳେ ସ୍ନାନ
ସନ୍ଧ୍ୟାଦି ନିତ୍ୟ କର୍ମମାନ ।
ଏତେକ କରି ସୁଖାସନ
ଗୋଷ୍ଠିକେ ବସି ଦଶାନନ ।
ଛାଡ଼ି ସମସ୍ତ ସଙ୍ଗମାନ
ଏକାନ୍ତେ ହୋଇଣ ମଉନ ।
ବାହାରୁ ସବୁ ଇନ୍ଦ୍ରିୟଙ୍କୁ
ନେଇଣ ଅନ୍ତଃକରଣଙ୍କୁ ।
ଅତ୍ମାରୁ ପ୍ରକୃତି ଅନ୍ତର
ବିଚାର ଏ ପ୍ରକାରେ କର ।
ଚର ଅଚର ଯେତେ ଭୂତ
ଶରୀର ସହିତେ ଯେତେକ ।
ବୁଦ୍ଧି ଇନ୍ଦ୍ରିୟ ଆଦି ଯେତେ
ବ୍ରହ୍ମରୁ ସ୍ତମ୍ବ ପର୍ଯ୍ୟନ୍ତେ ।
ଦେଖିବା ଶୁଣିବା ଯେତେକ
ମାୟା ସ୍ୱରୂପଟି ଏତେକ ।
ତାଙ୍କୁଟି ବୋଲନ୍ତି ପ୍ରକୃତି
ସଂସାର ସର୍ଜନାର ସ୍ଥିତି ।
ସଂହାର ସହିତରେ ବୀର
କାରଣ ଏ ତିନି କଥାର ।
ଲୋହିତ ବର୍ଣ୍ଣ ଶ୍ୱେତ ଶ୍ୟାମ
ଏରୂପେ କରେ ପ୍ରଜନନ ।
କାମ କ୍ରୋଧାଦି ଏହା ପୁଅ
ହିଂସା ତୃଷ୍ଣାଦି ଏହା ଝିଅ ।
ଆତ୍ମାକୁ ଆପଣା ଗୁଣରେ
ମୋହ କରଇ ନିରନ୍ତରେ ।
କର୍ତ୍ତା ଭୋକ୍ତା ଆଦି ହୋଇ
ଯେ ସୁଖ ସମୂହ ହୁଅଇ ।
ଏ ଅଟେ ଆପଣାର ଗୁଣ
ତାହା ଈଶ୍ୱରଠାରେ ପୁଣ ।
କରଇ ନେଇ ଅରୋପଣ
ତହିଁରେ ସେ ଚଣ କରଣ ।
ସର୍ବଦା ତାଙ୍କ ସଙ୍ଗ ପାଇ
ସେ ପୁଣ କ୍ରୀଡ଼ା କରୁଥାଇ ।
ଆତ୍ମା ବିଶୁଦ୍ଧ ସେ ମାୟା'ର
ସଙ୍ଗତେ ଲଭଇ ହେ ବୀର ।
ଦେଖୁଥିଲେ ହେ ଆପଣାକୁ
ପାସୋରି ସେ ମାୟାଗୁଣକୁ ।
ମନୁଷ୍ୟ ଅନୁଗତ ହୋଇ
ତହିଁରେ କରି ମୋହ ପାଇ ।
ଥିଲେ ଅସଦ ଗୁଣ ଚଣ
ଯେତେ ତା କହିଲି ରାବଣ ।
ଏତେକ ଯେବେ ସେ ବୁଝଇ
ତେବେ ତା ମନ ନିବର୍ତ୍ତିଇ ।
ଆତ୍ମାକୁ ପ୍ରକାଶ କରଣ
ନିଶ୍ଚୟ ଦେଖଇ ଆପଣ ।
ଜୀବନ ମୁକତି ଲଭଇ
ମାୟା ଗୁଣରୁ ମୁକ୍ତ ହୋଇ ।

ତୁମ୍ଭେ ସେ ରୂପେ ଲଙ୍କସାଇଁ
ମୋହ କଥାକୁ ହେତୁ ପାଇ ।
ଇନ୍ଦ୍ରସ୍ତ ସମୂହକୁ ଜିଣି
ଅସ୍ମାକୁ ବଶୁଭ କରଣ ।
ଅତ୍ମା ପ୍ରକୃତ ଏ ଅନ୍ତର
ଜାଣି ମୂକତ ହେବ ବୀର ।
ଯେତେକ କହିଲ ରାଠକ୍ଷ
ଏରୂପେ ନ ପାରିଲେ ପୁଣ ।
ସଗୁଣ କର ଦଶଶିର
ସେ ଈଶ୍ୱରଙ୍କୁ ଅଶେଷର ।
ହୃଦୟ ପଙ୍କଜ ମଧ୍ୟରେ
କର୍ଣ୍ଣିକା ଅଛୁ ଯେ ତହିଁରେ ।
ଅତ୍ୟନ୍ତ କୋମଳ ଅଟଇ
ମଣିମାନଙ୍କେ ଯୁତ ହୋଇ ।
ତହିଁରେ ସୁବର୍ଣ୍ଣ ଆସନ
ଶୋଭା ପାଉଛି ଦଶାନନ ।
ଜାନକୀ ତୁଲେ ସେ ଆସନେ
ବସି ଅଛନ୍ତି ବୀରାସନେ ।
ବିଶାଳ କମଳ ନୟନ
ବିଜୁଳି ପରାଏ ବସନ ।
କିରୀଟି ମକର କୁଣ୍ଡଳ
କୌସ୍ତୁଭ ହାର ବନମାଳ ।
ନୂପୁର କେୟୂର କଙ୍କଣ
ଅଛଇ ଆଦ ଆଭରଣ ।
କୋଟି କନ୍ଦର୍ପ ପ୍ରାଏ ଶୋଭା
ଲକ୍ଷ ଆଦତ୍ୟଙ୍କର ପ୍ରଭା ।
ଲକ୍ଷ୍ମଣ ଧନୁଶର ଧରି
ପାଶେ ଅଛନ୍ତି ସେବାକରି ।
ସମସ୍ତ ହୃଦରେ ଅଛନ୍ତି
ପରମ ଆତ୍ମା ଯେ ଅଟନ୍ତି ।

ସେ ଶ୍ରୀରାମଙ୍କୁ ଏ ପ୍ରକାରେ
ଚିନ୍ତଣ ସମସ୍ତ କାଳରେ ।
ପରମ ଭକତ ନିଷ୍ଠାଏ
ଲଭିବ ନ କର ସଂଶୟେ ।
ଭକତମାନଙ୍କ ତୁଲରେ
ସଙ୍ଗ ହୋଇବ ନିରନ୍ତରେ ।
ଶ୍ରୀରାମ କଥା ପ୍ରତିଦିନ
ଶ୍ରବଣ କର ଦଶାନନ ।
ଏମନ୍ତ କଲେ ହେ ରାଜନ
ଯେତେକ ମହାପାପ-ମାନ ।
ସବୁ ଜନ୍ମରେ କରିଥାଇ
କ୍ଷଣେକ ସେ ନାଶ ହୁଅଇ ।
ଅନଳ ଲାଗି ଯେସନେ ହୋଇ
ତୃଣ ସମୂହ ନାଶ ଯାଇ ।
ସମ୍ପୂର୍ଣ୍ଣ ନାମ ଯେ ଅଟନ୍ତି
ହୃଦେ ଭାବନା ରୂପ ମୂର୍ତ୍ତି ।
ଯାହାର ନାମ ରୂପ ନାହିଁ
ପୁରାଣ ପୁରୁଷ ଅଟଇ ।
ଏମନ୍ତ ଯେଉଁ ରାମଚନ୍ଦ୍ର
ତାହାଙ୍କ ଚରଣେ ରାଜେନ୍ଦ୍ର ।
ବଇର ଗାଢ଼ ବଂଶ କୁଳ
ଆତ୍ମା ଭାବନା କର ଭଜ ।
ମାଗଇ କ୍ଷୁଦ୍ର ହଳଧର
ହେ ରାମ କରୁଣାସାଗର ।
ସୀତା ଲକ୍ଷ୍ମଣ ସହିତରେ
ତୁମ୍ଭ ଚରଣ ପଙ୍କଜରେ ।
ମୋ ମନ ନିରନ୍ତରେ ରହୁ
ଏମନ୍ତ ରୂପେ ଆଜ୍ଞା ହେଉ ।
ଏ ଶତେ ଅଠଷଠି ପଦ
ସମସ୍ତ ଜନର ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ବର ସମ୍ବାଦେ
ଲଙ୍କାକାଣ୍ଡେ ନାମ ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଈଶ୍ବର ଏମନ୍ତ ଅନନ୍ତରେ
କହିଲେ ଭବାନୀ ଅଗରେ ।
ସାକ୍ଷାତ ଅମୃତ ସମାନ
ସେ କାଳନେମୀର ବଚନ !
ତା ଶୁଣି ଚିତ୍ତରେ ଯେସନ
ଜଳ ଉଠଇ ହୁତାଶନ ।
ସେ ରୂପେ ହୋଇ ପ୍ରଜ୍ଜ୍ୱଳିତ
କୋପେ ରକତ କରି ନେତ୍ର ।
କାଳନେମୀକୁ ଦଶାନନ
କହିଲେ ଏମନ୍ତ ବଚନ ।
ମୁଁ ଦେଲି ଉତ୍ତରରେ ଅନୁଜ୍ଞା
ତାହା ତୁ କରୁଛୁ ଅବଜ୍ଞା ।
ଦୁରାତ୍ମା ମୁଁ ତୋତେ ଅବଶ୍ୟ
ଏଠାରେ କରିବି ବିନାଶ ।
ଶତ୍ରୁଠାରୁ ତୁ କି ପାଇଲୁ
ରାମର ସେବକ ତୁ ହେଲୁ ।
ସେ ଘେନି ତୁ ଏମନ୍ତ କରି
କହୁଛୁ ତାହା ପଥ ଧରି ।
ସେ କାଳନେମୀ ଏହା ଶୁଣି
କହିଲା ରାବଣକୁ ପୁଣି ।
ହେ ସ୍ୱାମୀ ଶୁଣ ବିଂଶଭୁଜ
କୋପ କରବାରେ କି କାର୍ଯ୍ୟ ।
ତୁମ୍ଭଙ୍କୁ ଯେବେ ମୋ ବଚନ
ରୁଚଇ ନାହିଁ ହେ ରାଜନ ।

ତେବେ ମୁଁ ଯାଇ ତୋଷ ହୋଇ
ସେ କାର୍ଯ୍ୟ ସେ ରୂପେ କରଇ ।
ଏହି ସେ ଏମନ୍ତ ପ୍ରକାରେ
ରାବଣ ଆଜ୍ଞା ଘେନି ଶିରେ ।
ମାରୁତିର ବିଘ୍ନ ହେବାକୁ
ସତ୍ବରେ ଗଲା ସେ ସ୍ଥାନକୁ ।
ହିମ ଶୈଳ ପାଖେ ହେଲା
ମାୟାରେ ତପୋବନ କଲା ।
ଅନେକ ଶିଷ୍ୟମାନ କରି
ମାୟାରେ ମୁନିବେଶ ଧରି ।
ମାରୁତି ଆସିବାକୁ ଚାହିଁ
ରହିଲେ ଏ ପ୍ରକାର ହୋଇ
ଏହି ସମୟେ ହନୁମାନ
ଚାହିଁଲେ ଦେଖି ସେ ଅରଣ୍ୟ ।
ପୂର୍ବକାଳରେ ତ ଏଠାଇଁ
ଆଶ୍ରମ ଦେଖି ନ ଥିଲଇଁ ।
ଅମାଗେଁ ଅବା ଅଇଲଇଁ
କି ଅବା ଭ୍ରମ ଏ ଅଟଇ ।
ଏବେ ଯାଇ ଏ ଆଶ୍ରମକୁ
ଦେଖିବା ମୁନି ସମୂହକୁ ।
ସଲିଳ ପାନର ଅନ୍ତରେ
ଦ୍ରୋଣଗିରିକି ଯିବା ପରେ ।
ଗୃହଢଗକୁ ସେ ଅରଣ୍ୟ
ଯୋଜନ ଲେଖାଏଁ ସମାନ ।

ବୃକ୍ଷ ନିକଟରେ ପକ୍ୱ ଫଳେ
ଲମ୍ବିତ ଅଛନ୍ତି ସକଳେ ।
କଦଳୀ ନାରଙ୍ଗ ବେଲ ତାଳ
ଖର୍ଜ୍ଜୁର ପନସ ବକୁଳ ।
ଏ ଆଦି ନାନା ବୃକ୍ଷମାନ
ଥିବାରେ ପରିଚ୍ଛନ୍ନ ସେ ବନ ।
ବହୁଳ ଗୁଳ୍ମ ଜନ୍ତୁମାନେ
ଅନେକ ଅଛନ୍ତି ସେ ବନେ ।
ଶୁଷ୍କ ହୋଇଛି ଅତ୍ୟନ୍ତ
ତହିଁରେ ହେଲେ ହନୁମନ୍ତ ।
ଦେଖିଲେ ମୃଗଚର୍ମ ଧରି
ରାଷ୍ଟ୍ର ଛନ୍ଦ ଯୋଗ କରି ।
ପୂଜନ୍ତି ମୃତ୍ତିକା ଶଙ୍କର
ବିସ୍ମିତ ହୋଇ କପିବୀର ।
ବନ୍ଦନ ନମସ୍କାର କଲେ
ଅଞ୍ଜଳି ହୋଇଣ କହିଲେ ।
ଭୋ ମୁନି ରାମର ମୁଁ ଦୂତ
ନାମ ମୋହର ହନୁମନ୍ତ ।
କ୍ଷୀରସିନ୍ଧୁକୁ ରାମ ମୋତେ
ପେଷିଲେ ଭାର୍ଯ୍ୟାର ନିମନ୍ତେ ।
ତୃଷାରେ ହୋଇଛି ଆରତ
ଜଳ ଚାହିଁଛି ତପୋବନ୍ତ ।
ମୁଁ ଯେତେ ଇଚ୍ଛାକରି ପାନ
କରିବି କହ ତା ବହନ ।
ଶୁଣି ସେ ମାୟା ତପୋବନ୍ତ
ବୋଇଲେ ଅହେ ହନୁମନ୍ତ ।
ଅମୃତ ଏ କମଣ୍ଡଳୁ ନୀର
ବଡ଼ ବେଗରେ ପାନକର ।
ପାଚିଲା ଫଳମାନ ଖାଅ
ଟିକିଏ ସୁଖେ ନିଦ୍ରା ଯାଅ ।

ଭୂତ ଭବିଷ୍ୟ ବର୍ତ୍ତମାନ
ଏ ତିନିକାଳ ହନୁମାନ ।
ତପସ୍ୟାବଳେ ଜାଣ ମୋତେ
ସମସ୍ତ ହୁଅଇ ପରତେ ।
ଶ୍ରୀରାମ ଗୃହିଣୀଙ୍କୁ ନେବେ
ଲକ୍ଷ୍ମଣ କପି ସୈନ୍ୟ ଯୋଗେ ।
ସମସ୍ତେ ଉଠିଲେ ବହନ
ଚଞ୍ଚଳ ନ କର ତୋ ମନ ।
ଏହା ଶୁଣନ୍ତେ ସେ ମାରୁତ
ତାହାଙ୍କୁ ବୋଇଲେ ହେ ଯତି ।
କମଣ୍ଡଳୁ ଜଳେ ତୁମ୍ଭର
ନୋହିବ ତୃଷା ଶାନ୍ତି ମୋର ।
ଏ ଯେଣି କରିଣ ବହନ
ଦେଖାଇ ଦିଅ ଜଳସ୍ଥାନ ।
ଯହୁଁ ସେ ଏମନ୍ତ ଶୁଣିଲେ
ମାୟା ଶିଷ୍ୟଙ୍କୁ ଆଜ୍ଞା ଦେଲେ ।
ଏହାଙ୍କୁ ସଙ୍ଗେ ଘେନି ଯାଇ
ଦିଅ ପୁଷ୍କରିଣୀ ଦେଖାଇ ।
ବୋଇଲେ ଅହେ ହନୁମନ୍ତ
ବୁଜି ଆପଣା ବେନି ନେତ୍ର ।
ସନ୍ତୋଷେ କରି ଜଳପାନ
ଏଠାକୁ ଆସିବ ବହନ ।
ମନ୍ତ୍ର ଗୋଟିଏ ଦେବା ତୋତେ
ଔଷଧି ଦେଖିବୁ ଯେମନ୍ତେ ।
ମାରୁତି ସେ ଉତ୍ତରେ ଗଲେ
ଶିଷ୍ୟ ସଲିଳ କହି ଦେଲେ ।
ତହିଁରେ ପଶି ହନୁମାନ
କରନ୍ତେ ନେତ୍ର ବୁଜି ପାନ ।
ଶରୀର ପର୍ବତ ପରାୟେ
ଏମନ୍ତେ ମକରୀ ଗୋଟିଏ ।

ବେଗେ ସେ ମାରୁତକି ଧର
ଗିଳନ୍ତେ ବଦନ ବିସ୍ତାର ।
ଏମନ୍ତ ଦେଖି କପିବର
ଭେଦନ କରେ ତା କଳେବର ।
ବିଦାର ପକାନ୍ତେ କ୍ରୋଧରେ
ମର ସେ ପଡ଼ିଲା କ୍ଷିତରେ ।
ସେ ଯାଇଁ ଅକାଶରେ ରହି
ଉତ୍ତମ କଳେବର ପାଇ ।
ସେ ଅପସରୀ ରୂପ ବହି
କହିଲା ମାରୁତକି ଗୃହି ।
ଅପସରୀ ମୁଁ ଧାନ୍ୟମାଳୀ
ତୁମ୍ଭରେ ଶାପ ମୁକ୍ତ ହେଲି ।
ପୂର୍ବେ ତପସ୍ୱୀ ଜଣେ କେହୁ
କଲୁ କାରଣେ କ୍ରୋଧ ବହି ।
ଏ ରୂପେ ଦେଇଥିଲେ ଶାପ
ତୁମ୍ଭରେ ହୋଇଲି ନିଷ୍ପାପ ।
ଅଶ୍ରମେ ଦେଖିଲ ଯାହାକୁ
ସେ କାଳନେମୀ ରାକ୍ଷସକୁ ।
ପଠିଅଇଛି ଦଶାନନ
ତୁମ୍ଭଙ୍କ କରିବାକୁ ବିଘ୍ନ ।
ଧରିଛି ମିଛେ ମୁନି ବେଶ
ତପସ୍ୱୀ ନୁହେ ସେ ରାକ୍ଷସ ।
ଋଷିଙ୍କି କରଇ ଭୋଜନ
ଜାଣ ସେ ଦୁଷ୍ଟକୁ ନିଧନ ।
ସେ ଦ୍ରୋଣଗିରିକୁ ବହନ
ଗମନ କର ହନୁମାନ ।
ତୁମ୍ଭ ପରଶେ କର ମୋର
ନିଷ୍ପାପ ହୋଇଲା ଶରୀର ।
ବ୍ରହ୍ମ ଲୋକକୁ ହନୁମାନ
ମୁଁ ଏବେ କରୁଛି ଗମନ ।

ଏତେ କହି ସେ ହରଷରେ
ସ୍ୱର୍ଗକୁ ଗଲା ବିମାନରେ ।
ମାରୁତ ଶୁଣି ସେ ଭକ୍ତିରେ
ମିଳିଲେ କାଳନେମୀ ଠାରେ ।
ରାକ୍ଷସ ତାହାଙ୍କୁ ଅନାଇ
କହିଲା ହସ ହସ ହୋଇ
ଅସିବା ହେଉ ହନୁମନ୍ତ
ବିଳମ୍ବ କଲ ତ ବହୁତ ।
ଏବେ ମୋଠାରୁ ମନ୍ତ୍ର ନିଅ
ଗୁରୁ ଦକ୍ଷିଣା ବେଗେ ଦିଅ ।
ଶୁଣି ସେ ପବନ କୁମର
ବହନ ମୁଠା କରି କର ।
ବୋଇଲେ ପଛେ ଦେବ ମନ୍ତ୍ର
ଦକ୍ଷିଣା ନେଇ ତପୋବନ୍ତ ।
ଏହା କହି ସେ କ୍ରୋଧଭରେ
ମାଇଲେ ନେଇ ତାହା ଶିରେ ।
ମୁଥ ବାଜନ୍ତେ ସେ ରାକ୍ଷସ
ବହନ ଛାଡ଼ି ଋଷିବେଶ ।
ବିବିଧ ମାୟାମାନ କଲା
ତାହାଙ୍କ ସଙ୍ଗତେ ଯୁଝିଲା ।
ଯେ ମହାମାୟା ବୃନ୍ଦେ ଯୁତ
ଏମନ୍ତ ସମର ଯେ ଦୂତ ।
ମାୟାବୀ ଯେତେକ ଦଇତ
ତାଙ୍କର ଅନ୍ତେ ଅମିତ ।
ଏମନ୍ତ ଯେ ସେ କପିବୀର
ମାରନ୍ତେ କାଳନେମୀ ଶିର ।
ଅନେକ ଖଣ୍ଡ ହୋଇଗଲା
ମର ସେ ଭୂମିରେ ପଡ଼ିଲା ।
ମାରୁତ ପୁଣି ସେ ତ୍ୱରିତରେ
ମିଳିଲେ କ୍ଷୀର ସମୁଦ୍ରରେ ।

ଦ୍ରୋଣ ପର୍ବତେ ସେ ଉଠିଲେ
ଯହୁଁ ଔଷଧି ନ ଚିହ୍ନିଲେ ।
ସେ ଗିରି ଉପାଡ଼ି ଆଣିଲେ
ଶ୍ରୀରାମ ସମ୍ମୁଖରେ କହିଲେ ।
ଆଣିଲି ଗିରିଯାକ ବୀର
ଯେମନ୍ତ ଇଚ୍ଛା ତାହାଙ୍କର ।
ବିଳମ୍ବ କରିବା ଗୋସାଇଁ
କେତେହେଁ ଉଚିତ ନୁହଇ ।
ଏମନ୍ତ ଶୁଣି ରାମଚନ୍ଦ୍ର
ହୋଇ ସେ ପରମ ଆନନ୍ଦ ।
ଅନୁଜ୍ଞା ସୁଷେଣଙ୍କୁ ଦେଇ
ପର୍ବତୁ ଔଷଧି ଆଣାଇ ।
ସେ ଲକ୍ଷ୍ମଣଙ୍କ ତାଙ୍କକରେ
ଚିକିତ୍ସା କରନ୍ତେ ସତ୍ୱରେ ।
ନିଦ୍ରାଭଙ୍ଗର ପ୍ରାୟେ ପୁଣ
ଉଠିଣ ଡାକିଲେ ଲକ୍ଷ୍ମଣ ।
ରାବଣ ରହ ରହ ରହ
କେଣେ ତୁ ଯିବୁ ତାହା କହ ।
ମୋ ଆଗେ ପଡ଼ିଛୁ ରାକ୍ଷସ
ଆଜ କରିବି ତୋତେ ନାଶ ।
ଏମନ୍ତ ବୋଲନ୍ତେ ଲକ୍ଷ୍ମଣ
ଶ୍ରୀରାମଚନ୍ଦ୍ର ତାଙ୍କୁ ପୁଣ ।
ଆଶ୍ଳେଷ କରିଣ ସ୍ନେହରେ
ମସ୍ତକ ଶୁଙ୍ଘି ହରଷରେ ।
ବୋଇଲେ ସେ ହନୁମନ୍ତଙ୍କୁ
ତୁମ୍ଭ ପ୍ରସାଦୁ ଲକ୍ଷ୍ମଣଙ୍କୁ
ଦେଖିଲି ନିରାମୟ କରି
ଏ ରୂପେ କହି ରାବଣାରି ।
ସୁଗ୍ରୀବ ଲକ୍ଷ୍ମଣ ତୁଲରେ
କପିମାନଙ୍କ ସଙ୍ଗତରେ ।

ଘେନିଣ ସେ ବିଭୀଷଣଙ୍କୁ
ରହିଲେ ଯୁଦ୍ଧ କରିବାକୁ ।
ବୃକ୍ଷ ପାଷାଣ ନଗ ଶୃଙ୍ଗ
ଘେନି ସମସ୍ତ ଶାଖାମୃଗ ।
ବଡ଼ ଗର୍ଜନମାନ କଲେ
ଯୁଝିବା ପାଇଁ ବେଗେ ଚଲେ ।
ରାମ ଆଜ୍ଞାରେ ହନୁମନ୍ତ
ବହନ ଦୋଣ ପରବତ ।
ନେଇ ସେ ନିଜ ସ୍ଥାନେ ଥୋଇ
ମିଳିଲେ ଆସି ଶୀଘ୍ର ହୋଇ ।
ସିଂହ ସକାଶୁ ଗଜମାନେ
ଗରୁଡ଼ଠାରୁ ସର୍ପଯେମନ୍ତେ ।
ଲଭନ୍ତି ପରାଭବ ମାନ
ତେମନ୍ତେ ରାମରେ ଦଶାନନ ।
ତାଡ଼ିତ ହୋଇ ବ୍ୟଥା ପାଇ
ପଳାଇ ନିଜ ପୁରେ ଯାଇଁ ।
ସିଂହାସନରେ ବସେ ଖଳ
ରାକ୍ଷସମାନଙ୍କୁ କହିଲା ।
ମନୁଷ୍ୟ ସକାଶୁ ଅବଶ୍ୟ
ମୋହର ହୋଇବ ମରଣ ।
ଏମନ୍ତ ବୋଲି ପ୍ରଜାପତି
ପୂର୍ବେ ଆମ୍ଭଙ୍କୁ ଦେଇଛନ୍ତି ।
ମୋତେ ତ ମାରିବାକୁ କେହୁ
ମନୁଷ୍ୟ ଧରଣୀରେ ନାହିଁ ।
ଶ୍ରୀନାରାୟଣ ଏଣୁ କରି
କପଟେ ରାମରୂପ ଧରି ।
ହୋଇ ଅଛନ୍ତି ନରବେଶ
ଆମ୍ଭକୁ କରିବାକୁ ନାଶ ।
ଅନରଣ୍ୟ ତ ପୂର୍ବକାଳେ
ଆମ୍ଭଙ୍କୁ ଶାପ ଦେଇଥିଲେ ।

ଯେ ବଂଶେ ଜନ୍ମ ରାମନାମ
ପରମ ଆତ୍ମା ହୋଇଜନ୍ତି ।
ତାଙ୍କର ପ୍ରସାଦ ସମ୍ମତେ
ନିଶ୍ଚୟେ ମାରବେ ସେ ତୋତେ ।
ସଂଶୟ ଏ କଥାରେ ନାହିଁ
ସ୍ୱର୍ଗକୁ ଗଲେ ଏହା କହି ।
ଏ ସେହୁ ପରମାତ୍ମା ରାମ
ହୋଇ ଅଛନ୍ତି ନିଃଷ୍ଟ ଜନ୍ମ ।
ଯୋତେ ଏ ମାରବେ ନିଶ୍ଚୟେ
ନାହିଁ ଏ କଥାରେ ସଂଶୟେ ।
କୁମ୍ଭକର୍ଣ୍ଣ ତ ପୂର୍ବ ହେଲ
ଅନବରତେ ନିଦ୍ରାଗଲେ ।
ଏ ବେଳେ ତୁମ୍ଭେ ବେଗେ ଯାଇ
ଆଣ ତାଙ୍କୁ ନିଦ୍ରା ଭଙ୍ଗାଇ ।
ଶୁଣି ସେ ଯାଇ ତୋଷ ହୋଇ
ବଡ଼ ଯତ୍ନେ ନିଦ୍ରା ଭଙ୍ଗାଇ ।
କୁମ୍ଭକର୍ଣ୍ଣଙ୍କୁ ଘେନି ଖରେ
ମିଳିଲେ ରାବଣ ସମ୍ମୁଖରେ ।
ସିଂହାସନରେ ଦଶାନନ
ଅଛନ୍ତି ଦେଖି କୁମ୍ଭକର୍ଣ୍ଣ ।
ବନ୍ଦନ ନମସ୍କାର କଲେ
ତାହାଙ୍କ ସାମ୍ନରେ ବସିଲେ ।
ରାବଣ ତାହାଙ୍କୁ ଅନାଇ
ଦୀନଲୋକର ପ୍ରାୟେ ହୋଇ ।
ଦୁଃଖରେ କହିଲେ ଏସନ
ବୋଇଲେ ଅହେ କୁମ୍ଭକର୍ଣ୍ଣ ।
ବହୁତ କଷ୍ଟ ହେଲା ମୋର
ଶୁଣିମା ହେଉ ତାହା ବୀର ।
ବଳ ବାନ୍ଧବ ପୁତ୍ର ନାତି
ସବୁ ମାଇଲେ ରଘୁପତି ।

ପ୍ରବେଶ ହେଲା ମୃତ୍ୟୁକାଳ
ମୁଁ କି କରିବି ଏ ବେଳ ।
ସୁଗ୍ରୀବ ତୁଲେ ରାମଚନ୍ଦ୍ର
କପିଙ୍କି ଘେନିଣ ସମୁଦ୍ର ।
ଅନାୟାସରେ ପାର ହୋଇ
ସୁବେଳ ପର୍ବତେ ରହି ।
ମାରି ସେ ଅନେକ ରାକ୍ଷସ
କରୁଛନ୍ତି ମୂଳ ମଧ୍ୟ ନାଶ ।
ଯେତେକ ଶ୍ରେଷ୍ଠ ରକ୍ଷ ଥିଲେ
ସବୁତ ବାନରେ ମାଇଲେ ।
କପିମାନଙ୍କ ହତ ଭ୍ରାତ
ଦେଖି ତ ନାହିଁ କଦାଚିତ ।
ନିଦ୍ରା ଭଙ୍ଗାଇ ଯହିଁ ପାଇଁ
ତୁମ୍ଭଙ୍କୁ ଅଣଲି ଘେନାଇ ।
ତାଙ୍କୁ ଭାଇ ନିମନ୍ତେ ବୀର
ମାର ଦୁଷ୍କର କର୍ମକର ।
ରାବଣ ବେଦନ ବଚନ
ଏରୂପେ ଶୁଣି କୁମ୍ଭକର୍ଣ୍ଣ ।
ଅତ୍ୟନ୍ତ ଉଚ୍ଚରେ ହସିଲେ
ଏମନ୍ତ ବଚନ କହିଲେ ।
ପୂର୍ବେ ତ ବିଗ୍ରହ କାଳରେ
କହିଛି ମୁଁ ତୁମ୍ଭ ସମ୍ମୁଖରେ ।
ନାରାୟଣ ସେ ରଘୁସାଇଁ
ଯୋଗମାୟାଟି ବଇଦେହୀ ।
ଏମନ୍ତ କହିଲେ ହେ ଭ୍ରାତ
ବୁଝିଲ ନାହିଁ କଦାଚିତ ।
ପୂର୍ବକାଳରେ ଏକ ଦିନେ
ଥିଲି ମୁଁ ବିଶାଳ ଅରଣ୍ୟେ ।
ସେଠାରେ ଦେଖି ନାରଦଙ୍କୁ
ଏମନ୍ତ ପଚାରିଲି ତାଙ୍କୁ ।

କେଉଁଠାରୁ ହେ ତପୋଧନ
ଏଠାକୁ କଲ ଆଗମନ ।
କହିଲେ ସେ ଦେବ ଲୋକରେ
ଥିଲି ତାହାଙ୍କ ବିଚାରରେ ।
ଯେଉଁ ବିଚାର ହେଲା ତହିଁ
କହିବି ଶୁଣ ମନ ଦେଇ ।
ଦେବଙ୍କ ବ୍ରହ୍ମେ ଯାଇ ବେନି
ପୀଡ଼ା ଯେ କଲ ଏହୁ ଯେଣୁ ।
ସେମାନେ ବିଷ୍ଣୁଠାକୁ ଗଲେ
ତାଙ୍କ ଭକ୍ତିରେ ସ୍ତୁତିକଲେ ।
କହିଲେ ତ୍ରୈଲୋକ୍ୟ ଯାକର
କଣ୍ଟକ ହେଲା ଦଶଶିର ।
ଅତି ଅକ୍ଷୋଭ ସେ ରାକ୍ଷସ
ତାହାକୁ ବେଗେ କର ନାଶ ।
ନର ସକାଶୁ ପ୍ରଜାପତି
ତା ମୃତ୍ୟୁ ହେବ ବୋଲିଛନ୍ତି ।
ଏଣୁ ଆପଣ ହୋଇ ନର
ବହନ ତାକୁ ବଧକର ।
ମହାବିଷ୍ଣୁ ଯେ ସତ୍ୟବ୍ରତ
ସେ କଥା କରି ସେ ସମ୍ମତ ।
ସେ ବିଷ୍ଣୁ ବହି ରାମନାମ
ରଘୁକୁଳରେ ହେଲେ ଜନ୍ମ ।
ତୁମ୍ଭମାନଙ୍କ ସେ ଅବଶ୍ୟ
ଜାଣିଥା କରିବେ ବିନାଶ ।
ଏମନ୍ତ କହି ମୋ ଆଗରେ
ନାରଦ ଗଲେ ଆକାଶରେ ।
ଏ ଯେଣୁ ଜାଣ ସେ ଶ୍ରୀରାମ
ନିଶ୍ଚେ ଅଟନ୍ତି ପରଂବ୍ରହ୍ମ ।
ମାୟାନର ଯେ ସୀତାକାନ୍ତ
ବଇର ତେଜି ଭଜ ଭ୍ରାତ ।

ଭଗତ ଭାବେ ଯେଉଁ ନର
ତାହାଙ୍କୁ ଭଜେ ନିରନ୍ତର ।
ସେ ଲୋକଠାରେ ସେ ବହନ
ନିଶ୍ଚୟେ ହୁଅନ୍ତି ପ୍ରସନ୍ନ ।
ଭକ୍ତିରେ ହୀନ ଜନ୍ମହୋଇ
ସେ ପୁଣି ମୁକତି ପାଅଇ ।
ଯେ ପ୍ରାଣୀ ହୀନ ଭକତରେ
ଯେତେକ କର୍ମ ସେହୁ କରେ ।
କଲେହେଁ ନ ଫଲ ପାୟେ
ନାହିଁ ଏ କଥାରେ ସଂଶୟେ ।
ଲୀଳାନୁସାରେ ଭଗବାନ
ତାଙ୍କର ଅବତାର ମାନ ।
ବହୁତ ଅଛି ଲକ୍ଷପତି
କେ ତାହା ଜାଣି ନ ପାରନ୍ତି ।
ତହିଁରୁ ସହସ୍ରେକ ସମ
ନିଶ୍ଚୟେ ଜାଣ ଏ ଶ୍ରୀରାମ ।
ବିଜ୍ଞାନବନ୍ତ ମାନଙ୍କର
ମଧ୍ୟରେ ଶ୍ରେଷ୍ଠ ରଘୁବୀର ।
ଏ ଯେଣୁ କରି ଧୀରମାନେ
ମନ ବଚନ ପ୍ରତିଦିନେ ।
ରାମଙ୍କୁ ଭଜି ନିରନ୍ତର
ଅନାୟାସେ ତରନ୍ତି ସଂସାର ।
ନାଶିଣ ସମସ୍ତ ବିପଦ
ଲଭନ୍ତି ସେ ପରମପଦ ।
ଯେବଣ ସାଧୁ ଲୋକମାନେ
ରାମଙ୍କୁ ଶୁଦ୍ଧସତ୍ତ୍ୱ ମନେ ।
ନିରତେ ଧିଆନ କରନ୍ତି
ତାଙ୍କ ଚରିତ ପଢ଼ୁଥାନ୍ତି ।
ଏ ଘୋର ଭବସର୍ପ ପାଶ
ମୁକତ କରିବେ ଅବଶ୍ୟ ।

ସୀତାପତିର ଯେଉଁ ପଦ
ଅତ୍ୟନ୍ତ ପରମ ସୁଖଦ ।
ତାହିଁକି ନମସ୍ତେ ଲଙ୍କପତି
ସୁଖେ ସେ ଗମନ କରନ୍ତି ।
ବୋଲଇ ଧ୍ୟାନ ହଲଧର
ହେ ରାମ କରୁଣାସାଗର ।
ଏ ଘେନି କରି ଧୀରମାନେ
ମନବଚନ ପ୍ରତିଦିନେ ।
ସୀତା ସହିତ ତୋ ପାଦରେ
ଭକତି ହେଉ ନିରନ୍ତରେ ।
ଶହେ ଅଶୀଏ ପଦ ଗୀତ
ହରୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଈଶାନ ଏଥୁ ଅନନ୍ତରେ
କହିଲେ ଅମ୍ବିକା ଆଗରେ ।
ସେ କୁମ୍ଭକର୍ଣ୍ଣର ବଚନ
ଏ ରୂପେ ଶୁଣି ଦଶାନନ
ବହନ ଭ୍ରୂକୁଟିକି ଧରି
ବିକଟ ବଦନ ସେ କରି ।
ଅସନ୍ତୁ କଷ୍ଟ ଉକ୍ରୁସିଲ
ତାହାକୁ ଏମନ୍ତ କହିଲା ।
ବଡ଼ ସୁବୁଦ୍ଧି କୁମ୍ଭକର୍ଣ୍ଣ
ଆମ୍ଭଙ୍କୁ କହୁ ତୁ ଏ ଜ୍ଞାନ ।
ଏମନ୍ତ ବୋଲି ଆପଣଙ୍କୁ
ଅଣାଇ ନାହୁଁ ତ ଏଠାକୁ ।
ତୁମ୍ଭଙ୍କୁ ଅମ୍ଭକଥା ଯେବେ
ରୁଚଇ ଯୁଦ୍ଧେ ଯାଇ ଢେବେ ।
ନୋହିଲେ ନିଦ୍ରା ଆପଣଙ୍କୁ
ବାଧିବ ଯାଅ ଶୋଇବାକୁ ।
କ୍ରୋଧ ହୋଇଲେ ଦଶାନନ
ଏମନ୍ତ ଜାଣି କୁମ୍ଭକର୍ଣ୍ଣ ।
କଛୁ ସେ ନ କହି ଉଠିଲେ
ଯୁଦ୍ଧ ନିମନ୍ତେ ବେଗେ ଗଲେ ।
ମହାଶଇଳ ସମହୋଇ
ଲଙ୍କା ପାଚେରି ହେଲେ ଡେଇଁ ।
ସଂଗ୍ରାମ ଭୂମିରେ ମିଳିଲେ
କପିଙ୍କି ଭୟ କରାଇଲେ ।
କରନ୍ତି ଘୋର ନାଦ ଦୃଢ
ସମୁଦ୍ରେ ଶୁଭେ ପ୍ରତିନାଦ ।
ଦୁଇ ହାତରେ ସେ ବହନ
ଗିଳନ୍ତି ଅଜସ୍ର କପିସୈନ୍ୟ ।
ଯେତେକେ ସର୍ପ ଗିଳଇ
ସେ ରୂପେ ଦିଶୁଛି ଆକାର ।
ତହୁଁ ଅନେକ ରକ୍ଷ ହରି
ଭୋଜନ କରୁଛନ୍ତି ଧରି ।
କର ଚରଣ ମୁଦୁଗର
ଏଥିରେ ସେ ରକ୍ଷବାନର ।
ଚୂର୍ଣ୍ଣ କରନ୍ତେ ସ୍ୱଣି ପୁଣି
ଏମନ୍ତ ଦେଖି ବିଭୀଷଣ ।

ବନ୍ଦନ ତାଙ୍କ ପାଦତଳେ
ପ୍ରଣାମ କରିଣ କହୁଲେ ।
ଅହେ ଭ୍ରାତ ମୁଁ ବିଭୀଷଣ
ମୋଠାରେ ଦୟା କର ପୂର୍ଣ ।
ରାବଣ ସମ୍ମୁଖରେ ହେ ବୀର
କହିଲି ମୁଁ ଅନେକ ଥର ।
ରାମ ସାକ୍ଷାତ ବିଷ୍ଣୁ ତାଙ୍କୁ
ଦେବା ହେଉ ନେଇ ସୀତାଙ୍କୁ ।
ନ ଘେନି ମୋହର ବଚନ
ମାରିବା ପାଇଁ ସେ ବନ୍ଦନ ।
ଖଡ଼ଗ ଧରିଣ ଉଠିଲେ
ବହୁତ କ୍ରୋଧରେ କହିଲେ ।
ଅଧମ ଧୂର୍ତ୍ତ ହେଉ ତୋତେ
ବେଗେ ତୁ ଛାଡ଼ି ଯା ଯା ମୋତେ ।
ଏହା ସେ ବୋଇଲାରୁ ବେଗେ
ଚ୍ୟାରି ମନ୍ତ୍ରୀଙ୍କି ଘେନି ସଙ୍ଗେ ।
ଲଙ୍କାରୁ ପଳାଇ ଆଇଲି
ରାମଙ୍କ ଶରଣ ପଶିଲି ।
ଏମନ୍ତ ଶୁଣି କୁମ୍ଭକର୍ଣ୍ଣ
କହିଲେ କରି ଆଲିଙ୍ଗନ ।
ହେ ବତ୍ସ କୁଳ ରକ୍ଷାହେବ
ରାକ୍ଷସଙ୍କ ହିତ ହୋଇବ ।
ଶ୍ରୀରାମ ପାଦେ ଏଥିପାଇଁ
ଆଶ୍ରୟ କରିଥାଅ ଯାଇ ।
ତୁମ୍ଭେ ପରମ ଭାଗବତ
ପୂର୍ବ କାଳରେ ମୁଁ ଏମନ୍ତ ।
ଶୁଣିଛି ନାରଦଙ୍କ ଠାରୁ
ଏବେ ଯିବା ହେଉ ଏଠାରୁ ।
ମୁଁ ଯୁଦ୍ଧମଦେ ମତ୍ତ ହୋଇ
ପର ଆପଣା ଚିହ୍ନୁ ନାହିଁ ।

ଶୁଣି ବିଭୀଷଣ ଏମନ୍ତ
କରି ତାହାଙ୍କୁ ଦଣ୍ଡବତ ।
ନେଇଣ ଯାଉଛି ଲକ୍ଷ୍ମଣ କହି
ବହୁତ ଚିନ୍ତାକୁଳ ହୋଇ ।
ବସିଲେ ଶ୍ରୀରାମ ପାଖରେ
ସେ କୁମ୍ଭକର୍ଣ୍ଣ ଏ ଉତ୍ତାରେ ।
ପ ଦରେ କରରେ ବହୁତ
କପିମାନଙ୍କୁ କରି ହତ ।
ଭୋଜନ କରି ସେ ବହୁତ
ମହତ ମତ୍ତହସ୍ତୀମତ ।
ସେ ରୂପେ ବୁଲନ୍ତେ ସୈନ୍ୟରେ
ଶ୍ରୀରାମ ଦେଖି କୋପଭରେ ।
ବନ୍ଦନ ପବନାସ୍ତ୍ର ଶର
କରନ୍ତେ ତାହାକୁ ପ୍ରହାର ।
ମୁଦ୍ଗରକୁ ଘେନି ତାର
ଛିଣ୍ଡିଣ ଗଲା ଦକ୍ଷ କର ।
ପୀଡ଼ିତ ହୋଇ କୁମ୍ଭକର୍ଣ୍ଣ
କରନ୍ତେ ଘୋର ଗରଜନ ।
ସେ ବାହୁ ଭୂମିରେ ପଡ଼ିଲା
ଅନେକ କପି ଚୂନା କଲା ।
ଭୟେ ପଳାଇଲେ ମର୍କଟେ
ଯେ ଥାଇ ଥିଲେ ସେ ନିକଟେ ।
ସେ କୁମ୍ଭକର୍ଣ୍ଣ ବାମକରେ
ଶାଳପାଦପ ଘେନି ଝଟରେ ।
ରାମଙ୍କୁ ମାରିବାର ପାଇଁ
ଗୋଡ଼ାନ୍ତେ ଅତି କ୍ରୋଧ ହୋଇ ।
ଶ୍ରୀରାମ କରି ଇନ୍ଦ୍ରଅସ୍ତ୍ର
ଶାଳ ସହିତେ ବାମହସ୍ତ ।
ବନ୍ଦନ କାଟି ପକାଇଲେ
ତହୁଁ ବହୁତ କପିମଲେ ।

ଗଲ ଜନ୍ତୁରେ ବାହା ହୁଇ
ଗର୍ଜନ କରି ବେରେ ଧାଇଁ ।
ଆସନ୍ତେ ପୁଣି କୁମ୍ଭକର୍ଣ୍ଣ
ଦେଖି ତା ଶ୍ରୀ ରଘୁନନ୍ଦନ ।
ଯୋଡ଼ିଏ ଅର୍ଦ୍ଧଚନ୍ଦ୍ର ଶରେ
କ୍ରୋଧରେ କଲେକ୍ତେ ପ୍ରହାର ।
ଛୁଟି ଯାଇ ସେ ଦେନି ପାଦ
କରୁଛୁ ଘୋର ନାଦ ରୁଦ ।
ଲଙ୍କାର ଦ୍ୱାରରେ ଦେଖିଲେ
ରାକ୍ଷସ ଗଣ ମିଶି ଚଲେ ।
ତା ଦେନି ବାହୁ ଯେ ଚରଣ
ଛୁଟିଲା ଜନ୍ତୁରେ ସେ ପୁଣ ।
ଘୋଡ଼ା ପ୍ରାୟେ କରି ବଦନ
ବିସ୍ତାର କରି ସେ ବହନ ।
ଚନ୍ଦ୍ରକୁ ରାହୁ ଗ୍ରାସେ ଯେମନ୍ତ
ସେ ରାମଠାକୁ ଗଲ ତେମନ୍ତ ।
ମାର୍ଗଣେ ଶ୍ରୀରାମ ବହନ
ସମ୍ପୂର୍ଣ୍ଣ କଲେ ତା ବଦନ ।
ସେ ବଡ଼ ବିକଟ ଦିଶିଲା
ଭୟଦ ନାଦ ରୁଦ୍ର କଲା ।
ଏମନ୍ତ ଦେଖି ସୀତାକାନ୍ତ
ସନ୍ଧାନ କରି ଐନ୍ଦ୍ରଅସ୍ତ୍ର ।
ଆଦିତ୍ୟ ପ୍ରାୟେ ଦଶେ ତେଜ
ନିରାଟ ଅଟେ ଯେମନ୍ତ ବଜ୍ର ।
ଓଷ୍ଠାଧର ଆକର୍ଣ୍ଣ ପର୍ଯ୍ୟନ୍ତେ
ରାକ୍ଷସ ଦେବଙ୍କୁ ବାନ୍ଧନ୍ତେ ।
ତତ୍ତ୍ୱଙ୍କ ନଗ ଶୃଙ୍ଗାକାର
ଦେଖି କୁଣ୍ଡଳ ଶବଦର ।
ତେଜରେ ହୋଇଛୁ ପ୍ରଚଣ୍ଡ
ଏମନ୍ତ ଅଟେ ଯେଉଁ ମୁଣ୍ଡ ।

ତାହାକୁ ଏ ଅସ୍ତ୍ର ବହନେ
ବୃତ୍ର ମସ୍ତକ ବଜ୍ର ଯେମନେ ।
ପୂର୍ବ କାଳରେ କାଟିଥିଲା
ଏ ସେହି ପ୍ରକାରେ ଛେଦିଲା ।
ଭୂମିରେ ପଡ଼ନ୍ତେ ସେ ଶିର
ଚୂର୍ଣ୍ଣ ହୋଇଲା ଲଙ୍କାଦ୍ୱାର ।
ଶରୀର ସିନ୍ଧୁରେ ପଡ଼ିଲା
ନିର୍ଘାତ ଶବଦ ଶୁଭିଲା
କୁମ୍ଭୀର ଆଦି ଜନ୍ତୁମାନ
ଅନେକ କଲା ସେ ନିଧନ ।
ଏଥି ଜନ୍ତୁରେ ଦେବବୃନ୍ଦ
ଗନ୍ଧର୍ବ ଯକ୍ଷ ଋଷି ସିଦ୍ଧ ।
କିନ୍ନର ଗୁହ୍ୟକ ପନ୍ନଗ
ଚାରଣ ଅପସରୀ ଖଗ ।
ସମସ୍ତେ ଅସି ଅତିବେଗେ
ଆକାଶେ ରହି ରାମ ଆଗେ ।
ବିବିଧ ରୂପେ ସ୍ତୁତି କଲେ
ହରଷେ ପୁଷ୍ପ ବରଷିଲେ ।
ସେଠାରେ ଏହି ସମୟରେ
ଆପଣା ଶରୀର ତେଜରେ ।
ଦଶଦିଗକୁ ପରକାଶି
ନାରଦ ନାମେ ଦେବ ଋଷି ।
ରାମଙ୍କୁ ଦେଖିବାର ପାଇଁ
ଆକାଶୁ ଅସି ତୋଷ ହୋଇ ।
ଧରଣୀ ତଳରେ ମିଳିଲେ
ଶ୍ରୀରାମ ରୂପକୁ ଚାହିଁଲେ ।
ନୀଳୋତ୍ପଳ ପ୍ରାୟେ କାନ୍ତ
କରେ କୋଦଣ୍ଡ ଧରିଛନ୍ତି ।
ପଙ୍କଜ ପଲ୍ଲବ ପ୍ରକାର
ନୟନ ବିଶାଳ ରୁଚିର ।

ରୌଦ୍ର ଅସ୍ତ୍ରରେ ଦକ୍ଷଭୁଜ
ଦଶୁଛି ଅନନ୍ତ ତେଜ ।
ଯେଣୁ ସଂଗ୍ରାମେ କ୍ଷୀଣ ବଂଶ
ଅନେକ ପାଇଛନ୍ତି ତ୍ରାସ ।
ଏ ସେନା ଦୟାଯୁତ ହୋଇ
ଅଛନ୍ତି ସେମାନଙ୍କୁ ଚାହିଁ ।
ଏରୂପେ ଦେଖନ୍ତେ ନାରଦ
ଭକ୍ତିରେ ହୋଇ ଗଦ ଗଦ ।
କର ଯୁଗଳ ଶିରେ ଦେଲେ
ସ୍ତୁତି କରଣ ଆରମ୍ଭିଲେ ।

ନାରଦ ଉବାଚ

ହେ ଜଗନ୍ନାଥ ଦେବ ଦେବ
ହେ ପରମାତ୍ମା ହେ ରାଘବ ।
ହେ ସନାତନ ନାରାୟଣ
ଅଖିଳ ଆଧାର କାରଣ ।
ହେ ବିଶ୍ୱସାକ୍ଷି ରଘୁବୀର
ତୁମ୍ଭଙ୍କୁ ମୋର ନମସ୍କାର ।
ଯେ ଜ୍ଞାନ ସ୍ୱରୂପ ଅଟଇ
ସେ ବସ୍ତୁ ନିଶ୍ଚେ ଅଟ ତୁହି ।
ସମସ୍ତ ଲୋକଙ୍କୁ ବଞ୍ଚାଇ
ମାୟାରେ ନରଦେହ ବହି ।
ଦୁଃଖୀ ସୁଖୀ ପରାୟେ ହୋଇ
ଦିଶିବା ହେଉଛ ଗୋସାଇଁ ।
ହେ ନାଥ ତୁମ୍ଭେ ସ୍ୱପ୍ରକାଶ
ସ୍ୱଚ୍ଛ ହୃଦୟୁ ଲୋକ ଦୃଶ୍ୟ ।
ଲୋଚନ ଫେଇଲେ ଆପଣ
ତ୍ରିପୁର ହୁଅଇ ନିର୍ମାଣ ।
ସେ ଚକ୍ଷୁ ବୁଜିଲେ ତୁମ୍ଭର
ପୁଣି ସେ ହୁଅଇ ସଂହାର ।

ଜଗତ ଯାହାଠାରେ ଅଛି
ଯା'ଠାରୁ ଜାତହିଁ ହୋଇଛି ।
କିଛିହିଁ ଅଜ ସେ ବାହାରେ
ନାହିଁ ଚଉଦ ଭୁବନରେ ।
ଏମନ୍ତ ବ୍ରହ୍ମ ତୁମ୍ଭେ ବୀର
ମୋର ତୁମ୍ଭଙ୍କୁ ନମସ୍କାର ।
ପୁରୁଷ ପରକୃତି କାଳ
ବ୍ୟକତ ଅବ୍ୟକ୍ତ ସକଳ ।
ଯାହାର ରୂପ କରି ମନେ
ଏହା ଜାଣନ୍ତି ମୁନିମାନେ ।
ଏମନ୍ତ ରାମଙ୍କୁ ମୋହର
ଅନବରତେ ନମସ୍କାର ।
ବିକାର ରହିତ ଆପଣ
ଶୁଦ୍ଧ ଜ୍ଞାନରୂପ ବୋଲଣ ।
ତୁମ୍ଭଙ୍କୁ ନିଶ୍ଚେ ରଘୁପତି
ସକଳ ବେଦ କହୁଛନ୍ତି ।
ଜଗତ ସ୍ୱରୂପ ଆପଣ
ପୂରିଛ ସର୍ବଠାରେ ପୁଣ ।
ଏରୂପେ ତୁମ୍ଭଙ୍କୁ ଗୋସାଇଁ
ସେ ବେଦ ପୁଣିହିଁ କହଇ ।
ଏରୂପେ ବେଦ ମାନଙ୍କରେ
ବିରୋଧ ଦେଖି ଏ ପ୍ରକାରେ ।
ତୁମ୍ଭର ଅନୁଗ୍ରହ ଯେବେ
ନୋହେ ପଣ୍ଡିତ ଜନ ତେବେ ।
ତୁମ୍ଭ ନିଶ୍ଚୟ ରଘୁପତି
କେବେହେଁ ଜାଣି ନ ପାରନ୍ତି ।
ଆପଣ କ୍ରୀଡ଼ା ମାୟାତୁଲେ
ଅନୁବରତେ କରୁଥିଲେ ।
କାହିଁ ବିରୋଧ ତୁମ୍ଭ ଠାଇଁ
ନିଶ୍ଚୟେ ନାହିଁ ରଘୁସାଇଁ ।

ଭ୍ରମ ହୁଅଇ ଯେତ୍କୁ ପୁଣ
ତାହାଙ୍କ ଅଦତ୍ୟ କରଣ ।
ଯେମନ୍ତ ଜଳ ପ୍ରାପ୍ତେ ହୋଇ
ନୟନଯୁଗଳୁ ଦରେ ।
ସେରୂପେ ଅଞ୍ଜନକୁ କର
ତୋଠାରେ ସମସ୍ତ ବସ୍ତୁର ।
ନିର୍ଗୁଣ ରୂପ ତ ତୁମ୍ଭର
ମନର ବୁଦ୍ଧିର ଗୋଚର ।
ସେ ପୁଣି ନେତ୍ରକୁ ଗୋସାଇଁ
ଦଶିବ କ ପ୍ରକାରେ ହୋଇ ।
ଯେବେ କଛୁହିଁ ନ ଦେଖିବ
କେମନ୍ତେ ମନ ବୋଧ ହେବ ।
ଏଣୁ ବସ୍ତୁର କର ମନେ
ସ୍ତୁତି କି ଯେ ପଣ୍ଡିତମାନେ ।
ତୋ-ଅବତାର ମାନଙ୍କର
ସ୍ୱରୂପମାନ ନିରନ୍ତର ।
ଭଜିଲେ ସଂସାରସମୁଦ୍ର
ନିଷ୍ଟେ ତରନ୍ତି ରାମଚନ୍ଦ୍ର ।
କାମନା-କ୍ରୋଧ-ଲୋଭ-ମତ୍ସର
ମୋହ ମଦ ଏ ଛ'ପ୍ରକାର ।
ଶତ୍ରୁରେ ଶତ୍ରୁ ରୂପେ ଥାଇ
ବିମୁଖ ତୋ ଭକତେ ହୋଇ ।
ମୃତ୍ୟୁକୁ ମାର୍ଜାର ପରାୟେ
ମନକୁ କରନ୍ତି ସେ ଭୟେ ।
ନିତ୍ୟାନ ଯେଉଁମାନେ ରାମ
ସୁମରୁ ଥାନ୍ତି ତୁମ୍ଭ ନାମ ।
ତୁମ୍ଭ ଏ ରୂପକୁ ସନ୍ତତେ
ଯେ ଧ୍ୟାନ କରୁଥାନ୍ତି ଚିତ୍ତେ ।
ଚରଣପୂଜାରେ ତୁମ୍ଭର
ଯେ ହୋଇଥାନ୍ତି ତତପର ।

ଯେ ପୁଣି ତୁମ୍ଭ କଥାମୃତ
ପାନ କରୁଣଥାନ୍ତି ନିତ୍ୟ ।
ତୁମ୍ଭର ଭକତ କୁଳରେ
ସଙ୍ଗ କରନ୍ତି ଯେଉଁ ନରେ ।
ସେମାନଙ୍କର ରାମଚନ୍ଦ୍ର
ଏ ଘୋର-ସଂସାର ସମୁଦ୍ର ।
ହୁଅଇ ଗାଈ ଖୋଜ ପ୍ରାୟେ
ନାହିଁ ଏ କଥାରେ ସଂଶୟେ ।
ଏଣୁ ସଗୁଣ ରୂପ ତୋର
ହୃଦରେ ଧର ନିରନ୍ତର ।
ମୁଁ ସବୁଠାରୁ ମୁକ୍ତ ହୋଇ
ସବୁ ଲୋକରେ ବୁଲୁଥାଇ ।
ସମସ୍ତ ଦେବଗଣ ମୋତେ
ସନ୍ମାନ କରନ୍ତି ନିରତେ ।
ଦେବତାଙ୍କର ହିତ ପାଇଁ
କର୍ମ ତ କଲ ରଘୁସାଇଁ ।
କୁମ୍ଭକର୍ଣ୍ଣକୁ ମାରି ବୀର
ଖଣ୍ଡିଲ ଅବନୀର ଭାର ।
ଇନ୍ଦ୍ରଜିତକୁ କାଲି ନାଶ
ଲକ୍ଷ୍ମଣ କରିବେ ଅବଶ୍ୟ ।
ଦଶଗ୍ରୀବକୁ ପ'ରଦିନ
ନିଧନ କରିବ ଆପଣ ।
ସିଦ୍ଧମାନଙ୍କ ତୁଲେ ବସି
ଆକାଶରେ ମୁଁ ଦେଖୁଥାଇ ।
ହେ ଦେବ ରାମ ରଘୁସାଇଁ
ପ୍ରସାଦ କର ମୋହଠାଇଁ ।
ଦେବ ଲୋକକୁ ଯିବି ବୋଲୁ
ଏମନ୍ତ କହୁ ମୁନିବର ।
ଦେବତାମାନରେ ବିଦ୍ରୁତ
ପୂଜିତ ହୋଇ ଉଡ଼ିଯାବନ୍ତି ।

ରାମଙ୍କୁ ନମସ୍କାର କଲେ
ସତ୍ୟ ଲୋକକୁ ସୁଖେ ଗଲେ ।
ଏଥୁ ଅନ୍ତରେ ଦଶକନ୍ଧ
ଶୁଣନ୍ତେ କୁମ୍ଭକର୍ଣ୍ଣ ବଧ ।
ଶୋକାର୍ତ୍ତ ହୋଇ ମୋହ ଗଲା
ବହନ ଭୂମିରେ ପଡ଼ିଲା ।
ଜ୍ଞାନ ସେ ପାଇଣ ଅନେକ
ବିବିଧରୂପେ କଲା ଶୋକ ।
ପିତୃ ତା ହୋଇବାରୁ ହତ
ଶୁଣି ଶୋକରେ ଇନ୍ଦ୍ରଜିତ ।
ଭୂମିରେ ପଡ଼ି ମୋହଗଲା
ଉଠି ଅନେକ ଶୋକ କଲା ।
ବିନାଶ ହୋଇଛୁ ପିତୃବ୍ୟ
ଆରତ ହେଉଅଛୁ ପିତା ।
ଏମନ୍ତ ଦେଖି ମେଘନାଦ
ଲଭି ସେ ପରମ ବିଷାଦ ।
ବୋଇଲା ଯେଉଁ କର ଦୁଇ
ଶୋକ ଛାଡ଼ ଏବେ ଗୋସାଇଁ ।
ହେ ଦେବ ଶତ୍ରୁ ଲଙ୍କେଶ୍ୱର
ମହେନ୍ଦ୍ରଜିତ ପୁତ୍ର ତୋର ।
ଯେବେ ପ୍ରାଣରେ ଅଛୁ ରହି
ତୁମ୍ଭର ଦୁଃଖ କାହିଁପାଇଁ ।
ବେଦନ ଛାଡ଼ ସୁସ୍ଥ ହୋଇ
ଥି ାକୁ ଦେଖ ଲଙ୍କସାଇଁ ।
ତୋ ଶତ୍ରୁମାନଙ୍କୁ ମାରିବି
ସବୁହିଁ ଭଲ ମୁଁ କରିବି ।
ନେଇ ନିକୁମ୍ଭିଳ ଦେଉଳେ
ହୋମ ମୁଁ କରିବି ଅନଳେ ।
ତହିଁରୁ ରଥାଦ୍ୟ ପାଇବି
ଶତ୍ରୁର ଅଜେୟ ହୋଇବି ।

ଏମନ୍ତ କହି ତୋଷ ହୋଇ
ସେ ନିକୁମ୍ଭିଳଠାକୁ ଯାଇଁ ।
ପିନ୍ଧିକରି ସେ ରଙ୍ଗବସ୍ତ୍ର
ରଙ୍ଗମାଳାରେ ହୋଇ ଯୁକ୍ତ ।
ଚୈତନ୍ୟ ଜଗାଇ ଏ ପ୍ରକାରେ
ହୋମ କରନ୍ତି ଅନଳରେ ।
ଜାଣି ରାବଣି ଚେଷ୍ଟା ଦୁଷ୍ଟେ
ତା ବିଭୀଷଣଙ୍କୁ କହନ୍ତେ ।
ସେ ଯାଇ ତୋଷ ହୋଇ ବେଗେ
ତା ଜଣାଇଲେ ରାମ ଆଗେ ।
ଏ ହୋମ ଯେବେ ସମାପତ
ହୋଇବ ତେବେ ଇନ୍ଦ୍ରଜିତ ।
ସୁର ଅସୁରମାନଙ୍କର
ଅଜେୟ ହେବ ରଘୁବୀର ।
ଏ ବେଳେ ଲକ୍ଷ୍ମଣଙ୍କୁ ନେଇ
ତାକୁ ମୁଁ ବିନାଶ କରଇଁ ।
ଆଜ୍ଞା ଦେବାକୁ ହେଉ ବେଗେ
ଲକ୍ଷ୍ମଣ ମୋତେ ଦେଇ ସଙ୍ଗେ ।
ତ ହାକୁ ମାରିବେ ନିଶ୍ଚୟେ
ନାହିଁ ଏ କଥାରେ ସଂଶୟେ ।
ଶ୍ରୀରାମ ଶୁଣି ଏ ବଚନ
ବୋଇଲେ ଅହେ ବିଭୀଷଣ ।
ସମସ୍ତ ରାକ୍ଷସଙ୍କୁ ହତ
କରଇ ଯେଉଁ ଅନ୍ନି ଅସ୍ତ୍ର ।
ତହିଁରେ ତାକୁ ମାରିବାକୁ
ରଘୁବରୁ ଅସ୍ତ୍ରେ ଦିବାକୁ ।
ଏମନ୍ତ ଶୁଣି ବିଭୀଷଣ
ରାମଙ୍କୁ ଜଣାଇଲେ ପୁଣ ।
ଲକ୍ଷ୍ମଣ ବାହାରେ ରାଘବ
ତାଙ୍କୁ ଯେ ଅନ ନ ମାରିବ ।

ଯାର ବରଷ ଯେଉଁଜନ
ଛାଡ଼ିଥିବ ନିଦ୍ରା ଭୋଜନ ।
ତାହାକୁ ସେ କରିବ ହତ
ବିଧାତା ବୋଲିଛୁ ଏମନ୍ତ ।
ଏ ଘେନି କର ଅଯୋଧ୍ୟାରୁ
ଲକ୍ଷ୍ମଣ ଆଇଲା ଦିନରୁ ।
ତୁମ୍ଭ ସେବାରୁ ରଘୁପତି
ଭୋଜନ ନିଦ୍ରା ନ ଜାଣନ୍ତି ।
ଏମନ୍ତ ଜାଣିଲି ମୁଁ ବେଗେ
ଏହାଙ୍କୁ ଦିଅ ମୋହ ସଙ୍ଗେ ।
ଏ ଧରଣୀ ଧରନ୍ତା ଶେଷ
ତାଙ୍କୁ ଏ ମାରିବେ ଅବଶ୍ୟ ।
ଏ ଘେନି ମନରେ ତୁମ୍ଭର
କିଛି ହିଁ ସଂଶୟ ନ କର ।
ଜଗତ ଈଶ୍ୱର ଆପଣ
ସାକ୍ଷାତ ଅଟ ନାରାୟଣ ।
ଲକ୍ଷ୍ମଣ ଶେଷ ଅଂଶ ତୋର
ନାଟକ ଅଟେ ଏ ସଂସାର ।
ଆପଣ ଲକ୍ଷ୍ମଣ ଏଥିର
ନିଶ୍ଚୟେ ଅଟ ସୂତ୍ରଧର ।
କରିବ ପୃଥ୍ୱୀଭାର ହତ
ଏଥକୁ ହୋଇଛୁ ସଂଜାତ ।
ରାଜରାଜାଧି ରାମଚନ୍ଦ୍ର
ଅମିତ କରୁଣା ସମୁଦ୍ର ।
ମୁଁ ଦୀନ ଦାସ ହଳଧର
ମୋ ଦୁଃଖ ବାରେ ବେଗେ ହର ।
ଶଏ ଏକାଶୀ ପଦ ଗୀତ
ନାଶୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ
ନାମ ଅଷ୍ଟମୋଽଧ୍ୟାୟଃ ।

---

## ନବମ ଅଧ୍ୟାୟ

ବିଭୀଷଣ ଗିରିଜା ଆଗରେ
କହିଲେ ଏଥୁ ଅନନ୍ତରେ ।
ଶ୍ରୀରାମ ଶୁଣି ଏହା ପୁଣ
ବୋଇଲେ ଆହେ ବିଭୀଷଣ ।
ସେ ବଡ଼ ମାୟାବୀ ଅଟଇ
ତା ମାୟା ସବୁ ମୁଁ ଜାଣଇ ।
ବ୍ରହ୍ମାସ୍ତ୍ରେ ସେ ବଡ଼ ନିପୁଣ
ଅସ୍ତ୍ର ସ୍ୱରୂପ ତ ଲକ୍ଷ୍ମଣ ।
କ୍ଷୁଧା ନିଦ୍ରା ତେଜି ମୋ ପାଇଁ
ଲକ୍ଷ୍ମଣ ଥିବାର ଜାଣଇ ।
ଏମନ୍ତ ମନରେ ବିଚାରି
ଉପର କାର୍ଯ୍ୟ ଚିନ୍ତାକରି ।
ମୁଁ ତୁମ ଥିଲି ବିଭୀଷଣ
ପୁଣି ବୋଇଲେ ହେ ଲକ୍ଷ୍ମଣ ।
ବହୁତ ସୈନ୍ୟ ନିଅ ବୀର
ମେଘନାଦକୁ ବେଗେ ମାର ।
ହନୁମନ୍ତକୁ ଆଦି ଯେତେ
ଯୂଥପ ଅଛନ୍ତି ସମସ୍ତେ ।
ସକଳ ଋକ୍ଷ ହରି ସୈନ୍ୟ
ଘେନି ସେ ଯାଆନ୍ତୁ ବହନ ।

ଚତୁର ମନ୍ତ୍ରୀଙ୍କି ଘେନି ସଙ୍ଗେ
ଥିବେ ଏ ବିଭୀଷଣ ଲଗେ ।
ରାକ୍ଷସ ବେଶର ଅଶସ୍ତୁ
ସେଠାର ଥାନର ବିଷୟୁ ।
ଏ ଯେଣୁ ଜାଣଇ ସମସ୍ତ
ଲକ୍ଷ୍ମଣ ଶୁଣନ୍ତେ ଏମନ୍ତ ।
ଅବର ଅଟେ ଭୟଙ୍କର
ଧର୍ ଏମନ୍ତ ଚନ୍ଦ୍ରଶର ।
ଶ୍ରୀରାମ ଚରଣ ଛୁଇଁଲେ
ହରଷ ହୋଇ ସେ କହିଲେ ।
ଅଜ ମୋ ଧନୁରୁ ବାହାର
ହୋଇବେ ଯେ ଶର ନିକର ।
ରାବଣି ଶରୀର ବିଦାରି
ଧରଣୀ ତଳ ଭେଦ କରି ।
ଭୋଗବତୀ ସଲିଳେ ସ୍ନାନ
କରିବେ ଯାଇ ସେ ବହନ ।
କରି ପ୍ରତିଜ୍ଞା ପୁଣି ପୁଣି
କଲେ ରାମଙ୍କୁ ପ୍ରଦକ୍ଷିଣ ।
ବହୁତ ନମସ୍କାର କଲେ
ଉତ୍ଥ୍ଵେ ଠିଆ ହୋଇ ଗଲେ ।
ଅନେକ ଲକ୍ଷ କପି ସୈନ୍ୟ
ଘେନାଇ ଗଲେ ହନୁମାନ ।
ଚତୁର ମନ୍ତ୍ରୀଙ୍କି ଘେନି ସଙ୍ଗେ
ବିଭୀଷଣହିଁ ଗଲେ ବେଗେ ।
ଘେନି ବହୁତ ଋକ୍ଷ ସୈନ୍ୟ
ବହନ ଗଲେ ଜାମ୍ବବାନ ।
ସମସ୍ତେ ଏ ପ୍ରକାରେ ଯାଇ
ନିକୁମ୍ଭିଳା ନିକଟେ ହୋଇ ।
ଅତି ଦୁରନ୍ତ ଦୈତ୍ୟଗଣ
ଦେଖି ଲକ୍ଷ୍ମଣ ବିଭୀଷଣ ।

ଅଙ୍ଗଦ ମାରୁତି ସମସ୍ତେ
ସେ ଜାମ୍ବବନ୍ତର ସହିତେ ।
ଯେ ଯାହା ଶସ୍ତ୍ର କରେ ଧରି
ରହିଲେ ସବୁଁ ରକ୍ଷ ହରି ।
ଏଥି ଉତ୍ତାରେ ବିଭୀଷଣ
ବୋଇଲେ ଦେଖ ହେ ଲକ୍ଷ୍ମଣ ।
ଦକ୍ଷିଣ ମେଘ ପ୍ରାୟେ ବର୍ଣ୍ଣ
ଏମନ୍ତ ଯେଉଁ ରକ୍ଷ ସୈନ୍ୟ ।
ଏ ସେନା ଭେଦବାକୁ ବୀର
ବଡ଼ ବେଗରେ ଯତ୍ନ କର ।
ତେବେଟି ରାବଣିଙ୍କି ପୁଣ
ଦେଖିବା ହୋଇବ ଅପଣ ।
ତା ହୋମ ସମାପତ ନୋହୁ
ଅତି ବେଗରେ ଯିବା ହେଉ ।
ସନ୍ତତ ହିଂସାରେ ସଂଯୁତ
ସେ ଅତିଅନ୍ତ ପାପବନ୍ତ ।
ଏମନ୍ତ ରାବଣିଙ୍କ ବୀର
ଅତି ବେଗରେ ନାଶକର ।
ଏମନ୍ତେ ଶୁଣନ୍ତେ ଲକ୍ଷ୍ମଣ
ଅନଳ ପ୍ରାୟେ ବାଣଗଣ ।
ଲକ୍ଷ୍ୟ କରି ଇନ୍ଦ୍ରଜିତକୁ
ଅନେକ ବିନ୍ଧିଲେ ସେଠାକୁ ।
ପାଷାଣ ବୃକ୍ଷ ନଗଶୃଙ୍ଗେ
ସମସ୍ତ ଦଗ୍ଧ ଶାଖାମୃଗେ ।
ରାକ୍ଷସମାନଙ୍କୁ ମାଇଲେ
ସେମାନେ ଭିନ୍ଦିପାଳ ଶୂଳେ ।
ପରଶୁ ଠେଙ୍ଗା ଖଡ଼ଗରେ
ତୋମର ଶକ୍ତି ତୀକ୍ଷ୍ଣଶରେ ।
ବାନରମାନଙ୍କୁ ମାଇଲେ
ସେ ବେନି ସୈନ୍ୟ ଗରଜିଲେ ।

ଏ ରୂପେ ଘୋର ଯୁଦ୍ଧ ହେଲା
ଦେବେ ବ୍ରହ୍ମାଣ୍ଡ କମ୍ପିଲା ।
ଅପଣା ସୈନ୍ୟ ଇନ୍ଦ୍ରଜିତ
ଦେଖିଲା ହୋଇଲେ ପୀଡ଼ିତ ।
ଲକ୍ଷ୍ମଣ ବାଣେ ବ୍ୟଥା ପାଇ
ସେ ହୋମ ସ୍ଥଳ ତେଜି ହୋଇ ।
କାର୍ମୁକ ଧରି ରଥେ ଥାଇ
କହିଲା ଲକ୍ଷ୍ମଣଙ୍କୁ ଚାହିଁ ।
ମୁଁ ଇନ୍ଦ୍ରଜିତ ହେ ଲକ୍ଷ୍ମଣ
ମୋ ଅଗ୍ରେ ପଡ଼ିଲେ ଅପଣ ।
ଜୀବନ ଘେନି କରି ଅଉ
ଯିବାକୁ ହେବ ଅଜ କାହୁଁ ।
ବିଭୀଷଣଙ୍କୁ ସେହିଠାରେ
ଦେଖି କହିଲା କ୍ରୋଧଭରେ ।
ଅମ୍ଭ କୁଳରେ ଜାତ ହେଲୁ
ଏହିଠାରେ ବୃଦ୍ଧ ହୋଇଲୁ ।
ମୋହ ପିତାର ଅନୁଭାଇ
ବନ୍ଧୁମାନଙ୍କୁ ଛାଡ଼ି ଯାଇ ।
ଶତ୍ରୁର ଶରଣ ପଶିଲୁ
ତାହାର ସେବକ ହୋଇଲୁ ।
ତୁ ଏଡ଼େ ପାପିଷ୍ଠ ଅଧମ
ପୁଣ ମୁଁ ମୋତେ ଦ୍ରୋହକର୍ମ ।
କରିବାକୁ ଅଛିତୁ ଧାଇଁ
ତାହାଙ୍କୁ ଏ ପ୍ରକାରେ କହି ।
ଲକ୍ଷ୍ମଣ ମାରୁତି କନ୍ଧରେ
ଅଛନ୍ତି ଏହା ଦେଖି ଶରେ ।
ରଥରେ ଥାଇ ସେ ଅସୁର
କରଣେ କାର୍ମୁକ ଟଙ୍କାର ।
ସମସ୍ତ କପିଙ୍କି ଚାହିଁଲା
ଏମନ୍ତ ବଚନ କହିଲା ।

ଅଜ ତୁମ୍ଭ ସବୁର ପ୍ରାଣ
ହରିବ ମୋର ବାଣଗଣ ।
ଲକ୍ଷ୍ମଣ ଶୁଣନ୍ତେ ଏମନ୍ତ
କ୍ରୋଧ ହୋଇଲେ ଅତିଅନ୍ତ ।
ଛାଡ଼ୁଛନ୍ତି ନିଃଶ୍ୱାସମାନ
ବହନ ଟେକି ଶରାସନ ।
ତୀକ୍ଷ୍ଣ ଶର ସନ୍ଧାନ କଲେ
ରାବଣ ପୁତ୍ରକୁ ବିନ୍ଧିଲେ ।
କ୍ରୋଧେ ସେ ନେତ୍ର ରଙ୍ଗ କଲା
ଲକ୍ଷ୍ମଣ ମୁଖକୁ ଚାହିଁଲା ।
ଏମନ୍ତ ଦେଖିଣ ଲକ୍ଷ୍ମଣ
ବଜ୍ର ସମାନ ବାଣଗଣ ।
ବିନ୍ଧନ୍ତେ ବାଜି ଇନ୍ଦ୍ରଜିତ
ମୁହୂର୍ତ୍ତି ହୋଇଲା ମୂର୍ଚ୍ଛିତ ।
ପୁଣି ସେ ଜ୍ଞାନ ପାଇ ବେଗେ
ଦେଖିଲେ ଲକ୍ଷ୍ମଣଙ୍କ ଅଗେ ।
କାର୍ମୁକ ଗୁଣେ ବାଣ ଦେଇ
ତାହାଙ୍କ ନିକଟକୁ ଯାଇ ।
କୋପେ ଲୋଚନ ରଙ୍ଗ କଲା
ଏମନ୍ତ ବଚନ ବୋଇଲା ।
ପ୍ରଥମ ଦିନ ଯୁଦ୍ଧେ ଯେବେ
ମୋ ବଳ ଦେଖିନାହୁଁ ତେବେ
ରହ ହୋଇ ଏବେ ଧୈର୍ଯ୍ୟ
ମୋ ପରାକ୍ରମ ଦେଖ ଅଜ୍ଞ ।
ଏମନ୍ତ କହି ସାତ ଶର
କଲା ଲକ୍ଷ୍ମଣଙ୍କୁ ପ୍ରହାର ।
ଦଶବାଣ ହନୁମନ୍ତଙ୍କୁ
ବିନ୍ଧେ ବେଗେ ବିଭୀଷଣଙ୍କୁ ।
ଅତ୍ୟନ୍ତ କ୍ରୋଧେ ଶହେ ଶର
ପ୍ରହାର କରନ୍ତେ ଅସୁର ।

ଲକ୍ଷ୍ମଣ ଦେଖି କ୍ରୋଧ ହେଲେ
ମାର୍ଗଣ ଗଣ ବୃଷ୍ଟି କଲେ ।
ପଡ଼ନ୍ତେ ଯାଇଁ ବାଣଗଣ
ରାବଣି ଦେହରୁ ବହନ ।
ଯେମନ୍ତ ଦରେ ହାଟକ
ଏମନ୍ତ ପ୍ରକାରେ କଣ୍ଟୁକ ।
ଛୁଡ଼ି ସେ ଜଳ ସମାନରେ
ପଡ଼ିଲା ଶତ୍ରୁଙ୍କ ଉପରେ ।
ଏମନ୍ତ ଦେଖି ଇନ୍ଦ୍ରଜିତ
ସକ୍ରୋଧ ହୋଇ ଅତିଅନ୍ତ ।
ସହସ୍ରେ ବଜ୍ର ସମ ଶର
ସତ୍ତ୍ୱରେ କରନ୍ତେ ପ୍ରହାର ।
ଲକ୍ଷ୍ମଣ କବଚ ଛିଦ୍ରରେ
ଛୁଡ଼ି ପଶିଲା ଅବନୀରେ ।
ଦୁହେଁ ଅତ୍ୟନ୍ତ ମହାବୀର
କଲେ ସମାନ ଟଙ୍କାର ।
ନିଃଶ୍ୱାସମାନ ଦୁହେଁଙ୍କରେ
ତେଜୁ ଅଛନ୍ତି ନିରନ୍ତରେ ।
ସମସ୍ତ ଅଙ୍ଗ ଦୁହିଁଙ୍କର
ବାଜିଣ ମାର୍ଗଣ ନିକର ।
ହୋଇଣ ଅତ୍ୟନ୍ତ ପୀଡ଼ିତ
ବହୁନ୍ତି ବହୁତ ରକତ ।
ବହୁତ କାଳ ଏ ପ୍ରକାରେ
ଯୁଦ୍ଧ କରନ୍ତି ପରସ୍ପରେ ।
ତୀକ୍ଷଣ ମାର୍ଗଣେ ଲକ୍ଷ୍ମଣ
ମେଘନାଦର ଧନୁର୍ବାଣ ।
ସାରଥି ରଥ ଅଶ୍ୱମାନ
ସମସ୍ତ କାଟିଲେ ବହନ ।
ରାବଣି ପୁଣି ସେ ଉତ୍ସରେ
ବର୍ଷିଣ ଅନ ଶତ୍ରୁଙ୍କରେ ।

ଧନୁ ଗୋଟିଏ ଧରି ତହିଁ
ଗୁଣ ତଅନ୍ତେ ବେଗ ହୋଇ ।
ଲକ୍ଷ୍ମଣ ବହନ ତା ପୁଣ
କାଟିଲେ ଶଛ ଟନି ବାଣ ।
ଛେଦନ୍ତେ ସେ ଶର ନିକର
କରନ୍ତେ ତାହାକୁ ପ୍ରହାର ।
ସେ ଇନ୍ଦ୍ରଜିତ ଏ ଉତ୍ସରେ
ଆନ କାର୍ମୁକ ଧରି କରେ ।
ଲକ୍ଷ୍ମଣଙ୍କୁ ସେ ପୁଣ ପୁଣ
ବିନ୍ଧିଲା କୋପେ ଶତେ ବାଣ ।
ପୁଣି ସେ ବିନ୍ଧିଲା ଅନେକ
ଷଣକେ କପି ସୈନ୍ୟଙ୍କ ।
ପୀଡ଼ା ସେ କରନ୍ତେ ବହୁତ
ଲକ୍ଷ୍ମଣ ଦେଖନ୍ତେ ଏମନ୍ତ ।
କ୍ରୋଧ ହୋଇ ସେ ଅତିଅନ୍ତ
ତୂଣୀରୁ କାଢ଼ି ଐନ୍ଦ୍ରଅସ୍ତ୍ର ।
ଧନୁରେ ତା ସନ୍ଧାନ କରି
ଆକର୍ଣ୍ଣ ପର୍ଯ୍ୟନ୍ତେ ଓଟାରି ।
ଶ୍ରୀରାମପାଦ କରି ଧ୍ୟାନ
କହିଲେ ଏମନ୍ତ ବଚନ ।
ଧର୍ମାତ୍ମା ଯେବେ ରଘୁପତି
ସେ ଯେବେ ସତ୍ୟକୁ କହନ୍ତି ।
ସେ ଯେବେ ଦଶରଥଙ୍କର
ନିଶ୍ଚୟ ଅଟନ୍ତି କୁମର ।
ତାଙ୍କ ସମାନେ ଯୋଦ୍ଧା ହୋଇ
ଯେବେ କାହିଁରେ କେହି ନାହିଁ ।
ତେବେ ନିଶ୍ଚୟେ ଏହି ଅସ୍ତ୍ର
ଇନ୍ଦ୍ରଜିତକୁ କରୁ ହତ ।
ଏମନ୍ତ ରୂପେ କହୁ କରି
ଶ୍ରବଣ ଯାଏ ତା ଓଟାରି ।

ରାବଣି ବେଗେ ଲକ୍ଷ୍ୟ କଲେ
ଅତି କ୍ରୋଧରେ ଗାଣ୍ଡି ଦେଲେ ।
ସେ ଶର ଯାଇ ଅତି ଖରେ
ଟୋପର କୁଣ୍ଡଳ ତୁଳରେ ।
ରାବଣି ମସ୍ତକ କାଟିଲା
ଧରଣୀ ତଳେ ପକାଇଲା ।
ଲକ୍ଷ୍ମଣ ନାମେ ସବୁ ସ୍ୱରେ
କୀର୍ତ୍ତନ କଲେ ଆକାଶରେ ।
ଶବଧ ରୂପେ ସ୍ତୁତି କଲେ
ହରଷେ ପୁଷ୍ପ ବରଷିଲେ ।
ଦେବ ଋଷିଙ୍କ ସଙ୍ଗେ ଇନ୍ଦ୍ର
ହୋଇଲେ ପରମ ଆନନ୍ଦ ।
ଆକାଶେ ଦୁନ୍ଦୁଭି ଶୁଭିଲା
ଗଗନ ନିର୍ମଳ ଦିଶିଲା ।
ସୁସ୍ଥିର ହୋଇଲା ଧରଣୀ
ଲକ୍ଷ୍ମଣ ଜୟ ଜପିଲେ ପୁଣି ।
ସମସ୍ତ ଶ୍ରମ ଶାନ୍ତ କଲେ
ଆନନ୍ଦେ ଶଙ୍ଖ ବଜାଇଲେ ।
ସିଂହନାଦହିଁ କରି ବୀର
କରନ୍ତେ କାର୍ମୁକ ଟଙ୍କାର ।
ଶୁଣନ୍ତେ ଏ ଜୟ ଶବଦ
ମର୍କଟେ ହୋଇଲେ ଆନନ୍ଦ ।
ସ୍ତୁତି କରୁଛନ୍ତି ବାନରେ
ଲକ୍ଷ୍ମଣ ଏମନ୍ତ ପ୍ରକାରେ ।
ମାରୁତି ବିଭୀଷଣ ତୁଳେ
ସୁବଳ ଚିରରେ ମିଳିଲେ ।
ଯେ ଆପଣାର ଜ୍ୟେଷ୍ଠ ଭ୍ରାତ
ଶ୍ରୀ ନାରାୟଣ ସେ ସାକ୍ଷାତ ।
ଯେ ପ୍ରଭୁ ତ୍ରିଭୁବନରେ
ଏମନ୍ତ ରାମ ଚରଣରେ ।

ସାଷ୍ଟାଙ୍ଗ ଦଣ୍ଡବତ କଲେ
ଏମନ୍ତ ବଚନ କହିଲେ ।
ହେ ସ୍ୱାମି ତୁମ୍ଭ ମହିମାରେ
ରାବଣି ମଲା ସଂଗ୍ରାମରେ ।
ଏମନ୍ତ ଶୁଣି ରାମଚନ୍ଦ୍ର
ହୋଇଲେ ପରମ ଆନନ୍ଦ ।
ଲକ୍ଷ୍ମଣଙ୍କୁ ତୋଳି ବଦନ
ସ୍ନେହରେ କରି ଆଲିଙ୍ଗନ ।
ଆଘ୍ରାଣ ପୁଣି ପୁଣ କଲେ
ହରଷ ହୋଇ ଅଙ୍କେ ଦେଲେ ।
ଭଲ ଲକ୍ଷ୍ମଣ ତୁମ୍ଭେ ଧନ୍ୟ
ସନ୍ତୋଷ କଲ ଆମ୍ଭ ମନ ।
ବଡ ଦୁଷ୍କର କର୍ମ କଲ
ତିନି ଦିନରେ ଯା ମାରିଲ ।
ମେଘନାଦର ବଧେ ଭ୍ରାତ
ନିଶ୍ଚୟେ ଜିଣିଲ ସମସ୍ତ ।
ନିଃଶତ୍ରୁ ହୋଇଲି ମୁଁ ଆଜ
ପୁଣ ଶୋକରେ ବଂଶଭଙ୍ଗ ।
ଆସିବ ଯୁଦ୍ଧ କରିବାକୁ
ମୁଁ ନିଶ୍ଚେ ମାରିବି ତାହାକୁ ।
ଡଗର ଏଥୁ ଅନନ୍ତରେ
କହିଲା ରାବଣ ଛାମୁରେ ।
ହେ ଦେବ ଶ୍ରୀରାମର ଭ୍ରାତ
ଇନ୍ଦ୍ରଜିତକୁ କଲା ହତ ।
ଏମନ୍ତ ଶୁଣି ଲଙ୍କପତି
ପଡ଼ିଲା ତଳେ ମୋହ ଯାଇ ।
ପୁଣି କ୍ଷଣକେ ପାଇ ଜ୍ଞାନ
ଉଠିଣ ବସି ସେ ବହନ ।
ପୁତ୍ର ଶୋକେ ହୋଇ ପୀଡ଼ିତ
ହା ମେଘନାଦ ଇନ୍ଦ୍ରଜିତ ।

ଏ ରୂପେ ନାନା କର୍ମ ଗୁଣ
ସୁମରି ଶୋକ କରି ପୁଣ ।
ବୋଇଲ ଦେବତା ସମସ୍ତେ
ତପସ୍ୱୀ ଲୋକପାଳ ଯେତେ ।
ନିର୍ଭୟ ଏହା ଶୁଣି ହେବେ
ନିଷ୍ଟିନ୍ତେ ସୁଖେ ନିଦ୍ରା ଯିବେ ।
ଏମନ୍ତ ପ୍ରକାରେ ବଚନ
ବହୁତ କହି ଦଶାନନ ।
ତନୟ ସ୍ନେହରେ ଅନେକ
ବିବିଧ ରୂପେ କରି ଶୋକ ।
ସେହୁ ବିଳାପ ହୃଦୟରେ
ଘେନନ୍ତେ ଅତ୍ୟନ୍ତ କ୍ରୋଧରେ ।
ସୀତାଙ୍କୁ ମାରିବାର ପାଇଁ
ଚଳ ସେ ଅତି ତୋଷ ହୋଇ ।
ରାବଣ ମାରିବା ନିମନ୍ତେ
ଖଡଗ ଘେନି ସେ ଅସନ୍ତେ ।
ଏମନ୍ତ ଦେଖି ବଇଦେହୀ
ମହାଭୟରେ ଯୁତ ହୋଇ ।
ରାକ୍ଷସୀବୃନ୍ଦ ମଧ୍ୟେ ଥାଇ
ବସିଲେ ଅଧୋମୁଖୀ ହୋଇ ।
ଏମନ୍ତ ସମୟରେ ତାର
ସୁପାର୍ଶ୍ୱ ନାମେ ମନ୍ତ୍ରୀବର ।
ସୁବୁଦ୍ଧି ସେହୁ ଅତିଅନ୍ତ
ଜାଣଇ ସବୁ ନୀତି ଶାସ୍ତ୍ର ।
ଜଣାଇଲ ହେ ଲଙ୍କେଶ୍ୱର
ସାକ୍ଷାତ ବିସର୍ବା ଋଷିର ।
ନନ୍ଦନ ଅଟ ଦଶାନନ
ବେଦ ବରତ ବିଦ୍ୟାମାନ ।

ବ୍ରାହ୍ମଣ କର୍ମ ବହୁ ଗୁଣ
ଏଥିରେ ନିପୁଣ ଅପଣ ।
କେମନ୍ତେ ସ୍ତ୍ରିର ବଧକାର
ମନରେ କରୁଛ ବିଚାର ।
ଜାଣି ସମସ୍ତ ଦେବଗଣ
ବଶ କରିଅଛ ଅପଣ ।
ଯେବଣ ଯଶ ବୃନ୍ଦ ତୀର
ତ୍ରୈଲୋକ୍ୟେ ପୂରିଛି ତୁମ୍ଭର ।
ସ୍ତ୍ରିର ବଧରେ ଦଶଗ୍ରୀବ
ଟେଗ୍ରୁଛ ନାଶ କରିବ ।
ଅମ୍ଭମାନଙ୍କ ସହିତରେ
ରାମ ଲକ୍ଷ୍ମଣଙ୍କ ଯୁଦ୍ଧରେ ।
ନାଶ କର ହେ ଦଶଗ୍ରୀବ
ସୀତାଙ୍କୁ ପାଇବାକୁ ହେବ ।
ଏମନ୍ତ କହନ୍ତେ ସେ ମନ୍ତ୍ରୀ
ଶାନ୍ତ ହୋଇଲେ ଲଙ୍କପତି ।
ପରମ ଧର୍ମରେ ସଂଯୁତ
ଅଟଇ ଅପଣାର ହିତ ।
ଏମନ୍ତ ପ୍ରକାରେ ବଚନ
ଘେନି ସେ ଲେଉଟି ବହନ ।
ପୁରକୁ ଯାଇ ସେ ଅଇଲେ
ଧୃଣି ସଭାରେ ବିଜେ କଲେ ।
ବୋଲଇ ଦୀନ ହଳଧର
ଜାନକୀ ସହିତେ ମୋହର ।
କଡ଼ ବେଗରେ ମନୋରଥ
ପୂର୍ଣ୍ଣ କରନ୍ତୁ ରଘୁନାଥ ।
ଶଏ ସତାନ ପଦଗୀତ
ହରୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ନବମୋଽଧ୍ୟାୟଃ ।

ରାବଣି ବେଗ ଲକ୍ଷ୍ୟ କଲେ
ଅତି କ୍ରୋଧରେ ସନ୍ଧି ଦେଲେ ।
ସେ ଶର ଯାଇ ଅତି ଶୀଘ୍ରେ
ଟୋପର କୁଣ୍ଡଳ ଭୂଷିତେ ।
ରାବଣି ମସ୍ତକ କାଟିଲା
ଧରଣୀ ତଳେ ପକାଇଲା ।
ଲକ୍ଷ୍ମଣ ନାମେ ସବୁ ସ୍ଥଳେ
କୀର୍ତ୍ତନ କଲେ ଆକାଶରେ ।
ବିବୁଧ ରୂପେ ସ୍ତୁତି କଲେ
ହରଷେ ପୁଷ୍ପ ବରଷିଲେ ।
ଦେବ ଋଷିଙ୍କ ତ୍ରିଲୋକ ଇନ୍ଦ୍ର
ହୋଇଲେ ପରମ ଆନନ୍ଦ ।
ଆକାଶେ ଦୁନ୍ଦୁଭି ଶୁଭିଲା
ଗଗନ ନିର୍ମଳ ଦିଶିଲା ।
ସୁସ୍ଥିର ହୋଇଲା ଧରଣୀ
ଲକ୍ଷ୍ମଣ ଯଶ ଜଗତେ ପୁଣି ।
ସମସ୍ତ ଶ୍ରମ ଶାନ୍ତ କଲେ
ଆନନ୍ଦେ ଶଙ୍ଖ ବଜାଇଲେ ।
ସିଂହନାଦହିଁ କରି ବୀର
କରନ୍ତେ କାର୍ମୁକ ଟଙ୍କାର ।
ଶୁଣନ୍ତେ ଏ ଘନ ଶବଦ
ମର୍କଟେ ହୋଇଲେ ଆନନ୍ଦ ।
ସ୍ତୁତି କରୁଛନ୍ତି ବାନରେ
ଲକ୍ଷ୍ମଣ ଏମନ୍ତ ପ୍ରକାରେ ।
ମାରୁତି ବିଭୀଷଣ ତୁଲେ
ସୁବଳ ଶିବିରେ ମିଳିଲେ ।
ଯେ ଆପଣାର ଜ୍ୟେଷ୍ଠ ଭ୍ରାତ
ଶ୍ରୀ ନାରାୟଣ ସେ ସାକ୍ଷାତ ।
ଯେ ପ୍ରଭୁ ତିନିଭୁବନରେ
ଏମନ୍ତ ରାମ ଚରଣରେ ।
ସାଷ୍ଟାଙ୍ଗ ଦଣ୍ଡବତ କଲେ
ଏମନ୍ତ ବଚନ କହିଲେ ।
ହେ ସ୍ୱାମି ତୁମ୍ଭ ମହିମାରେ
ରାବଣି ମଲା ସଂଗ୍ରାମରେ ।
ଏମନ୍ତ ଶୁଣି ରାମଚନ୍ଦ୍ର
ହୋଇଲେ ପରମ ଆନନ୍ଦ ।
ଲକ୍ଷ୍ମଣଙ୍କୁ ତୋଳି ବଦନ
ସ୍ନେହରେ କର ଆଲିଙ୍ଗନ ।
ଆଘ୍ରାଣ ପୁଣ ପୁଣ କଲେ
ହରଷ ହୋଇ ଅଶ୍ରୁଦେଲେ ।
ଭଲ ଲକ୍ଷ୍ମଣ ତୁମ୍ଭେ ଧନ୍ୟ
ସନ୍ତୋଷ କଲ ଆମ୍ଭ ମନ ।
ବଡ଼ ଦୁଷ୍କର କର୍ମ କଲ
ତିନି ଦିନରେ ଯା ମାରିଲ ।
ମେଘନାଦର ବଧେ ଭ୍ରାତ
ନିଶ୍ଚୟେ ଜିଣିଲ ସମସ୍ତ ।
ନିଃଶତ୍ରୁ ହୋଇଲି ମୁଁ ଆଜ
ପୁତ୍ର ଶୋକରେ ବିଂଶଭୁଜ ।
ଆସିବ ଯୁଦ୍ଧ କରିବାକୁ
ମୁଁ ନିଶ୍ଚେ ମାରିବି ତାହାକୁ ।
ଉପର ଏଥୁ ଅନନ୍ତରେ
କହିଲା ରାବଣ ସମ୍ମୁଖରେ ।
ହେ ଦେବ ଶ୍ରୀରାମର ଭ୍ରାତ
ଇନ୍ଦ୍ରଜିତକୁ କଲା ହତ ।
ଏମନ୍ତ ଶୁଣି ଲଙ୍କସାଇଁ
ପଡ଼ିଲା ତଳେ ମୋହ ଯାଇ ।
ପୁଣି କ୍ଷଣକେ ପାଇ ଜ୍ଞାନ
ଉଠିଣ ବସି ସେ ବଦନ ।
ପୁତ୍ର ଶୋକେ ହୋଇ ପୀଡ଼ିତ
ହା ମେଘନାଦ ଇନ୍ଦ୍ରଜିତ ।

ଏ ରୂପେ ନାନା କର୍ମ ଗୁଣ
ସ୍ମରି ଶୋକ କରି ପୁଣ ।
ବୋଇଲା ଦେବତା ସମସ୍ତେ
ତପସ୍ୱୀ ଲୋକପାଳ ଯେତେ ।
ନିର୍ଭୟ ଏହା ଶୁଣି ହେବେ
ନିଶ୍ଚିନ୍ତେ ସୁଖେ ନିଦ୍ରା ଯିବେ ।
ଏମନ୍ତ ପ୍ରକାରେ ବଚନ
କହନ୍ତି କହି ଦଶାନନ ।
ତନୟ ସ୍ନେହରେ ଅନେକ
ବିବିଧ ରୂପେ କରି ଶୋକ ।
ସେହୁ ବିଳାପ ହୃଦୟରେ
ଧେନନ୍ତେ ଅତ୍ୟନ୍ତ କୋପରେ ।
ସୀତାଙ୍କୁ ମାରିବାର ପାଇଁ
ଚଳ ସେ ଅତି ତୋଷ ହୋଇ ।
ରାବଣ ମାରିବା ନିମନ୍ତେ
ଖଡ୍ଗ ଘେନି ସେ ଅସନ୍ତେ ।
ଏମନ୍ତ ଦେଖି ବଇଦେହୀ
ମହାଭୟରେ ଯୁତ ହୋଇ ।
ରାକ୍ଷସୀବୃନ୍ଦ ମଧ୍ୟେ ଥାଇ
ବସିଲେ ଅଧୋମୁଖୀ ହୋଇ ।
ଏମନ୍ତ ସମୟରେ ତାର
ସୁପାର୍ଶ୍ୱ ନାମେ ମନ୍ତ୍ରୀବର ।
ସୁବୁଦ୍ଧି ସେହୁ ଅତଅନ୍ତ
ଜାଣଇ ସବୁ ନୀତି ଶାସ୍ତ୍ର ।
ଜଣାଇଲା ହେ ଲଙ୍କେଶ୍ୱର
ସାକ୍ଷାତ ବିସବା ରଷିର ।
ନନ୍ଦନ ଅଟ ଦଶାନନ
ବେଦ ବରତ ବିଦ୍ୟାମାନ ।

ବ୍ରାହ୍ମଣ କର୍ମ ବହୁ ଗୁଣ
ଏଥିରେ ନିପୁଣ ଅପଣ ।
କେମନ୍ତେ ସ୍ତିରି ବଧବୀର
ମନରେ କରୁଛ ବିଚାର ।
ଜାଣି ସମସ୍ତ ଦେବଗଣ
ବଶ କରିଅଛ ଅପଣ ।
ଯେବଣ ଯଶ ବୃନ୍ଦ ବୀର
ତୈଲୋକ୍ୟେ ପୂରିଛି ତୁମ୍ଭର ।
ସ୍ତିରି ବଧରେ ଦଶଗ୍ରୀବ
ତୋହ୍ମର ନାଶ କରିବ ।
ଅମ୍ଭମାନଙ୍କ ସହିତରେ
ରାମ ଲକ୍ଷ୍ମଣଙ୍କୁ ଯୁଦ୍ଧରେ ।
ନାଶ କର ହେ ଦଶଗ୍ରୀବ
ସୀତାଙ୍କୁ ପାଇବାକୁ ହେତ ।
ଏମନ୍ତ କହନ୍ତେ ସେ ମନ୍ତ୍ରୀ
ଶାନ୍ତ ହୋଇଲା ଲଙ୍କପତି ।
ପରମ ଧର୍ମରେ ସଂଯୁତ
ଅଟଇ ଅପଣାର ହିତ ।
ଏମନ୍ତ ପ୍ରକାରେ ବଚନ
ଘେନି ସେ ଲେଉଟି ବହନ ।
ପୁରକୁ ଯାଇ ସେ ଅଇଲେ
ଧ୍ୱନି ସଭାରେ ବିଜେ କଲେ ।
ବୋଲଇ ଦୀନ ହଳଧର
ଜାନକୀ ସହିତେ ମୋହର ।
କଡ଼ ବେଗରେ ମନୋରଥ
ପୂର୍ଣ୍ଣ କରନ୍ତୁ ରଘୁନାଥ ।
ଶଏ ସନ୍ତାନ ପଦଗୀତ
ହରନ୍ତୁ ମୋ ସମସ୍ତ ଦୁରିତ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ନବମୋଽଧ୍ୟାୟଃ ।

# ଦଶମ ଅଧ୍ୟାୟ

## ଶ୍ରୀ ମହାଦେବ ଉବାଚ

ପିନାକୀ ଏହୁ ଅନନ୍ତରେ
କହିଲେ ଅପର୍ଣ୍ଣା ଅଗ୍ରରେ ।
ସଭାରେ ବସି ଦଶଶିର
ମନ୍ତ୍ରୀ ଭୃତ୍ୟେ କରେ ବିଚାର ।
ଶଳଭ କ୍ଷୁଦ୍ର ଜନ୍ତୁଭରେ
ସଂଯୁତ ହୋଇ ଯେ ପ୍ରକାରେ ।
ଜଳନ୍ତା ଅଗ୍ନିଙ୍କ ଗମନ
କରନ୍ତି ତେଷ୍ଟେ ଦଶାନନ ।
ଯେନ ସଙ୍ଗତେ ରାକ୍ଷସଙ୍କ
ଗଲା ରାମଙ୍କ ଯୁଝିବାକୁ ।
କ୍ଷଣକେ ଶ୍ରୀ ରଘୁନନ୍ଦନ
ମାରିଣ ରାକ୍ଷସ ସଇନ ।
ରାବଣ ହୃଦୟକୁ ବୀର
ବିନ୍ଧିଲେ ଏକ ତୀକ୍ଷ୍ଣଶର ।
ସେ ତହିଁ ବଡ଼ ବ୍ୟଥା ପାଇ
ପଳାଇ ଗଲା ଭୋଗ୍ରୀ ହୋଇ ।
ଶ୍ରୀରାମଚନ୍ଦ୍ର ହନୁମାନ
ଏ ଦୁହିଁଙ୍କର ବଳପାନ ।
ଅମାନୁଷ କର ଦେଖନ୍ତେ
ବହୁତ ଚିନ୍ତା କଲା ଚିତ୍ତେ ।
ଯାଇଣି ଭାର୍ଗବଙ୍କଠାକୁ
ପ୍ରଣାମ କରିଣ ତାହାଙ୍କୁ ।
କର ଯୁଗଳ ଶିରେ ଦେଇ
କହିଲା ଅତି ଦୁଃଖୀ ହୋଇ ।
ଲଙ୍କା ରାକ୍ଷସ ପୁତ୍ରନାତି
ସବୁ ନାଶିଲେ ରଘୁପତି ।
ଆପଣ ସବ ଶୁଭେ ଥାନ୍ତେ
ମୋହର କଷ୍ଟ ହେଲା ଏତେ ।
ଶୁଣି ସେ ଏମନ୍ତ ବଚନ
ତାଙ୍କୁ ବୋଇଲେ ହେ ରାଜନ ।
ବହୁତ ଯତ୍ନ କର ବୀର
ଏକାନ୍ତ ସ୍ଥାନେ ହୋମ କର ।
ବିଘ୍ନ ନୋହିବ ତହିଁ ଯେବେ
ସେ ହୋମ ଅନଳରୁ ତେବେ ।
ତହିଁରୁ ରଥ ଅଶ୍ୱ ଶର
ଧନୁ ସହିତେ ଦଶଶିର ।
ସଂଯାତ ହୋଇବ ନିଶ୍ଚୟ
ତୁମ୍ଭର ହେବ ତହିଁ ଜୟ ।
ମୋ ଠାରୁ ମନ୍ତ୍ର ଘେନି ବେଗେ
ବହନ ଯାଇ ହୋମ କର ।
ରାବଣ ହୋଇ ଅତି ତୋଷ
ସେ ମନ୍ତ୍ର କରି ଉପଦେଶ ।
ବେଗେ ସେ ଯାଇ ଲଙ୍କାପୁରେ
ଆପଣା ମନ୍ଦିର ମଧ୍ୟରେ ।
ପାତାଳ ପ୍ରାୟେ କରି ତହିଁ
ଗାତ ଗୋଟାଏ ସେ ଖୋଳାଇ ।
ଲଙ୍କାର ସବୁ ଦ୍ୱାରମାନ
କବାଟେ କିଳାଇ ବନ୍ଧନ ।
ଅସୁରଗୁରୁ କର୍ମ ନିମନ୍ତେ
ସମ୍ଭାର ଘେନାଇ ସଙ୍ଗତେ ।
ଗର୍ତ୍ତେ ପ୍ରବେଶ ହୋଇଲେ
ଏକାନ୍ତେ ହୋମ ଆରମ୍ଭିଲେ ।
ତହୁଁ ଉଠନ୍ତେ ଧୂମ୍ରମାନ
ଏମନ୍ତ ଦେଖି ବିଭୀଷଣ ।
ମନରେ ମହାଭୟ କଲା
ଶ୍ରୀରାମ ସ୍ଥାନରେ କହିଲା ।

ଦେଖିବା ହେଉ ରଘୁବୀର
ହୋମ କରୁଛନ୍ତି ଦଶଶିର ।
ଏ ଯେବେ ସମାପତ ହେବ
ସେ ତେବେ ଅଜେୟ ହୋଇବ ।
ଏଣୁ ତା ବିଘ୍ନ କରିବାକୁ
ଅନୁଜ୍ଞା ଦିଅ ବାନରଙ୍କୁ ।
ଏମନ୍ତ ଶୁଣି ରାମଚନ୍ଦ୍ର
ସୁଗ୍ରୀବ ମାରୁତି ଅଙ୍ଗଦ ।
ତିନିଙ୍କ ସଙ୍ଗତେ ଯିବାକୁ
ଅନୁଜ୍ଞା ଦେଲେ ମର୍କଟଙ୍କୁ ।
ସେ କ୍ଷଣ ଦଶକୋଟି ଯାଇ
ଲଙ୍କା ପାଚେରି ବେଗେ ଡେଇଁ ।
ରାବଣ ମନ୍ଦିରେ ମିଳନ୍ତେ
ତା ଜଗିଥିଲେ ଯେ ଦଇତେ ।
ଶତାଙ୍ଗ ଗଜେ ଅଶ୍ୱ ତୁଳେ
ତାହାଙ୍କୁ ମାରି ଚୂନା କଲେ ।
ଦଶାନନକୁ ସେ ଯଜ୍ଞରେ
ନ ଦେଖି ଖୋଜନ୍ତେ ବାନରେ ।
ସରମା ନାମରେ ରାକ୍ଷସୀ
ସେ ବିଭୀଷଣର ପ୍ରେୟସୀ ।
କହି ସେ ଦେଲା ଠାରେ କରେ
ରାବଣ ଥିଲା ଯେଉଁ ଠାରେ ।
ଏମନ୍ତ ଜାଣନ୍ତେ ବାନରେ
ଦେଖିଲେ ସେ ବିବର ଦ୍ୱାରେ ।
ଥିଲା ଯେ ପାଷାଣ ଗୋଟିଏ
ଅଙ୍ଗଦ ତହିଁ ଗୋଇଠାଏ ।
ମାରି ତା ଭାଙ୍ଗି ପକାଇଲେ
ବିବରେ ପଶି ସେ ଦେଖିଲେ ।
ଦୃଢ଼ ଆସନେ ଦଶାନନ
ବସିଛି ବୁଜି ନେତ୍ରମାନ ।
ତହିଁରେ ଅଙ୍ଗଦ ଅଗ୍ରରେ
ପଶିଣ ସେ ରୁଷ୍ଟ ବାନରେ ।
ବହୁତ କୋଳାହଳ କଲେ
ସେବକମାନଙ୍କୁ ମାଇଲେ ।
ସବୁ ସମ୍ଭାରମାନ ନେଇ
ପକାଇ ସେ ହୋମ କୁଣ୍ଡରେ ।
ରାବଣ କାନେ ଘୋରନାଦ
କରିଣ କରନ୍ତି ଅଙ୍ଗଦ
ସ୍ରୁବ ଛଡ଼ାଇ ଘେନ ବେଗେ
ବହୁତ ପିଟିଲେ ତା ଅଙ୍ଗେ ।
ପୁଣି ସେ ଜଗ୍ରରେ ବାଡ଼ିରେ
କାଠରେ ନଖରେ ଦନ୍ତରେ ।
ରାବଣକୁହିଁ ପୀଡ଼ା କଲେ
ରାକ୍ଷସମାନଙ୍କୁ ମାଇଲେ ।
ତାଡ଼ିତ ହୋଇ ଏ ପ୍ରକାରେ
ନିଶ୍ଚୟ ଜାଣିମା ବିଗ୍ରୁରେ ।
କେବେହେଁ ଅଭ୍ର ଦଶାନନ
ନ ଛାଡ଼ିଲେ ଆସନ ଧ୍ୟାନ ।
ଅଙ୍ଗଦ ଏହା ଦେଖି ଖଳର
ପ୍ରବେଶ ହୋଇ ଅନ୍ତଃପୁରେ ।
ଧରି ସେ ମନ୍ଦୋଦରୀ କେଶ
ହୋମ ସ୍ଥାନେ ହେଲା ପ୍ରବେଶ ।
ରାବଣ ଅଗ୍ରେ ମନ୍ଦୋଦରୀ
ଅନାଥ ଲୋକ ପ୍ରାୟେ କରି ।
ବିକଳେ କରୁଛନ୍ତି ଶୋକ
ବହୁଣି ଯାଉଛି ଲୋତକ ।
ବେଢ଼ିଣ ରୁଷ୍ଟ ହରି ଯେତେ
ତାଙ୍କ କାଞ୍ଚୁଲି ବିଦାରନ୍ତେ ।
ସୀମନ୍ତ ମୁକୁତା ରତନ
ଛିଣ୍ଡିଣ ପଡ଼ିଲା ବନ୍ଧନ ।

କଟିରୁ ମେଖଳା ତୁଟିଲା
ନୀବୀ ବନ୍ଧନ ଫିଟିଗଲା ।
ତଳରେ ବିଞ୍ଚି ହୋଇ ପୁଣି
ପଡ଼ିଲା ସବୁ ଆଭରଣ ।
ଦେବ ଗନ୍ଧର୍ବ କନ୍ୟାମାନ
ରାବଣ ନଗରୁ ବେହନ ।
ନିର୍ଭୟେ ହୋଇ ହରଷ ହରି
ଧରି ସେ ନେଲେ ଲୁଟିକରି ।
ସେ ମନ୍ଦୋଦରୀ ଶୋକଭରେ
କହିଲା ରାବଣ ଛାମୁରେ ।
ଏତେ ନିର୍ଲଜ୍ଜ ତୁମ୍ଭେ ଅଟ
ବାନରେ ଦେଲେ ଏତେ କଷ୍ଟ ।
ହର୍ମ୍ୟାକୁ ତୁମ୍ଭର ଆଗରେ
ଟାଣୁଛନ୍ତି ଏ ପ୍ରକାରେ ।
ମାରୁ ଅଛନ୍ତି ମାଙ୍କଡ଼ମାନ
ଏଣୁ ଉତ୍ପାତରେ ହେ ରାଜନ ।
ହୋମ କରୁଛ କି ନିମନ୍ତେ
ସଙ୍କୋଚ ପାଉ ନାହିଁ ଚିତ୍ତେ ।
ଅମିତ ଯାହା ଅଗ୍ରତରେ
କାନ୍ତାକୁ ଏମନ୍ତ ପ୍ରକାରେ ।
କରନ୍ତି ପରାଭବ ବୀର
କିବା ତୁଚ୍ଛାହିଁ ତାଙ୍କର ।
ବଢ଼ି ବେଗରେ ସେହିଠାଇଁ
ମରିବା ଉତ୍ତମ ଅଟଇ ।
ତାକୁ ଏ ରୂପେ କହି କରି
ବୋଇଲା ପୁତ୍ରକୁ ସୁମରି ।
ହେ ଇନ୍ଦ୍ରଜିତ ଉଠ ହରି
ତୁମ୍ଭ ମାତାର କେଶ ଧରି ।
ମାଙ୍କଡ଼ମାରୁଛନ୍ତି ହେତୁ
ତୁମ୍ଭେ ଯେବେ ଜୀଇଥାଅନ୍ତ ।

ତେବେ କିପାଁ ଏ ରୂପେ ମୋତେ
ବାନରେ ପରାଭବ ଦ୍ୟନ୍ତେ ।
ପ୍ରାଣ ନିମନ୍ତେ ମୋର ଭର୍ତ୍ତା
ତେଜିଲେ ଲାଜ ନିଜକାନ୍ତା ।
ଶୁଣନ୍ତେ ସେ ରାବଣ ରାଗେ
ଉଠିଲେ ଖଣ୍ଡା ଧରି ବେଗେ ।
ଦେବୀ କି ଛାଡ଼ ବୋଲି ଖରେ
ହାଣନ୍ତେ ଅଙ୍ଗଦ ଅଣ୍ଟାରେ ।
ହୋମ ନାଶ କରି ବାନରେ
ପାଟେଶ୍ୱରୀ ଛାଡ଼ି ସେ ସତ୍ୱରେ ।
ହରଷ ହୋଇକରି ଗଲେ
ରାମ ଛାମୁରେ ଜଣାଇଲେ ।
ତହିଁ ଉତ୍ତରେ ମନ୍ଦୋଦରୀ
ବଦନ କରେ ତୋଳି ଧରି ।
ଏ ରୂପେ ସେ ଶାନ୍ତ୍ୱ ବଚନ
କହିଲେ ତାଙ୍କୁ ଦଶାନନ ।
ସବୁ ଦଇବାଧୀନ ସଖି
ଜୀବନ ଥିଲେ କି ନ ଦେଖି ।
ଏବେ ଜ୍ଞାନକୁ ଆଶ୍ରେ କରି
ବେଦନା ଛାଡ଼ ମନ୍ଦୋଦରୀ ।
ଶୋକ ଅଜ୍ଞାନୁ ଜାତ ହୋଇ
ଜ୍ଞାନକୁ ସେ ନାଶ କରଇ ।
ଅଜ୍ଞାନୁ ଦେହାଦିରେ କରି
ଆତ୍ମା ଏ ଏମନ୍ତ ବିଚାରି ।
ସେହି ସର୍ବାଶ୍ରିତ ହୁଅଇ
ପୁତ୍ର ଦାରାଦି ସମ୍ବନ୍ଧହିଁ ।
ତହୁଁ ପୁଣି ଗୋ ପ୍ରାଣସହି
ସଂସାର ଜାତ ହେଉଥାଇ ।
ହରଷ, ଶୋକ, ଭୟ କ୍ରୋଧ—
ଲୋଭ ମୋହ ମାତ୍ସର୍ଯ୍ୟ ମଦ ।

ଜନମ ମୃତ୍ୟୁ ଜରା ଯେତେ
ଅଜ୍ଞାନୁ ହୁଅନ୍ତି ସମସ୍ତେ ।
ଆତ୍ମାଟି ଦ୍ୱିତୀୟ ନୁହଇ
ଶୁଦ୍ଧ ସେ ତାହିଁ ନ ମିଶଇ ।
ଅଟଇ ସେ ଆନନ୍ଦରୂପ
କେବଳ ସେ ଜ୍ଞାନ ସ୍ୱରୂପ ।
କୌଣସି ପଦାର୍ଥଟି ଦେହ
ନୁହଇ ସେ ତୋ ପ୍ରାଣସହ ।
ସଂଯୋଗ ବିଯୋଗ ବୋଲଇ
ଏ ଦେହ କଥା ତାର ନାହିଁ ।
ଆତ୍ମାକୁ ଏ ରୂପେ ନିଶ୍ଚୟେ
ଜାଣି ସନ୍ତାପ ତେଜ ପ୍ରିୟେ ।
ଯାଉଛି ରାମ ଲକ୍ଷ୍ମଣଙ୍କ—
ମାରି ମୁଁ ଆସିବି ଏଠାକୁ ।
ନୋହିଲେ ରାମ ଯେବେ ମୋତେ
ବଜ୍ର ସମାନ ଶରଘାତେ ।
ମାରିବେ ତେବେ ମୁକ୍ତ ହେବି
ସ୍ୱର୍ଗରେ ତା ପାଦ ଲଭିବି ।
ଯାଉଛୁ ଏବେ କହୁ ଯାହା
ତୁ ନିଶ୍ଚେ କରିବୁଟି ତାହା ।
ମୁଁ ଯେବେ ମରିବି ସୁନ୍ଦରୀ
ତେବେ ସୀତାଙ୍କୁ ବଧ କରି ।
ତୁ ଅଗ୍ନି ସଙ୍ଗତେ ଅବଶ୍ୟ
ଅନଳେ ହେବୁଟି ପ୍ରବେଶ ।
ଏମନ୍ତ ଶୁଣି ମନ୍ଦୋଦରୀ
କହିଲେ ଦୁଃଖେ ଶୋକ କରି ।
ହେ ନାଥ ମୋ ସତ୍ୟ ଉତ୍ତର
ଶୁଣି ତା ବଡ଼ ବେଗେ କର ।
ଆପଣ ଅଭିମାନେ ଦେବ
କେହି ରାମଙ୍କୁ ନ ଜିଣିବ ।

ରାମ ସାକ୍ଷାତେ ନାରାୟଣ
ପ୍ରଧାନ ପୁରୁଷ ବୋଲିଣ ।
ଜଗତ ଯାହାକୁ ବୋଲନ୍ତି
ତାଙ୍କର ଈଶ୍ୱର ଅଟନ୍ତି ।
ଭକ୍ତବତ୍ସଳ ରଘୁପତି
ପୂର୍ବେ ଏ ଧରି ମତ୍ସ୍ୟ ମୂର୍ତ୍ତି ।
ବଇବସ୍ୱତ ନାମ ହୋଇ
ଯେଉଁ ମନୁ ନାମ ବୋଲଇ ।
ସମସ୍ତ ବିପତ୍ତି ତାଙ୍କର
ନାଶ କଲେ ଏ ରଘୁବୀର ।
ପୂର୍ବେ ସିନ୍ଧୁମନ୍ଥନ କାଳେ
ଲକ୍ଷେ ଯୋଜନ ଦେହ କଲେ ।
କମଠ ହୋଇ ଏ ପ୍ରକାରେ
ମନ୍ଦର ଧଇଲେ ପୃଷ୍ଠରେ ।
ଏହି ବରାହ ରୂପ ଧରି
ଦନ୍ତାଗ୍ରେ ଧରଣୀ ଉଦ୍ଧରି ।
ଦୁଷ୍ଟ ଯେ ହିରଣ୍ୟାକ୍ଷ ଦୈତ୍ୟ
ତାହାକୁ କରିଥିଲେ ହତ ।
ତ୍ରିଲୋକ ଶତ୍ରୁ ଯେ ଅଟଇ
ହିରଣ୍ୟକଶିପୁ ବୋଲଇ ।
ତାକୁଟି ଏ ରାମ ନଖରେ
ମାରିଲେ ନୃସିଂହ ରୂପରେ ।
ଏ ତ୍ରିବିକ୍ରମ ଅବତାରେ
ବଳୀକି ବାନ୍ଧି ପାତାଳରେ
ରଖିଣ ଏ ତିନି ଜଗତ
ପୁଣି ଇନ୍ଦ୍ରକୁ କଲେ ଦତ୍ତ ।
ଯେଣୁ ସେ ଘୋର ରକ୍ଷକୁଳ
କ୍ଷତ୍ରିୟ ଅକୃତ ଧଇଲେ ।
ଭୂମିର ଭାର ସେ ହେଲାକୁ
ପରଶୁରାମ ରୂପେ ତାଙ୍କୁ ।

ବିପ୍ରବାଧ ନାଶ କଲେ
ଧରଣୀ କଶ୍ୟପଙ୍କୁ ଦେଲେ ।
ଏବେ ସେ ରାମ ତୁମ୍ଭ ପାଇଁ
ମାୟାରେ ନର ଦେହ ବହି ।
ନିର୍ମଳ ଅଯୋଧ୍ୟା ନଗରେ
ଜନ୍ମିଲେ କୌଶଲ୍ୟା ଉଦରେ ।
ତାହାଙ୍କ ଭାର୍ଯ୍ୟାଙ୍କୁ କପାଇଁ
ବନରୁ ଆଣିଲ ରେ ଖଳ ।
ମୋ ପୁତ୍ର, ତୁମ୍ଭ ନାଶ ପାଇଁ
ଏହା କଲ ପିତା ଗୋସାଇଁ ।
ବଇଦେହୀଙ୍କି ଏବେ ନେଇ
ରାମଙ୍କୁ ସମର୍ପିଣ ଦେଇ ।
ବିଭୀଷଣଙ୍କୁ ରାଜ୍ୟ ଦେବା
ଅମ୍ଭେ ତୁହେଁ ବନକୁ ଯିବା ।
ଏମନ୍ତେ ଶୁଣି ଦଶାନନ
ବୋଇଲେ ଶୁଣ କ୍ଷମା ବଚନ ।
ଶ୍ରୀରାମ ହାତେ ପୁତ୍ର ଭାଇ
ସମସ୍ତ ରାକ୍ଷସ ମରାଇ ।
ବାନରେ କି ପ୍ରକାର ହୋଇ
ଜୀବନ ଧରିବି ଗୋ ସହି ।
ଏ ଦେଖ ରାମ ସଙ୍ଗତରେ
ସଂଗ୍ରାମ କରି ତାଙ୍କ ଶରେ ।
ଏ ଭୂତଶରୀର ଛାଡ଼ିବି
ପରମ ପଦକୁ ମୁଁ ଯିବି ।
ଅଟନ୍ତି ରାମ ନାରାୟଣ
ନିଶ୍ଚୟେ ସୀତା ଲକ୍ଷ୍ମୀ ପୁଣ ।
ଏମନ୍ତ ଜାଣି ପିତା ମୁହିଁ
ବନରୁ ଆଣିଲି ଚୋରାଇ ।
ମରଣ ପାଇ ରାମ ଶରେ
ତୁମ୍ଭଙ୍କ ଛାଡ଼ି ଏ ସଂସାରେ ।

ଅନନ୍ତମସ୍ତ ଯେଉଁ ଗତି
ଯୋଗୀନ୍ଦ୍ର ବୃନ୍ଦ ଯା ଖୋଜନ୍ତି ।
ସେ ଦିବ୍ୟ ପଦକୁ ମୁଁ ଯିବି
ଯେବେ ସେ ଶ୍ରୀହସ୍ତେ ମରିବି ।
ଏଠାରେ ଛାଡ଼ି ପାପମାନ
ଲଭିବି ମୁଁ ଦୁର୍ଲ୍ଲଭ ସ୍ଥାନ ।
ଅବିଦ୍ୟା ଅସ୍ମିତା ଯେ ଦ୍ୱେଷ
ଅନୁରାଗ ଅଭିନିବେଶ ।
ପଞ୍ଚକ୍ଳେଶ ତା ଏ ବୋଲାଇ
ଏହୁ ସେ ତରଙ୍ଗ ଅଟଇ ।
ଯୁଗ ପରିବର୍ତ୍ତିନ ଯାହା
ଭଅଁର ଅଟେ ଜାଣ ତାହା ।
ସ୍ତ୍ରୀ ପୁତ୍ର ଅପ୍ତ ବନ୍ଧୁବର
ଜଳଜନ୍ତୁଗଣେ ଅବୁଝ ।
ପ୍ରାଣୀ କ୍ରୋଧ ବାଡ଼ବାନଳ
ଅନଙ୍ଗ ଅଟଇ ଯେ ଜାଲ ।
ଏମନ୍ତ ସଂସାର ସାଗର
ଅନାୟାସରେ ହୋଇ ପାର ।
ହରିଙ୍କି ପାଇବି ନିଶ୍ଚୟେ
ନ କର କିଛି ଶଙ୍କା ପ୍ରିୟେ ।
ବୋଲେ ପତିତ ହଳଧର
ହେ ରାମ କରୁଣାସାଗର ।
ସୀତା ସହିତେ ତୋ ପାଦରେ
ଭକତ ହେଉ ନିରନ୍ତରେ ।
ମୋର ଜିହ୍ୱା ସଦା ଥାଉ
ଶ୍ରୀରାମ ବୋଲି ଗୁଣ ଗାଉ ।
ବଡ଼ ବେଗେ ମୋ ମନୋରଥ
ପୂର୍ଣ୍ଣ କର ହେ ରଘୁନାଥ ।
ସତ ଗୁଳିଣ ଶଠ ପଦ
ସମସ୍ତ କଲିର ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ
ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ଶ୍ରୀକଣ୍ଠ ଏଣୁ ଅନନ୍ତରେ
କହନ୍ତି ରୁଦ୍ରାଣୀ ଅଗ୍ରରେ ।
ରାବଣ ମନ୍ଦୋଦରୀ ଆଗେ
ଏମନ୍ତ ରୂପେ କହି ବେଗେ ।
ସଂଗ୍ରାମ ପାଇଁ ରାମ ତୁଲେ
ଏ ରୂପେ ବାହାର ହୋଇଲେ ।
ଷୋଡ଼ଶ ଚକ୍ରରେ ସଂଯୁତ
କୁବେର ବରୂଥେ ଶୋଭିତ ।
ପିଶାଚ ପରାୟେ ବଦନ
ଯୋଗ୍ୟ ହୋଇଛନ୍ତି ଗଧମାନ ।
ବିବିଧ ରୂପେ ଶସ୍ତ୍ର ଅସ୍ତ୍ର
ତହିଁରେ ଅଛନ୍ତି ବହୁତ ।
ସମସ୍ତ ମଣ୍ଡନରେ ଯୁତ
ଚାମର ଛତ୍ରରେ ଶୋଭିତ ।
ଏମନ୍ତ ରଥେ ଲଙ୍କପତି
ଧରି ସେ ଭୟଙ୍କର ମୂର୍ତ୍ତି ।
ଚଢ଼ିଣ ଘେନି ରାକ୍ଷସଙ୍କୁ
ଗଲା ସଂଗ୍ରାମ କରିବାକୁ ।
ଶ୍ରୀରାମ କରନ୍ତେ ପାଳନା
ଏମନ୍ତ ଯେ ବାନର ସେନା ।
ରାବଣ ଆସିବା ସେମାନେ
ଦେଖିଣ ଭୟ କଲେ ମନେ ।
ବହନ ହନୁମାନ ଉଠି
ଅତ୍ୟନ୍ତ ଦୃଢ଼ କରି ମୁଷ୍ଟି ।
ପରମ କ୍ରୋଧ ହୋଇ ଖରେ
ମାରନ୍ତେ ରାବଣ ହୃଦରେ ।
ତେଣୁ ସେ ଜାନୁ ଭରା ଦେଇ
ମଣ୍ଡଳ ରଥେ ମୋହ ଯାଇ ।
କ୍ଷଣକେ ପୁଣି ଜ୍ଞାନ ପାଇ
କହଇ ମାରୁତଙ୍କୁ ଚାହିଁ ।
ଅମୁର ହେଲୁ ଏ ସମ୍ମତ
ସମର୍ଥ ଅଟୁ ହନୁମନ୍ତ ।
ଏମନ୍ତ ଶୁଣି ହନୁମାନ
ବୋଇଲେ ଆହେ ଦଶାନନ ।
ଅନେକ ଧିକ ହେଉ ମୋତେ
ଏ ରୂପେ ମାଇଲି ମୁଁ ତୋତେ ।
ତୁ ଯାହା ଜୀବନ ପାଇଲୁ
ପୁଣି ମୋତେ ପ୍ରଶଂସା କଲୁ ।
ଆପଣ ଏବେ ହୃଦେ ମୋର
ମୁଥ ଗୋଟିଏ ବେଗେ ମାର ।
ମୋ ମୁଥ ବାଜନ୍ତେ ବହନ୍
ଜୀବନ ଛାଡ଼ିବ ଆପଣ ।
ଏମନ୍ତ ଶୁଣି ଦଶାନନ
କ୍ରୋଧରେ ହୋଇଣ ଅଜ୍ଞାନ ।
ହନୁମନ୍ତଙ୍କ ହୃଦସ୍ଥଳେ
ମୁଥ ଗୋଟିଏ ପ୍ରହାରିଲେ ।
ତହିଁରେ କରି ହନୁମାନ
ଘୁମାଇ ହେଉଛନ୍ତି ନୟନ ।

କଟିରୁ ମେଖଳା ତୁଟିଲା
ନୀବୀ ବନ୍ଧନ ଫିଟିଗଲା ।
ଛଳରେ ବକ୍ଷ ହୋଇ ପୁଣ
ପଡ଼ିଲା ସବୁ ଅଭରଣ ।
ଦେବ ଗନ୍ଧର୍ବ କନ୍ୟାମାନ
ରାବଣ ନଗରୁ ବହନ ।
ନିର୍ଭୟେ ହୋଇ ଭଷ ହର
ଧରି ସେ ନେଲେ ଲୁଟିକରି ।
ସେ ମନ୍ଦୋଦରୀ ଶୋକଭରେ
କହିଲା ରାବଣ ସମ୍ମୁଖରେ ।
ଏତେ ନିର୍ଲଜ୍ଜ ତୁମ୍ଭେ ଅଟ
ବାନରେ ଦେଲେ ଏତେ କଷ୍ଟ ।
ସ୍ତ୍ରୀଙ୍କୁ ତୁମ୍ଭର ଅଗରେ
ଚିକୁର ଟାଣି ଏ ପ୍ରକାରେ ।
ମାରୁ ଅଛନ୍ତି ମାଡ଼ମାନ
ଏଣୁ ଉଚିତରେ ହେ ରାଜନ ।
ହୋମ କରୁଛ କି ନିମନ୍ତେ
ସଙ୍କୋଚ ପାଉ ନାହଁ ଚିତ୍ତେ ।
ଅମିଷ ଯାହା ଅଗ୍ରତରେ
କାନ୍ତାଙ୍କୁ ଏମନ୍ତ ପ୍ରକାରେ ।
କରନ୍ତି ପରାଭବ ବୀର
ଜୀଇବା ଉଚିତାହିଁ ତାଙ୍କର ।
ବଡ଼ ବେଗରେ ସେହିଠାଇଁ
ମରିବା ଉଚିତ ଅଟଇ ।
ତାଙ୍କୁ ଏ ରୂପେ କହି କରି
ବୋଇଲା ପ୍ରିୟକୁ ସୁମରି ।
ହେ ଇନ୍ଦ୍ରଜିତ ରଷ ହରି
ତୁମ୍ଭ ମାତାର କେଶ ଧରି ।
ମାଡ଼ମାରୁଛନ୍ତି କେହିତ
ତୁମ୍ଭେ ଯେତେକ ଜୀଇଥାଅନ୍ତ ।

ତେବେ କିପାଁ ଏ ରୂପେ ମୋତେ
ବାନରେ ପରାଭବ ଦ୍ୟନ୍ତେ ।
ପ୍ରାଣ ନିମନ୍ତେ ମୋର ଭର୍ତ୍ତା
ତେଜିଲେ ଲଜ ନିଜକାନ୍ତା ।
ଶୁଣନ୍ତେ ସେ ରାବଣ ରାଗେ
ଉଠିଲେ ଖଣ୍ଡା ଧରି ବେଗେ ।
ଦେବୀ କି ଛାଡ଼ ବୋଲି ଖରେ
ହାଣନ୍ତେ ଅଙ୍ଗଦ ଅଣ୍ଟାରେ ।
ହୋମ ନାଶ କରି ବାନରେ
ପାଚେରୀ ଡେଇଁ ସେ ସତ୍ୱରେ ।
ହରଷ ହୋଇକରି ଗଲେ
ରାମ ସମ୍ମୁଖରେ ଜଣାଇଲେ ।
ତହିଁ ଉତ୍ତରେ ମନ୍ଦୋଦରୀ
ବଦନ କରେ ତୋଳି ଧରି ।
ଏ ରୂପେ ସେ ଶାନ୍ତ ବଚନ
କହିଲେ ତାଙ୍କୁ ଦଶାନନ ।
ସବୁ ଦଇବାଧୀନ ସଖି
ଜୀବନ ଥିଲେ କି ନ ଦେଖି ।
ଏବେ ଜ୍ଞାନକୁ ଆଶ୍ରେ କରି
ବେଦନା ଛାଡ଼ ମନ୍ଦୋଦରୀ ।
ଶୋକ ଅଜ୍ଞାନୁ ଜାତ ହୋଇ
ଜ୍ଞାନକୁ ସେ ନାଶ କରଇ ।
ଅଜ୍ଞାନୁ ଦେହାଦିରେ କରି
ଅସ୍ମା ଏ ଏମନ୍ତ ବିସ୍ମୃତି ।
ସେହି ସକାଶୁଟି ହୁଏଇ
ପୁତ୍ର ଦାରାଦି ସମ୍ବନ୍ଧହିଁ ।
ତହିଁ ପୁଣି ଗୋ ପ୍ରାଣସହି
ସଂସାର ଜାତ ହେଉଥାଇ ।
ହରଷ, ଶୋକ, ଭୟ କ୍ରୋଧ—
ଲୋଭ ମୋହ ମାତ୍ସର୍ଯ୍ୟ ମଦ ।

ଜନମ ମୃତ୍ୟୁ ଜରା ଯେତେ
ଅଜ୍ଞାନରୁ ହୁଅନ୍ତି ସମସ୍ତେ ।
ଆତ୍ମାଟି ଦ୍ୱିତୀୟ ନୁହଇ
ଶୁଦ୍ଧ ସେ କାହିଁ ନ ମିଶଇ ।
ଅଟଇ ସେ ଆନନ୍ଦରୂପ
କେବଳ ସେ ଜ୍ଞାନ ସ୍ୱରୂପ ।
କୌଣସି ପଦାର୍ଥଟି ଯେହୁ
ନୁହଇ ସେ ଟୋ ପ୍ରାଣସହୁ ।
ସଂଯୋଗ ବିଯୋଗ ବୋଲଇ
ଏ କେନ କଥା ତାର ନାହିଁ ।
ଆତ୍ମାକୁ ଏ ରୂପେ ନିଶ୍ଚୟେ
ଜାଣି ସନ୍ତାପ ତେଜ ପ୍ରିୟେ ।
ଯାଉଛନ୍ତି ରାମ ଲକ୍ଷ୍ମଣଙ୍କ—
ମାର ମୁଁ ଅସିବ ଏଠାକୁ ।
ନୋହିଲେ ରାମ ଯେବେ ମୋତେ
ବଜ୍ର ସମାନ ଶରଘାତେ ।
ମାରିବେ ତେବେ ମୁକ୍ତ ହେବ
ସ୍ୱର୍ଗରେ ତା ପାଦ ଲଭିବ ।
ଯାଉଛନ୍ତି ଏବେ କହୁ ଯାହା
ତୁ ନିଷ୍ଟେ କରନ୍ତୁଟି ତାହା ।
ମୁଁ ଯେବେ ମରିବ ସୁନ୍ଦରୀ
ତେବେ ସୀତାଙ୍କୁ ବଧ କରି ।
ତୁ ଅମ୍ଭ ସଙ୍ଗତେ ଅବଶ୍ୟ
ଅନଳେ ହେବୁଟି ପ୍ରବେଶ ।
ଏମନ୍ତ ଶୁଣି ମନ୍ଦୋଦରୀ
କହିଲେ ଦୁଃଖେ ଶୋକ କରି ।
ହେ ନାଥ ମୋ ସତ୍ୟ ଉତ୍ତର
ଶୁଣି ତା ବଡ଼ ବେଗେ କର ।
ଆପଣ ଆଉମାନେ ଦେବ
କେହୁ ରାମଙ୍କ ନ ଜିଣିବ ।

ରାମ ସାକ୍ଷାତେ ନାରାୟଣ
ପ୍ରଧାନ ପୁରୁଷ ବୋଲଣି ।
ଜଗତ ଯାହାକୁ ବୋଲନ୍ତି
ତାଙ୍କର ଈଶ୍ୱର ଅଟନ୍ତି ।
ଭକ୍ତବତ୍ସଳ ରଘୁପତି
ପୂର୍ବେ ଏ ଧରି ମତ୍ସ୍ୟ ମୂର୍ତ୍ତି ।
ବଇବସ୍ୱତ ନାମ ହୋଇ
ଯେଉଁ ମନୁ ନାମ ବୋଲଇ ।
ସମସ୍ତ ବିପତ୍ତି ତାଙ୍କର
ନାଶ କଲେ ଏ ରଘୁବୀର ।
ପୂର୍ବେ ସିନ୍ଧୁମନ୍ଥନ କାଳେ
ଲକ୍ଷେ ଯୋଜନ ଦେହ କଲେ ।
କମଠ ହୋଇ ଏ ପ୍ରକାରେ
ମନ୍ଦର ଧଇଲେ ପୃଷ୍ଠରେ ।
ଏହି ବରାହ ରୂପ ଧରି
ଦନ୍ତାଗ୍ରେ ଧରଣୀ ଉଦ୍ଧରି ।
ଦୁଷ୍ଟ ଯେ ହିରଣ୍ୟାକ୍ଷ୍ୟ ଦୈତ୍ୟ
ତାହାକୁ କରଥିଲେ ହତ ।
ତ୍ରିଲୋକ ଶତ୍ରୁ ଯେ ଅଟଇ
ହିରଣ୍ୟ କଶିପୁ ବୋଲଇ ।
ତାକୁଟି ଏ ରାମ ନଖରେ
ମାଇଲେ ନୃସିଂହ ରୂପରେ ।
ଏ ତ୍ରିବିକ୍ରମ ଅବତାରେ
ବଳୀକି ବାନ୍ଧି ପାତାଳରେ
ରଖିଣ ଏ ତିନି ଜଗତ
ପୁଣି ଇନ୍ଦ୍ରକୁ କଲେ ଦତ୍ତ ।
ଯେଣୁ ସେ ଘୋର ରଜକୁଳେ
କ୍ଷତ୍ରିୟ ଅକୃତ ଧରିଲେ ।
ଭୂମିର ଭାର ସେ ହେଲକୁ
ପରଶୁରାମ ରୂପେ ତାଙ୍କୁ ।

ବିପ୍ରବାଧା ନାଶ କଲେ
ଧରଣୀ କଶ୍ୟପଙ୍କୁ ଦେଲେ ।
ଏବେ ସେ ରାମ ତୁମ୍ଭ ପାଇଁ
ମାୟାରେ ନର ଦେହ ବହି ।
ନିର୍ମଳ ଅଯୋଧ୍ୟା ନଗରେ
ଜନ୍ମିଲେ କୌଶଲ୍ୟା ଉଦରେ ।
ତାହାଙ୍କ ଭାର୍ଯ୍ୟାଙ୍କୁ ନିପାଇଁ
ବନରୁ ଅଣିଲ ମୋହିତ ।
ମୋ ପୁତ୍ର, ତୁମ୍ଭ ନାଶ ପାଇଁ
ଏହା କଲ ସିନା ଗୋସାଇଁ ।
ବୈଦେହୀଙ୍କି ଏବେ ନେଇ
ରାମଙ୍କୁ ସମର୍ପିଣ ଦେଇ ।
ବିଭୀଷଣଙ୍କୁ ରାଜ୍ୟ ଦେବା
ଅମ୍ଭେ ତୁମ୍ଭେ ବନକୁ ଯିବା ।
ଏମନ୍ତେ ଶୁଣି ଦଶାନନ
ବୋଇଲେ ଶୁଣ ମୋ ବଚନ ।
ଶ୍ରୀରାମ ହାତେ ପୁତ୍ର ଭାଇ
ସମସ୍ତ ରାକ୍ଷସ ମରାଇ ।
ବାନରେ କି ପ୍ରକାର ହୋଇ
ଜୀବନ ଧରିବି ଗୋ ସହି ।
ଏ ଯୋଗ୍ୟ ରାମ ସଙ୍ଗତରେ
ସଂଗ୍ରାମ କରି ତାଙ୍କ ଶରେ ।
ଏ ଭୁତଶରୀର ଛାଡ଼ିବି
ପରମ ପଦକୁ ମୁଁ ଯିବି ।
ଅଟନ୍ତି ରାମ ନାରାୟଣ
ନିଷ୍ଟୟେ ସୀତା ଲକ୍ଷ୍ମୀ ପୁଣ ।
ଏମନ୍ତ ଜାଣି ସିନା ମୁହିଁ
ବନରୁ ଅଣିଲି ବୈଦେହୀ ।
ମରଣ ପାଇ ରାମ ଶରେ
ତୁମ୍ଭଙ୍କୁ ଛାଡ଼ି ଏ ସଂସାରେ ।

ଅନନ୍ତମସ୍ତୁ ଯେଉଁ ସ୍ଥାନ
ଯୋଗୀନ୍ଦ୍ର ବୃନ୍ଦ ଯା ଖୋଜନ୍ତି ।
ସେ ଦିବ୍ୟ ପଦକୁ ମୁଁ ଯିବି
ଯେବେ ସେ ଶ୍ରୀହସ୍ତେ ମରିବି ।
ଏଠାରେ ଛାଡ଼ି ପାପମାନ
ଲଭିବି ମୁଁ ଦୁର୍ଲ୍ଲଭ ସ୍ଥାନ ।
ଅବିଦ୍ୟା ଅସ୍ମିତା ଯେ ଦ୍ଵେଷ
ଅନୁରାଗ ଅଭିନିବେଶ ।
ପଞ୍ଚକ୍ଳେଶ ତା ଏ ବୋଲାଇ
ଏହି ସେ ତରଙ୍ଗ ଅଟଇ ।
ଯୁଗ ପରିବର୍ତ୍ତନ ଯାହା
ଭଉଁରି ଅଟେ ଜାଣ ତାହା ।
ସ୍ତ୍ରୀ ପୁତ୍ର ଅସ୍ତ୍ର ବନ୍ଧୁବର୍ଗ
ଜଳଜନ୍ତୁଗଣେ ଅବୃତ୍ତ ।
ପ୍ରାଣୀ କ୍ରୋଧ ବାଡ଼ବାନଳ
ଅନଙ୍ଗ ଅଟଇ ଯେ ଜାଲ ।
ଏମନ୍ତ ସଂସାର ସାଗର
ଅନାୟାସରେ ହୋଇ ପାର ।
ହରିଙ୍କି ପାଇବି ନିଷ୍ଟୟେ
ନ କର କିଛି ଚିନ୍ତା ପ୍ରିୟେ ।
ବୋଲେ ପଣ୍ଡିତ ହଳଧର
ହେ ରାମ କରୁଣାସାଗର ।
ସୀତା ସହିତେ ତୋ ପାଦରେ
ଭକତି ହେଉ ନିରନ୍ତରେ ।
ମୋର ଜିହ୍ଵା ସଦା ଥାଉ
ଶ୍ରୀରାମ ବୋଲି ଛନ୍ଦ ଗାଉ ।
ବଡ଼ ବେଗେ ମୋ ମନୋରଥ
ପୂର୍ଣ୍ଣ କର ହେ ରଘୁନାଥ ।
ସତ ଗୁଳଣି ଶତ ପଦ
ସମସ୍ତ ଲୋକଙ୍କୁ ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ
ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶ୍ରୀକଣ୍ଠ ଏହି ଅନନ୍ତରେ
କହିଲେ ରୁଦ୍ରାଣୀ ଅଗରେ ।
ରାବଣ ମନ୍ଦୋଦରୀ ଆଗେ
ଏମନ୍ତ ରୂପେ କହି ବେଗେ ।
ସଂଗ୍ରାମ ପାଇଁ ରାମ ସଙ୍ଗେ
ଏ ରୂପେ ବାହାର ହୋଇଲେ ।
ଷୋଡ଼ଶ ଚକ୍ରରେ ସଂଯୁତ
କୁବେର ରଥେ ଶୋଭିତ ।
ପିଶାଚ ପଶ୍ୱୟେ ବଦନ
ଯୋଗୁ ହୋଇଛି ଗଧମାନ ।
ବିବିଧ ରୂପେ ଶସ୍ତ୍ର ଅସ୍ତ୍ର
ତହିଁରେ ଅଛନ୍ତି ବହୁତ ।
ସମସ୍ତ ମଣ୍ଡନରେ ଯୁତ
ଚାମର ଛତ୍ରରେ ଶୋଭିତ ।
ଏମନ୍ତ ରଥେ ଲଙ୍କପତି
ଧରି ସେ ଭୟଙ୍କର ମୂର୍ତ୍ତି ।
ଚଳିଣ ଘେନି ରାକ୍ଷସଙ୍କୁ
ଗଲା ସଂଗ୍ରାମ କରିବାକୁ ।
ଶ୍ରୀରାମ କରନ୍ତେ ପାଳନା
ଏମନ୍ତ ଯେ ବାନର ସେନା ।
ରାବଣ ଆସିବା ସେମାନେ
ଦେଖିଣ ଭୟ କଲେ ମନେ ।
ବହନ ହନୁମାନ ଉଠି
ଅତ୍ୟନ୍ତ ଦୃଢ଼ କରି ମୁଷ୍ଟି ।

ପରମ କୋପ ହୋଇ ଖରେ
ମାରନ୍ତେ ରାବଣ ହୃଦରେ ।
ତେଣୁ ସେ ଜାନୁ ଭରା ଦେଇ
ମୂର୍ଚ୍ଛିଲା ରଥେ ମୋହ ଯାଇ ।
କ୍ଷଣକେ ପୁଣି ଜ୍ଞାନ ପାଇ
କହିଲା ମାରୁତିଙ୍କୁ ଚାହିଁ ।
ଆମ୍ଭର ହେଲ ଏ ସମ୍ମତ
ସମର୍ଥ ଅଟ ହନୁମନ୍ତ ।
ଏମନ୍ତ ଶୁଣି ହନୁମାନ
ବୋଇଲେ ଆହେ ଦଶାନନ ।
ଅନେକ ଧିକ ହେଉ ମୋତେ
ଏ ରୂପେ ମାଇଲି ମୁଁ ତୋତେ ।
ତୁ ଯାହା ଜୀବନ ପାଇଲୁ
ପୁଣି ମୋତେ ପ୍ରଶଂସା କଲୁ ।
ଆପଣ ଏବେ ହୃଦେ ମୋର
ମୁଥ ଗୋଟିଏ ବେଗେ ମାର ।
ମୋ ମୁଥ ବାଜନ୍ତେ ବହନ
ଜୀବନ ଛାଡ଼ିବ ଆପଣ ।
ଏମନ୍ତ ଶୁଣି ଦଶାନନ
କ୍ରୋଧରେ ହୋଇଣ ଅଜ୍ଞାନ ।
ହନୁମନ୍ତଙ୍କ ହୃଦସ୍ଥଳେ
ମୁଥ ଗୋଟିଏ ପ୍ରହାରିଲେ ।
ତହିଁରେ କରି ହନୁମାନ
ଘୁମାଇ ହେଉଛି ନୟନ ।

ଏ ରୂପେ କହୁଁ ମେଘ ଯାଇ
ତତକାଳେ ସେ ଜ୍ଞାନ ପାଇ ।
ପୁଣି ରାବଣ ହୃଦ ସ୍ଥଳେ
ଉଦ୍ୟମ ମାରିବାକୁ କଲେ ।
ଏହା ଜାଣି ସେ ଭୟ ପାଇ
ସେଠାରୁ ଗଲା ଅଡ଼ ହୋଇ ।
ଅଗ୍ନିବର୍ଣ୍ଣକୁ ହନୁମାନ
କଲେ ସେ ମୁଥରେ ନିଧନ ।
ସର୍ପରୋମାକୁ ଯେ ଅଙ୍ଗଦ
ମାଇଲେ କରି ଘୋର ନାଦ ।
ଖଡ଼ଗ ରୋମା ନାମେ ଦୈତ୍ୟ
ତାହାକୁ ନଳ କଲେ ହତ ।
ବୃଶ୍ଚିକ ରୋମାକୁ ମୁଥରେ
ମାଇଲେ ନୀଳ ଅତି ଜୋରେ ।
ସୁରଙ୍କୁ ଏ ପ୍ରକାରେ ମାରି
ହରଷେ ସିଂହନାଦ କରି ।
ଶ୍ରୀରାମ ସମ୍ମୁଖରେ ମିଳିଲେ
ପ୍ରଣାମ କରି ଉଭା ହେଲେ ।
ଏମନ୍ତ ଦେଖି ଦଶାନନ
କାମୁଡ଼ି କ୍ରୋଧେ ଓଷ୍ଠମାନ ।
ବୁଲଇ ଅଛୁ ବଂଶ ନେଇ
କୋଡ଼ିଏ ଭୁଜେ ଧରି ଶସ୍ତ୍ର ।
ସଂଗ୍ରାମ ପାଇଁ ଏ ପ୍ରକାରେ
ପ୍ରବେଶ ହୋଇ ରାମଠାରେ ।
ରଥରେ ଥାଇ ଦଶଶିର
କୁଳିଶ ସମ ଶର ବାର ।
ଶ୍ରୀରାମ ଉପରକୁ ଖରେ
ବନ୍ଧିଲା ପରମ କ୍ରୋଧରେ ।
ତାଙ୍କର ଅଙ୍ଗେ ବାଣ ପୁଣ
କପିଙ୍କି ବେଗେ ମାରନ୍ତେଣ ।

ଏମନ୍ତ ଦେଖି ରଘୁବୀର
କୋଦଣ୍ଡେ ବାନ୍ଧ ଦିବ୍ୟ ଶର ।
ମନରେ ବଡ଼ କ୍ରୋଧ ହେଲେ
ରାବଣ ପରେ ବୃଷ୍ଟି କଲେ ।
ରାବଣ ବସିଛି ରଥରେ
ଶ୍ରୀରାମ ଅଛନ୍ତି ଭୂମିରେ ।
ଏମନ୍ତେ ଦେଖି ଶଚୀସାଇଁ
କହିଲେ ମାତଳିକୁ ଚାହିଁ ।
ଦେଖ ଶ୍ରୀରାମ ଅସ୍ତ୍ର ପାଇଁ
ଭୂମିରେ ଛନ୍ତି ଉଭା ହୋଇ ।
ଏ ବେଳେ ତୁମ୍ଭେ ବେଗେ ଯାଅ
ମୋ ରଥେ ଶ୍ରୀରାମଙ୍କୁ ବହ ।
ଏ କାର୍ଯ୍ୟ ଅଟଇ ଅମ୍ଭର
ଏ ବେଳେ ଏହା ବେଗେ କର ।
ମାତଳି ଶୁଣନ୍ତେ ଏମନ୍ତ
ଇନ୍ଦ୍ରଙ୍କୁ କରି ଦଣ୍ଡବତ ।
ହରିତ ବର୍ଣ୍ଣ ଅଶ୍ୱମାନ
ରଥରେ ଯୋଚିଲା ବହନ ।
ସ୍ୱର୍ଗରୁ ଅସି ତୋରା ହୋଇ
ସଂଗ୍ରାମ ମଣ୍ଡଳରେ ପାଇ ।
ଶ୍ରୀରାମ ଅଗେ ରଥ ଥୋଇ
କହିଲେ କୃତାଞ୍ଜଳି ହୋଇ ।
ତୁମ୍ଭ ସମ୍ମୁଖକୁ ରାମଚନ୍ଦ୍ର
ପେଷି ଅଛନ୍ତି ମୋତେ ଇନ୍ଦ୍ର
ତୁମ୍ଭ ଜୟକୁ ତାଙ୍କ ରଥ
ଦେଇଛନ୍ତି ହେ ରଘୁନାଥ ।
କବଚ ଧନୁ ଖଣ୍ଡାଟିଏ
ଅକ୍ଷୟ ତୂଣୀର ଯୋଡ଼ିଏ ।
ଏତେକ ତୁମ୍ଭଙ୍କ ଗୋସାଇଁ
ଦେଇ ଅଛନ୍ତି ଶଚୀସାଇଁ ।

ଏଣୁ ମୋ ତୁଳେ ରଘୁନାଥ
ବହନ ଚଢ଼ିଣ ଏ ରଥ ।
ମହେନ୍ଦ୍ର ବୃତ୍ର ଅସୁରକୁ
ମାଇଲା ପ୍ରାୟେ ରାବଣକୁ ।
ସଂସାର ରକ୍ଷାପାଇଁ ବୀର
ବଡ଼ ବେଗରେ ବଧ କର ।
ଶୁଣି ରଥକୁ ରାବଣାରି
ପ୍ରଣାମ ପ୍ରଦକ୍ଷିଣ କରି ।
ସ୍ୱସ୍ତିଯାକ ଶୋଭା କରାଇ
ତହିଁରେ ବିଜେ କଲେ ଯାଇଁ ।
ଚଳନ୍ତେ ରାବଣର ଆଗେ
ପ୍ରବେଶ ହୁଅନ୍ତେ ସେ ବେଗେ ।
ହେଲା ଦୁହିଁଙ୍କର ସଂଗ୍ରାମ
ଦେଖନ୍ତେ ଟାକୋରଇ ରୋମ ।
ରାବଣ କଲେ ଅଗ୍ନି ଅସ୍ତ୍ର
ରାମ ତା ତହିଁ କଲେ ହତ ।
ଦଇବ ଅସ୍ତ୍ର କ୍ରୋଧ ହୋଇ
ମାରନ୍ତେ ପୁଣି ଲଙ୍କସାଇଁ ।
ରାମହିଁ କରି ଦୈବ ଅସ୍ତ୍ର
ସେ ଅସ୍ତ୍ର କରନ୍ତେ ସେ ହତ ।
ଶ୍ରୀରାମଚନ୍ଦ୍ରଙ୍କୁ ରାବଣ
ଅସୁର ଅସ୍ତ୍ର ମାରନ୍ତେଣ ।
ଅତି ବେଗେ ସେ ବାଣ ଦୂରୁ
ମୁକତ ହୁଅନ୍ତେ ଧନୁରୁ ।
ସବୁରି ମୁଖ ସର୍ପ ପ୍ରାୟେ
ଦେଖିଲେ ହୁଏ ମହାଭୟେ ।
କ୍ରୋଧରେ ଗରଜୁ ଅଛନ୍ତି
ଅନଳ କରୁଛନ୍ତି ବାନ୍ତି ।
ଏ ରୂପେ ଦଶଦିଗପାଳ
ସଂପୂର୍ଣ୍ଣ ହୁଅନ୍ତେ ଅନେକ ।

ଏମନ୍ତ ଦେଖି ସୀତାକାନ୍ତ
ପ୍ରୟୋଗ କଲେ ଗରୁଡ଼ାସ୍ତ୍ର ।
ବାହାରି ହୋଇ ବାଣଗଣ
ସୁପର୍ଣ୍ଣ ମୂରତି ଧରଣ ।
ଉରଗ ଶରମାନ ଖରେ
କାଟିଲେ ଅତି କ୍ରୋଧଭରେ ।
ଏମନ୍ତ ଦେଖନ୍ତେ ରାବଣ
ଶ୍ରୀରାମ ଉପରକୁ ପୁଣ ।
ଅନେକ ଘୋର ବାଣଗଣ
ପ୍ରହାର କରି ପୁଣ ପୁଣ ।
ଶର ସମୋହମାନ ମାରି
ରାମଙ୍କୁ ଅତି ପୀଡ଼ା କରି ।
ସେ ମାତଲିଙ୍କି ବିନ୍ଧ ବାଣ
ସମ୍ପୂର୍ଣ୍ଣ ରଥ-ଧ୍ୱଜ ପୁଣ ।
ବେଗେ ତା କାଟି ପକାଇଲେ
ଅଶ୍ୱଙ୍କୁ ଅନେକ ବିନ୍ଧିଲେ ।
ଦେବତା-ଗନ୍ଧର୍ବ-ଚାରଣ
ସମସ୍ତ ଋଷି ପିତୃଗଣ ।
ରାମଙ୍କୁ ଅସ୍ଥି ହେବା ଦେଖି
ସେ ବ୍ୟଥା ପାଇ ହେଲେ ଦୁଃଖୀ ।
ସୁଗ୍ରୀବ ଆଦି କପି ଯେତେ
ସେ ବିଭୀଷଣର ସହିତେ ।
ଅତି ଆକୁଳ କରି ଶରେ
ରାମଙ୍କୁ ଦେଖି ନୟନରେ ।
ମନରେ ମହାଭୟ କଲେ
ରାବଣ ମୁଖକୁ ଚାହିଁଲେ ।
କୋଡ଼ିଏ କର ଦଶ ମୁଣ୍ଡ
ହୋଇଛି ଅତ୍ୟନ୍ତ ପ୍ରଚଣ୍ଡ ।
ମୁଷଳ ଗଦା ଧନୁ ଶର
ପରିଘ ଖଡ୍ଗ ତୋମର ।

ଅଙ୍କୁଶ ପାଶ ଭିନ୍ଦିପାଳ
ପରଶୁ ମୁଦ୍ଗର ଶୂଳ ।
ଏ ଆଦି ଶସ୍ତ୍ରାସ୍ତ୍ରମାନରେ
ପୂରି ଅଛନ୍ତି ସବୁଢରେ ।
ପ୍ରଳୟକାଳେ ମେଘ ଯେସନେ
ଗର୍ଜନ କରୁଛନ୍ତି ତେସନେ ।
ଅଞ୍ଜନ ଗିରି ସମ ବର୍ଣ୍ଣ
ରଙ୍ଗ ଦିଶୁଛି ନେତ୍ରମାନ ।
ସବୁ ଶିରେ ଅଛି ମୁକୁଟ
କୁଣ୍ଡଳ ଦିଶେ ଝଟ ଝଟ ।
ମୈନାକ ପର୍ବତ ଯେସନ
ସେ ରୂପେ ଦିଶେ ଦଶାନନ ।
ଯେସନେ ଶ୍ରାବଣ ମେଘର
ସେ ରୂପେ ବରଷୁଛି ଶର ।
ପବନ ବେଗେ ଲଙ୍କପତ
କରୁଛି ରଥ ଗତାଗତ ।
ଭ୍ରୁକୁଟୀ ଧରି ସୀତାକାନ୍ତ
ଅତ୍ୟନ୍ତ କରି ରକ୍ତନେତ୍ର ।
ଶତ୍ରୁକୁ କହିଲ ପରାୟେ
ସକୋଧ ହୋଇ ଅତିଶୟେ ।
ଇନ୍ଦ୍ରକାର୍ମୁକ ପ୍ରାୟେ କରି
କୋଦଣ୍ଡ ବାମ କରେ ଧରି ।
ପ୍ରଳୟ ଅଗ୍ନି ସମ ଶର
ଗୁଣରେ ସନ୍ଧି ରଘୁବୀର ।
ଆଗରେ ଦେଖି ସେ ଶତ୍ରୁକୁ
ଚଉଦ ଭୁବନ ଲୋକଙ୍କୁ ।
ଆପଣା ତେଜ ପରାକ୍ରମ
ଦେଖାଇବାକୁ ତା ଶ୍ରୀରାମ ।
ବିସ୍ମୟ କରି ହୃଦୟରେ
ଧନୁ ଟଙ୍କାର କରି ଖରେ ।

କପିଙ୍କି କରାଇ ଆନନ୍ଦ
ବେଗେ ବାଢିଲେ ରାମଚନ୍ଦ୍ର ।
ପରମ କ୍ରୋଧ ହୋଇଛନ୍ତି
ରାବଣଠାକୁ ଧାଉଁଛନ୍ତି ।
ରାମଙ୍କ ଏମନ୍ତ ନୟନେ
ଦେଖି ସମସ୍ତ ପ୍ରାଣିମାନେ ।
ଅତ୍ୟନ୍ତ ତ୍ରସ୍ତ ହୋଇଲେ
ମନରେ ମହାଭୟ କଲେ ।
ସପତ ସମୁଦ୍ର ଭୁଲରେ
ଧରଣୀ କମ୍ପିଲା ଭୟରେ
ଯେଣୁ କରି ସେ ରାମଚନ୍ଦ୍ର
ହୋଇଛନ୍ତି ସେ ଅତି ରୌଦ୍ର ।
ତେଣୁ ଦାରୁଣ ଉତପାତ
ପୃଥ୍ୱୀରେ ହୁଅନ୍ତି ବହୁତ ।
ଭୟ ପାଇଲେ ସର୍ବଭୂତ
ରାବଣ ହୋଇଲା ତ୍ରସ୍ତ ।
ଗନ୍ଧର୍ବଦେବ ସିଦ୍ଧ ଋଷି
ସମସ୍ତେ ବିମାନରେ ବସି ।
ପ୍ରଳୟ ହେଲା କି ସଂସାର
ଏ ରୂପେ ରାମ ରାବଣର ।
ସଂଗ୍ରାମ ଦେଖିକରି ନେତ୍ରେ
ବିସ୍ମୟ କରନ୍ତି ସମସ୍ତେ ।
ବହୁତ ଶିର ରାବଣର
ରୁଧିରେ ହୋଇ ଜରଜର ।
ବୃକ୍ଷରୁ ତାଳ ପରକାରେ
ଛିଣ୍ଡି ପଡ଼ିଲା ଅବନୀରେ ।
ଦିବସ ରାତ୍ର ସନ୍ଧ୍ୟାକାଳ
ଦଶ କଲ୍ପର ତାରା କୁଳ ।
ଆକାଶ ଗ୍ରହ ଚନ୍ଦ୍ର ଇନ
ସମସ୍ତ ହୋଇଲେ ଅଛନ୍ନ ।

ଶ୍ରୀରାମ ଶରେ ରାବଣର
ଏକ ଉତ୍ତର ଶହେ ବାର ।
ଛିଣ୍ଡି ପଡ଼ିଲା କଅଁଳିଲା
ଜୀବନ କେବେହେଁ ନ ଗଲା
ଜାଣନ୍ତି ସବୁ ଶସ୍ତ୍ର ଅସ୍ତ୍ର
ଏମନ୍ତ ହେଲେ ସୀତାକାନ୍ତ ।
ତାହା ଦେଖି ବିସ୍ମୟ ହେଲେ
ମନେ ଏମନ୍ତ ଚିନ୍ତା କଲେ ।
ମୁଁ ଯେଉଁ ଶରମାନଙ୍କରେ
ସମର୍ଥ ଦଇତ୍ୟଙ୍କୁ ଖରେ ।
ନାଶ କରଇ ସଂଗ୍ରାମରେ
ଏବେ ସେ ରାବଣ ବଧରେ ।
ନିଷ୍ଫଳ ହେଲେ ତ ସମସ୍ତେ
ଚିନ୍ତା ଏ ପ୍ରକାରେ କରନ୍ତେ ।
ସେ କଥା ଜାଣି ବିଭୀଷଣ
ପ୍ରଣାମ କରି ପୁଣ ପୁଣ ।
କରଯୋଡ଼ି ବିନୟରେ
କହିଲେ ଶ୍ରୀରାମ ଛାମୁରେ ।
ବ୍ରହ୍ମ ଦେବ ପୂର୍ବେ ପ୍ରଜାପତି
ଏହାକୁ ବର ଦେଇଛନ୍ତି ।
ଶିର ନିକର ବାହୁଗଣ
ଛିଣ୍ଡିଲେ କଅଁଳିବ ପୁଣ ।
ରାବଣ ନାଭି ମଣ୍ଡଳରେ
ସୁଧା ଅଛି କୁଣ୍ଡଳାକାରେ ।
ଏଣୁ ନାଭିକି ଅଗ୍ନି ଅସ୍ତ୍ର
ପ୍ରୟୋଗ କର ସୀତାକାନ୍ତ ।
ଅମୃତ ଶୁଖିଲେ ଅବଶ୍ୟ
ବିନାଶ ହେବ ଦଶଈଶ ।
ଶ୍ରୀରାମ ଶୁଣି ହୃଷ୍ଟ ହେଲେ
ନାଭିକି ସେ ଅସ୍ତ୍ର ବିନ୍ଧିଲେ ।

ଶ୍ରୀରାମ ସେ ଉତ୍ତାରେ ପୁଣ
ବହନ ବିନ୍ଧ ବାଣଗଣ ।
ଅଠର କର ନବଶିର
କାଟି ପକାଇଲେ ତାହାର ।
ଏମନ୍ତ ଜାଣି ଲଙ୍କସାଇଁ
ବିଭୀଷଣଙ୍କୁ ସେ ଅନାଇ ।
ଶକତି ଗୋଟିଏ ବୁଲାଇ
ମାରନ୍ତେ ଅତି କ୍ରୋଧ ହୋଇ ।
ରାମ ସେ ଶକ୍ତି ତୀକ୍ଷ୍ଣ ଶରେ
କାଟିଣ ପକାଇଲେ ଖରେ ।
ଯେଣୁ କରି ସେ ରାବଣର
ବଢ଼ି କରାଳ ନବଶିର ।
ଛିଣ୍ଡିଲା ଅଷ୍ଟାଦଶ ଭୁଜ
ଏ ଘେନି ଗଲା ସବୁ ତେଜ ।
ପ୍ରଧାନ ମୁଣ୍ଡ ଗୋଟିକରେ
ଯୋଡ଼ିଏ ବାହୁ ରହିବାରେ ।
ଶୋଭା ପାଇଲା ସେ ରାକ୍ଷସ
ଯେମନ୍ତ ଦିଶଇ ମନୁଷ୍ୟ ।
ରାବଣ ପୁଣି ସେ ଉତ୍ତାରେ
କ୍ରୋଧରେ ଶ୍ରୀରାମ ଉପରେ ।
ଅନେକ ଶର ବୃଷ୍ଟି କଲେ
ରାମହିଁ ବହୁତ ବିନ୍ଧିଲେ ।
ଏ ରୂପେ ଦୁହିଁଙ୍କର ପୁଣ
ପୁଲକ ହୁଏ ରୋମଗଣ ।
ଅତ୍ୟନ୍ତ ଘୋର ଯୁଦ୍ଧ ହେଲା
ଏମନ୍ତେ ସାତ ରାତ୍ରି ଗଲା ।
ମାତଲି ଏଥୁ ଅନନ୍ତରେ
କହିଲେ ଶ୍ରୀରାମ ଛାମୁରେ ।
ହେ ରଘୁମଣି ସୀତାକାନ୍ତ
ହୃଦକୁ ମାର ବ୍ରହ୍ମ ଶସ୍ତ୍ର ।

ରାବଣ ବିନାଶ ନିମନ୍ତେ
ବ୍ରହ୍ମାଦି ଦେବତା ସମସ୍ତେ ।
ଋଥିଲେ ଅନ୍ତ ଯେଉଁକାଳ
ହୋଇଛି ଅଛି ସେହି ବେଳ ।
ମସ୍ତକ ନ କାଟ ରାଘବ
ଏ ତହିଁ କେବେ ନ ମରିବ ।
ହୃଦୟସ୍ଥଳକୁ ଅବଶ୍ୟ
ପ୍ରହାର କଲେ ହେବ ନାଶ ।
ତାଠାରୁ ଶୁଣନ୍ତେ ଏମନ୍ତ
ମହାବଳୀ ଯେ ସୀତାକାନ୍ତ ।
ନିଃଶ୍ୱାସ ତେଜିଲା ସର୍ପର
ପରାୟେ ଅଟେ ଭୟଙ୍କର ।
ତୂଣୀରୁ କାଢ଼ି ଦିବ୍ୟ ଶର
କରେ ଘେନିଲେ ରଘୁବୀର ।
ପବନ ଦେବତା ତହିଁରେ
ଅଛନ୍ତି ଦୂର ପାଖୁଶରେ ।
ଫଳରେ ଅନଳ ଭାସ୍କର
ଆକାଶ ମଧ୍ୟ ଅଟେ ତାର ।
ଗୁରୁତା ଭାବ ସେ ବାଣର
ମେରୁ ମନ୍ଦର ପରକାର ।
ସମସ୍ତ ଲୋକପାଳେ ତହିଁ
ପର୍ବତମାନେ ଛନ୍ତି ରହି ।
ଅଦ୍ଭୁତ ତେଜରେ ସେ ଦୀପ୍ତ
ହୋଇଣ ଅଛନ୍ତି ଅତ୍ୟନ୍ତ ।
ସମସ୍ତ ଲୋକମାନଙ୍କର
ଭୟକୁ ହରେ ଯେଉଁ ଶର ।
ତା ବେଦ ମନ୍ତ୍ର ବିଧାନରେ
ଅଭିମନ୍ତ୍ରିତ କରି କରେ ।
କୋଦଣ୍ଡ ଗୁଣେ ରଘୁସାଇଁ
ସନ୍ଧାନ କରନ୍ତେ ତା ନେଇ ।

ଏମନ୍ତ ଦେଖି ସର୍ବଭୂତ
ଭୟରେ ହୋଇଲେ ତ୍ରସ୍ତ ।
ବହୁତ ଉତ୍ପାତ ହେଲା
ସମସ୍ତ ଜଗତ କମ୍ପିଲା ।
ବଜ୍ର ମାରନ୍ତେ ଯେସନ୍ତେ ଇନ୍ଦ୍ର
ତେମନ୍ତ ରୂପେ ରାମଚନ୍ଦ୍ର ।
କ୍ରୋଧ ହୋଇ ସେ ଅତିଶୟେ
ଓଟାରି ଆଣି କର୍ଣ୍ଣପାଏଁ ।
ମର୍ମଘାତୀ ସେ ଯେଉଁ ଶର
ପ୍ରହାର କରନ୍ତେ ସେ ବୀର ।
ବଦନ ଘୋର ସୁଜ୍ୱଳଣ
ଏମନ୍ତେ ଅଟେ ଯେଉଁ ବାଣ ।
ସାକ୍ଷାତ ଯମ ପ୍ରାୟେ ହୋଇ
ପବନ ପ୍ରାୟେ ବେଗେ ଯାଇ ।
ରାବଣ ହୃଦେ ଭେଦ କରି
ଅନ୍ତ ବିଦାରି ପ୍ରାଣ ହରି ।
ଧରଣୀ ଭେଦି ଆସି ଖରେ
ମିଳିଲା ଶ୍ରୀରାମ ତୂଣୀରେ ।
ଧନୁମାର୍ଗଣ ସେ ଜତ୍ତ୍ୱରୁ
ପଡ଼ିଲା ରାବଣ କରରୁ ।
ଆପଣା ରଥୁ ସେ ଜତ୍ତ୍ୱରେ
ପଡ଼ିଲା ଧରଣୀ ତଳରେ ।
ତହିଁ ଉତ୍ତାରେ ହତଶେଷ
ହୋଇଣ ଥିଲେ ଯେ ରାକ୍ଷସ ।
ସେମାନେ ଶ୍ରୀରାମର ଜୟ
ହୋଇଲା ରାବଣର କ୍ଷୟ ।
ଏମନ୍ତ ଦେଖନ୍ତେ ଭୟରେ
ପଳାଇଗଲେ ଦିଗାନ୍ତରେ ।
ବାନରେ ହୋଇଲେ ହରଷ
ରାବଣ ନାଶ ରାମ ଯଶ ।

କହନ୍ତା ହୋଇ ଅତଅଳ୍ପ
ଶବଦ କରେ ସେ ସମସ୍ତ ।
ଆକାଶ ନିର୍ମଳ ଦଶିଲ
ସ୍ୱର୍ଗରୁ ଦୁନ୍ଦୁଭି ଶୁଭିଲା ।
ସମସ୍ତ ଦିଗକୁ ବହନ
ବୃଷ୍ଟି ହୋଇଲା ପୁଷ୍ପମାନ ।
ସିଦ୍ଧଚାରଣ ମୁନିଋଷି
ସମସ୍ତ ସ୍ୱର୍ଗବାସୀ ଅସି ।
ଆକାଶେ ରହିଣ ବିମାନେ
ସ୍ତୁତି କରନ୍ତି ହୃଷ୍ଟମନେ ।
ଗନ୍ଧର୍ବେ ଗୀତ ଆରମ୍ଭିଲେ
ଅପସରା ଏ ନୃତ୍ୟ କଲେ ।
ଦେଖୁଅଛନ୍ତି ଦେବ ବୃନ୍ଦ
ଅଦ୍ଭୁତ୍ୟ ମତ ଏକ ତେଜ ।
ରାବଣ ଦେହରୁ ଉଠିଲା
ରାମ ଶରୀରେ ଲୀନ ହେଲା ।
ଏମନ୍ତ ଦେଖିଣ ଦେବତା
ଏ ରୂପେ ହେଲେ କଥାବାର୍ତ୍ତା ।
ଦେଖ ମହାତ୍ମା ଦଶଶିର
ଭାଗ୍ୟ ବିଚିତ୍ର ଏହାଙ୍କର ।
ଅମ୍ଭେ ତ ଦେବତା ସମସ୍ତ
ସାତ୍ତ୍ୱିକ ଅଂଶରେ ସଂଯୁତ ।
ବିଷ୍ଣୁର ଅନୁଗ୍ରହ ପାଇ
ବିଶେଷେ ହୋଇଲେ ଏମନ୍ତ ।
ଭୟ ଦୁଃଖରେ ପୀଡ଼ା ପାଇ
ସଂସାର କଷ୍ଟେ ପଡ଼ିଥାଇ ।
ଦେଖ ଏ ରାକ୍ଷସ ହିଂସ୍ରକ
ମାରନ୍ତି ବ୍ରାହ୍ମଣ ଅନେକ ।
ତାମସ ପରସ୍ତ୍ରୀ ରତ
ବିଷ୍ଣୁଠାରେ ଦୋଷ ସନ୍ତତ ।

ତପସ୍ୱୀଙ୍କି ହିଂସଇ ନିତ୍ୟ
ଦେଖ ଏ ହୋଇଲେ ଏମନ୍ତ ।
ଅସୁର ମାନଙ୍କ ଅଗରେ
ପଶିଲା ଶ୍ରୀରାମ ଶରୀରେ ।
ଶୁଣି ନାରଦ ଦେବଋଷି
କହିଲେ ସେମାନଙ୍କୁ ହସି ।
ଧର୍ମର ତତ୍ତ୍ୱ ତ ନ ଜାଣ
କହିବା ଅମ୍ଭଠାରୁ ଶୁଣ ।
ରାବଣ ଯେ ଅନବରତେ
ପୁତ୍ରବନ୍ଧୁ ଭୃତ୍ୟ ସହିତେ ।
ଶତ୍ରୁଭାବେ ରାମ ଚରିତ
ଭାବନା କରୁଥାଇ ନିତ୍ୟ ।
ଆପଣ ଶ୍ରୀରାମ କରରେ
ନାଶ ହେବା ଶୁଣି ଭୟରେ ।
ସମସ୍ତଠାରେ ସେ ସନ୍ତତ
ରାମଙ୍କୁ ଦେଖୁଥାଇ ନିତ୍ୟ ।
ସ୍ୱପନରେ ହେ ଲଙ୍କସାଇଁ
ରାମଙ୍କୁ ଥାଆନ୍ତି ଗୋଡ଼ାଇ ।
ଆପଣା କ୍ରୋଧ ଗୁରୁ ପ୍ରାୟେ
ଜ୍ଞାନଦ ହୋଇଲା ନିଶ୍ଚୟେ ।
ଶ୍ରୀରାମ କରନ୍ତେ ବିନାଶ
ତା ସର୍ବ ପାପ ହେଲା ନାଶ ।
ଏଣୁ କର୍ମବନ୍ଧ ଛିଣ୍ଡିଲା
ରାମର ସାଯୁଜ୍ୟ ଲଭିଲା ।
ପାପୀ ବା ଦୁଷ୍ଟ ଅବା ହେଉ
ପରଧନ ବା ହରିଥାଉ ।
ପରସ୍ତ୍ରୀରେ ଆସକତ
ହୋଇଣ ଥାଉ ବା ସନ୍ତତ ।
ସ୍ନେହରେ କି ଅବା ଭୟରେ
ରାମଙ୍କୁ ଯେବା ହୃଦୟରେ ।

ଭାବନା କରି ଅନୁବ୍ରତ
ହୁଅଇ ଯେଉଁ ଲୋକ ମୃତ ।
ନିର୍ମଳ ତା ଅନ୍ତଃକରଣ
ହୁଅଇ ତାର ତେବେ ପୁଣ ।
ତା ଶତ ଜନ୍ମରେ ଅନେକ
ବିବିଧ ପ୍ରକାରେ ପାତକ ।
ଯେତେ ଅଛି ସେ କରିଥାଇ
ତତ୍କାଳ ତହୁଁ ମୁକ୍ତ ହୋଇ ।
ମହାବିଷ୍ଣୁ ମେ ରାମଚନ୍ଦ୍ର
ତାଙ୍କର ଦେବତାରେ ବନ୍ଦ୍ୟ ।
ଅଦ୍ୟ ବୈକୁଣ୍ଠ ଯେ ଅଟଇ
ସେ ଲୋକ ସୁଖେ ତା ଲଭଇ ।
ନାଶକ ତିନିଭୁବନର
ଏମନ୍ତ ଯେ ଦଶକନ୍ଧର ।
ତାକୁ ସଂଗ୍ରାମେ ନାଶ କରି
କୋଦଣ୍ଡ ବାମ କରେ ଧରି ।
ଧରଣୀ ତଳେ ଟିପି ଦେଇ
ଶ୍ରମରେ ଛନ୍ନ ଭଗ୍ନ ହୋଇ ।
ଏକ ଶର ଦକ୍ଷିଣ କରେ
ବୁଲାଇ ଅଛନ୍ତି ସଧୀରେ ।
ନୟନ ଯୁଗ ବେଣି ପ୍ରାନ୍ତ
ଦିଶୁଣି ଅଛି ଅରକତ ।
ଶର ସମୂହ ବାଜି କରି
ଶରୀର ହେଉଛି ବିଦାରି ।
ତେଜରେ ଦିଶୁଛି ଜଗତ
ଯେମନ୍ତ କୋଟିଏ ଅଦିତ୍ୟ ।
ବୀର ଚିହ୍ନରେ ଅଙ୍ଗମାନ
ଦିଶୁଛି ପରମ ଶୋଭନ ।
ବିବିଧ ରୂପେ ଦେବବୃନ୍ଦେ
ସ୍ତୁତି କରନ୍ତି ସେ ଆନନ୍ଦେ ।
ଏମନ୍ତ ବୀର ରାମ ନିତ୍ୟ
ଚିନ୍ତନ୍ତୁ ମୋତେ ଅବିରତେ ।
ବୋଲଇ ଦୀନ ହଳଧର
ଯାହା ନାରଦ ମୁନିବର ।
କହିଲେ ଏହି ରୂପେ ମୋର
ଜାନକୀ ଯୁକ୍ତ ରଘୁବୀର ।
ସଂଯୁତ ହୋଇ ମୋ ବିପଦ
ନାଶିଣ ଦିଅନ୍ତୁ ସମ୍ପଦ ।
ହୁଇଷ ଚଉବିଂଶ ପଦ
ସମସ୍ତ ଲୋକର ସୁଖଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ଏକାଦଶୋଽଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

ଭୂତେଶ ଏଥୁଁ ଅନନ୍ତରେ
କହିଲେ ରୁଦ୍ରାଣୀ ଅଗରେ ।
ତହିଁ ଉତ୍ତାରେ ବିଭୀଷଣ
ମାରୁତି ଅଙ୍ଗଦ ଲକ୍ଷ୍ମଣ ।
ସୁଗ୍ରୀବ ନଳ ଜାମ୍ବବନ୍ତ
ଏମାନଙ୍କ ସହିଁ ସୀତାକାନ୍ତ ।
ସନ୍ତୋଷ ହୋଇ ଆଜ୍ଞା ଦେଲେ
ତୁମ୍ଭମାନଙ୍କ ବାହୁବଳେ ।

ଶତ୍ରୁଙ୍କୁ ମାରିଲ୍ ଶୀଘ୍ରେ
ଚନ୍ଦ୍ର ସ୍ୱରୂପ ଥିବା ଯାଏ ।
ତୁମ୍ଭର ଥିବ କୀର୍ତ୍ତି ପୁଣ୍ୟ
ଅଟଇ ତୈଲୋକ୍ୟ ପାବନ ।
ମୋହରେ ହୋଇଛନ୍ତି ସଂଯୁକ୍ତ
କଲି କଳୁଷ କରେ ହତ ।
ଏମନ୍ତ ଯେଉଁ କଥା ମାନ
ଏହା ଯେ କରିବ ଗାୟନ ।
ମୋ ପାଦେ ଭକତି ଲଭିବ
ପରମ ପଦକୁ ସେ ଯିବ ।
ଏମନ୍ତ ସମୟରେ ପୁଣି
ରାବଣ ମରିବାର ଶୁଣି ।
ମନ୍ଦୋଦରୀଙ୍କ ଆଦିକରି
ଯେତେକ ଅନ୍ତଃପୁର ସ୍ତ୍ରୀ ।
ସମସ୍ତେ ସଂଗ୍ରାମ ଭୂମିରେ
ମିଳି ରାବଣ ନିକଟରେ ।
ଶିରେ ହୃଦରେ କର ତାଡ଼ି
କାନ୍ଦନ୍ତି ଭୂମିତଳେ ପଡ଼ି ।
ଶୋକ ଆରତେ ବିଭୀଷଣ
କାନ୍ଦିଲେ ରାବଣ ପାଶେଣ ।
ଏଥି ଅନ୍ତରେ ରଘୁସାଇଁ
ବୋଇଲେ ଲକ୍ଷ୍ମଣଙ୍କୁ ଚାହିଁ ।
ବିଭୀଷଣଙ୍କୁ କହ ବୀର
ଭାଇଙ୍କ କରୁ ସେ ସଂସ୍କାର ।
ବିଳମ୍ବ କରିତ ନୁହିଁଇ
ମନ୍ଦୋଦରୀଙ୍କ ଆଦି ହୋଇ ।
ରାବଣ ଭାର୍ଯ୍ୟାମାନେ ଶୋକ
କରୁ ଯେ ଅଛନ୍ତି ଅନେକ ।
ଶାନ୍ତ ବଚନ ତାଙ୍କୁ କହ
ପୁରକୁ ବେଗେ ପଠାଇଅ ।

ଶୁଣି ଲକ୍ଷ୍ମଣ ବେଗେ ଗଲେ
ବିଭୀଷଣଙ୍କୁ ସେ ଦେଖିଲେ ।
ରାବଣ ଶବ ପାଶେ ଯାଇ
ମଳ୍ପ ଲୋକର ପ୍ରାୟେ ହୋଇ ।
ଶୋଇ ଅଛନ୍ତି ବିଭୀଷଣ
ତାହାଙ୍କୁ କହିଲେ ଲକ୍ଷ୍ମଣ ।
ଯାହାକୁ କରୁଛ ରୋଦନ
ଭୂତ ଭବିଷ୍ୟ ବର୍ତ୍ତମାନ ।
ଏ ତିନିକାଳେ ସେ ତୁମ୍ଭର
କି ହୋଏ ତାହା କହ ବୀର ।
ଏ ରାବଣରହି ଅଛନ୍ତି
କି କି ହୁଅଛି ବିଭୀଷଣ ।
ଯେମନ୍ତ ନଦୀ ସୁଏ ପଡ଼ି
ସିକତାମାନେ ଯାନ୍ତି ଗଡ଼ି ।
ଏକାଠି ଅସି ହୋଇଥାନ୍ତି
ପୁଣି ଭିନ୍ନ ଭିନ୍ନ ହୁଅନ୍ତି ।
ଦେହୀମାନେ କାଳବଶରେ
ହୁଅନ୍ତି ତେମନ୍ତ ପ୍ରକାରେ ।
ବିବିଧ ଧାନ୍ୟମାନଙ୍କରେ
ବୀଜ ଯେମନ୍ତ ପରକାରେ ।
କେତେକ ମାନଙ୍କରେ ଥାଇ
କେ ଅବା ତହିଁ ଶୂନ୍ୟ ହୋଇ ।
ଏ ଭେଦ କର ଏ ପ୍ରକାରେ
ପ୍ରେରିତ ହୋଇ ଈଶ୍ୱରରେ ।
ଭୂତ ସମୂହଟାରେ ଭୂତ
ଯେମନ୍ତ ହେଉଥାନ୍ତି ଯୁକ୍ତ ।
ଆପଣ ଅମ୍ଭେ ଆଉ କେତେ
ପ୍ରାଣୀ ଅଛନ୍ତି ଏ ସମସ୍ତେ ।
କାଳବଶରେ ସମ ହୋଇ
ସମସ୍ତେ ଜାତ ହୋଇଥାଇଁ ।

ଯେ କାଳେ ଜନମ ମରଣ
ଯାହା ସକାଶେ ବିଭୀଷଣ ।
ହେବାକୁ ଯେଉଁଥାନେ ଥାଇ
ସେ କଥା ଅବଶ୍ୟ ହୁଅଇ ।
ବାଳକ ଲୋକ ପ୍ରାୟେ ହୋଇ
ଈଶ୍ୱର ଫଳ ନ ଇଚ୍ଛଇ ।
ଆପଣ କରନ୍ତି ଜଗତ
ଏ ଯେଉଁ ପଞ୍ଚମହାଭୂତ ।
ତହିଁରେ ସେ ପ୍ରାଣୀ ଅବଶ୍ୟ
ହେଉଛନ୍ତି ଜଗତ ବିନାଶ ।
ହେ ବିଭୀଷଣ ଯେଉଁ ଜନ
ଦେହରେ କରି ଅଭିମାନ ।
କଳେବରରେ ଯୁକ୍ତ ହୋଇ
ସେ ଲୋକ ଜନମ ଲଭଇ ।
ପିଅର ମାତା ଦେହୁ ଶୀର
ଜାତ ହୁଅଇ କଳେବର ।
ଜୀବକୁ ଜୀବ ସେ ଯେମନ୍ତ
ହୁଅଇ ଶାଶ୍ୱତ ସେ ନିତ୍ୟ ।
ଶରୀରୁ ହେଲା ପ୍ରାୟେ ହୋଇ
ଚିତ୍ତେ ପରତେ ହେଉଥାଇ ।
ବିଶ୍ୱରେ ଦେହ ଦେହୀ ହୋଇ
ଏ ନିଷ୍ଟେ ଅବିବେକୀ ହୋଇ ।
ନାନା ହିଁ ଜାତ କ୍ଷୟ ନାଶ
ବୃଦ୍ଧି କର୍ମ ଫଳ ଅବଶ୍ୟ ।
ଏତେକଯାକ ଏ ଆତ୍ମାର
ନୁହନ୍ତି ଅଟନ୍ତି ଦେହର ।
ସାକ୍ଷୀ ମାତ୍ର ଆତ୍ମା ଅଟଇ
ତାହାର ହୋଇ ପ୍ରତେ ହୋଇ ।
ଯେହ୍ନେ ଅଗ୍ନିରେ ହୋଇ ଚିତ୍ତେ
କାଷ୍ଠ ବିକାର ହୋଏ ପ୍ରତେ ।
ଶରୀର ସଂଯୋଗାଦ୍ ପୁଣ
ନିଷ୍ଟେ ମାୟାରେ ବିଭୀଷଣ ।
ସେମାନେ ଅପି ଆତ୍ମାଠାରେ
ଅଭିସୁଚନ୍ତି ନିରନ୍ତରେ ।
କାର୍ଯ୍ୟ କାରଣର ଯେବଣ
ଗ୍ରହଣ କରି ତେଣୁ ପୁଣ ।
ବିଷୟ ଧ୍ୟାନ କରୁଥାଇ
ସେ ତୃଷାଡ଼ି ପରିପ୍ରାୟେ ହୋଇ ।
ତାଠାରେ ଜଳଚକ୍ର ପ୍ରାୟେ
ଜଗତ ଆଭାସେ ନିଷ୍ଟପ୍ରାୟେ ।
ଶୋଇଲା ଲୋକମାନଙ୍କର
ନ ଥିବା ଯେଣି ଅହଙ୍କାର ।
ଯେମନ୍ତ ସେମାନଙ୍କଠାରେଁ
ଏ ରୂପେ ଆଭାସଇ ନାହିଁ ।
ସେ ରୂପେ ସଂସାରରେ ଥାଇ
ଅହଙ୍କାର ଯାର ନ ଥାଇ ।
ସେ ଲୋକମାନଙ୍କର ଶୀର
ନ ଥାଇ ସେ ରୂପେ ସଂସାର ।
ଏଣୁ ଯେ ମାୟାମୟ ତତ୍ତ୍ୱ
ତହିଁରେ ଅଟଇ କଳ୍ପିତ ।
ମୋହର ମୁଁ ବୋଲି ଯେବଣ
ବୁଦ୍ଧି ତା ଛାଡ଼ ବିଭୀଷଣ ।
ଯେ ଭଗବାନ ଯେ ଈଶ୍ୱର
ଆତ୍ମା ସମସ୍ତ ଭୂତଙ୍କର ।
ଆପଣା ସ୍ୱମାୟାରେ କରି
ମନୁଷ୍ୟ ବେଶ ଛନ୍ତି ଧରି ।
ଏମନ୍ତ ରାମ ଚରଣରେ
ମନକୁ ଦିଅ ନିରନ୍ତରେ ।
ଦୋଷ ଦେଖାଇ ବିଷୟରେ
ଚିତ୍ତ ଛଡ଼ାଇ ତହୁଁ ଖରେ

ଶ୍ରୀରାମ ନାମ ଅନନ୍ତରେ
ସଂଯୁତ କରି ହରଷରେ ।
ବନିତା ମାତା ପିତା ଭ୍ରାତ
ଏ ଦେହ ବୁଦ୍ଧିରୁ ହୁଅଇ ।
ଶରୀରୁ ଆତ୍ମା ଅଟେ ଭିନ୍ନ
ଏ ରୂପେ ଚେତନେ ଯେବେ ମନ ।
ଜନନୀ ପିତା ଭ୍ରାତା ତେବେ
କାହିଁକି କେ କାହାର ହେବେ ।
ବନିତା ଗଜ, ବାଜୀ ପୁର
ବାନ୍ଧବ ବିବିଧ ପ୍ରକାର ।
ସମ୍ପତ୍ତି ବଳ କୋଷ ଭୃତ୍ୟ
ଧରଣୀ ରାଜପଣ ସତ୍ୟ ।
ମିଥ୍ୟା ଜ୍ଞାନରୁ ଏ ସମସ୍ତ
ହୋଇ ଯେ ଥାଅନ୍ତି ଜଗତ ।
ଯେଣୁ ଅଜ୍ଞାନରୁ ହୋଇ ଥାଇ
ତେଣୁ କ୍ଷଣକେ ଭଗ୍ନ ହୋଇ ।
ଏ ଜ୍ଞାନ ଦୃଢ଼ ଭକ୍ତି କରି
ରାମଙ୍କୁ ହୃଦୟରେ ଧରି ।
ରାଜ୍ୟାଦି କରି ବିଭୀଷଣ
ପ୍ରାରବ୍ଧ ବଶ ଅନୁକ୍ଷଣ ।
ନିଶ୍ଚିନ୍ତେ ଭୋଗ କରୁଥିବ
ଭୂତ ଭବିଷ୍ୟ ନ ଚିନ୍ତିବ ।
ବରତମାନକୁ ଆଚରି
କେବଳ ଯଥା ନ୍ୟାୟେ କରି ।
ବିଷୟଚୟ କରୁଥିବ
ସଂସାର ଦୋଷ ନ ବାଧିବ ।
ଶ୍ରୀରାମ ଆଜ୍ଞା ଘେନି ଶିରେ
ରାବଣ ସଂସ୍କାରାଦି କରେ ।
କରି ତା ଯଥାନ୍ୟାୟେ କରି
ଏ ମନ୍ଦୋଦରୀ ଆଦି ସ୍ତ୍ରୀ ।

କାନ୍ଦୁ ଅଚିନ୍ତ ଅତି ହୋଇ
ତାହାଙ୍କୁ ବୋଧ ବାକ୍ୟ କହୁ ।
ଶାନ୍ତ କରାଇ ନିବର୍ତ୍ତାଇ
ପୁରକୁ ଦିଅ ପଠିଅଇ ।
ଶୁଣି ସେ ଯଥାର୍ଥ ବଚନ
ଶୋକ ମୋହକୁ ଛାଡ଼ି ପୁଣ ।
ଲକ୍ଷ୍ମଣ ସଙ୍ଗତେ ବହନ
ଧର୍ମଜ୍ଞ ସେ ଯେ ବିଭୀଷଣ ।
ଜାଣୁ ବିଗ୍ରହ କରି ଯାଇଁ
ରାମର ମନ ନେବା ପାଇଁ ।
ପ୍ରବେଶ ତାଙ୍କ ପାଦେ ହେଲା
ଧର୍ମାର୍ଥ ବଚନ କହିଲା ।
ଛାଡ଼ିଲୁ ସର୍ବ ଧର୍ମବ୍ରତ
ଅସତ୍ୟବାଦୀ ସେ ଅତ୍ୟନ୍ତ ।
ନାସ୍ତିକ ହିଂସକ ଅଟଇ
ପରସ୍ତ୍ରୀ ବଳେ ଧରଷଇ ।
ଏମନ୍ତ ଯେ ରାବଣ ତାକୁ
ସଂସ୍କାର କିମ୍ପା କରିବାକୁ ।
ମୁଁ ଯୋଗ୍ୟ ନୁହଁଇ ଗୋସାଇଁ
ଶ୍ରୀରାମ ଶୁଣି ପ୍ରୀତ ହୋଇ ।
କହିଲେ ଏମନ୍ତେ ଉତ୍ତର
ମରଣ ପର୍ଯ୍ୟନ୍ତେ ବଇର ।
କାର୍ଯ୍ୟ ତ ହୋଇଲା ଅମ୍ଭର
ଏବେ ତୁ କର ଯା ସଂସ୍କାର ।
ଏ କଥା ତୁମ୍ଭର ଯେମନ୍ତ
ଅମ୍ଭର ଅଟଇ ତେମନ୍ତ ।
ରାମଙ୍କ ଆଜ୍ଞା ଘେନି ପୁଣ
ସେଠାରୁ ଯାଇ ବିଭୀଷଣ ।
ମନ୍ଦୋଦରୀଙ୍କ ଆଦି କରି
କାନ୍ଦୁ ସେ ଥିଲେ ଯେତେ ସ୍ତ୍ରୀ ।

ବହୁତ ବୋଧ ବାକ୍ୟ କହି
ସବୁଙ୍କୁ ସେ ଶାନ୍ତ କରାଇ ।
ଚୋରା କରି ଋଷିମାନଙ୍କୁ
ଘେନାଇ ଯାଇ ରାବଣଙ୍କୁ ।
ପିତୃମେଧ ବିଧାନେ ନେଇ
ଅନଳ କୁଣ୍ଡରେ ଶୁଆଇ ।
ଅଗ୍ନିହୋତ୍ର ଥିବା ଲୋକର
ଯେମନ୍ତେ ହୁଅଇ ସଂସ୍କାର ।
ସେ ରୂପେ ବହ୍ନିଗଣ ତୁଲେ
ରାବଣ ଶରୀର ଦହିଲେ ।
ବିଧି ପ୍ରମାଣେ ବିଭୀଷଣ
ମୁଖାଗ୍ନି ଦେଇ ସେ ଦହନ ।
ଋଷିଙ୍କ ତୁଲେ କରି ସ୍ନାନ
ପିନ୍ଧଣ ଆରଦ୍ର ବସନ ।
କୁଶରେ ସେ ତିଳ ମିଶାଇ
ସଲିଳ ଅଞ୍ଜଳିରେ ଦେଇ ।
ହୃଦରେ ଚିନ୍ତ ରାବଣଙ୍କୁ
ଦଣ୍ଡ ପ୍ରଣାମ କରି ତାଙ୍କୁ ।
ଶାନ୍ତ ବଚନମାନ କହି
ସ୍ତ୍ରୀଙ୍କ ଶୋକ ନିବର୍ତ୍ତାଇ ।
ବୋଇଲେ ପୁରକୁ ବହନ
ଲେଉଟି କର ଗୋ ଗମନ ।
ସେମାନେ ଦୁଃଖେ ଶୋକେ ଗଲେ
ମନ୍ଦିରେ ପ୍ରବେଶ ହୋଇଲେ ।
ତହିଁ ଉତ୍ତାରେ ବିଭୀଷଣ
ବହୁତ ବିନୟ ହୋଇଣ ।
ଶ୍ରୀରାମ ଛାମୁରେ ମିଳିଲେ
ପ୍ରଣାମ କରି ଠିଆ ହେଲେ ।
ସୁଗ୍ରୀବ ଲକ୍ଷ୍ମଣ ସଙ୍ଗତେ
ଭାଲୁ ବାନରଙ୍କ ସହିତେ ।

ବୃତ୍ରକୁ ମାରି ଯେସନେ ଇନ୍ଦ୍ର
ତେମନ୍ତ ରୂପେ ରାମଚନ୍ଦ୍ର ।
ଶତ୍ରୁକୁ ମାରି ସଂଗ୍ରାମରେ
ହରଷ ଲଭିଲେ ମନରେ ।
ମାତଳି ରାମଙ୍କୁ ବନ୍ଦନ
କରି ପ୍ରଣାମ ପ୍ରଦକ୍ଷିଣ ।
ତାହାଙ୍କ ଅନୁଜ୍ଞା ମାଗିଲେ
ସ୍ୱର୍ଗକୁ ରଥେ ବସିଗଲେ ।
ଶ୍ରୀରାମ ପୁଣି ସେ ଉତ୍ତାରେ
ପରମ ହରଷ ମନରେ
ଲକ୍ଷ୍ମଣ ମୁଖକୁ ଅନାଇ
କହିଲେ ଅତି ପ୍ରୀତ ହୋଇ ।
ବିଭୀଷଣଙ୍କୁ ପୂର୍ବେ ଭାଇ
ଲଙ୍କା ରାଜ୍ୟ ତ ଦେଇଥାଇଁ ।
ଏ ବେଳେ ତୁମ୍ଭେ ଯାଇ ଖରେ
ବ୍ରାହ୍ମଣମାନଙ୍କ ତୁଲରେ ।
ବିଧି ପ୍ରମାଣେ ଅହେ ବୀର
ଏହାଙ୍କୁ ଅଭିଷେକ କର ।
ଲକ୍ଷ୍ମଣ ଶୁଣି ଏ ବଚନ
ସଙ୍ଗତେ ଘେନି କପି ସୈନ୍ୟ ।
ପ୍ରବେଶ ହୋଇ ଲଙ୍କାପୁରେ
ସୁବର୍ଣ୍ଣ କଳସମାନରେ ।
ସମୁଦ୍ର ପାଣି ଆଣି ଖରେ
ବିଭୀଷଣଙ୍କ ଲଙ୍କାପୁରେ ।
ହରଷେ ହୋଇ ସେ ଉତ୍ସୁକ
ଶୁଭରେ କଲେ ଅଭିଷେକ ।
ବିଭୀଷଣଙ୍କ ସେ ଉତ୍ତାରେ
ସେ ପୁରନରମାନଙ୍କରେ ।
ଭେଟକୁ ପଦାର୍ଥ ଘେନାଇ
ଲକ୍ଷ୍ମଣ ସଙ୍ଗତରେ ଯାଇ ।

ଶ୍ରୀରାମ ଛାମୁରେ ମିଳିଲେ
ଭୂମିରେ ଦଣ୍ଡବତ କଲେ ।
ରାଜ୍ୟ ପାଇଲା ବିଭୀଷଣ
ଏମନ୍ତ ଦେଖି ରାମ ପୁଣ ।
ଆତ୍ମାକୁ ମଣି କୃତ କୃତ୍ୟ
ଆନନ୍ଦ ଲଭିଲେ ବହୁତ ।
ପୁଣି ସୁଗ୍ରୀବଙ୍କୁ ବହନ
କହିଲେ କରି ଆଲିଙ୍ଗନ ।
ତୁମ୍ଭଙ୍କ ସାହା ପାଇ ମିତ୍ର
କଲି ମୁଁ ରାବଣକୁ ହତ ।
ବିଭୀଷଣକୁ ରାଜ୍ୟ ଦେଲି
ଲଙ୍କାରେ ଅଭିଷେକ କଲି ।
ତହିଁ ଉତ୍ତାରେ ରଘୁସାଇଁ
ଦେଖିଲେ ସେ ବିନୟ ହୋଇ ।
ଆଗେ ଅଛନ୍ତି ହନୁମନ୍ତ
ତାହାଙ୍କୁ ବୋଇଲେ ଏମନ୍ତ ।
କହ ଏ ବିଭୀଷଣ ଆଗେ
ଲଙ୍କାକୁ ଯାଅ ତୁମ୍ଭେ ବେଗେ ।
ସୀତାଙ୍କୁ ରାବଣ ନିଧନ
ବହନ କହ ହନୁମାନ ।
ପ୍ରୀତରେ ବୋଲିବେ ସେ ଯାହା
ମୋ ଆଗେ ଆସି କହ ତାହା ।
ଏମନ୍ତ ଶୁଣି ହନୁମାନ
ବହନ କରନ୍ତେ ଗମନ ।
ରାକ୍ଷସେ କରୁଛନ୍ତି ସ୍ତୁତ
ଏମନ୍ତ ପ୍ରକାରେ ମାରୁତ ।
ପ୍ରବେଶ ହୋଇ ଲଙ୍କାପୁରେ
ଦେଖିଲେ ଶିଂଶପା ମୂଳରେ ।
ଦୁର୍ବଳ ହୋଇଛନ୍ତି ବସି
ବେଢ଼ିଣ ଅଛନ୍ତି ରାକ୍ଷସୀ ।

ହୋଇଣ ସେ ମଳିନ ଦୀନ
ରାମଙ୍କୁ କରୁଛନ୍ତି ଧ୍ୟାନ ।
ସୀତାଙ୍କୁ ଏ ପ୍ରକାରେ ଚାହିଁ
ବହୁତ ବିନୟ ସେ ହୋଇ ।
ଭକ୍ତିରେ କରି ନମସ୍କାର
ମସ୍ତକେ ଦେଇ ବେନିକର ।
ଏକାନ୍ତେ ଏମନ୍ତ ପ୍ରକାରେ
ରହିଲେ ତାହାଙ୍କ ଛାମୁରେ ।
ତାହାଙ୍କୁ ଦେଖି ବୈଦେହୀ
ପୂର୍ବର ଚରିତ ଚେତାଇ ।
ଶ୍ରୀ ରଘୁନାଥର ଏ ଦୂତ
ନିଶ୍ଚୟେ ଜାଣିଲେ ଏମନ୍ତ ।
ଆନନ୍ଦ ସନ୍ଦେହେ ବଦନ
ଦଶିଲା ପରମ ଶୋଭନ ।
ଜାନକୀ ହୋଇଲେ ପ୍ରସନ୍ନ
ଏମନ୍ତ ଜାଣି ହନୁମାନ ।
ଶ୍ରୀରାମଚନ୍ଦ୍ର ବାର୍ତ୍ତା ତାଙ୍କୁ
ଆରମ୍ଭ କଲେ କହିବାକୁ ।
ମୋ ଦେବ ସୁଗ୍ରୀବ ଲକ୍ଷ୍ମଣ
ବାନର ସୈନ୍ୟ ବିଭୀଷଣ ।
ଏହାଙ୍କ ତୁଲେ ରଘୁପତି
ସମସ୍ତ ଶୁଭରେ ଅଛନ୍ତି ।
ପୁତ୍ର ପୌତ୍ରାଦି ଭୃତ୍ୟ ମନ୍ତ୍ରୀ
ବାହନ ତୁଲେ ରଘୁପତି ।
ସଂଗ୍ରାମେ ମାରି ରାବଣକୁ
ଲଙ୍କାପୁରେ ବିଭୀଷଣଙ୍କୁ ।
ବହନ ଅଭିଷେକ କରି
ହରଷ ହୋଇ ରାବଣାରି ।
କୁଶଳ ପ୍ରଶ୍ନ ତୁମ୍ଭଙ୍କୁ
ଅନୁଜ୍ଞା ଦେଲେ କହିବାକୁ ।

ଏମନ୍ତ ଶୁଣି ବଇଦେହୀ
ହରଷେ ଗଦ ଗଦ ହୋଇ ।
ବୋଇଲେ ଅହେ ହନୁମାନ
ତୋ ପ୍ରିୟ ବଚନ ସମାନ ।
ଭବ ତ ତିନି ଲୋକେ ସାର
କିଛି ହିଁ ରତ୍ନ ଅଳଙ୍କାର ।
ମୁଁ ଦେଖୁନାହିଁ କପିବୀର
କି କାର୍ଯ୍ୟ କରବ ତୁମ୍ଭର ।
ଏଥିକି କହିଲେ ମାରୁତି
ଶତ୍ରୁଙ୍କୁ ଯାହା ରଘୁପତି ।
ସଂହାର ହୋଇଲେ ନିଶ୍ଚିନ୍ତ
ମୁଁ ନେତ୍ରେ ଦେଖିଲି ଏମନ୍ତ ।
ଏ ମୋତେ ରତ୍ନମାନଙ୍କରୁ
ଦେବତା ରାଜ୍ୟ ପାଇବାରୁ ।
ଅଧିକ ହେଲା ମହାପ୍ରାପ୍ତି
ଏମନ୍ତ ଶୁଣି ବଇଦେହୀ ।
ବୋଇଲେ ଅହେ ହନୁମାନ
ଯେତେ ମଙ୍ଗଳ ଗୁଣମାନ ।
ସମସ୍ତ ଅଛି ତୁମ୍ଭଠାରେ
ସଂଶୟ ନାହିଁ ଏ କଥାରେ ।
ସତ୍ୱରେ ଯାଅ ହେ ମାରୁତି
ଆଜ୍ଞା ଦିଅନ୍ତୁ ରଘୁପତି ।
ଚହନ ତାହାଙ୍କ ବଦନ
ହେଉଛି ଦେଖିବାକୁ ମନ ।
ଏମନ୍ତ ଶୁଣି ହନୁମନ୍ତ
ସୀତାଙ୍କୁ କରି ଦଣ୍ଡବତ ।
ଶ୍ରୀରାମ ଛାମୁରେ ମିଳିଲେ
ତାଙ୍କ ବାରତା ଜଣାଇଲେ ।
ପୁଣି ବୋଇଲେ ହେ ଶ୍ରୀରାମ
ଯେଉଁ ନିମନ୍ତେ ଏତେ କର୍ମ ।

କରିବା ହୋଇଲା ଗୋସାଇଁ
ତହିଁର ଫଳ ଯେ ଅଟଇ ।
ଏମନ୍ତ ଯେ ସୀତା ତାହାଙ୍କୁ—
ବହନ ହେଉ ଦେଖିବାକୁ ।
ଜ୍ଞାନୀ ଶ୍ରେଷ୍ଠ ଯେ ରଘୁବୀର
ଶୁଣି ସେ ଏମନ୍ତ ଉତ୍ତର ।
ବିଚାର କଲେ ହୃଦୟରେ
ମାୟା ସୀତାଙ୍କୁ ତେଜି ଶରେ ।
ଅନଳ ଉଦର ସୀତାଙ୍କୁ
ବେଗେ ଦେଖିଣ ଭରତଙ୍କୁ ।
ଏମନ୍ତ ବିଚାର ସେ କଲେ
ବିଭୀଷଣଙ୍କୁ ଆଜ୍ଞା ଦେଲେ ।
ସୀତାଙ୍କୁ ମାଜଣା କରାଇ
ଉତ୍ତମ ବସନ ପିନ୍ଧାଇ ।
ଖଞ୍ଜି ସମସ୍ତ ଅଳଙ୍କାର
ବେଗେ ଅଣାଅ ଲଙ୍କେଶ୍ୱର ।
ଏମନ୍ତେ ଶୁଣନ୍ତେ ସେ ବେଗେ
ହନୁମନ୍ତଙ୍କୁ ଘେନି ସଙ୍ଗେ ।
ପ୍ରବେଶ ହୋଇ ଲଙ୍କାପୁରେ
ବୃଦ୍ଧା ରାକ୍ଷସୀ ମାନଙ୍କରେ ।
ଶ୍ରୀରାମ ଅନୁଜ୍ଞା ସୀତାଙ୍କୁ
ଚହନ ଜଣାଇ ତାହାଙ୍କୁ ।
ଖଞ୍ଜାଇ ସର୍ବ ଆଭରଣ
ଦୋଳାରେ ବିଜେ କରାଇଣ ।
ଗନ୍ତା ପାଗରେ ହୋଇ ଯୁତ
ସବୁରି କରେ ସୁନା ବେତ ।
ଏ ରୂପେ ରାକ୍ଷସ ନିକରେ
ଜାନକୀ ପାଲିଙ୍କି ଅଗରେ ।
ବାହାର ହେଲେ ହରଷରେ
ବିଜେ କରନ୍ତି ଏ ପ୍ରକାରେ ।

ସୀତାଙ୍କୁ ଦେଖିବା ବିସ୍ମୟରେ
ଜନ୍ତୁଙ୍କେ ଅସନ୍ତେ ବାନରେ ।
ତାହାଙ୍କୁ ରାକ୍ଷସ ନିକରେ
ଘଉଡ଼ୁ ଅଛନ୍ତି ବେତରେ ।
ସୀତା ଏମନ୍ତ ପରକାରେ
ମିଳିଲେ ରାମ ନିକଟରେ ।
ଦୋଳାରେ ଛନ୍ତି ବଇଦେହୀ
ବାନରେ ଅଛନ୍ତି ଗୋଡ଼ାଇ ।
ଏ ରୂପେ ରାମ ଦେଖି ତାଙ୍କୁ
ବୋଇଲେ ସେ ବିଭୀଷଣଙ୍କୁ ।
ରାକ୍ଷସେ କପାଁ ବାନରଙ୍କୁ
ଘଉଡ଼ୁଛନ୍ତି ମାରି ତାଙ୍କୁ ।
ସୀତାଙ୍କୁ ମାତା ପ୍ରାୟେ କରି
ଦେଖନ୍ତୁ ସବୁ ଋଷି ହରି ।
ମୋତାକୁ ତେଜିଣ ପାଲିଙ୍କି
ଚଲିଣ ଅସନ୍ତୁ ଜାନକୀ ।
ଜଣାନ୍ତେ ବିଭୀଷଣ ଯାଇଁ
ଜାନକୀ ବହନ ଓହ୍ଲାଇ ।
ଚରଣେ ଚାଲି ଧରଣୀରେ
ମିଳିଲେ ଶ୍ରୀରାମ ସମ୍ମୁଖରେ ।
ମାୟା ସୀତାଙ୍କୁ ରଘୁନାଥ
କରିଥିଲେ ସିନା କାର୍ଯ୍ୟାର୍ଥ ।
ଏ ବେନି ତାଙ୍କୁ ରଘୁସାଇଁ
ଦେଖି କପଟେ କ୍ରୋଧ ହୋଇ ।
ଅତ୍ୟନ୍ତ ନିଷ୍ଠୁର ଅଟଇ
ଯା ବୋଲିବାର ନ ଯୋଗାଇ ।
ଅଟେ ଅତ୍ୟନ୍ତ ଅଦ୍ଭୁତ
ଏମନ୍ତ ବଚନ କହୁତ ।
ବୋଲନ୍ତେ ତାହା ବଇଦେହୀ
ନ ସହି ଲକ୍ଷ୍ମଣଙ୍କୁ ଚାହିଁ ।

ବୋଇଲେ ହେ ବତ୍ସ ବହନ
ତୁମ୍ଭେ ଲଗାଅ ହୁତାଶନ ।
ଶ୍ରୀରାମ ବିଶ୍ୱାସ ନିମନ୍ତେ
ସମସ୍ତଙ୍କର ହେବ ପ୍ରତେ ।
ଏଥିକୁ ଅନଳ ମଧ୍ୟରେ
ପ୍ରବେଶ ହେବି ମୁଁ ନିର୍ଭରେ ।
ଲକ୍ଷ୍ମଣ ଏ ବଚନ ଶୁଣି
ଶ୍ରୀରାମ ହୃଦୟ ସେ ଜାଣି ।
ଅଣାଇ ବହୁତ ଇନ୍ଧନ
ବହନ ଜାଳି ହୁତାଶନ ।
ଶ୍ରୀରାମ ଅଗେ ଜଣା ହୋଇ
ରହିଲେ ଯୋଡ଼ି କର ଦୁଇ ।
ଅନଳ ଦେଖି ବଇଦେହୀ
ଅତି ଭକ୍ତିରେ ଯୁକ୍ତ ହୋଇ ।
ରାମଙ୍କୁ କରି ପ୍ରଦକ୍ଷିଣ
ଦେଖୁ ଅଛନ୍ତି ପ୍ରାଣୀଗଣ ।
ଦେବ ଗନ୍ଧର୍ବ ସ୍ତ୍ରୀରାମାନେ
ଦେଖୁ ଅଛନ୍ତି ରହି ଶୂନ୍ୟେ ।
ଦେବତା ବ୍ରାହ୍ମଣଙ୍କୁ ଚାହିଁ
ପ୍ରଣାମ କରି ବଇଦେହୀ ।
ଅନଳ ନିକଟେ ଏମନ୍ତ
କହିଲେ ଯୋଡ଼ି ବେନି ହସ୍ତ ।
ମୋ ଚିତ୍ତୁ ନିତ୍ୟେ ରଘୁପତି
ଯେମନ୍ତେ ବାହାର ନୁହଁନ୍ତି ।
ସେ ରୂପେ ସମସ୍ତ ଲୋକର
ସାକ୍ଷୀ ଅଟ ହେ ବୈଶ୍ୱାନର ।
ସମସ୍ତଠାରୁ ତୁମ୍ଭେ ମୋତେ
ରକ୍ଷା କର ହେ ଦେବହୁତେ ।
ଏମନ୍ତ କହି ସେ ଜାନକୀ
ବେଢ଼ାଏ ବୁଲିଲେ ଅଗ୍ନିଙ୍କି ।

ଜଳନ୍ତା ଅନଳ ମଧ୍ୟରେ
ପ୍ରବେଶ ହୋଇଲେ ଗର୍ବରେ ।
ଏଥି ଉତ୍ତାରେ ସର୍ବଭୂତେ
ଅକାଶେ ଥିଲେ ସିଦ୍ଧ ଯେତେ ।
ଜାନକୀ ପଡ଼ିଲେ ଅନଳେ
ଏମନ୍ତ ଦେଖନ୍ତେ ସକଳେ ।
ଅତିରେ ହାହାକାର କଲେ
ଏ ରୂପେ କୁହାକୁହି ହେଲେ
ଅପଣାର ପ୍ରିୟା ଅଟଇ
ଏମନ୍ତ ଯେଉଁ ବଇଦେହୀ ।
ଏ ରୂପେ ନିର୍ଦ୍ଦୋଷେ କିପାଇଁ
ତେଜିଲେ ତାଙ୍କୁ ରଘୁସାଇଁ ।
ଏ କି ଅଶ୍ଚର୍ଯ୍ୟ ବୋଲି ଶବ୍ଦେ
ଚିନ୍ତାକୁ କରନ୍ତେ ସମସ୍ତେ ।
ବୋଲଇ ଦୀନ ହଳଧର
ହେ ରାମ କରୁଣାସାଗର ।
ତୋ ପରି ଅଜ୍ଞ ଜଣେ କେହୁ
ଜଗତଯାକେ ମୋର ନାହିଁ ।
ସମସ୍ତ ଅନ୍ତଃକରଣରେ
ତୁମ୍ଭେ ତ ଅଛ ନିରନ୍ତରେ ।
ମୋ ସବୁ ଦୋଷ କ୍ଷମାକର
ପ୍ରସନ୍ନ ହୁଅ ରାବଣାର ।
ତୁମ୍ଭେ ତ ପତିତପାବନ
ମୁଁ ବଡ଼ ଦୀନ ହୀନ ଜନ ।
ସମସ୍ତ ଅଘନାଶ କର—
ଭବସାଗରୁ କର ପାର ।
ଏହା ଯେ ସନ୍ତତ ପଢ଼ଇ
ଅରୋଗ୍ୟ ଧନ ଜନ ପାଇ ।
ରାମଙ୍କ ପାଦେ ଧ୍ୟାନ କର
ଭବ ସଂସାରୁ ହେବ ପାର ।
ଦୁଇଶ ଅଣନିଶ ପଦ
ଏ ପାପ ମୋହ କରେ ଛେଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ
ନାମ ଦ୍ୱାଦଶୋଽଧ୍ୟାୟଃ ।

---

## ତ୍ରୟୋଦଶ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

କପର୍ଦ୍ଦି ବୋଇଲେ ଗୋ ପ୍ରିୟେ
ସେଠାରେ ଏମନ୍ତ ସମୟେ ।
ମହେନ୍ଦ୍ର ବରୁଣ କୁବେର
ଶଙ୍କର ବ୍ରହ୍ମା ଦଣ୍ଡଧର ।
ସ୍ୱରଣ ଋଷି ମୁନିସିଦ୍ଧ
ଗନ୍ଧର୍ବ ପିତୃବୃନ୍ଦ ସାଧ୍ୟ ।
ଉରଗ ଅପସରା ପନ୍ତ
ଏ ଅଦ ଅଭ ଯେତେ ଛନ୍ତି ।
ବିମାନମାନଙ୍କରେ ବସି
ସମସ୍ତେ ଅତିବେଗେ ଅସି ।
ପରମାତ୍ମା ଯେ ରଘୁବୀର
ତାହାଙ୍କ ଅଗେ ଯୋଡ଼ି କର ।
ପରମ ଅନନ୍ଦ ଲଭିଲେ
ଏରୂପେ ସ୍ତୁତିମାନ କଲେ ।
ସମସ୍ତ ଜଗତଯାକର
କର୍ତ୍ତା ତୁ ଅଟୁ ରଘୁବୀର ।

ଜ୍ଞାନ ସ୍ୱରୂପ ତୁ ଶ୍ରୀରାମ
ବସୁଙ୍କ ମଧ୍ୟେ ତୁ ଅଷ୍ଟମ ।
ରୁଦ୍ରମାନଙ୍କ ମଧ୍ୟେ ବୀର
ତୁ ଅଟୁ ନିଷ୍ଟମ୍ଭେ ଶଙ୍କର ।
ସବୁ ଲୋକମାନଙ୍କେ ଶ୍ରେଷ୍ଠ
ଅଦିକର୍ତ୍ତା ତୁ ସୁରଜ୍ୟେଷ୍ଠ ।
ସେହୁ ବିଧାତା ତୁ ଆପଣ
ଅଶ୍ୱିନୀକୁମାରେ ତୋ ପ୍ରାଣ ।
ଚନ୍ଦ୍ରମା ଆଦିତ୍ୟ ତୋ ନେତ୍ର
ତୁ ଟି ସବୁର ଅଦିଅନ୍ତ ।
ତୁ ନିତ୍ୟ ତୁ ଏକ ଗୋସାଇଁ
ସଦା ବିଶୁଦ୍ଧ ବୁଦ୍ଧି ତୁହି ।
ତୁ ସଦାମୁକ୍ତ ରଘୁବୀର
ତୁମ୍ଭ ମାୟାରେ ଯେତେ ନର ।
ମୋହ ଭାବକୁ ଆନ୍ତି ପାଇ
ତାହାକୁ ତୁ ମନୁଷ୍ୟ ହୋଇ ।
ପରତେ ହେଉଅଛ ରାମ
ସ୍ମରଣ କରେ ଯେ ତୋ ନାମ ।
ଚୈତନ୍ୟ ସ୍ୱରୂପେ ପ୍ରକାଶ
ତାଙ୍କଠାରେ ହୁଅ ଅବଶ୍ୟ ।
ଅମ୍ଭର ତେଜ ନିଜ ସ୍ଥାନ
ହରି ଯେ ଥିଲା ଦଶାନନ ।
ଆପଣ ନାଶ କଲ ତାକୁ
ଗଲା ସେ ତୋ ଦିବ୍ୟ ପଦକୁ ।
ସମସ୍ତେ କରନ୍ତି ଏ ସ୍ତୁତି
ଅତି ଭକ୍ତିରେ ପ୍ରଜାପତି ।
ସନ୍ତତ ସତ୍ୟମାର୍ଗେ ସ୍ଥିତ
ଏମନ୍ତ ଯେ ଜନକୀ କାନ୍ତ ।
ତାହାଙ୍କ ବଦନକୁ ଚାହିଁ
ଆନନ୍ଦେ ଗଦଗଦ ହୋଇ ।
ନୟନୁ ନୀର ହରଷରେ
ବହୁ ଯାଉଛି ହୃଦୟରେ ।
ପୁଲକ ଧରି ସର୍ବାଙ୍ଗରେ
କର ଯୁଗଳ ଦେଇ ଶିରେ ।
ଅତ୍ୟନ୍ତ ଉତ୍ସୁକ ହୋଇଲେ
ଏମନ୍ତ ରୂପେ ସ୍ତୁତି କଲେ ।

## ବ୍ରହ୍ମୋବାଚ

ଶଙ୍କର ବସ୍ତୁ ଦୁହିଙ୍କର
ଉତ୍ପତ୍ତି କାରଣ ତୁ ବୀର ।
ଅଧ୍ୟାତ୍ମୀମାନେ ଯେ ଦେଖନ୍ତି
ଭାବନ୍ତି ହୃଦପଦ୍ମେ ନିତ୍ୟେ ।
ଯେତେ ଦେଖିବା ପଦାର୍ଥ
ସେ ଦୁହେଁ ତୁ ନୋହୁ ସେ ନାଥ
କେବଳ ସତ୍ତା ମାତ୍ର ହୋଇ
ହୃଦେ ଆପଣ ଅଛ ରହି ।
ଜ୍ଞାନରୂପେ ଯେ ତୋତେ ମୋର
ଅନବରତେ ନମସ୍କାର ।
ନିଶ୍ଚଳ ଅଟେ ଯେଉଁ ବୁଦ୍ଧି
ପ୍ରାଣ ଅପାନ ତହିଁ ରୁନ୍ଧି ।
ଛିଣ୍ଡାଇ ସମସ୍ତ ସଂଶୟ
ନାଶିଣ ସମସ୍ତ ବିଷୟ ।
ଏମନ୍ତେ ମୋହ ତେଜି ଯତି
ଯାହାକୁ ହୃଦରେ ଦେଖନ୍ତି ।
ରତ୍ନମୁକୁଟ ଅଛି ଶିରେ
ତେଜ କୋଟିସୂର୍ଯ୍ୟ ପ୍ରକାରେ ।
ଏମନ୍ତ ଯେଉଁ ରଘୁବୀର
କରୁଛି ତାଙ୍କୁ ନମସ୍କାର ।
ଶଙ୍କର ଅଜ୍ଞାତ ଅନନ୍ତ
ଲକ୍ଷ୍ମୀର ସର୍ବଦା ଯେ ପତି ।

ଭବର ଯେ ଆଦ୍ୟ ଅବ୍ୟୟ
ଯେ ପ୍ରମାଣରୁ ଅତିଶୟ ।
ଶାନ୍ତ ଯେ ଅଞ୍ଜନ ରହି
ଯେ ମୁନିବୃନ୍ଦଙ୍କର ବନ୍ଦ୍ୟ ।
ଯୋଗୀ କରନ୍ତି ଯାକୁ ଧ୍ୟାନ
ଯେ ଯୋଗ କରୁଛନ୍ତି ବିଧାନ ।
ସମସ୍ତଠାରେ ପୂର୍ଣ୍ଣ ଛନ୍ତି
ଲୋକଙ୍କୁ ଆନନ୍ଦ କରନ୍ତି ।
ଯେ ଅତ୍ୟନ୍ତ ମନୋହର
ସେ ଶ୍ରୀରାମଙ୍କୁ ନମସ୍କାର ।
ଭବ ଅର୍ଣ୍ଣବ ବୁଡ଼ିଠାଇ
ଯେହୁ ଗୁଣସ୍ଥାନ ଅଟଇ ।
ଶଙ୍କର ଆଦି ଯୋଗୀମାନେ
କ୍ଳେଶାଶକ୍ତ ସ୍ଥାନ ଯେ ଜନେ ।
ଏ ଦୁହେଁ ଯେଉଁ ପାଦେ ନିତ୍ୟେ
ସେବଣ ଅଛନ୍ତି ସନ୍ତତେ ।
ଯେ ନିତ୍ୟ ବିଗ୍ରହ ଅନନ୍ତ
ଧରିବ ରୂପ ଅପ୍ରମିତ
ଅସୁରମାନଙ୍କୁ ମାରନ୍ତି
ଏମନ୍ତ ଯେଉଁ ରଘୁପତି ।
ତାଙ୍କର ଚରଣକୁ ମୋର
ଅନବରତେ ନମସ୍କାର ।
ତୁମ୍ଭେ ମୋହର ନାଥ ଯହୁଁ
ଯାହା ମାଗଇ ତାହା ଦେଇ ।
ଜଗତଜାଳ ଅଛ ଧରି
କମ୍ୟ ତୁ ଜଗତରେ କର ।
ସମସ୍ତ ଭୟ ନାଶ କର
ଯୋଗରେ ଅଭ୍ୟାସ ଯାହାର ।
ବିହ୍ୱଳ ହୋଇ ଥାଇଁ ଭକ୍ତ
ତା ପାଶେ ଥାଅ ଅନୁବ୍ରତ ।

ସମସ୍ତ ଲୋକମାନଙ୍କର
ତୁ ଆଦି ଅନ୍ତ ରଘୁବୀର ।
ଅତୀତ ଅଟ ସବୁଠାରୁ
ମହିମା ଅପାର ଅପାରୁ ।
ଲୋକର ପ୍ରମାଣ ଗୋସାଇଁ
ତୁମ୍ଭଙ୍କୁ ଜାଣି ଯେ ନୁହଇ ।
ଭଗତ ଶ୍ରଦ୍ଧା ଯାର ଥାଇ
ତୁମ୍ଭଙ୍କୁ ସେ ଲଭି ପାରଇ ।
ଅତ୍ୟନ୍ତ ପରମ ଶୋଭନ
ନୀଳ ଉତ୍ପଳ ପ୍ରାୟେ ବର୍ଣ୍ଣ ।
ଏମନ୍ତ ଯେ ତୁ ତୋତେ ମୋର
ଅନବରତେ ନମସ୍କାର ।
ପ୍ରମାଣେ ଅସଙ୍ଗତ ଯେହୁ
ତୁମ୍ଭଙ୍କୁ ଜାଣିବେ ସେ କାହୁଁ ।
ଭଗତ ଶ୍ରଦ୍ଧା ଯାର ଥାଇ
ତୁମ୍ଭଙ୍କୁ ସେ ଲଭି ପାରଇ ।
ଯେ ମାନ୍ୟ ମୁନିମାନଙ୍କରେ
ଯେ ପୂର୍ବେ ଦୃଢ଼ା ଅରଣ୍ୟରେ ।
ଦେବତାମାନଙ୍କ ପ୍ରମାଣ
କରତା ଅଟେ ଯେଉଁ ରାମ ।
ଶଙ୍କର ଆଦି ଲୋକ ଯେତେ
ତୋ ପାଦେ ନମନ୍ତି ସମସ୍ତେ ।
ସୁଖ ସ୍ୱରୂପ ତୁମ୍ଭେ ରାମ
କରୁଛନ୍ତି ତୁମ୍ଭଙ୍କୁ ପ୍ରଣାମ ।
ନାନାପ୍ରକାର ଶାସ୍ତ୍ର ଯେତେ
ବେଦ ସମୂହ ମଧ୍ୟେ ନିତ୍ୟେ ।
ନିଶ୍ଚେ ତୁମ୍ଭଙ୍କ ରଘୁପତି
ପ୍ରକାଶ କରୁ ସେ ଅଛନ୍ତି ।
ନିତ୍ୟ ଆନନ୍ଦ ରୂପ ତହିଁ
ନିର୍ବିଷୟ ତୁ ରଘୁସାଇଁ ।

ମୁଁ ତୋତେ ସେବା କରିବାକୁ
ପାଇଛୁ ମନୁଷ୍ୟ ଶରୀର ।
ସ୍ମରକତ ପ୍ରାୟେ ବର୍ଣ୍ଣ
ସୁଖଦାୟକ ଅପଘନ ।
ଏମନ୍ତ ଶ୍ରୀରାମଙ୍କୁ ମୋର
ଅନୁବରତେ ନମସ୍କାର ।
ବ୍ରହ୍ମାରେ କରି କୃତ୍ୟ ଏହୁ
ଏ ତତ୍ତ୍ୱ ବ୍ରହ୍ମଜ୍ଞାନ ଦେଇ ।
କାମନା ପଦାର୍ଥ ଯେ ଅନ୍ତ
ଯେ ଶ୍ୟାମସୁନ୍ଦର ଅଟନ୍ତି ।
ଏମନ୍ତ ରାମଙ୍କ ହୃଦରେ
ଯେ ଧ୍ୟାନ କରନ୍ତି ଶ୍ରଦ୍ଧାରେ ।
ଏ ସ୍ତବ ଯେ ନିତ୍ୟ ପଢ଼ଇ
ସମସ୍ତ ପାପୁଁ ସେ ତରଇ ।
ଲୋକ ସୃଷ୍ଟି ଯେ ପ୍ରଜାପତି
ଏ ରୂପେ ସୃଷ୍ଟି ତାଙ୍କ ସ୍ତୁତି ।
ଜଗତ ସାକ୍ଷୀ ଯେ ଅଟନ୍ତି
ଏମନ୍ତ ଅଗ୍ନି ଧରି ମୂର୍ତ୍ତି ।
ଦିବ୍ୟ ଭୂଷଣେ ହୋଇ ଯୁକ୍ତ
ପିନ୍ଧି ଅଛନ୍ତି ରଙ୍ଗବସ୍ତ୍ର ।
ଅରୁଣ ପ୍ରାୟେ ଗୌରବର୍ଣ୍ଣ
ଅପଣା କାନ୍ତିର ଶୋଭନ ।
ଏମନ୍ତ ସୀତାଙ୍କୁ ବହନ
କୋଳରେ ଘେନି ହୁତାଶନ ।
ପ୍ରସନ୍ନ ହୁଏ ଯେଉଁ ଜନ
ଖଣ୍ଡନ୍ତି ତାଙ୍କ ବ୍ୟଥା ମାନ ।
ଏମନ୍ତ ଶ୍ରୀରାମ ସମ୍ମୁଖରେ
କହିଲେ ଅନନ୍ଦ ମନରେ ।
ରାବଣଙ୍କୁ ମାରିବା ପାଇଁ
ମାୟା ସୀତା କରି ଗୋସାଇଁ ।

ନିଜ ସୀତାଙ୍କୁ ମୋ ଠାଇଁ
ବନରେ ଥିଲ ଯେ ରଖାଇ ।
ଏବେ ମୋଠାରୁ ସେ ସୀତାଙ୍କୁ
ଘେନ ନାଥ ହେଉ ଯୋଗ୍ୟତାକୁ ।
ପ୍ରତିବିମ୍ବ ପଙ୍କଜ ଯୁତ ହୋଇ
ରାବଣ ମଲା ତ ଗୋସାଇଁ ।
ତହିଁରେ କରି ରଘୁବୀର
ନାଶ ତ କଲ ଭୂମିଭାର ।
ପ୍ରତିବିମ୍ବ ରୂପୀ ଅଟଇ
ଏମନ୍ତ ସୀତା ଯହିଁପାଇଁ ।
କଲ ତା ସେବକ ବହନ
ଏବେ ତ ହେଲା ଅନ୍ତର୍ଦ୍ଧାନ ।
ଶ୍ରୀରାମ ଶୁଣନ୍ତେ ଏମନ୍ତ
ଜନ ଲୋକର ଅଟେ ମାତ ।
ଯେହୁ ପୂର୍ଣ୍ଣ ସେ ସର୍ବକାଳେ
ଅଛନ୍ତି ରାମ ହୃଦସ୍ଥଳେ ।
ସୀତା ରୂପେ ଲକ୍ଷ୍ମୀ ଅଟଇ
ଏମନ୍ତ ଯେଉଁ ବଇଦେହୀ ।
ତାହାଙ୍କୁ ପ୍ରତିଗ୍ରହ କଲେ
ଅଗ୍ନି ଦେବତାଙ୍କୁ ପୂଜିଲେ ।
ସୀତାଙ୍କୁ ରାମ ସେ ଉତ୍ସଙ୍ଗରେ
ବସାନ୍ତେ ଅପଣା କୋଳରେ ।
ଜାନକୀ ହୁଲେ ହୋଇ ଯୁକ୍ତ
ସ୍ଫୁରନ୍ତି ହୋଇ ଅତି ଅନ୍ତ ।
ଶୋଭା ଦେଖିଲେ ରାମଚନ୍ଦ୍ର
ଏମନ୍ତ ଦେଖି ବେଗେ ଇନ୍ଦ୍ର ।
ଶ୍ରୀରାମ ଅଗେ ଉଭାହୋଇ
କରପୁଟଳ ଶିରେ ଦେଇ ।
ଅନନ୍ଦେ ଗଦଗଦେ ହେଲେ
ଭକ୍ତିରେ ସ୍ତୁତି ଅରମ୍ଭିଲେ

### ଇନ୍ଦ୍ର ଉବାଚ

ଯେ ଇନ୍ଦୀବର ପ୍ରାୟେ ବର୍ଣ୍ଣ
ସଂସାର ହୋଇଲା ଅରଣ୍ୟ ।
ତା ନାଶିବାକୁ ଯାହା ନାମ
ଅଟଇ ଦାବାନଳ ସମ ।
ଭବାନୀ ହୃଦୟ ମଧ୍ୟରେ
ଭାବନା କରେ ନିରନ୍ତରେ ।
ଆନନ୍ଦମୟ ରୂପ ଯାର
ଯେ ଘୋର ସଂସାର ସାଗର ।
ବିନାଶ ହେବାକୁ କାରଣ
କାନ୍ତିମତ ଯା ଅପଘନ
ଏମନ୍ତ ଶ୍ରୀରାମଙ୍କୁ ନିତ୍ୟେ
ଭଜୁଛି ମୁଁ ଅନ୍ତରରତେ ।
ଦେବତାଙ୍କର ଦୁଃଖ ପୁଣ
ନାଶକୁ ଅଟନ୍ତି କାରଣ ।
ନର ଆକାର ଦେହ ଯାର
ସହଜ ଯେହୁ ନିରାକାର ।
ବନ୍ଦ୍ୟ ସମସ୍ତ ଲୋକଙ୍କର
ଇନ୍ଦ୍ରିୟ ମାନଙ୍କର ପର ।
ଯେ ପରମାନନ୍ଦ ସ୍ୱରୂପ
ଅବିଦ୍ୟା ନାଶକ ନିଷ୍ପାପ ।
ଭାବନା ଯୋଗ୍ୟ ଯେ ଅଟନ୍ତି
ଏମନ୍ତ ଯେଉଁ ସୀତାପତି ।
ତା ପାଦ ପଙ୍କଜ ହୃଦରେ
ମୁଁ ଭଜୁଅଛି ନିରନ୍ତରେ ।
ପ୍ରପନ୍ନ ଲୋକର ସମସ୍ତ
ଆନନ୍ଦ ଦିଅନ୍ତି ବହୁତ ।
ସନ୍ତତ ଅଟଇ ପ୍ରସନ୍ନ
ଯେ ପୁଣ ହୁଅନ୍ତି ପ୍ରପନ୍ନ ।
ସମସ୍ତ ବ୍ୟଥା ତାହାଙ୍କର
ନାଶ କରଇ ନାମ ଯାର ।
ତପସ୍ୟା ଯୋଗ ଦୁଇଠାରେ
ଯୁତ ଯେ ଯୋଗୀନ୍ଦ୍ର ନିକରେ ।
ସେମାନେ ଯାହାକୁ ସନ୍ତତେ
ଭାବନା କରୁଛନ୍ତି ଚିତ୍ତେ ।
ଯେ ସୁଗ୍ରୀବାଦିଙ୍କର ମିତ୍ର
ଏମନ୍ତ ଯେଉଁ ସୀତାକାନ୍ତ ।
ଭଜୁଛି ତାଙ୍କୁ ନିରନ୍ତର
ଭୋଗାସକତ ଲୋକଙ୍କର ।
ସମସ୍ତ କାଳପାନଙ୍କରେ
ଯେ ପୁଣ ଥାଅନ୍ତି ଦୂରରେ ।
ଯୋଗୀ ଲୋକ ନିକଟେ ଥାନ୍ତି
ସଚ୍ଚିଦାନନ୍ଦ ଯେ ଅଟନ୍ତି ।
ସୀତାର ଆନନ୍ଦ ଦିଅଇ
ଏମନ୍ତ ଯା ରୂପ ଅଟଇ ।
ଯେ ରଘୁକୁଳ ପ୍ରଭୁ ବୀର
ତା ପାଦେ ଶରଣ ମୋହର ।
ବଡ଼ ଯେ ଯୋଗମାୟା ତାର
ବିସ୍ତାର ଉପାୟ ଯାହାର ।
ଲୀଳାରେ ନିରାକାର ମୂର୍ତ୍ତି
ହୋଇ ଯେ ଶୋଭା ପାଉଛନ୍ତି ।
ଯାହାର ଆନନ୍ଦ ଦାୟକ
ହୋଇ ଲୀଳା କଥା ଅନେକ ।
ଅଛି ତହିଁରେ କରି ପୂର୍ଣ୍ଣ
ହୁଏ ଯେଉଁମାନଙ୍କ ମନ ।
ମାନାପମାନେ ସମ ହୋଇ
ତାହିଁରେ ସାବଧାନ ନୋହି ।
ତିନି ଲୋକର ଅଧିକାରୀ
ଏ ରୂପେ ଅଭିମାନ କରି ।

ମନରେ ମୁଁ ଗର୍ବ ବହିଲି
ତୁମ୍ଭଙ୍କୁ ଅଜ ନ ଜାଣିଲି ।
ଏବେ ତୋ ପାଦପଙ୍କଜର
ଅନୁଗ୍ରହରୁ ଜର ବୀର ।
ଅଧିପ ମୁଁ ତିନି ଲୋକର
ଏ ରୂପେ ଯେଉଁ ଅହଙ୍କାର ।
ମୋ ହୃଦେ ନିରନ୍ତରେ ଥିଲା
ସେ ଗର୍ବ ଏବେ ନାଶ ଗଲା
ସ୍ଫୁରନ୍ତ ରତ୍ନ କେୟୂରରେ
ମୁକୁତା ମାଳାମାନଙ୍କରେ ।
ଦିଶନ୍ତି ପରମ ସୁନ୍ଦର
ଭୂମିର ଭାର ଯେ ଅସୁର ।
ସେ ବନ ହେବାକୁ ଦହନ
ଅତ୍ୟନ୍ତ ଦାବାଗ୍ନି ଯେସନ ।
ଶରଦଚନ୍ଦ୍ରମାବଦନ
ବିକାଶ ପଙ୍କଜ ଲୋଚନ
ଅଗମ୍ୟ ଗୋଚର ନୁହଇ
ଏମନ୍ତ ରାମଙ୍କୁ ଭଜଇ ।
ମହେନ୍ଦ୍ର ମଣିର ସମାନ
ଶରୀର ଦିଶେ ନୀଳବର୍ଣ୍ଣ ।
ଅନେକ କାଳରୁ ବହୁତ
ଥିଲେ ଯେ ଅନେକ ଦଇତ୍ୟ ।
ସେମାନଙ୍କ ଯେ ଭର କ୍ଷୟ
ଯେ ଶାନ୍ତ କଲେ ଲୋକତ୍ରୟ ।
ଈଷଟ ଅଧରେ ଯାହାର
ରୁଚିର ଦିଶୁଛି ଶରୀର ।
ପରମ ଲାଭ ଯେ ଶିବର
ଯେ ରଘୁମାନଙ୍କ ଈଶ୍ୱର ।
ଏମନ୍ତ ରାମଙ୍କ ସନ୍ତତେ
ଭଜୁଛି ନିତ୍ୟେ ହୃଦଗତେ ।

କୋଟି ଚନ୍ଦ୍ର ପ୍ରାୟେ ଶୋଭନ
ଦିଶୁଛି ଯେଉଁ ପୀତବର୍ଣ୍ଣ ।
ତହିଁ ସ୍ଫୁରନ୍ତା ହୋଇ ଯାର
ରୁଚିର ଦିଶୁଛି ଶରୀର ।
ବିଜୁଳିକାନ୍ତି ପ୍ରାୟେ ହୋଇ
ଦିଶୁଛି ଯେଉଁ ବଇଦେହୀ ।
ଅଶ୍ଲେଷ କରଣ ବାହୁରେ
ତାହାଙ୍କୁ ବସାଇ କୋଳରେ
ସୁଖରେ ବିଜେ କରନ୍ତି
ହୋଇଛି ମନ ବ୍ୟଥା ଶାନ୍ତ ।
ଏମନ୍ତ ରାମଙ୍କ ହୃଦରେ
ଭକ୍ତି ଅଛଇ ନିରନ୍ତରେ ।
ପାର୍ବତୀ ତୁଲେ ସେ ଜଗ୍ରେ
ଉପସ୍ଥିତ ହୋଇ ଅକାଶରେ ।
ରାମ ନେ ଥାଇ ମହାଦେବ
ପଦ୍ମ ପତ୍ରାକ୍ଷ ଯେ ରାଘବ ।
ତାଙ୍କୁ କହିଲେ ତୁଷ୍ଟ ହୋଇ
ଅପଣ ସତକାର ପାଇଁ ।
ଥିବାକୁ ହେବ ନିଜପୁରେ
ସେ କଲେ ଯାଇ ଅଯୋଧ୍ୟାରେ ।
ତୁମ୍ଭଙ୍କୁ ମୁଁ ଦେଖିବି ବୀର
ଏବେ ତୁମ୍ଭର ଏ ଦେହର ।
ପିତା ଅତ୍ୟନ୍ତ ପୁଣ ଯେହୁ
ତାହାଙ୍କୁ ଦେଖିବାକୁ ହେଉ ।
ଏହି ସମୟେ ବିମାନରେ
ଦଶରଥଙ୍କୁ ଦେଖି ଗରେ ।
ସୀତା ଲକ୍ଷ୍ମଣ ତୁଲେ ରାମ
ତାହାଙ୍କୁ କରନ୍ତି ପ୍ରଣାମ ।
ସ୍ନେହରେ କରି ଆଲିଙ୍ଗନ
ମସ୍ତକ ଶୁଙ୍ଘିଣ ବଦନ ।

ନେତ୍ରୁ ଲୋତକ ଝରଷରେ
ବହୁ ଯାଉଛି ହୃଦୟରେ ।
ପୁଲକ ଧରି ସର୍ବାଙ୍ଗରେ
ଅତି ଆନନ୍ଦ ସନ୍ଦୋହରେ ।
ସ୍ନେହରେ ଗଦ ଗଦ ହେଲେ
ଏମନ୍ତ ବଚନ କହିଲେ ।
ହେ ବତ୍ସ ! ଏ ଘୋର ସଂସାର
ଦୁଃଖମୟର ପାରାବାର ।
ତହିଁରୁ ତାରିଲ ଆପଣ
ଏମନ୍ତ କହି ସେହୁ ପୁଣ ।
ରାମରେ ହୋଇ ପୂଜ୍ୟମାନ
ସ୍ନେହରେ କରି ଆଲିଙ୍ଗନ ।
ପୁଣି ସେ ଗଲେ ଆକାଶରେ
ଶ୍ରୀରାମ ଏଥୁ ଅନନ୍ତରେ ।
ବିନୟେ କୃତାଞ୍ଜଳି ହୋଇ
ବୋଇଲେ ଇନ୍ଦ୍ରଙ୍କୁ ଅନାଇ ।
ଅମ୍ଭ ନିମନ୍ତେ ସଂଗ୍ରାମରେ
ଯେ ମଲେ ଋକ୍ଷ ବାନରେ ।
ସେମାନଙ୍କୁ ମୋ ଅନୁଜ୍ଞାରେ
ଜିଆଅ ଅମୃତ ବୃଷ୍ଟିରେ ।
ଇନ୍ଦ୍ର ତା ସ୍ୱୀକାର କଲେ
ବେଗେ ଅମୃତ ବରଷିଲେ ।
ଯେ ମରିଥିଲେ ପୂର୍ବକାଳେ
ସେ ଋକ୍ଷ ବାନର ସକଳେ ।
ନିଦ୍ରାରୁ ଯଥା ଲୋକ ଯେହ୍ନେ
ଉନ୍ନିଦ୍ର ହୋଇ ଉଠେ ତେହ୍ନେ ।
ଅନାୟାସେ ଉଠି ସକଳେ
ସଂଯୁତ ହୋଇ ପୂର୍ବଚଳେ ।
ହରଷେ ରାମ ଆଗେ ହେଲେ
ପ୍ରଣାମ କରଣ ରହିଲେ ।

ସେ ବିଭୀଷଣ ଏ ଅନ୍ତରେ
ଶ୍ରୀରାମ ପାଦପଙ୍କଜରେ ।
କରି ସାଷ୍ଟାଙ୍ଗେ ଦଣ୍ଡବତ
କହିଲେ ଯୋଡ଼ି ବେନି ହସ୍ତ ।
ଯେବେ ଦେବ ମୋତେ ଅନୁଗ୍ରହ
କରିବା ହେଉ ଥିଲେ ସ୍ନେହ ।
ସୀତା ଲକ୍ଷ୍ମଣ ତୁମ୍ଭେ ବୀର
ଆଜ ମଙ୍ଗଳ ସ୍ନାନ କର ।
ଘେନ ସମସ୍ତ ଅଳଙ୍କାର
କାଲି ପ୍ରଭାତ କାଳେ ବୀର ।
ସଙ୍ଗତେ ଘେନି ସମସ୍ତଙ୍କୁ
ବିଜେ ହୋଇବ ଅଯୋଧ୍ୟାକୁ ।
ରାମ ଏମନ୍ତ ଶୁଣି ପୁଣ
ବୋଇଲେ ଆହେ ବିଭୀଷଣ ।
ମୋ ସାନ ଭ୍ରାତ ଯେ ଭରତ
ସେ ସୁକୁମାର ଅତିଅନ୍ତ ।
ଏମନ୍ତ ହେଲେ ମୋ ଭକ୍ତିରେ
ସେ ଶତ୍ରୁଘ୍ନ ସହିତରେ ।
ଦୁଃଖେ ଜଟା ବଳକଲ ଧରି
ଫଳମୂଳ ଭୋଜନ କରି ।
ଧ୍ୟାନ କରି ସେ ହୃଦଗତେ
ଅପେକ୍ଷା କରିଅଛୁ ମୋତେ
ତା ବିନୁ ସ୍ନାନ ଅଳଙ୍କାର
କେମନ୍ତେ ହୋଇବ ମୋହର ।
ସୁଗ୍ରୀବାଦିଙ୍କି ଏଣୁ ବୀର
ବିଶେଷ କରି ପୂଜା କର ।
ଏମାନେ ହୋଇଲେ ପୂଜିତ
ମୁହିଁ ପୂଜାରେ ହେଲି ଯୁତ ।
ନିଶ୍ଚେ ଏରୂପେ ଘେନ ଶବ୍ଦେ
ସେ ବିଭୀଷଣ ତା ଶୁଣନ୍ତେ ।

ସୁବର୍ଣ୍ଣମାନ ନାନାରତ୍ନ
ବିବିଧ ଭୂଷଣ ବସନ ।
ଯାହାକୁ ଯେମନ୍ତ ପ୍ରକାରେ
ତୁଷିଲ ତାକୁ ସେ ରୂପରେ ।
ଯେ ଯେତେ ଯାହା ଇଚ୍ଛା କଲେ
ସେ ରୂପେ ବିଭୀଷଣ ଦେଲେ ।
ବିବିଧ ରତ୍ନମାନଙ୍କରେ
ପୂଜିତ ହୋଇଲେ ବାନରେ
ଏମନ୍ତ ଦେଖି ରାମଚନ୍ଦ୍ର
ହୋଇଲେ ଅନେକ ଆନନ୍ଦ ।
ଆଣାଇ ପୁଷ୍ପକ ବିମାନ
ପ୍ରବେଶ କଲେ ବିଭୀଷଣ
ତାହା ଦେଖି ସେ ରଘୁପତି
ଲଜରେ ଯୁତ ହୋଇଛନ୍ତି ।
ଏମନ୍ତେ ସୀତାଙ୍କୁ କୋଳରେ
ଘେନି ଲକ୍ଷ୍ମଣ ସହିତରେ ।
ତହିଁ ଉପରେ ବିଜେ କରି
ସୁଗ୍ରୀବାଦି ଯେ ଋକ୍ଷ ହରି
ତାହାଙ୍କୁ ବିଭୀଷଣ ତୁଲେ
ଏମନ୍ତ ବଚନ କହିଲେ ।
ସମସ୍ତେ ମିତ୍ର ଭାଇମାନ
ଭଲ ତ ଉତ୍ତମ କରିଣ ।
ଏବେ ମୋ ଆଜ୍ଞାରେ ଯହିଁକି
ଇଚ୍ଛା ହେବ ଯାଅ ତହିଁକି ।
ହେ ମିତ୍ର ଘେନି କପିସୈନ୍ୟ
କିଷ୍କିନ୍ଧ୍ୟା ଯାଅ ହେ ବହନ ।
ଏମନ୍ତ କହି ତାଙ୍କୁ ପୁଣ
ବୋଇଲେ ଆହେ ବିଭୀଷଣ ।
ତୁମ୍ଭେ ମୋହର ବଡ଼ ଭକ୍ତ
ଆପଣା ପୁଣ୍ୟରେ ଅର୍ଜିତ ।

ଏମନ୍ତ ଲଙ୍କା କଟକରେ
ରହିବା ହେଉ ନିଶ୍ଚିନ୍ତରେ ।
ଇନ୍ଦ୍ରାଦି ଦେବତା ସମସ୍ତେ
ଧରଷି ନ ପାରିବେ ତୋତେ ।
ଅଯୋଧ୍ୟା ଯେ ମୋ ପିତା ରାଜ୍ୟ
ତହିଁକି ମୁଁ ଯାଉଛି ଅଜ ।
ଶୁଣି ସୁଗ୍ରୀବ ଆଦି ହରି
ବିଭୀଷଣଙ୍କୁ ମଧ୍ୟ କରି ।
ସମସ୍ତେ କରିଣ ପ୍ରଣାମ
ବୋଇଲେ ଆହେ ରଘୂତ୍ତମ ।
ତୋ ସଙ୍ଗେ ଯାଇ ଅଯୋଧ୍ୟାକୁ
ତୋ ଅଭିଷେକ ଦେଖିବାକୁ ।
ଯାଇଣ ତୁମ୍ଭର ସଙ୍ଗରେ
ଦେଖିବୁ ଅଭିଷେକ ଥରେ ।
ତୁମ୍ଭଙ୍କୁ ଦେଖିଣ ଶ୍ରୀରାମ
କୌଶଲ୍ୟାଙ୍କୁ କର ପ୍ରଣାମ ।
ପଛେ ଆସିବୁ ମନ୍ଦିରକୁ
ଆଜ୍ଞା ଦେବା ହେଉ ଆମ୍ଭଙ୍କୁ ।
ସମ୍ମତ କରିଣ ଏମନ୍ତ
ଶ୍ରୀରାମ ବୋଇଲେ ହେ ମିତ୍ର ।
ଅଙ୍ଗଦ ମାରୁତି ସହିତ
ବାନର ସୈନ୍ୟ ଛନ୍ତି ଯେତେ ।
ବିଭୀଷଣାଦି ଯେ ଦଇତେ
ବିମାନରେ ଉଠ ସମସ୍ତେ ।
ସେମାନେ ଶୁଣି ହୃଷ୍ଟ ହେଲେ
ତହିଁରେ ଅରୋହଣ କଲେ ।
ଶ୍ରୀରାମ ଆଜ୍ଞାରେ ବିମାନ
ନଭକୁ ଉଠିଲା ବହନ ।
ହଂସ ମାନରେ ଅଟେ ଯୁକ୍ତ
ଆଦିତ୍ୟ ପ୍ରାୟେ ତେଜୋବନ୍ତ ।

ଏମନ୍ତ ବିମାନ ଉପରେ
ସୈନ୍ୟ ସହିତ ବସିବାରେ ।
ଦେବତାବୃନ୍ଦ ସଙ୍ଗେ ଘେନି
ଦିଶେ ଯେସନ୍ତେ ପଦ୍ମଯୋନି ।
ସେ ରୂପେ ଶ୍ରୀରଘୁନନ୍ଦନ
ଦିଶିଲେ ପରମ ଶୋଭନ ।
ହଳଧରର ମନୋରଥ
ଜାନକୀଯୁକ୍ତ ରଘୁନାଥ ।
ତୁମ୍ଭରେ ଗଲି ମୁଁ ଶରଣ
ରଖ ହେ ସୀତାଙ୍କ ରମଣ ।
ସମ୍ପୂର୍ଣ୍ଣ କର ଦିଅ ପଦ
ଭୂଷଣ ଏକବିଂଶ ପଦ ।

**ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ ନାମ ତ୍ରୟୋଦଶୋଽଧ୍ୟାୟଃ ।**

## ଚତୁର୍ଦ୍ଦଶ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଧୂର୍ଜ୍ଜଟୀ ଏଥୁ ଅନନ୍ତରେ
କହିଲେ ଚଣ୍ଡିକା ଅଗରେ ।
ତହିଁ ଉତ୍ତାରେ ରଘୁସାଇଁ
ସମସ୍ତ ଦିଗକୁ ଅନାଇଁ ।
ଚନ୍ଦ୍ରମୁଖୀ ଯେ ବଇଦେହୀ
ଅଙ୍କ ଦେଲେ ତାହାଙ୍କୁ ଚାହିଁ ।
ତ୍ରିକୂଟ ଶିଖରେ ନିର୍ମିତ
ଦିଶୁଛି ବଡ ପ୍ରଭାବନ୍ତ ।
ଏମନ୍ତ ଯେ ଲଙ୍କା ତହିଁକି
ଦେଖିବା ହେଉ ଗୋ ଜାନକୀ ।
ପଡ଼ିଣ ମାଂସ ରକ୍ତ ବସା
କର୍ଦ୍ଦମ ହୋଇଅଛି ରସା ।
ଏ ରଣଭୂମି ବଇଦେହୀ
ଦେଖିବା ହେଉ ପ୍ରାଣସହି ।
ଏଠାରେ ବାନର ରାକ୍ଷସ
ଅନେକ ହୋଇଲେ ବିନାଶ ।
ଏଠାକୁ ଚାହାଁ ଗୋ ସୁଶୀଳା
ରାବଣ ମରି ଶୋଇଥିଲା ।
କୁମ୍ଭକର୍ଣ୍ଣାଦି ଇନ୍ଦ୍ରଜିତ
ସହିତେ ସମସ୍ତ ଦଇତ୍ୟ ।
ଏଠାରେ ହୋଇଲେ ନିଧନ
ଦେଖିବା ହେଉ ପ୍ରାଣଧନ ।
ଦେଖ ଏ ସେତୁ ମୋ ଆଜ୍ଞାରେ
ସାଗରେ ବାନ୍ଧିଲେ ବାନରେ ।
ଚଉଦ ଭୁବନେ ପୂଜିତ
ଅଟଇ ପରମ ପବିତ୍ର ।
ଦର୍ଶନ ମାତ୍ରକେ ସମସ୍ତ
କଲି କଲ୍ମଷ କରେ ହତ ।
ଏ ସେତୁବନ୍ଧଟି ବୋଲାଇ
ଏମନ୍ତ ତୀର୍ଥ ବଇଦେହୀ ।
ଦିଶୁଛି ଦେଖ ସମୁଦ୍ରରେ
ରାମେଶ୍ୱର ନାମ ଏଠାରେ
ମହାଦେବଙ୍କ ମହାସ୍ଥଳୀ
ପ୍ରତିଷ୍ଠା ସେତୁ ପାଇଁ କଲି ।
ସାଗର ତୀରେ ଏହିଠାରେ
ସୁର ମନ୍ତ୍ରୀଙ୍କ ସଙ୍ଗତରେ ।

ପ୍ରବେଶ ହୋଇ ବିଭୀଷଣ
ମୋ ପାଦେ ପଶିଲା ଶରଣ ।
ବିବିଧରୂପେ ବନମାନ
ଥିବାରେ ପରମ ଶୋଭନ ।
ଦିଶୁଛି ଏ ଯେ ସୁଗ୍ରୀବର
ଅଟଇ କିଷ୍କିନ୍ଧ୍ୟାନଗର ।
ସେଠାରେ ଶ୍ରୀରାମ ଆଜ୍ଞାରେ
ଜାନକୀ ପ୍ରୀତି ନିମିତ୍ତରେ ।
ସୁଗ୍ରୀବ ତାରା ଆଦି କରି
ତାଙ୍କର ଥିଲେ ଯେତେ ସ୍ତ୍ରିରୀ ।
ସବୁ ତା ଘେନାଇ ଅଇଲେ
ସେମାନେ ବିମାନେ ବସିଲେ ।
ପୁଷ୍ପକ ପୁଣି ସେ ଇଚ୍ଛାରେ
ଗମନ କଲେ ଆକାଶରେ ।
ପୁଣି କହିଲେ ରାବଣାରି
ଦେଖ ଏ ଋଷ୍ୟମୂକ ଗିରି ।
ଶର ଗୋଟିକେ ମହାବଳୀ
ଏଠାରେ ବାଳିକି ମାରିଲି ।
ଦେଖିବା ହେଉ ବଇଦେହୀ
ସେ ପଞ୍ଚବଟୀ ବନ ଏହି ।
ଚଉଦ ସହସ୍ର ରାକ୍ଷସ
ଯହିଁରେ କଲଇଁ ବିନାଶ ।
ଅଗସ୍ତି ସୁତୀକ୍ଷଣ ମୁନି
ଦୁହିଁଙ୍କର ଏ ବନ ବେନି ।
ଦିଶୁଛନ୍ତି ଯେ ସର୍ବଋଷି
ଦେଖିବା ହେଉ ଶୁଭ୍ରକେଶୀ ।
ଚିରଟେଷ୍ଟେ ଯେ ଗଙ୍ଗାତଟେ
ଦିଶୁଛି ଏହି ଚିତ୍ରକୂଟେ ।
ଭରତ ପ୍ରବେଶ ହୋଇଲେ
ମୋତେ ପ୍ରସନ୍ନ କରାଇଲେ ।

ଯମୁନା ନଦୀ ତଟ ଏହି
ଭରଦ୍ୱାଜଙ୍କ ବନ ସହି ।
ଦିଶୁଛି ଅତି ତେଜୋମୟି
ଦେଖିବା ହେଉ ପ୍ରାଣପ୍ରିୟେ ।
ନିର୍ମଳେ ପ୍ରକାଶ ଉତ୍ତମ
ଯେ ଗଙ୍ଗା ଭାଗୀରଥୀ ନାମ ।
ଏ ଅତି ପତିତପାବନୀ
ଦେଖିବା ହେଉ ଗୋ ଭାବିନି ।
ବହୁତ ଅଛି ତୀରେ ଯୂପ
କ୍ଷଣକେ କରଇ ନିଷ୍ପାପ ।
ଏମନ୍ତ ଯେ ସରଯୂ ନଈ
ଦେଖିବା ହେଉ ବଇଦେହି ।
ଅଯୋଧ୍ୟା କଟକ ଅମ୍ବର
ଦିଶୁଛି କର ନମସ୍କାର ।
ଏ ରୂପେ କହନ୍ତେ କ୍ରମରେ
ଚଉଦ ବରଷ ପୂର୍ଣ୍ଣରେ ।
ବୈଶାଖ ଶୁକ୍ଳ ପକ୍ଷରେ
ଶ୍ରୀରାମ ପଞ୍ଚମୀ ତିଥିରେ ।
ଭରଦ୍ୱାଜଙ୍କ ଆଶ୍ରମରେ
ପ୍ରବେଶ ହୋଇଲେ ଶୁଭରେ ।
ସୀତା ଲକ୍ଷ୍ମଣ ତ୍ରିଟେଲ୍ ଥାଇ
ଭରଦ୍ୱାଜଙ୍କୁ ରଘୁସାଇଁ ।
ବହନ ନମସ୍କାର କଲେ
ବିନମ୍ର ହୋଇ ପଚାରିଲେ ।
ଶୁଣି ଅଛ କି ତପୋବନ୍ତ
କୁଶଳେ ଅଛନ୍ତି ଭରତ ।
ସୁଭକ୍ଷ ହୋଇଛି କି ପୁର
ଅଛନ୍ତି କି ମାତା ନିକର ।
ଶୁଣି ସେ ମୁନି ହରଷରେ
କହିଲେ ଶ୍ରୀରାମ ସମ୍ମୁରେ ।

ଶୁଣିମା ହେଲ ସୀତାପତି
ସମସ୍ତେ କୁଶଳେ ଅଛନ୍ତି ।
ଭରତ ଫଳ ମୂଳମାନ
କେବଳ କରନ୍ତି ଭୋଜନ ।
ବଳକଳ ପିନ୍ଧି ଜଟା ଶିରେ
ଧରି ସେ ତୁମ୍ଭ ପାଦୁକାରେ ।
ସକଳ ରାଜ୍ୟ ନ୍ୟାସ କରି
ରହିଛି ତୋତେ ହୃଦେ ଧରି ।
ଦଣ୍ଡକାବନେ ଯେଉଁମାନ
କଲ ହେ ଶ୍ରୀ ରଘୁନନ୍ଦନ ।
ସୀତା ହରଣ ପୂର୍ବେ ଯେତେ
ରାବଣ ବଧ ପର୍ଯ୍ୟନ୍ତେ ।
ତୁମ୍ଭର ଅନୁଗ୍ରହ କରି
ତପସ୍ୟା ବଳୁ ରାବଣାରି ।
କରିବା ହୋଇଲ ଯେତେକ
ଜାଣଇ ମୁଁ ତେତେକ ଯାକ ।
ପରମ ବ୍ରହ୍ମ ତୁ ସାକ୍ଷାତ
ତୁମ୍ଭର ଆଦ୍ୟ ମଧ୍ୟ ପ୍ରାନ୍ତ ।
ଏ ତିନି କଥା ଯେ ନାହାନ୍ତି
ଏ ରୂପେ ପଣ୍ଡିତେ କହନ୍ତି ।
ଅଗ ସର୍ଜନା କରି ଜଳ
ଅପଣ ତହିଁ କଦାଗଲ ।
ସତ୍ତ୍ୱର ଅନ୍ୟସ୍ଥା ହୋଇ
ଯେ ନାରାୟଣ ନସ ବୋଲଇ ।
ସେ ତୁମ୍ଭେ କଷ୍ଟସ୍ଥେ ଶ୍ରୀରାମ
ବ୍ରହ୍ମା ତୋ ନାଭି ପଦ୍ମୁ ଜନ୍ମ ।
ସମସ୍ତ ଲୋକମାନଙ୍କର
କର୍ତ୍ତ୍ୟ ଯେ ଜଗତ ଈଶ୍ୱର ।
ସେ ମହାବିଷ୍ଣୁ ତୁ ଗୋସାଇଁ
ଲକ୍ଷ୍ମୀ ଅଟଇ ବଇଦେହୀ ।

ଲକ୍ଷ୍ମଣ ଶେଷରୂପ ତୋର
ତୁମ୍ଭେ ଟି ସମସ୍ତ ସଂସାର ।
ସ୍ୱମାୟାରେ ଅପଣା ଠାଇଁ
ସର୍ଜନା କରିଛ ଗୋସାଇଁ ।
ଚୈତନ୍ୟ ସ୍ୱରୂପରେ କରି
ତୁ ସର୍ବସାକ୍ଷୀ ରାବଣାରି ।
କେବଳ ଅକାଶ ପ୍ରକାରେ
ମିଶିବା ନୁହଇ କାହିଁରେ ।
ସମସ୍ତ ପ୍ରାଣୀମାନ ତହିଁ
ଅନ୍ତ ବାହାରେ ଅଛ ରହି ।
ଅପଣ ହୋଇଲେ ସମ୍ପୂର୍ଣ୍ଣ
ଅଜ୍ଞାନୀ ଅଟେ ଯେଉଁ ଜନ ।
ତାହାକୁ ଦବା ଭଳି ପ୍ରାୟେ
ଜଗତ ତୁମ୍ଭେଟି କଷ୍ଟସ୍ଥେ ।
ତୁମ୍ଭେ ସେ ଜଗତ ଅଧାର
ପାଳକ ଅଟ ଯେ ତହିଁର ।
ଯେ ଖାଉଅଛ ତୁମ୍ଭେ ସେହୁ
ଯା ଖାଉ ଥାଇ ସେହୁ ତୁହୁ ।
ଯେତେକ ଦେଖି ଶୁଣି କର୍ଣ୍ଣେ
ଯାହା ସୁମରୁ ଥାଇ ମନେ ।
ତେତେକ ଯାକ ସବୁ ତୁହୁ
ତୋ ବିନୁ ଅଉ କିଛି ନାହିଁ ।
ତୋତେ ନ ଜାଣିଥିବା ଯାଏ
ଏରୂପେ ସବୁ ଦୃଶ୍ୟ ହୁଏ ।
ତୁମ୍ଭଙ୍କୁ ଜାଣିଲେ ଗୋସାଇଁ
କେହୁ ଯେ କିଛୁହିଁ ନୁହଇ ।
ତୋ ଜ୍ଞାନ ଶକତିକି ପାଇ
ମାୟା ପ୍ରେରିତ ହୋଇ ତହିଁ ।
ଅପଣାର ଯେ ଗୁଣ ହୋଇ
ତଥିଁବାରିଦ ଯେ ଅଟଇ ।

ଲୋକମାନଙ୍କ ତହିଁ ଯେଣୁ
ସର୍ଜ୍ଜନା କରଇ ସେ ତେଣୁ ।
ସଂସାର ତୁମ୍ଭଠାରେ ବୀର
ରହନ୍ତି କରି ଏ ବସ୍ତର ।
ଚୁମ୍ବକ ସନ୍ନିଧିରୁ ଯେହ୍ନେ
ଅଚଳ ଲୌହ ଚଳେ ତେହ୍ନେ ।
ତୋ ଗୁହିଁଲକୁ ସେ ମାୟାହିଁ
ଜଗତ ନିର୍ମାଣ କରଇ ।
ଅଦେହ ହେଲେ ତୁମ୍ଭେ ବୀର
ରଖିବା ପାଇଁ ଏ ସଂସାର ।
ଶରୀର ଦୁଇଗୋଟି ଧର
ବିରାଟ ସ୍ଥୂଳ କଳେବର ।
ସୂକ୍ଷ୍ମ ସ୍ୱରୂପ ସୂକ୍ଷ୍ମ ତୋର
ସହସ୍ର ସହସ୍ର ପ୍ରକାର ।
ବିରାଟଠାରୁ ଅବତାର
ସଂଜାତ ହୁଏ ରଘୁବୀର ।
କରି ଅପଣା କାର୍ଯ୍ୟମାନ
ପୁଣି ହୁଅନ୍ତି ତହିଁ ଲୀନ ।
ସେ ଅବତାର କଥାମାନ
ଶ୍ରଦ୍ଧା ଭକ୍ତିରେ ଯେଉଁ ଜନ ।
ଗାୟନ ଶ୍ରବଣ କରନ୍ତି
ସଂସାର-ସିନ୍ଧୁ ସେ ତରନ୍ତି ।
ଭୂଭାର ନାଶର ନିମନ୍ତେ
ବ୍ରହ୍ମା ମାଗିଲେ ପୂର୍ବେ ତୋତେ ।
ସନ୍ତୋଷ କରି ତପୋବଳେ
ଦଶରଥହିଁ ପୂର୍ବକାଳେ ।
ତନୟ କରି ପାଇବାକୁ
ସ୍ନେହ କଲାରେ ମାଗିଲୁ
ତାହାଙ୍କ ପୁତ୍ର ହୋଇ ରାମ
କୌଶଲ୍ୟାଠାରେ ହୋଇ ଜନ୍ମ ।
ଅତିହିଁ ଅତ୍ୟନ୍ତ ଦୁଷ୍କର
ଏମନ୍ତ ଦେବକାର୍ଯ୍ୟ ବୀର ।
ସମ୍ପୂର୍ଣ୍ଣ କରି ତ ସେମାନ
କରିବା ହୋଇଲା ବହନ ।
ବହୁତ ସହସ୍ର ବରଷ
ଧରି କରି ଏ ନରବେଶ ।
ଲୋକଙ୍କର ହିତପାଇଁ
ସମସ୍ତ ପାପକୁ ନାଶଇ ।
ଏମନ୍ତ ଯେ ଦୁଷ୍କର କର୍ମ
ଅନେକ କରି ହେ ଶ୍ରୀରାମ ।
ସବୁ ଜଗତଯାକେ ଯଶ
ସମ୍ପୂର୍ଣ୍ଣ କରିବ ଅବଶ୍ୟ ।
ଏବେ ମୁଁ ମାଗୁଅଛି ବୀର
ମୋ ଆଶ୍ରମ ପବିତ୍ର କର ।
ସୈନ୍ୟ ତୁମ୍ଭେ ସହିତ ହୋଇ
ଆଜିକ ଏହିଠାରେ ରହି ।
କାଲି ପ୍ରଭାତେ ହେ ରାଘବ
ଅଯୋଧ୍ୟାକୁ ବଢେ ଭରିବ ।
ରାମ ତା ସ୍ୱୀକାର କଲେ
ଲକ୍ଷ୍ମଣ ବଇଦେହୀ ତୁଲେ ।
ସମସ୍ତ ସୈନ୍ୟ ସହିତରେ
ସେ ଦିନ ରହିଲେ ସେଠାରେ ।
ତହିଁ ଜନ୍ମରେ ରାବଣାରି
ମୁହୂର୍ତ୍ତେ ମାତ୍ର ଧ୍ୟାନକରି ।
ହନୁମନ୍ତଙ୍କୁ ଆଜ୍ଞା ଦେଲେ
ଭରତ ପାଶକୁ ଯା ବୋଇଲେ ।
ବୁଝିବ ରାଜ ସଦନରେ
କୁଶଳେ ଅଛନ୍ତି କି ନରେ ।
ଶୃଙ୍ଗବେର ପୁରରେ ବୀର
ମୋ ସଖା ଯେ ଗୁହ ଶବର ।

ଅଛନ୍ତି କହିବ ତାହାଙ୍କୁ
ବୈଦେହୀ ସୀତା ଲକ୍ଷ୍ମଣଙ୍କୁ ।
ଆଇଲି ମୁଁ କୁଶଳ ହୋଇ
ଏମନ୍ତ ତାଙ୍କୁ ତୁମ୍ଭେ କହି ।
ନନ୍ଦଗ୍ରାମକୁ ଯାଇ ଖରେ
କହିବ ଭରତ ଆଗରେ ।
ଲକ୍ଷ୍ମଣ ସୀତା ତୁଲେ ମୋର
କୁଶଳ ହୋଇ ଆସିବାର ।
ସୀତା ହରଣଠାରୁ ଯେତେ
ରାବଣ ବଧ ପର୍ଯ୍ୟନ୍ତେ ।
ଲକ୍ଷ୍ମଣ ତଳେ ହନୁମାନ
ଅଟଇ ଯେତେ ଚେଷ୍ଟାମାନ ।
ସବୁ ତା କ୍ରମେ କହିକରି
ଶତ୍ରୁମାନଙ୍କୁ ରାମ ମାରି ।
ସଙ୍ଗତେ ଜାନକୀ ଲକ୍ଷ୍ମଣ
ସେନ ସୁଗ୍ରୀବ ବିଭୀଷଣ ।
କୁଶଳେ କୃତକାର୍ଯ୍ୟ ହୋଇ
ଆସୁ ଅଛନ୍ତି ଏହା କହି ।
ଜାଣି ଭରତ ଚେଷ୍ଟାମାନ
ମୋତେ କହିବ ଆସି ବହନ ।
ଏମନ୍ତ ଶୁଣି ସେ ମାରୁତ
ବହନ ଧରି ନରମୂର୍ତ୍ତି ।
ମିଳି ସେ ଶୃଙ୍ଗବେର ପୁରେ
ଗୁହ ଶବର ଅଗ୍ରତରେ ।
କହିଲେ ହେ କରାତପତ୍ର ।
ତୁମ୍ଭର ସଖା ଯେ ଅଟନ୍ତି ।
ସେ ରାମଚନ୍ଦ୍ର ହରଷରେ
ଜାନକୀ ଲକ୍ଷ୍ମଣ ତୁଲରେ ।
କୁଶଳ ହୋଇ ସେ ଅଛନ୍ତି
ତୋତେ କୁଶଳ କହିଛନ୍ତି ।

ମୁନିଶ୍ରେଷ୍ଠ ଯେ ଭରଦ୍ୱାଜ
ତାହାଙ୍କ ଅନୁଜ୍ଞାରେ ଅଜ ।
ଆସିବେ ଶ୍ରୀରଘୁନନ୍ଦନ
ଆପଣେ କରିବ ଦର୍ଶନ ।
ଏହା ଶୁଣୁ ଶବର ପତି
ପ୍ରେମ ପୁଲକ ହେଲା ଅତି ।
ତହୁଁ ମହାତେଜା ମାରୁତ
ଗମନ କଲେ ବେଗେ ଅତି ।
ରାମତୀର୍ଥ ସରଯୂ ନଈ
ବଡ଼ ବେଗରେ ପାରି ହୋଇ ।
ଅଯୋଧ୍ୟାପୁର କୋଶଳରେ
ମିଳିଲେ ସେ ନନ୍ଦଗ୍ରାମରେ ।
ଧରି ବଳକଳ କୃଷ୍ଣାଜିନ
ହୋଇ ଅଛନ୍ତି ଅତଦୀନ ।
ଅତ୍ୟନ୍ତ କୃଶ ହୋଇଛନ୍ତି
ଆଶ୍ରମ ଗୋଟିକେ ଅଛନ୍ତି ।
ଦେହରେ ଯୁକ୍ତ ମଳପଙ୍କ
ଜଟାରେ ଶୋଭିତ ମସ୍ତକ ।
ଭୁଞ୍ଜନ୍ତି ଫଳମୂଳ ମାତ୍ର
ରାମଙ୍କ ଚିନ୍ତା ଅନୁବ୍ରତ ।
ପ୍ରତ୍ୟହ ରାମ ପାଦୁକାରେ
ପୂଜି ସେ ରାଜ ଉପଚାରେ ।
ପୃଥ୍ୱୀ ପାଳନା କରୁଛନ୍ତି
ସେ ପୁର ଲୋକେ ସବୁ ମନ୍ତ୍ରୀ ।
କଷାୟ ବସ୍ତ୍ର ପିନ୍ଧିଛନ୍ତି
ସମସ୍ତେ ସଙ୍ଗତେ ଅଛନ୍ତି ।
ଧର୍ମ ଦେବତା ଦେହବନ୍ତ
ହେଲା ପ୍ରାୟେ ସେ ସାକ୍ଷାତ ।
ଏମନ୍ତ ଅଟେ ଯେ ଭରତ
ତାହାଙ୍କୁ ଦେଖି ହନୁମନ୍ତ ।

କୃତାଞ୍ଜଳି ହୋଇ ବହନ
କହିଲେ ଏମନ୍ତ ବଚନ ।
ଯେହୁ ତପସ୍ୱୀ ବେଶ ହୋଇ
ଦଣ୍ଡକାବନେ ଛନ୍ତି ରହି ।
ଆପଣ ଚିନ୍ତୁଛ ଯାହାଙ୍କୁ
ସେ ରାମ କୁଶଳ ତୁମ୍ଭଙ୍କୁ ।
କହୁ ଅଛନ୍ତି ଯେଉଁମାନ
ମୋଠାରୁ ସେ ପ୍ରିୟବଚନ ।
ଆପଣ ଶୁଣିଣ ବହନ
ତେଜ ଦାରୁଣ ଶୋକମାନ ।
ଶ୍ରୀରାମ ସଙ୍ଗତେ ଭରତ
ଏହିକ୍ଷଣରେ ହେବ ଯୁତ ।
ସଂଗ୍ରାମେ ମାରି ରାବଣକୁ
ଘେନି ଜାନକୀ ଲକ୍ଷ୍ମଣଙ୍କୁ ।
ଶ୍ରୀରାମ ହୋଇ କୃତକାର୍ଯ୍ୟ
ଆସୁଛନ୍ତି ଦେଖିବ ଆଜ ।
ଏମନ୍ତ ଶୁଣନ୍ତେ ଭରତ
ହରଷେ ହୋଇଣ ମୂର୍ଚ୍ଛିତ ।
ଭୂମିରେ ପଡ଼ିଲେ ବହନ
ପୁଣି କ୍ଷଣକେ ପାଇ ଜ୍ଞାନ ।
ସ୍ନେହରେ ମାରୁତିଙ୍କି ବେଗେ
ଧରିଲେ ଆପଣାର ଅଙ୍ଗେ ।
ତାହାଙ୍କୁ ଆନନ୍ଦ ଲୋତକ-
ସନ୍ଦୋହେ କରି ଅଭିଷେକ ।
କହିଲେ ହୋଇ ସେ ହରଷ
ତୁମ୍ଭେ ଦେବତା କି ମନୁଷ୍ୟ ।
ସୁକୃପା କରିଣ ମୋଠାରେ
ମିଳିଲ ଏଠାରେ ସତ୍ୱରେ ।
ମୋହରେ ବଡ଼ପ୍ରିୟ ଯେହୁ
ତାହା କହିବା ହେଲ ଯହୁଁ ।

ଏ ଘେନି କହୁ ଆପଣଙ୍କୁ
ଦେବି ତା ହେବ ଘେନିବାକୁ ।
ଏମନ୍ତରୂପେ ତାଙ୍କୁ କହି
ଶତେ ସହସ୍ର ଦେଲେ ଗାଈ ।
ସମ୍ପୂର୍ଣ୍ଣ ଅଟନ୍ତି ସଭିଏଁ
ଏରୂପେ ଦେଲେ ଗ୍ରାମ ଶହେ ।
ଖଞ୍ଜାଇ ସବୁ ଆଭରଣ
ସୁକନ୍ୟା ଷୋଳଗୋଟି ପୁଣ ।
ସମର୍ପି ହରଷିତ ହୋଇ
ପୁଣି କହିଲେ ତାଙ୍କୁ ଚାହିଁ ।
ଅନେକ କାଳ ହେଲ ଯାଇ
ଦଣ୍ଡକ ବନେ ଛନ୍ତି ରହି ।
ଏମନ୍ତ ଯେ ମୋ ପ୍ରଭୁ ରାମ
ତାଙ୍କର ସୁଖଦ ଯେ ନାମ ।
ଏତେ କାଳକେ ମୁଁ ଶୁଣିଲି
ତା ପୁଣି କାହିଁ ନହିଁ କଲି ।
ଜୀବନେ ଥାଉଁ ଯେଉଁ ନର
ଶହେ ବରଷ ହେଲେ ତାର ।
ନିଶ୍ଚୟେ ସୁଖ ଭୋଗ ହୁଏ
ଏହା ଯେ ବୋଲନ୍ତି ସଭିଏଁ ।
ସେ କଥା ଅଟଇ ତ ସତ୍ୟ
ପୁଣି ସେ ପୁଚ୍ଛିଲେ ଏମନ୍ତ ।
କପିଙ୍କ ତୁଲେ ସୀତାକାନ୍ତ
କିରୂପେ ହୋଇଲେ ସଙ୍ଗତ ।
ତତ୍ତ୍ୱକରି ସେ କଥାମାନ
କହିବା ହେଜ ହନୁମାନ ।
ତେବେ ତୁମ୍ଭ କଥା ବିଶ୍ୱାସ
ମନରେ କରିବା ଅବଶ୍ୟ ।
ଏମନ୍ତ ଶୁଣି ହନୁମନ୍ତ
ରାମର ଯେତେକ ଚରିତ ।

ସତ୍ୟ ତା କହିଲେ ଜପରେ
ଭରତ ଶୁଣି ଆନନ୍ଦରେ ।
ଅତ୍ୟନ୍ତ ହରଷ ସେ ହୋଇ
ଶତ୍ରୁଘ୍ନ ଥିଲେ ଯେଉଁଠାଇଁ ।
ତାଙ୍କୁ ବୋଇଲେ ଯାଅ ବେଗେ
ଯେତେ ଦେବତା ଅଛନ୍ତି ନଗ୍ରେ ।
ଅଛନ୍ତି ସେମାନଙ୍କଠାରେ
ଫୁଲ ଚନ୍ଦନ ଉପହାରେ ।
ମହତ୍ତ୍ୱ ଋଷିମାନଙ୍କରେ
ପୂଜା କରାଅ ଅନ୍ତରେ ।
ସୂତ ମାଗଧ ବୈତାଳକ
ଅଛନ୍ତି ପୁରେ ଛନ୍ତି ଯେତେକ ।
ସ୍ତୁତି ପାଠକ ଆଦି ଯେତେ
ବେଶ୍ୟା ଅଛନ୍ତି ଏ ସମସ୍ତେ ।
ଶ୍ରୀରାମ ରାମଙ୍କ ବଦନ
ହରଷେ କରନ୍ତୁ ଗମନ ।
ରାଜସ୍ତ୍ରୀମାନେ ଯେତେ ଛନ୍ତି
ପଦଚାରିକା ସତ୍ୟ ଠାଣି ।
ଦୋଳା ରଥ ଅଶ୍ୱ ହସ୍ତୀ
ଅମାତ୍ୟମାନେ ଯେତେ ଛନ୍ତି ।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ
ପୁର ରାଜ୍ୟର ଲୋକମାନେ ।
ଅଛନ୍ତି ଯେ ରାଜକୁଳ
ପୁରୁଷ ନାରୀ ବୃଦ୍ଧ ବାଳ ।
ପୂର୍ଣ୍ଣେନ୍ଦୁ ପରାୟେ ଶୋଭନ
ଏମନ୍ତ ଶ୍ରୀରାମ ବଦନ ।
ତା ଦେଖିବାକୁ ଉତ୍ସୁକରେ
ସମସ୍ତେ ଯାଅନ୍ତୁ ସତ୍ୱରେ ।
ଭରତ ବୋଲେ ଶତ୍ରୁଘନ
ଆଜ୍ଞାରେ ଘେନି ମୁକ୍ତା ରତ୍ନ ।
ଚତୁର୍ଦ୍ଧ ତୋରଣମାନରେ
ଛତ୍ର ଚାମର ପତାକାରେ ।
ପୁରମାନ କଣ୍ଟକଯାକ
ହୋଇଣ ଅତ୍ୟନ୍ତ ଉତ୍ସୁକ ।
ଅନେକ ବେଶବାସମାନେ
ମଣ୍ଡଣି କଲେ ଅତିଯତ୍ନେ ।
ରାମଙ୍କୁ ଦେଖିବାକୁ ନେତ୍ରେ
ବୃନ୍ଦ ବୃନ୍ଦ ହୋଇ ସମସ୍ତେ ।
ଆନନ୍ଦ ସନ୍ଦୋହରେ ଖରେ
ଗମନ କଲେ ଉତ୍ସୁକରେ ।
ଶହେ ସହସ୍ର ସୁନ୍ଦରଙ୍କ
ଅଯୁତେ ସୁମତ୍ତ ମାତଙ୍ଗ ।
ସୁନା ମୁକୁତା ନାନାବସ୍ତ୍ରେ
ମଣ୍ଡିତ ଶତାଙ୍ଗ ଅଯୁତେ ।
ଘେନିଣ ଉପାୟନମାନ
ବାହାର ହୋଇଲେ ବହନ ।
ପାଲଙ୍କିମାନ ଚଢ଼ିକରି
ଗଲେ ସମସ୍ତ ରାଜସ୍ତ୍ରୀରା ।
ଭରତ ପରମ ଭକ୍ତିରେ
ରାମ ପାଦୁକା ଘେନି ଶିରେ ।
ସଙ୍ଗେ ଧରିଣ ପୂଜକ
ହରଷେ ଚଳନ୍ତି ଲୋକକ ।
ରାମଙ୍କ ଚିନ୍ତି ହୃଦୟରେ
ଅବଶ ହୋଇ ଆନନ୍ଦରେ ।
ଅତ୍ୟନ୍ତ ମନ୍ଦ ମନ୍ଦ ହୋଇ
ଚରଣେ ଚାଲନ୍ତି ଭୁଆଇଁ ।
ଶତ୍ରୁଘ୍ନ ଦୁଇଲେ ଯୋଡ଼ି ହସ୍ତ
ରୁକ୍ଷଣ ଯାନ୍ତେ ସେ ଭରତ ।
ଦୂରନ୍ତୁ ଏମନ୍ତ ସମୟେ
ସୁଖଦ ଚନ୍ଦ୍ରମା ପରାୟେ ।

ହୋଇ ଅଛନ୍ତି ଅତି ତେଜ
ଯେତେକେ ନବୀନ ବାଳ ସୂର୍ଯ୍ୟ ।
ମନେ ଯତନେ ପ୍ରଜାପତି
ଯାହା ନିର୍ମାଣ କରିଛନ୍ତି ।
ଏମନ୍ତ ପୁଷ୍ପକ ବିମାନ
ଦେଖନ୍ତେ ବେଗେ ହନୁମାନ ।
ଅତ୍ୟନ୍ତ ହରଷ ସେ ହୋଇ
କହିଲେ ସମସ୍ତଙ୍କୁ ଚାହିଁ ।
ଦେଖ ଦେଖ ଏ ବିମାନରେ
ଜାନକୀ ଲକ୍ଷ୍ମଣ ତୁଲରେ ।
ବସିଛନ୍ତି ଯେ ରାମଚନ୍ଦ୍ର
ଦିଶୁଛି ଦେଖ ମୁଖଚନ୍ଦ୍ର ।
ସୁଗ୍ରୀବ ଯେ ବାନର ପତି
ଦେଖ ଏଠି ସେ ବସିଛନ୍ତି ।
ସଙ୍ଗତେ ଦେଖ ବୀର ମନ୍ତ୍ରୀ
ବିଭୀଷଣ ଯେ ଦିଶୁଛନ୍ତି ।
ଏମନ୍ତେ ଦେଖନ୍ତେ ନୟନେ
ବାଳକ ଯୁବା ବୃଦ୍ଧମାନେ ।
ଯେତେକ ଥିଲେ ସ୍ତ୍ରୀ ପୁରୁଷ
ସମସ୍ତେ ହୋଇଲେ ହରଷ ।
ରାମ ଏ ରାମ ଏ ବୋଲନ୍ତେ
ସେ ସବୁ ଶବଦ ମିଶନ୍ତେ ।
ଅତିବଡ଼ ହୋଇ ଶୁଭଇ
ଚହଟି ବ୍ରହ୍ମାଣ୍ଡ ପୂରଇ ।
ସମସ୍ତେ ଅତିବ୍ୟସ୍ତ ହୋଇ
ବାହନମାନରୁ ଓହ୍ଲାଇ ।
ଚନ୍ଦ୍ରମା ପରାୟେ ଗଗନେ
ରାମଙ୍କୁ ଦେଖିଣ ବିମାନେ ।
ସମସ୍ତେ କୃତାଞ୍ଜଳି ହୋଇ
ରହିଲେ ଅନିମିଷେ ଚାହିଁ ।

ଭରତ ଏଥୁ ଅନନ୍ତରେ
କର ଯୁଗଳ ଦେଇ ଶିରେ ।
ସୁମେରୁ ଉପରରେ ଥାଇ
ଆଦିତ୍ୟ ଯେମନ୍ତ ଦିଶଇ ।
ସେରୂପେ ପୁଷ୍ପକ ବିମାନେ
ରାମଙ୍କୁ ଦେଖନ୍ତି ନୟନେ ।
ଭକତି ଭାବେ ନମ୍ର ହୋଇ
ସର୍ବାଙ୍ଗେ ପ୍ରେମ ପୁଲକାଇ ।
ସଙ୍ଗରେ ଶତ୍ରୁଘନ ତୁଲେ
ଭୂମିରେ ଦଣ୍ଡବତ କଲେ ।
ଦେଖି ଶ୍ରୀରାମ ଆଜ୍ଞା ଦେଲେ
ବିମାନ ଭୂମିରେ ମିଳିଲେ ।
ଶତ୍ରୁଘ୍ନ ତୁଲେ ଭରତଙ୍କୁ
ରାମ ଆଣିଲେ ବିମାନକୁ ।
ଆନନ୍ଦ ସନ୍ତୋଷେ ଭରତ
ପୁଣି କରନ୍ତେ ଦଣ୍ଡବତ ।
ଶ୍ରୀରାମ ଦେଖି ହରଷରେ
ଦେଖିଲେ ବହୁତ କାଳରେ ।
ଏମନ୍ତେ ଭରତଙ୍କୁ ନେଇ
ଅପଣା କୋଳରେ ବସାଇ ।
ସ୍ନେହରେ କରି ଆଲିଙ୍ଗନ
ମସ୍ତକ ଶୁଙ୍ଘିଲେ ବହନ ।
ଭରତ ସେ ଉତ୍ତରେ ଯାଇ
ପ୍ରେମ ବଶରେ ଭୋଳ ହୋଇ ।
ଲକ୍ଷ୍ମଣ ତୁଲେ ବଇଦେହୀ
ମୁଖକୁ ଚାହିଁ ଖୁସି ହୋଇ ।
କହି ସେ ଅପଣାର ନାମ
ତାଙ୍କ ପାଦେ କଲେ ପ୍ରଣାମ ।
ସୁଗ୍ରୀବ ଅଙ୍ଗଦ ସୁଷେଣ
ଋଷଭ ତାର ବିଭୀଷଣ ।

ମଇନ୍ଦ ଗୟ ଜାମ୍ବବାନ
ନଳ ନୀଳ ଗନ୍ଧମାଦନ ।
ଦ୍ୱିବିଦ ଗବାକ୍ଷ ପନସ
ଏହାଙ୍କୁ ହୋଇଣ ହରଷ ।
ଭରତ ଆଲିଙ୍ଗନ କଲେ
ପ୍ରୀତରେ ଅନେକ କହିଲେ ।
ସେମାନେ ନରଦେହ ବହି
ବଡ଼ ହରଷେ ଯୁତ ହୋଇ ।
ଭକ୍ତ ସେ ଆଲିଙ୍ଗନମାନ
କଲେ କୁଶଳ ପରଶନ ।
ଭରତ ସୁଗ୍ରୀବଙ୍କୁ ଧରି
ନିବିଡ଼େ ଆଲିଙ୍ଗନ କରି ।
ପ୍ରୀତରେ କହିଲେ ତାହାଙ୍କୁ
ଆପଣ ସହାୟ ହେଲକୁ ।
ଶ୍ରୀରାମ ଜୟଯୁତ ହେଲେ
ଦଶଶିରଙ୍କୁ ବଧ କଲେ ।
ଏଣୁକରି ହେ କପୀଶ୍ୱର
ଅମ୍ଭନ ଗୃହ ଭାଇଙ୍କର ।
ମଧ୍ୟରେ ଏବେ ତେମାସାଇଁ
ହେଲ ପଞ୍ଚମ ଭ୍ରାତ ହୋଇ ।
ଶତ୍ରୁଘ୍ନ ଏଥୁ ଅନନ୍ତରେ
ହରଷ ହୋଇ ଶନୟରେ ।
ସୀତା ଲକ୍ଷ୍ମଣ ତୁଲେ ରାମ
ଚରଣେ କରନ୍ତେ ପ୍ରଣାମ ।
ଅତି ବିବର୍ଣ୍ଣ ହୋଇଛନ୍ତି
ଶୋକେ ହରଷିତ ଅଛନ୍ତି ।
ଶୁଖି ତ ଯାଇଛି ବଦନ
ହୋଇ ଅଛନ୍ତି ଅତି ଦୀନ ।
ଏମନ୍ତେ କୌଶଲ୍ୟାଙ୍କ ଗୃହି
ହରଷ କରାଇଲ ହୋଇ ।

ସୀତା ଲକ୍ଷ୍ମଣ ତୁଲେ ରାମ
କରନ୍ତେ ତାହାଙ୍କୁ ପ୍ରଣାମ ।
ତୋଳି ସେ ଆଲିଙ୍ଗନ କଲେ
ସ୍ନେହରେ ମସ୍ତକ ଶୁଙ୍ଘିଲେ ।
ଆନନ୍ଦ ଲଭିଲେ ଅନେକ
ନାଶିଲେ ଚିରକାଳ ଶୋକ ।
ପୁଣି କୈକେୟୀ ସୁମିତ୍ରାଙ୍କୁ
ଆଉ ସବୁ ମାତାମାନଙ୍କୁ ।
ସୀତା ଲକ୍ଷ୍ମଣ ତୁଲେ ରାମ
କରନ୍ତେ ତାହାଙ୍କୁ ପ୍ରଣାମ ।
ସେମାନେ ଆଲିଙ୍ଗନ କଲେ
ଆନନ୍ଦ ସନ୍ତୋଷ ଲଭିଲେ ।
ବିପ୍ରବରଙ୍କୁ ରଘୁବୀର
ଭକ୍ତିରେ କଲେ ନମସ୍କାର ।
ସମସ୍ତ ପ୍ରଜାଙ୍କୁ ଅନାଇ
ହସିଲେ ମନ୍ଦ ମନ୍ଦ ହୋଇ ।
ଯେବଣ ପାଦୁକାକୁ ନିତ୍ୟ
ପୂଜା କରୁଥିଲେ ସନ୍ତତ ।
ଭରତ ସେ ଯୋଡ଼ିକ ନେଇ
ଅତି ଭକ୍ତିରେ ଯୁକ୍ତ ହୋଇ ।
ରାମ ପାଦେ ତା ଖଞ୍ଜିଦେଇ
କହିଲେ କୃତାଞ୍ଜଳି ହୋଇ ।
ରକ୍ଷି ଯେ ଥିଲି ମୋହଠାରେ
ଦେଲି ତା ତୁମ୍ଭ ଚରଣରେ ।
ମୋ ଜନ୍ମ ସଫଳ ହେଲା
ଆଜ ମୋ ବାଞ୍ଛିତ ପୂରିଲା ।
ପୁରକୁ ଆଇଲ ଆପଣ
ଏହା ଯେ ଦେଖିଲି ମୁଁ ପୁଣ ।
ଭଣ୍ଡାର ବଳ କୋଷାଗାର
ଏମାନ ଯେତେକ ତୁମ୍ଭର ।

କହନ୍ତି ଦଶଗୁଣ ଖାର
ପରିପାଳନା ରାଜ୍ୟ କର ।
ଭରତଠାରୁ ଏ ପ୍ରକାରେ
ଶୁଣିଣ ସେ ଋଷ ବାନରେ ।
ଆନନ୍ଦେ ଲୋତକ ମୁଞ୍ଚିଲେ
ହରଷେ ସାଧୁ ସାଧୁ କଲେ ।
ଶ୍ରୀରାମ ଲଭି ହରଷକୁ
କୋଳେ ବସାଇ ଭରତଙ୍କୁ ।
ବିମାନେ ଯାଇ ନନ୍ଦଗ୍ରାମେ
ମିଳିଲେ ଭରତ ଆଶ୍ରମେ ।
ସେଠାରେ ଶ୍ରୀରାମ ଓହ୍ଲାଇ
କହିଲେ ବିମାନକୁ ଗୁହିଁ ।
ପୁଷ୍ପକ ମୋ ଆଜ୍ଞାରେ ଯାଅ
ଧନପାଳକୁ ବେଗେ ବହ ।
ସନ୍ତତ ଏବେ କୁବେରଙ୍କୁ
ତୁଅ ଅନୁଗତ ହେବାକୁ ।
ବୃହସ୍ପତିଙ୍କି ଇନ୍ଦ୍ର ଯେସନ୍ତେ
କରନ୍ତି ନମସ୍କାର ତେସନ୍ତେ ।
ଗୁରୁ ବଶିଷ୍ଠଙ୍କୁ ଶ୍ରୀରାମ
ଭକ୍ତିରେ କରିଣ ପ୍ରଣାମ ।
ଦିବ୍ୟ ଆସନ ଗୋଟିକରେ
ବସିଲେ ତାଙ୍କ ନିକଟରେ ।
ବୋଲେ ଧୂର୍ଜଟି ହଳଧର
ସୀତା ସହିତେ ଶ୍ରୀରାମର ।
ଶ୍ରୀରାମ ଚରଣ ଯୁଗଳେ
ମୋ ମନ ଯ ନ ସଦା ଭୁଲେ ।
ପଦ ଖଣ୍ଡୁ ମୋର ବିପଦ
ଦୂରିଣ ଏକତ୍ତ୍ରର ପଦ ।୨୭୧।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

---

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ସର୍ବଜ୍ଞ ସର୍ବାଣୀ ଆଗରେ
କହିଲେ ଏଥୁ ଅନନ୍ତରେ ।
ଭରତ ଶିରେ କରଦେଇ
ଅତି ଭକ୍ତିରେ ନମ୍ର ହୋଇ ।
ଶ୍ରୀରଘୁନାଥ ଅଗ୍ରତରେ
କହିଲେ ଏମନ୍ତ ପ୍ରକାରେ ।
ମୋହ ନିମନ୍ତେ କଇକେୟୀ
ରାଜ୍ୟ ମାଗିଲାକୁ ଗୋସାଇଁ ।
ଯେମନ୍ତ ରୂପେ ତା ଅର୍ପଣ
ମୋଠାରେ ଦେଇଥିଲ ପୁଣ ।
ମୁଁ ସେହିରୂପେ ଦେଲି ଯହୁଁ
ଏ ଭୋଗ ଭୋଗିବାକୁ ହେଉ ।
ଏମନ୍ତ କହି ସେ ଭରତ
ଭକ୍ତିରେ କଲ ଦଣ୍ଡବତ ।
ବଶିଷ୍ଠ କଇକେୟୀ ତୁଲେ
ଅନେକ ପ୍ରାର୍ଥନାକୁ କଲେ ।
ମାୟାକୁ ଯେ ଆଶ୍ରୟ କରି
ମନୁଷ୍ୟ ପ୍ରାୟେ ଦେହ ଧରି ।
କରୁ ଅଛନ୍ତି ଚେଷ୍ଟାମାନ
ଏମନ୍ତ ଯେ ରଘୁନନ୍ଦନ ।

ସେ ରାଜ୍ୟ ସ୍ୱୀକାର କଲେ
ଭରତଠାରୁ ତା ସେକାଳେ ।
ଆପଣ ଅଟ ଆତ୍ମାରାମ
ଜ୍ଞାନ ସ୍ୱରୂପ ସେହୁ ବ୍ରହ୍ମ ।
ତହୁଁ ବଡ଼ ଆନନ୍ଦ ନାହିଁ
ପରମ ଆତ୍ମା ଯେ ଅଟଇ ।
ଏମନ୍ତ ରାମଙ୍କୁ ପୃଥ୍ୱୀରେ
କି କାର୍ଯ୍ୟ ମନୁଷ୍ୟ ରାଜ୍ୟରେ ।
ଭ୍ରୂକୁଟି ଭଙ୍ଗୀମାତ୍ରେ ଯାର
ଅଧ ନିମିଷେ ଇନ୍ଦ୍ରପୁର ।
ନିସ୍ତେଜେ ହୁଅଇ ସଂହାର
କଟାକ୍ଷ ମାତ୍ରକେ ଯାହାର ।
ଇନ୍ଦ୍ର ସମ୍ପଦ ହୁଏ ପୁଣି
ଲୀଳାରେ ଏ ସୃଷ୍ଟି ନିର୍ମାଣ ।
କରନ୍ତି ଯେଉଁ ରଘୁନାଥ
ତାଙ୍କୁ ଏ ରାଜ୍ୟ କି ପଦାର୍ଥ ।
ତଥାପି ଭକ୍ତ ଯେଉଁ ଜନ
ତା ବାଞ୍ଛା କରିବାକୁ ପୂର୍ଣ୍ଣ ।
ଲୀଳାରେ ହୋଇଛନ୍ତି ନର
କରନ୍ତି ସବୁ ସ୍ୱୀକାର ।
ଆଜ୍ଞା ଦେଅନ୍ତେ ଶତ୍ରୁଘନ
କରିବା ନିମନ୍ତେ ବପନ ।
ଉତ୍ତମ ନାପିତ ନିକରେ
ପ୍ରବେଶ ହୋଇଲେ ସତ୍ୱରେ ।
ଅଭିଷେକ ସମ୍ଭାରମାନ
ସମସ୍ତ କଟିଲ ଶତ୍ରୁଘନ ।
ପ୍ରଥମେ ଭରତ ବପନ
ହୋଇଣ କରନ୍ତେ ସେ ସ୍ନାନ ।
ଏଥୁ ଅନନ୍ତରେ ଯେ ପୁଣି
ମଜ୍ଜଣା ହୋଇଲେ ଲକ୍ଷ୍ମଣ ।

ସୁଗ୍ରୀବ ବିଭୀଷଣ ସ୍ନାନ
କରନ୍ତେ ଶ୍ରୀରଘୁନନ୍ଦନ ।
ଜଟା ଫିଟାଇ ସ୍ନାନ କଲେ
ଦିବ୍ୟବସନ ଲଗି ହେଲେ ।
ସୁଗନ୍ଧ ପୁଷ୍ପ ମାଳମାନ
ବେଣିଲେ କର୍ପୂର ଚନ୍ଦନ ।
ରାମ ଲକ୍ଷ୍ମଣଙ୍କୁ ହରଷ
ହୋଇ ଭରତ କଲେ ବେଶ ।
ଉତ୍ତମ ଭୂଷଣ ବସନେ
ଅନ୍ତଃପୁରର ନାରୀମାନେ ।
ହରଷେ କୌତୁକ ସକଳେ
ସୀତାଙ୍କୁ ଦିବ୍ୟବେଶ କଲେ ।
ଅଟଇ ଯେ ପୁତ୍ରବତ୍ସଳା
ଏମନ୍ତ ଯେଉଁ କଉଶଲ୍ୟା ।
କପି ପତ୍ନୀମାନଙ୍କୁ ବେଶ
କଲେ ସେହୁ ହୋଇ ହରଷ ।
ଶତ୍ରୁଘ୍ନ ଆଜ୍ଞାରେ ସୁମନ୍ତ
ନାନା ମଣ୍ଡନେ କରି ଯୁକ୍ତ ।
ଅଦ୍ଭୁତ ପ୍ରାୟେ ରଥ ବେଗେ
ଘେନି ମିଳିଲେ ରାମ ଆଗେ ।
ଯେ ସତ୍ୟ ଧର୍ମର ଆଶ୍ରୟ
ଗୋଚର ନୁହେ ଯା ବିଷୟ ।
ଏମନ୍ତ ରାମ ହରଷରେ
ବିଜେ କଲେ ଯେ ରଥାଗ୍ରରେ ।
ସୁଗ୍ରୀବ ମାରୁତ ସୁଷେଣ
ଅଙ୍ଗଦ ନୀଳ ବିଭୀଷଣ ।
ଏ ଅଠ ବାନରେ ଶ୍ରେଷ୍ଠସେ
ସମସ୍ତେ ପରମ ହରଷେ ।
ବିବିଧ ବେଶ ଅଳଙ୍କାରେ
ସୁବେଶ ହୋଇ ହରଷରେ

ରଥ ଗଜ ଅଶ୍ୱ ଚଢ଼ିଲେ
ରାମର ବୃନ୍ଦପାଖେ ଗଲେ ।
ସୀତା ସୁଗ୍ରୀବ ପତ୍ନୀମାନେ
ସମସ୍ତେ ବସି ନାନା ଯାନେ ।
ହରଷେ ଅଯୋଧ୍ୟାକୁ ଗଲେ
ଶ୍ରୀରାମ ମଧ୍ୟରେ ଶୋଭିଲେ ।
ହରଦଶ୍ୱ ଯୁତ ରଥରେ
ଦେବତାମାନଙ୍କ ମଧ୍ୟରେ ।
ଯେସନେ ଶୋଭା ଧରେ ଇନ୍ଦ୍ର
ତେମନ୍ତ ରୂପେ ରାମଚନ୍ଦ୍ର ।
ନିଜ ପୁରକୁ ବିଜେ କଲେ
ଭରତ ସାରଥି ହୋଇଲେ ।
ରତ୍ନ ଜଡ଼ିତ ଦଣ୍ଡେ ଯୁତ
ଅତି ଉତ୍ତମ ଶ୍ୱେତଛତ୍ର ।
ଶତ୍ରୁଘ୍ନ ତା କରେ ଧଇଲେ
ଲକ୍ଷ୍ମଣ ଅଲଟ ଖଟିଲେ ।
ସୁଗ୍ରୀବ ବିଭୀଷଣ ତହିଁ
ବେନି ପାର୍ଶ୍ୱେ ଉଭା ହୋଇ ।
ଶ୍ୱେତ ଚାମର ଯୋଡ଼ି କରେ
ଖଟିଲେ ଆନନ୍ଦ ମନରେ ।
ଦେବତା ଋଷି ସିଦ୍ଧମାନେ
ବିମାନମାନଙ୍କେ ଗଗନେ ।
ବିବିଧ ରୂପେ ସ୍ତୁତି କଲେ
ଗନ୍ଧର୍ବେ ଗୀତ ଆରମ୍ଭିଲେ ।
ଅପସରାଏ କଲେ ନୃତ୍ୟ
କୁସୁମ ବରଷେ ବହୁତ ।
ହରଷ ହୋଇ ଆକାଶରେ
ଦୁନ୍ଦୁଭି ବଜାଇଲେ ସୁରେ ।
ତହିଁ ସୁସ୍ୱରେ ଗୀତ ସ୍ୱର
ଶୁଭିଲା ଅତି ମନୋହର ।

ମନୁଷ୍ୟ ରୂପରେ ବାନରେ
ଚଢ଼ି ମାତଙ୍ଗ ମାନଙ୍କରେ ।
ପଣବ ମୃଦଙ୍ଗ ଆନକ
ଶଙ୍ଖ ଭେରୀ ତତା ଅନେକ ।
ବଜାନ୍ତେ ସେ ଶବଦ କର୍ଣ୍ଣେ
ଶୁଣି ସେ ପୁର ସ୍ତ୍ରିୟାମାନେ ।
ରାମକୁ ଦେଖିବାକୁ ନେତ୍ରେ
ହରଷ ଉତ୍ସୁକେ ସମସ୍ତେ ।
ଆପଣା ଘର କର୍ମମାନ
ସକଳ ଛାଡ଼ିଲେ ବହନ ।
ହରଷେ ହୋଇଣ ଉତ୍ସୁକ
କେ କରେ ଖଞ୍ଜିଲେ ହଂସକ ।
କଙ୍କଣ କେଉଁମାନେ ତହିଁ
ଖଞ୍ଜିଲେ ଚରଣରେ ନେଇ ।
କଟିରେ କେ କିଙ୍କିଣୀ ବାନ୍ଧିଲେ
କେ ହାର କଣ୍ଠିରେ ଖଞ୍ଜିଲେ ।
ମୁକୁତା ସୀମନ୍ତିନୀ ଶ୍ରେଣେ
ଲମ୍ବାଇଲେ ହୃଦୟ ସ୍ଥଳେ ।
କର୍ପୂର କୁଙ୍କୁମ ଚନ୍ଦନ
ତହିଁ କେ ମିଶାଇ ଅଞ୍ଜନ ।
ସମସ୍ତ ଅଙ୍ଗରେ ଲେପିଲେ
କସ୍ତୁରୀ କେ ନେତ୍ରେ ଘେନିଲେ ।
କେ ପାନ ଖୋସାରେ ଖୋସିଲେ
କୁସୁମ ମାନ ଗୁନ୍ଥାଇଲେ ।
ସେ ପୁରେ ସ୍ତ୍ରୀୟେ ଥିଲେ ଯେତେ
ସମସ୍ତେ ବେଶ ବିପରୀତେ ।
ଏ ରୂପେ ବିବିଧ ପ୍ରକାରେ
ବେଶକୁ ଧରିଣ ସତ୍ୱରେ ।
ଅକ୍ଷତ ପୁଷ୍ପ ଘେନି ହସ୍ତେ
ଉତ୍କଣ୍ଠେ ବାହାର ହୁଅନ୍ତେ ।

କାହାର ବଲ୍‌କୀ ପଡ଼ିଲା
ସେ ତାହା ଜାଣି ନ ପାରିଲା
ହସ୍ତ କେ ଛନ୍ଦେ ବନ୍ଦ କରି
ସୁସ୍ବରେ ଗାୟନ କରାଇ ।
ଶ୍ରୀରାମଠାରେ ମନଦେଇ
ଗଲା ସେ ଅତି ଭୋର ହୋଇ ।
କା'ଠାରୁ ପଡ଼ିଲା କଂସାଳ
ମାରୁଅଛି ସେ କରତାଳ ।
ବୋଲନ୍ତି ରାମ କାହିଁ କାହିଁ
ଏ ରୂପେ ଗଲା ଭୋର ହୋଇ ।
ହସ୍ତ୍ରେ କେ ମର୍ଦ୍ଦଳ ଘୋଡ଼ି
ଉରୁ ଯୁଗଳେ କରି ତାଡ଼ି ।
ବିବିଧ ଅଙ୍ଗ ଭଙ୍ଗି କରି
ଗଲା ରାମଙ୍କୁ ହୃଦେ ଧରି ।
କେ ସୁଖେ ନିଦ୍ରା ଯାଉଥିଲା
ସଙ୍ଗ୍ରମ ହୋଇ ଉଠିଲା ।
ନିଦ୍ରା ଅଳସ୍ୟ ହାଇ ମାରି
ଦୁଆରି ସେ ଜାଣି ନ ପାରି ।
ମନ୍ଦରେ ଦାଟିବ ଝୁ ପଡିଲା
ଅଣ୍ଡାଳ ହୋଇ ସେ ଉଠିଲା ।
ସେ ବ୍ୟଥା ନ ବେଦି ମନରେ
ଗମନ କଲା ହରଷରେ ।
କେ ଛାଡ଼ି ରନ୍ଧନ ଭୋଜନ
କେ ତଳେ ପକାଇ ନନ୍ଦନ ।
କେ ଅଧେ ପିନ୍ଧି ସୁବସନ
ବାହାର ହୋଇଲେ ବହନ ।
କେ ବସି କେଶ ଚିରୁଥିଲା
ବାନ୍ଧ ନ ପାରି ବେଗେ ଗଲା ।
ପତିଙ୍କୁ ଦେଇଣ କେ ଅନ୍ନ
ଗଲା ସେ ନ ଦେଇ ବ୍ୟଞ୍ଜନ ।

ଆନନ୍ଦ ସନ୍ଦୋହେ ବହନ
ଏ ରୂପେ ଘୋଡ଼ି କର୍ମମାନ ।
ସମସ୍ତେ କଳାକଳ ହୋଇ
ଝାଣ୍ଟି ହାବୋଡ଼ ବେଗେ ଯାଇ ।
ଜଗତ ମାନଙ୍କେ ଉଠିଲେ
ଶ୍ରୀରାମ ରୂପକୁ ଚାହିଁଲେ ।
ନବୀନ ଦୂର୍ବାଦଳ ଶ୍ୟାମ
ରୂପେ ଅସମ କୋଟି କାମ ।
ବନ୍ଧୁର ମୁଖ୍ୟ ସୁକ୍ରବିଟ
ଦିଶୁଛି ଶିରେ ଝଟ ଝଟ ।
କର୍ଣ୍ଣରେ ମକର କୁଣ୍ଡଳ
ତହିଁ ଝଟକେ ଗଣ୍ଡସ୍ଥଳ
କେୟୂର କଙ୍କଣ ନୂପୁର
ଛବିଧ ରତ୍ନେ ମନୋହର ।
ବନ୍ଧୁର ପ୍ରକାରେ ପଦକ
ପୂରଣ ଅଛି ହୃଦଯାକ ।
ରକତ ପଙ୍କଜ ପ୍ରକାର
ନୟନ ବିସ୍ତାର ରୁଚିର ।
ହୃଦୟ ସ୍ଥୂଳ ବିସ୍ତାର
ଦିଶୁଛି ପରମ ରୁଚିର ।
ବିବିଧ ରତ୍ନରେ ଖଞ୍ଜିତ
ଏମନ୍ତେ ଯେଉଁ କଟି ସୂକ୍ଷ ।
ତହିଁ ଝଟିତ ପୀତବସ୍ତ୍ର
ଦିଶେ ଶୋଭିତ ଅତିଅନ୍ତ ।
ଦିବ୍ୟ ମୁକୁତା ମାଳମାନ
ହୃଦରେ ଦିଶେ ସୁଶୋଭନ ।
ସ୍ଥୂଳ ଲମ୍ବ ବେଣି ଭୁଜ
ମହେନ୍ଦ୍ର ପ୍ରାୟେ ଦିଶେ ତେଜ ।
କର୍ପୂର କୁଙ୍କୁମ ଚନ୍ଦନ
ଶ୍ରୀ ଅଙ୍ଗେ ହୋଇଛି ଲେପନ ।

କଳ୍ପ ବୃକ୍ଷର ପୁଷ୍ପମାଳେ
ଲମ୍ବି ଯେ ଅଛୁ ବକ୍ଷସ୍ଥଳେ ।
ସୁଗ୍ରୀବାଦ୍ୟ ଋକ୍ଷ ବାନରେ
ସେବଣ ଅଛନ୍ତି ତୁଷ୍ଟରେ ।
ଏ ରୂପେ ଦେଖି ନୟନରେ
ଅତ୍ୟନ୍ତ ସାତ୍ତ୍ୱିକ ବିକାରେ ।
ଅକ୍ଷତ ପୁଷ୍ପ ସଙ୍ଗତରେ
ଲାଜା ମୋକ୍ଷଣ କଲେ ଶିରେ ।
ସର୍ବାଙ୍ଗେ ଧଇଲେ ପୁଲକ
ଆନନ୍ଦେ ବହିଲା ସ୍ୱେଦକ ।
ପ୍ରେମରେ ହୋଇଲେ ଜର୍ଜର
ଝାଳରେ ତିନ୍ତିଲା ଶରୀର ।
କଟିନ ସ୍ତନହିଁ କମ୍ପିଲା
ହୃଦୟ ଦମଦମ ହେଲା ।
ସ୍ୱରର ଭଙ୍ଗ ହେଲା ଶ୍ୱାସ
ବଚନ ହୋଇଲା ଉଚ୍ଛ୍ୱାସ ।
କଣ୍ଠହୁ ଗଦଗଦ ହେଲା
ବଚନ ବାହାର ନୋହିଲା ।
କର ଚରଣ ନ ବଳଲେ
ଶବ ପ୍ରତିମା ପ୍ରାୟେ ହେଲେ ।
ପଲକ ନ ପଡିଲା ନେତ୍ରେ
ରାମଚନ୍ଦ୍ରଙ୍କ ନିଜ ଗାତ୍ରେ ।
ଲାବଣ୍ୟେ କର ଅଲିଙ୍ଗନ
ରମଣ ଇଚ୍ଛିଲେ ବହନ ।
ତେତେବେଳେହେଁ ରୂପଛତ ନୋହୁ
ମନ ନୟନରେ ଗୋଡ଼ାଇ ।
ବହନ ପ୍ରେମ ଧନମାନ
ଦେଇ ଶ୍ରୀରାମ ଅପଘନ ।
ଲୁଟିର ତା ନୀଳମାଣିକ୍ୟ
କହୁ କର ଲଭ ଅନେକ ।

ଲକ୍ଷଣ ଏକ ଅବକରେ
ନ କହୁ ହୁଦ ସମ୍ପୁଟରେ ।
ଅତ୍ୟନ୍ତ ଯତନେ ରଖିଲେ
ଆନନ୍ଦ ସନ୍ଦୋହ ଲଭିଲେ ।
ସବୁର ଆନନ୍ଦଦାୟକ
ନାଶନ୍ତି ସମସ୍ତ ପାତକ ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ବଦନ
ମନ୍ଦହାସରେ ସୁଶୋଭନ ।
ସମସ୍ତ ଶୋଭା ନେଇ ମନ
ଏ ଜନଙ୍କର ଅଟେ ସ୍ଥାନ ।
ଏମନ୍ତ ଯେଉଁ ରଘୁନାଥ
ତାହାଙ୍କ ପୂର୍ଣ୍ଣ ମନୋରଥ ।
ହୋଇ ସେ ପୁରବାସୀମାନେ
ସମସ୍ତେ ଦେଖନ୍ତି ନୟନେ ।
ଶନ୍ତିଲେ ସେ ପୁଣି ସମସ୍ତେ
ରାମଙ୍କୁ ଦେଖିଲଇଁ ନେତ୍ରେ ।
ଏମନ୍ତ ବୋଲି ହୃଷ୍ଟ ହେଲେ
ଆନନ୍ଦ ସାଗରେ ବୁଡ଼ିଲେ ।
କରୁଣା ନେତ୍ରେ ରଘୁସ୍ୱାମି
ସମସ୍ତ ପ୍ରଜାଙ୍କୁ ଅନାଇ ।
ଅଳପ ହସ ହସ ହୋଇ
ସେ ମନ୍ଦ ମନ୍ଦ ହୋଇ ଯାଇଁ ।
ଇନ୍ଦ୍ର ଅମରାବତୀ ଯେସନ୍ତେ
ମଣ୍ଡିତ ହୋଇଅଛି ତେସନ୍ତେ ।
ଏମନ୍ତ ପିତୃ ନଗରରେ
ପ୍ରବେଶ ହୋଇ ହରଷରେ ।
କଉଶଲ୍ୟାଙ୍କ ପାଦେ ରାମ
ବନ୍ଦନ କରନ୍ତେ ପ୍ରଣାମ ।
ସବୁ ମାତାଙ୍କ ଚରଣରେ
ପ୍ରଣାମ କରଣ ସମରେ ।

ଏହିଁ କଥାରେ ସୀତାକାନ୍ତ
ବୋଇଲେ ହେ ବତ୍ସ ଭରତ ।
ସକଳ ସମ୍ପଦରେ ପୂର୍ଣ୍ଣ
କରଣ ଉତ୍ତମ ସଦନ ।
ସୁଗ୍ରୀବ ରହିବାର ପାଇଁ
ବହନ ଦେବା ହେଉ ଯାଇଁ ।
ବିଭୀଷଣାଦ ସମସ୍ତଙ୍କୁ
ଦଅଅ ସୁଖେ ରହିବାକୁ ।
ଭରତ ହୋଇଣ ହରଷ
ସବୁଙ୍କୁ ଦେଲେ ଦିବ୍ୟ ବାସ ।
ସୁଗ୍ରୀବଙ୍କୁ ପୁଣି ଭରତ
ବୋଇଲେ ଅହେ ରମାକାନ୍ତ ।
ହେବାକୁ ରାମ ଅଭିଷେକ
ଚାରି ସାଗରରୁ ଉଦକ ।
ଆଣିମା ନିମନ୍ତେ ବହନ
ପ୍ରାକର୍ମବନ୍ତ ଦୂତମାନ
ବଡ଼ ବେଗେ ଅନୁଜ୍ଞା ଦେଇ
ଦେବାକୁ ହେଉ ପଠିଆଇ ।
ସୁଗ୍ରୀବ ଶୁଣି ସେହିକ୍ଷଣ
ମାରୁତ ଅଙ୍ଗଦ ସୁଷେଣ ।
ଜାମ୍ବବନ୍ତଙ୍କୁ ଆଜ୍ଞା ଦେଇ
ଚାରିକି ଦେଲେ ପଠିଆଇ ।
ପବନ ତୁଲ୍ୟେ ଯାଇ ଖରେ
ସୁବର୍ଣ୍ଣ କଳସ ମାନରେ ।
ଚାରି ସମୁଦ୍ର ଜଳମାନ
ଘେନି ସେ ମିଳିଲେ ବହନ
ଶତ୍ରୁଘ୍ନ ଏଥୁ ଅନନ୍ତରେ
ସମସ୍ତ ମନ୍ତ୍ରୀଙ୍କ ତୁଲରେ ।
ସେ ଚାରି ପାରିବାର ନୀର
ସମସ୍ତ ତୀର୍ଥ ମାନଙ୍କର ।
ଉଦକ ଘେନାଇ ସଙ୍ଗତେ
ରାମ ଅଭିଷେକ ନିମନ୍ତେ ।
ତା ବଶିଷ୍ଠଙ୍କ ଆଗେ ଦେଲେ
ସେ ଆଉ ବ୍ରାହ୍ମଣଙ୍କ ତୁଲେ ।
ରାମଙ୍କୁ ସୀତା ସହିତରେ
ବସାଇ ସୁବର୍ଣ୍ଣ ପୀଠରେ ।
ବଶିଷ୍ଠ ଗୌତମ ଜାବାଳି
ବାଲ୍ମୀକି ବାମଦେବ ମିଳି ।
ବୈଶାଖ ଶୁକ୍ଳ ପକ୍ଷରେ
ପୁଷ୍ୟା ନକ୍ଷତ୍ର ସପ୍ତମୀରେ ।
କୁଶାଗ୍ର ତୁଳସୀ ମିହିତ
ଅଛିଦ୍ର ଅତ୍ୟନ୍ତ ପବିତ୍ର ।
ଏମନ୍ତ ସୁଗନ୍ଧ ନୀରରେ
ପରମ ହରଷ ମନରେ ।
ଇନ୍ଦ୍ରଙ୍କୁ ବସୁମାନେ ଯେହ୍ନେ
ଜାନକୀ ସହିତରେ ତେହ୍ନେ ।
ଅନନ୍ଦେ ହୋଇଣ ଉତ୍ସୁକ
ରାମଙ୍କୁ କଲେ ଅଭିଷେକ ।
ଋତ୍ୱିକ ବ୍ରାହ୍ମଣ ନିକରେ
ମନ୍ତ୍ରୀମାନଙ୍କ ସହିତରେ ।
ଆକାଶେ ଦେବତା ସକଳେ
ପ୍ରଧାନ ଚାରି ଲୋକପାଳେ ।
ତପସ୍ୱୀ ସମସ୍ତ ପବନ
ସକଳେ ମିଳିଣ ବହନ ।
ତୀର୍ଥଜଳ ସେ କଳସରେ
ସିଞ୍ଚିଲେ ଶ୍ରୀରାମର ଶିରେ ।
ଅନନ୍ଦ ସନ୍ଦୋହେ ବହନ
ଛତ୍ର ଧରିଲେ ଶତ୍ରୁଘନ ।
ସୁଗ୍ରୀବ ବିଭୀଷଣ ଦୁହେଁ
ଗହିଲେ ଚାମର ଯୋଡ଼ିଏ ।

ପବନ ଏମନ୍ତ ସମୟେ
ବିଚିତ୍ର ରତ୍ନ ମାଳଟିଏ ।
ଇନ୍ଦ୍ରଙ୍କଠାରୁ ଆଣି ବେଗେ
ଦେଲେ ଶ୍ରୀରାମଚନ୍ଦ୍ର ଅଙ୍ଗେ ।
ମଣି ମୁକ୍ତାରେ ସଂଯୁତ
ସମସ୍ତ ରତ୍ନରେ ଜଡ଼ିତ ।
ଏମନ୍ତ ମାଳଟିଏ ପୁଣ
ମହେନ୍ଦ୍ର ଆଣିଲେ ଆପଣ ।
ଅତି ଭକ୍ତିରେ ଯୁତ ହୋଇ
ଦେଲେ ଶ୍ରୀରାମ କଣ୍ଠେନେଇ ।
ଗନ୍ଧର୍ବ ଦେବବୃନ୍ଦମାନେ
ଗାୟନ କଲେ ତୋଷ ମନେ ।
ଅପସରାଏ ନୃତ୍ୟ କଲେ
ଦେବେ ଦୁନ୍ଦୁଭି ବଜାଇଲେ ।
ଆକାଶୁଁ ହେଲା ପୁଷ୍ପବୃଷ୍ଟି
ଆନନ୍ଦମୟ ହେଲା ସୃଷ୍ଟି ।
ନବୀନ ଦୁର୍ବାଦଳ ଶ୍ୟାମ
ଲାବଣ୍ୟ ନିନ୍ଦେ କୋଟିକାମ ।
ପଙ୍କଜ ପଲ୍ଲବ ପ୍ରକାର
ନୟନ ବିଶାଳ ରୁଚିର ।
କୋଟିଏ ସୂର୍ଯ୍ୟ ପ୍ରାୟେ ତେଜ
ସ୍ଥୂଳ ଲମ୍ବେ ବେନି ଭୁଜ ।
ଶରଦ ପୂର୍ଣ୍ଣ ସୁଧାକର
ପରାଏ ଆନନ ରୁଚିର ।
ପୀତବସନ କଟିତଟେ
ମସ୍ତକ ବିରାଜେ ମୁକୁଟେ ।
କର୍ଣ୍ଣରେ ମକର କୁଣ୍ଡଳ
ହୃଦେ ବିବିଧ ରତ୍ନମାଳ ।
ଭୁଜରେ କଙ୍କଣ କେୟୂର
ଚରଣ ଯୁଗରେ ନୂପୁର

କର୍ପୂର କୁଙ୍କୁମ ଚନ୍ଦନ
ଶ୍ରୀଅଙ୍ଗେ ହୋଇଛି ଲେପନ ।
ଏମନ୍ତ ରାମ ବାମଭାଗେ
ଜାନୁ ଉପରେ ଅନୁରାଗେ ।
ଶରୀରେ ମଣି ବସିଛନ୍ତି
କୁନ୍ଦନ ସୁନା ପ୍ରାୟେ କାନ୍ତି ।
ସମସ୍ତ ଅଙ୍ଗେ ଅଳଙ୍କାର
ଥିବାରେ ପୂରିଛି ଶରୀର ।
ରକ୍ତପଙ୍କଜ ଯୋଡ଼କରେ
ଯୁତ ଅଛନ୍ତି ବେନି କରେ ।
ବାମ ବାହୁରେ ବଳୁପ୍ତ
ଅଶ୍ଳେଷ କରଣ ଅଛନ୍ତି ।
ସୃଷ୍ଟିରେ ଅଛି ଯେତେ ଶୋଭା
ତହୁଁ ଅଧିକ ଯାହା ପ୍ରଭା ।
ଏମନ୍ତ ସୀତା ସହିତରେ
ରାମଙ୍କୁ ଦେଖି ହରଷରେ ।
ପାର୍ବତୀ ତୁଲେ ମହେଶ୍ୱର
ଭକ୍ତିରେ ଯୋଡ଼ି ବେନିକର
ସମସ୍ତ ଦେବତାଙ୍କ ତୁଲେ
ରାମଚନ୍ଦ୍ରଙ୍କୁ ସ୍ତୁତି କଲେ ।

### ଶ୍ରୀମହାଦେବ ଉବାଚ

ନୀଳ ଉତ୍ପଳ ପ୍ରାୟେ ଶ୍ୟାମ
ଲାବଣ୍ୟ ନିନ୍ଦେ କୋଟିକାମ ।
ଶକ୍ତରେ ଦଶନ୍ତ ଶୋଭନ
ତଡ଼ିତେ ଯେସନେ ନବଘନ ।
କିରୀଟ କଙ୍କଣ ନୂପୁର
ମୁକ୍ତା ମାଳେ ମନୋହର ।
ସିଂହାସନରେ ବସିଛନ୍ତି
ବଡ଼ ପ୍ରସନ୍ନ ଅଛନ୍ତି ।

ଏମନ୍ତ ଯେଉଁ ରଘୁବୀର
ତାଙ୍କୁ କରୁଛି ନମସ୍କାର ।
ଅଦ୍ୟ ମଧ୍ୟ ପ୍ରାନ୍ତ ତୋହର
ଏ ତତ୍ତ୍ୱକଥା ନାହିଁ ବୀର ।
ଅପଣା ମାୟାରେ ଜଗତ
କରୁଛ ଏକା ହୋଇ ଜାତ ।
ତା ପର ପାଳନା ସଂହାର
କରିବା ହେଉଅଛ ବୀର ।
ଏମନ୍ତ ସଂସାର ଯେ ତହିଁ
ଅପଣ ଲାଗିବା ନୁହଇ ।
ଅସ୍ୱାନନ୍ଦରେ ପରିପୂର୍ଣ୍ଣ
ହୋଇଛ ଶ୍ରୀରଘୁନନ୍ଦନ ।
ପ୍ରପନ୍ନ ହୁଅନ୍ତି ଯେଉଁ ଭକ୍ତେ
ତାଙ୍କର କାର୍ଯ୍ୟର ନିମନ୍ତେ ।
ଦେବତା ନରଠାରେ ବୀର
ଏ ଯେଉଁ ଲୀଳା ଅବତାର ।
ସଂଯୁତ ହୋଇ ତେଣୁକରି
ଲୀଳା କରୁଛ ରାବଣାରି ।
ଏମନ୍ତ ରୂପେ ସୀତାପତି
ତୁମ୍ଭଙ୍କୁ ପଣ୍ଡିତେ ଜାଣନ୍ତି ।
ଅପଣା ମାୟାରେ ଜଗତ
ବିଧାନ କରି ଏ ସମସ୍ତ ।
ପାତାଳେ ଅନନ୍ତ ରୂପରେ
ଧରିଛ ଅପଣା ଶରୀରେ ।
ଉପରେ ବାତ ଚନ୍ଦ୍ର ବୃଷ୍ଟି
ଔଷଧିରୂପେ ରଖ ସୃଷ୍ଟି ।
ଅପଣ ପ୍ରାଣୀଙ୍କ ହୃଦରେ
ରହି ଅନଳ ସ୍ୱରୂପରେ ।
ସେ ଖାଉଅଛନ୍ତି ଯେତେକ
ତୁମ୍ଭେ କରୁଛ ତାହା ପାକ ।

ପଞ୍ଚ ପ୍ରାଣର ସାହା ହୋଇ
ରକ୍ଷା କରୁଛ ଜଗତହିଁ ।
ଅନଳ ସୁଧାକର ସୂର୍ଯ୍ୟ
ଏଥିରେ ଅଛି ଯେଉଁ ତେଜ ।
ସମସ୍ତ ଦେହୀମାନଠାଇଁ
ଯେ ଜ୍ଞାନ ଅଛି ରଘୁସାଇଁ ।
ପ୍ରାଣ ସେ ଦେହୀମାନଙ୍କର
ଧାରଣ ଅଛି ଯେତୁ ବୀର ।
ତାଙ୍କର ଅପୂର୍ବ ଧୈର୍ଯ୍ୟ
ଯାହାର ଯେତେକ ଶୌର୍ଯ୍ୟ ।
ଏତେକଯାକ ରଘୁପତି
ନିଶ୍ଚୟେ ସବୁ ତୁମ୍ଭ ଶକ୍ତି ।
ବିରଞ୍ଚି ବିଷ୍ଣୁ ବୃଷଧ୍ୱଜ
ଚନ୍ଦ୍ରମା କାଳ କର୍ମ ସୂର୍ଯ୍ୟ ।
ଏରୂପମାନରେ ସମସ୍ତେ
ବୋଲନ୍ତି ଭିନ୍ନ ଭିନ୍ନ ତୋତେ ।
ତୁ ଏକବ୍ରହ୍ମ ହୋଇ ଦୃଶ୍ୟ
ଜ୍ଞାନୀଙ୍କି ହୁଅ ପରକାଶ ।
ତୁ ଏକ ନିଶ୍ଚେ ରାବଣାରି
ମତ୍ସ୍ୟାଦିରୂପେ ଭେଦକରି ।
ଅପଣ ବେଦ ପୁରାଣରେ
ପ୍ରସିଦ୍ଧ ଯେମନ୍ତ ଲୋକରେ ।
ସେରୂପେ ତୁ ଜଗତଯାକ
ହୋଇଥିଲୁ ଭଲ ଯେତେକ ।
ଯେ ହେଉଅଛି ବର୍ତ୍ତମାନ
ଉପର ହେବ ଯେଉଁମାନ ।
ଏତେକ ତୋ ବିନୁ ଗୋସାଇଁ
କିଛି ତ ଆନ ବସ୍ତୁ ନାହିଁ ।
ମୋହିତ ହୋଇ ତୋ ମାୟାରେ
ସଂସାରେ ଛନ୍ତି ଯେଉଁ ନରେ ।

ପରମାତ୍ମା ତୁ ରଘୂପତି
ସେ ତୁମ୍ଭ ତତ୍ତ୍ୱ ନ ଜାଣନ୍ତି ।
ତୁମ୍ଭର ଭକ୍ତ ଯେଉଁ ଜନ
ତାଙ୍କ ସେବାରେ ଯାହା ମନ ।
ନିର୍ମଳ ହୋଇଥାଇ ଜୀବ
ଜାଣଇ ସେ ତତ୍ତ୍ୱ ତୁମ୍ଭର ।
ଚୈତନ୍ୟ ରୂପ ତୋ ରାଘବ
ନ ଜାଣନ୍ତି ବ୍ରହ୍ମାଦି ଶିବ ।
ଏଣୁ ପଣ୍ଡିତ ଯେଉଁ ନର
ସେ ସେବେ ଏରୂପ ତୁମ୍ଭର ।
ଭକତି ଭାବରେ ଭଜନ୍ତି
ସୁଖରେ ମୁକତି ଲଭନ୍ତି ।
ଗାୟନ କର ତୁମ୍ଭ ନାମ
କୃତାର୍ଥ ହୋଇ ହେ ଶ୍ରୀରାମ ।
ଆନନ୍ଦେ ଉମା ତୁଲେ ହୋଇ
କାଶୀରେ ମୁଁ ସନ୍ତତ ଥାଇ ।
ସେ କ୍ଷେତ୍ରବରେ ଯେଉଁ ଜୀବ
ଶରୀର ତେଜଇ ରାଘବ ।
ତୁମ୍ଭର ନାମ ତା କର୍ଣ୍ଣରେ
କହଇ ମୁଁ ମନ୍ତ୍ର ରୂପରେ ।
ଯେ ଅତି ଭକ୍ତିରେ ଏ ସ୍ତବ
ପଢ଼ିବ ଶୁଣିବ ଲେଖିବ ।
ସବୁ ପରମ ସୁଖ ପାଇ
ସେ ତୁମ୍ଭ ପ୍ରସାଦେ ଗୋସାଇଁ ।
ସେ ତୁମ୍ଭ ଦିବ୍ୟପଦ ପାଇ
ଅନ୍ୟଥା ଏ କଥାରେ ନୋହୁ ।
ପୁଣି ସେ କ୍ଷଣରେ ମହେନ୍ଦ୍ର
ବୋଇଲେ ଅହେ ରାମଚନ୍ଦ୍ର ।

ଇନ୍ଦ୍ର ଉବାଚ

ବ୍ରହ୍ମାଙ୍କ ବରରେ ରାବଣ
ଅତ୍ୟନ୍ତ ପ୍ରବଳ ହୋଇଣ ।
ସମସ୍ତ ସୁରମାନ ମୋର
ହର ସେ ଥିଲା ବଳତ୍କାର ।
ତାହାକୁ କରଣ ସଂହାର
ସବୁ ସୁଖକୁ ଦେଲ ମୋର ।
ଏହି କ୍ଷଣରେ ସବୁ ସୁରେ
ବୋଇଲେ ହେ ରାମ ମୁଖରେ ।

ଦେବା ଊଚୁଃ

ବ୍ରାହ୍ମଣଗଣେ କର ଯାଗ
ଯେତେବେଳରେ ହବିର୍ଭାଗ ।
ଦିଅନ୍ତି ସେହୁ ଯେଉଁ କାଳେ
ରାବଣ ଖାଅଇ ତା ବଳେ ।
ଆପଣ ତାକୁ ନାଶ କଲ
ହବିର୍ଭାଗମାନ ଏ ବେଳ ।
ପୂର୍ବ ପ୍ରାପ୍ତ କର ସଭେଁ
ପାଇବୁ ତୁମ୍ଭ ଅନୁଗ୍ରହେ ।
ସମସ୍ତ ପିତୃଲୋକେ ଆସି
କହିଲେ ଶ୍ରୀରାମଙ୍କୁ ହସି ।

ପିତର ଊଚୁଃ

ସେ ଯେଉଁ ରାକ୍ଷସର ପ୍ରାଣ
ହରିବା ହୋଇଲା ଆପଣ ।
ଆମ୍ଭଙ୍କ ଗୟାଦି ସ୍ଥାନରେ
ପିଣ୍ଡ ଦିଅନ୍ତି ଯେଉଁ ନରେ ।
ମାରି ଅମ୍ଭଙ୍କୁ ଦଶାନନ
ବଳେ ତା କରଇ ଭୋଜନ ।
ସେ ପିଣ୍ଡ ପୂର୍ବେ ପ୍ରାପ୍ତ କରି
ଏବେ ଭୁଞ୍ଜିବୁ ସବଣାଇ ।

ଏମନ୍ତ ଯେଉଁ ରଘୁବୀର
ତାଙ୍କୁ କରୁଛ ନମସ୍କାର ।
ଆଦ୍ୟ ମଧ୍ୟ ପ୍ରାନ୍ତ ତୋହର
ଏ ତତ୍ତ୍ୱକଥା ନାହିଁ ବୀର ।
ଆପଣା ମାୟାରେ ଜଗତ
କରୁଛ ଏକା ହୋଇ ଜାତ ।
ତା ପର ପାଳନା ସଂହାର
କରିବା ହେଉଅଛ ବୀର ।
ଏମନ୍ତ ସଂସାର ଯେ ତହିଁ
ଆପଣ ଲଗିବା କୁହଇ ।
ଆତ୍ମାନନ୍ଦରେ ପରିପୂର୍ଣ୍ଣ
ହୋଇଛ ଶ୍ରୀରଘୁନନ୍ଦନ ।
ପ୍ରପନ୍ନ ହୁଅନ୍ତି ଯେଉଁ ଭକ୍ତେ
ତାଙ୍କର କାର୍ଯ୍ୟର ନିମନ୍ତେ ।
ଦେବତା ନରଠାରେ ବୀର
ଏ ଯେଉଁ ଲୀଳା ଅବତାର ।
ସଂଯୁତ ହୋଇ ତେଣୁକରି
ଲୀଳା କରୁଛ ରାବଣାରି ।
ଏମନ୍ତ ରୂପେ ସୀତାପତି
ତୁମ୍ଭଙ୍କୁ ପଣ୍ଡିତେ ଜାଣନ୍ତି ।
ଆପଣା ମାୟାରେ ଜଗତ
ବିଧାନ କରି ଏ ସମସ୍ତ ।
ପାତାଳେ ଅନନ୍ତ ରୂପରେ
ଧରିଛ ଆପଣା ଶରୀରେ ।
ଉପରେ ବାତ ଚନ୍ଦ୍ର ବୃଷ୍ଟି
ଔଷଧିରୂପେ ରଖ ସୃଷ୍ଟି ।
ଆପଣ ପ୍ରାଣୀଙ୍କ ହୃଦରେ
ରହି ଅନଳ ସ୍ୱରୂପରେ ।
ସେ ଖାଉଅଛନ୍ତି ଯେତେକ
ତୁମ୍ଭେ କରୁଛ ତାହା ପାକ ।

ପଞ୍ଚ ପ୍ରାଣର ସାହା ହୋଇ
ରକ୍ଷା କରୁଛ ଜଗତହିଁ ।
ଅନଳ ସୁଧାକର ସୂର୍ଯ୍ୟ
ଏଥିରେ ଅଛି ଯେଉଁ ତେଜ ।
ସମସ୍ତ ଦେହୀମାନଠାଇଁ
ଯେ ଜ୍ଞାନ ଅଛି ରଘୁସାଇଁ ।
ପ୍ରାଣ ସେ ଦେହୀମାନଙ୍କର
ଧାରଣ ଅଛି ଯେତେ ବୀର ।
ତାଙ୍କର ଅପୂର୍ବ ଧଇର୍ଯ୍ୟ
ଯାହାର ଯେତେକ ଶଉର୍ଯ୍ୟ ।
ଏତେକଯାକ ରଘୁପତି
ନିଶ୍ଚୟେ ସବୁ ତୁମ୍ଭ ଶକ୍ତି ।
ବରଷ ବସ୍ତୁ ବୃଷଧ୍ୱଜ
ଚନ୍ଦ୍ରମା କାଳ କର୍ମ ସୂର୍ଯ୍ୟ ।
ଏରୂପମାନରେ ସମସ୍ତେ
ବୋଲନ୍ତି ଭିନ୍ନ ଭିନ୍ନ ତୋତେ ।
ତୁ ଏକବ୍ରହ୍ମ ହୋଇ ଦୃଶ୍ୟ
ଜୀବଙ୍କି ହୁଅ ପରକାଶ ।
ତୁ ଏକ ନିଶ୍ଚେ ରାବଣାରି
ମସ୍ତ୍ୟାଦିରୂପେ ଭେଦକରି ।
ଆପଣ ନବେଦ ପୁରାଣରେ
ପ୍ରସିଦ୍ଧ ଯେମନ୍ତ ପ୍ରକାରେ ।
ସେରୂପେ ତୁ ଜଗତଯାକ
ହୋଇଥିଲୁ ତଳ ଯେତେକ ।
ଯେ ହେଉଅଛି ବର୍ତ୍ତମାନ
ଉପରେ ହେବ ଯେଉଁମାନ ।
ଏତେକ ତୋ ବିନୁ ଗୋସାଇଁ
କିଛି ତ ଆନ ଦିଶୁ ନାହିଁ ।
ମୋହିତ ହୋଇ ତୋ ମାୟାରେ
ସଂସାରେ ଛନ୍ତି ଯେଉଁ ନରେ ।

ପରମାତ୍ମା ତୁ ରଘୂତ୍ତମ
ସେ ତୁମ୍ଭ ତତ୍ତ୍ୱ ନ ଜାଣନ୍ତି ।
ତୁମ୍ଭର ଭକ୍ତ ଯେଉଁ ଜନ
ତାଙ୍କ ସେବାରେ ଯାହା ମନ ।
ନିର୍ମଳ ହୋଇଥାଇ ଧୀର
ଜାଣଇ ସେ ତତ୍ତ୍ୱ ତୁମ୍ଭର ।
ଚୈତନ୍ୟ ରୂପ ତୋ ରାଘବ
ନ ଜାଣନ୍ତି ବ୍ରହ୍ମାଦି ଶିବ ।
ଏଣୁ ପଣ୍ଡିତ ଯେଉଁ ନର
ସେ ସେବି ଏରୂପ ତୁମ୍ଭର ।
ଭକତି ଭାବରେ ଭଜନ୍ତି
ସୁଖରେ ମୁକତି ଲଭନ୍ତି ।
ଗାୟନ କରି ତୁମ୍ଭ ନାମ
କୃତାର୍ଥ ହୋଇ ହେ ଶ୍ରୀରାମ ।
ଅନନ୍ତେ ଉମା ତୁଲେ ହୋଇ
କାଶୀରେ ମୁଁ ସନ୍ତତ ଥାଇ ।
ସେ କ୍ଷେତ୍ରବରେ ଯେଉଁ ଜୀବ
ଶରୀର ତେଜଇ ରାଘବ ।
ତୁମ୍ଭର ନାମ ତା କର୍ଣ୍ଣରେ
କହଇ ମୁଁ ମନ୍ତ୍ର ରୂପରେ ।
ଯେ ଅତି ଭକ୍ତିରେ ଏ ସ୍ତବ
ପଢ଼ିବ ଶୁଣିବ ଲେଖିବ ।
ସବୁ ପରମ ସୁଖ ପାଇ
ସେ ତୁମ୍ଭ ପ୍ରସାଦେ ଗୋସାଇଁ ।
ସେ ତୁମ୍ଭ ଦିବ୍ୟପଦ ପାଇ
ଅନ୍ୟଥା ଏ କଥାରେ ନୋହି ।
ପୁଣି ସେ କାଳରେ ମହେନ୍ଦ୍ର
ବୋଇଲେ ଅହେ ରାମଚନ୍ଦ୍ର ।

ଇନ୍ଦ୍ର ଉବାଚ

ବ୍ରହ୍ମାଙ୍କ ବରରେ ରାବଣ
ଅତ୍ୟନ୍ତ ପ୍ରବଳ ହୋଇଣ ।
ସମସ୍ତ ସୁରମାନ ମୋର
ହର ସେ ଥିଲା ରଘୁବୀର ।
ତାହାକୁ କରିଣ ସଂହାର
ସବୁ ସୁଖକୁ ଦେଲ ମୋର ।
ଏହି କାଳରେ ସବୁ ସୁରେ
ବୋଇଲେ ହେ ରାମ ମୁଖରେ ।

ଦେବା ଊଚୁଃ

ବ୍ରାହ୍ମଣଗଣେ କରି ଯାଗ
ଯେତେବେଳରେ ହବିର୍ଭାଗ ।
ଦିଅନ୍ତି ସେତୁ ଯେଉଁ କାଳେ
ରାବଣ ନିଅଇ ତା ବଳେ ।
ଆପଣ ତାକୁ ନାଶ କଲ
ହବିର୍ଭାଗମାନ ଏ ବେଳ ।
ପୂର୍ବ ପ୍ରାପ୍ତ କରି ସର୍ବେ
ପାଇବୁ ତୁମ୍ଭ ଅନୁଗ୍ରହେ ।
ସମସ୍ତ ପିତୃଲୋକେ ଅପି
କହିଲେ ଶ୍ରୀରାମଙ୍କୁ ହସି ।

ପିତର ଊଚୁଃ

ସେ ଯେଉଁ ରାକ୍ଷସର ପ୍ରାଣ
ହରତା ହୋଇଲ ଆପଣ ।
ଅସ୍ମଙ୍କ ଗୟାଦି ସ୍ଥାନରେ
ପିଣ୍ଡ ଦିଅନ୍ତି ଯେଉଁ ନରେ ।
ମାରି ଅସ୍ମଙ୍କୁ ଦଶାନନ
ବଳେ ତା କରଇ ଭୋଜନ ।
ସେ ପିଣ୍ଡ ପୂର୍ବ ପ୍ରାପ୍ତ କରି
ଏବେ ଭୁଞ୍ଜିବୁ ରାବଣାରି ।

ରାମଙ୍କୁ ଯକ୍ଷମାନେ ସ୍ତୁତି
କହିଲେ କୃତାଞ୍ଜଳି ହୋଇ ।
ସମସ୍ତ କାଳେ ଲଙ୍କପାଇଁ
ଅମ୍ଭମାନଙ୍କୁ ବଳେ ନେଇ ।
ସ୍ୱାର୍ଥ କର୍ମମାନଙ୍କରେ
ସଂଯୁକ୍ତ କରେ ନିରନ୍ତରେ ।
ଅମ୍ଭେ ବହୁତ ଦୁଃଖୀ ହୋଇ
ତାହାକୁ ବହୁ ବଢୁପାଇଁ ।
ଆପଣ ନାଶକରି ତାଙ୍କୁ
ସେ ଦୁଃଖୁ ରଖିଲ ଅମ୍ଭଙ୍କୁ ।
ଯକ୍ଷେ ଏଥୁ ଅନନ୍ତରେ
କହିଲେ ଶ୍ରୀରାମ ଅଗ୍ରରେ ।
ଅମ୍ଭେ ଯେ ସମସ୍ତ କାଳରେ
ନିପୁଣ ସଙ୍ଗୀତ ବିଦ୍ୟାରେ ।
ତୁମ୍ଭର କଥାମୃତମାନ
ଗାୟନ କରୁ ପ୍ରତିଦିନ ।
ଆନନ୍ଦାମୃତେ ହୋଇ ସିକ୍ତ
ସମ୍ପୂର୍ଣ୍ଣ କାମ ହୋଇ ନିତ୍ୟ ।
ପୂର୍ବ କାଳରେ ଥିଲୁ ଯାର
ଏବେ ଦୁରାତ୍ମା ଦଶଶିର ।
ଅମ୍ଭମାନଙ୍କୁ ହେ ରାଘବ
ସେ ଯତ୍ନ କରେ ପରାଭବ ।
ତା ଗୁଣ ନିରନ୍ତରେ ଗାଇ
ତାହାକୁ ପୂଜା କରୁଥାଉ ।
ସେ ଦୁଷ୍ଟ ରାକ୍ଷସକୁ ହତ
କରି ଏବେ ହେ ସୀତାକାନ୍ତ ।
ସେ ଦୁଃଖମାନରୁ ଅମ୍ଭଙ୍କୁ
ହୋଇଲ ରକ୍ଷା କରିବାକୁ ।
ଏରୂପେ ପବନ ଗଗନେ
କଳରେ ଅଷ୍ଟବସୁମାନେ ।

ସବୁ ପବନ ମଧ୍ୟ ହୋଇ
ଗୃହ୍ୟକ ମୁନି ସିଦ୍ଧ ଯାଇ ।
ପକ୍ଷୀ ପ୍ରଜାପତି ସହିତେ
ଅପ୍ସରାମାନେ ଏ ସମସ୍ତେ ।
ନେଇବ ଅଟେ ମହୋତ୍ସବ
ଏମନ୍ତ ରୂପ ସେ ରାଘବ ।
ତାଙ୍କ ସ୍ତୁତିରେ ତୁଷ୍ଟ ହୋଇ
ସମସ୍ତେ ଶିରେ କରଦେଇ ।
ଅଶ୍ରୁ ପୁଲକମାନ ଧରି
କଣ କଣକେ ସ୍ତୁତିକରି ।
ରାମଠାରୁ ସତ୍କାର ପାଇ
ଅତିଅନ୍ତ ହରଷ ହୋଇ ।
ହୃଦରେ ଧ୍ୟାନକରି ତାଙ୍କୁ
ଗଲେ ସେ ସେ ଯାହା ସ୍ଥାନକୁ ।
ଦୁନ୍ଦୁଭିମାନ ଆକାଶରେ
ଶବ୍ଦ ଯେ ଅଛି ନିରନ୍ତରେ ।
ସବୁ ଦେବତାମାନେ ସ୍ତୁତି
ହରଷ ହୋଇ କରୁଛନ୍ତି ।
ଅନନ୍ଦ ହୋଇଅଛି ସୃଷ୍ଟି
କୁସୁମ ହେଉଅଛି ବୃଷ୍ଟି ।
ସମସ୍ତ ଦେବ ମୁନିମାନେ
ସ୍ତୁତି କରନ୍ତି ତୋଷ ମନେ ।
ମର୍କତ ପ୍ରାୟେ ଦେହବର୍ଣ୍ଣ
ହୋଇ ଅଛନ୍ତି ସୁପ୍ରସନ୍ନ ।
ମନ୍ଦହାସରେ ମନୋହର
ହୋଇଅଛି ମୁଖପଦ୍ମ ଯାର ।
ତେଜ ହୋଇଛି ଅତିଅନ୍ତ
କେମନ୍ତ କେଟିଏ ଅଦିତ୍ୟ ।
ଜାନକୀ ଲକ୍ଷ୍ମଣ ମାରୁତ ।
ମୁନି ନିକଟରେ ପାଶେ ଛନ୍ତି

ଏମନ୍ତ ଯେଉଁ ରଘୁପତି
ସେ ଅତି ଶୋଭା ପାଉଛନ୍ତି ।
ସୀତା ସହିତେ ରାମ ପାଦ
ନାଶି ହଳଧର ବିପଦ ।
ଯେ ତବ ନାମ ହୃଦେ ଧରେ
ବିପଦ ନ ପଡ଼ଇ ତାରେ ।
ହେଉ ସେ ପରମ ସମ୍ପଦ
ଦୂରଣ ଉନଅଣୀ ପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ପଞ୍ଚଦଶୋଽଧ୍ୟାୟଃ ।

---

## ଷୋଡ଼ଶ ଅଧ୍ୟାୟ

### ଶ୍ରୀମହାଦେବ ଉବାଚ

ଶର୍ବ ସର୍ବମଙ୍ଗଳା ଆଗେ
ପୁଣି କହିଲେ ଅନୁରାଗେ ।
ସମସ୍ତ ଲୋକର ଆନନ୍ଦ
ଦିଅନ୍ତି ଯେଉଁ ରାମଚନ୍ଦ୍ର ।
ହୁଅନ୍ତେ ସେହୁ ଅଭିଷେକ
ଶସ୍ୟେ ପୂରିଲା ପୃଥ୍ୱୀଯାକ ।
ଫଳ ମାନଙ୍କରେ ସମ୍ପୂର୍ଣ୍ଣ
ହୋଇଲା ସର୍ବ ବୃକ୍ଷମାନ ।
ବାସ ନଥିଲା ଯେଉଁ ଫୁଲେ
ସେ ପୁଷ୍ପେ ସୁଗନ୍ଧ ହୋଇଲେ ।
ଅତି ଉତ୍ତମ ଲକ୍ଷେ ଅଶ୍ୱ
ଦିବ୍ୟ ଧେନୁ ଶଏ ସହସ୍ର ।
ଶଏ ବୃଷଭ ଏ ଯୋଗାଇ
ଦଶ ସହସ୍ର ବ ଷ୍ଠୀ ମଣ୍ଡି ।
ତିରିଶ କୋଟି ଯେ ସୁବର୍ଣ୍ଣ
ବସନ ରତ୍ନ ଆଭରଣ ।
ଅନେକ ଶ୍ରୀ ରଘୁନନ୍ଦନ
ହରଷ ହୋଇ କଲେ ଦାନ
ଅଦଭୁତ କାନ୍ତି ମଣି ପ୍ରାୟ
ଅତ୍ୟନ୍ତ ତେଜ ରତ୍ନମୟ ।
ମାଳା ଗୋଟିଏ ଏ ପ୍ରକାରେ
ଦେଲେ ସୁଗ୍ରୀବଙ୍କୁ ପ୍ରୀତିରେ ।
ଅଙ୍ଗଦ ଯୋଡ଼ିଏ ସ୍ନେହରେ
ଦେଲେ ଅଙ୍ଗଦ ବେନି କରେ ।
ଦଶୁଛି ଯେହ୍ନେ ଚନ୍ଦ୍ରକର
ମଣି ରତ୍ନରେ ମନୋହର ।
ଏରୂପେ ମୁକ୍ତାମାଳାଟିଏ
ସୀତାଙ୍କୁ ଦେଲେ ଅତିସ୍ନେହେ ।
ଆପଣା କଣ୍ଠୁ ମଣିସ୍ଥଳୀ
କାଢ଼ିଣ ସେହୁ ମୋତି ମାଳି ।
ଅନାଇ ବାନର ମାନଙ୍କୁ
ପୁଣ ପୁଣ ଚାହିଁ ରାମଙ୍କୁ ।
ଶ୍ରୀରାମ ଜାଣି ସୀତା ମନ
ତାହାଙ୍କୁ କହିଲେ ଏସନ ।
ମନରେ ସନ୍ତୋଷ ଯାହାଙ୍କୁ
ହେଉଛି ବେଗେ ଦିଅ ତାଙ୍କୁ ।
ଏହା ଶୁଣି ସେ ହରଷରେ
ଶ୍ରୀରଘୁନନ୍ଦନ ସମ୍ମୁଖରେ ।
ଜାନକୀ ତାହା ଅନୁରାଗେ
ହନୁମନ୍ତଙ୍କୁ ଦେଲେ ବେଗେ ।

ସେ ମାଳା ହୃଦୟରେ ଧରି
ପ୍ରଭୁର ଗଉରବ କରି
ଆନନ୍ଦ ହୋଇ ହନୁମନ୍ତ
ଶୋଭା ଦିଶିଲେ ଅତିଅନ୍ତ ।
ଅଞ୍ଜଳି କରିଣ ଭକ୍ତିରେ
ମାରୁତି ଅଛନ୍ତି ଛାମୁରେ
ଏମନ୍ତ ଦେଖି ରଘୁନାଥ
ତାଙ୍କ ଭକ୍ତିରେ ହୋଇ ପ୍ରୀତ ।
ବୋଇଲେ ଅହେ ହନୁମାନ
ମୁଁ ତୋତେ ହେଲି ପରସନ୍ନ ।
ମନେ କରିଛ ବାଞ୍ଛା ଯାହା
ମାଗିବା ହେଉ ବେଗେ ତାହା ।
ତାଙ୍କ ବଚନେ କପି ବୀର
ଯେବେ ଦେବତା ମାନଙ୍କର ।
ଦୁର୍ଲ୍ଲଭ ହୋଇବ ସେ ବର
ତେବେ ତୁମ୍ଭଙ୍କ ଦେବ ବୀର ।
ଏମନ୍ତ ଶୁଣି ହନୁମନ୍ତ
ହରଷ ହୋଇ ଅତିଅନ୍ତ ।
ଅଶ୍ରୁ ପୁଲକ ଲୁଳ ଧରି
କହିଲେ ନମସ୍କାର କରି ।
ନାମ ସ୍ମରଣ ଯେ ତୁମ୍ଭର
ଅନୁଭବିତେ କଲେ ବୀର ।
ମୋହର ମନ ତ ଗୋସାଇଁ
କେବେହେଁ ପୂର୍ଣ୍ଣ ହେଉ ନାହିଁ ।
ଏ ଯେଣୁ ତୁମ୍ଭ ନାମ ନିତ୍ୟ
ସୁମରଣା କରି ସନ୍ତତ ।
ଧରଣୀରେ ଥିବି ମୁଁ ବୀର
ଏମନ୍ତ ଅନୁଗ୍ରହ କର ।
ଯେତେଦିନ ହେ ରଘୂତ୍ତମ
ଲୋକରେ ଥିବ ତୁମ୍ଭ ନାମ ।
ତେତେକେ କାଳ ଯାଏ ମୋର
ରହିଣ ଥିବ ଏ ଶରୀର ।
ଏ କଥା ମୋ ବାଞ୍ଛିତ ବର
ଏମନ୍ତ ଶୁଣି ରଘୁବୀର ।
ସେ କଥା ସ୍ୱୀକାର କଲେ
ପୁଣି ତାହାଙ୍କୁ ଆଜ୍ଞା ଦେଲେ ।
ସମସ୍ତ ଠାରୁ ହୋଇ ମୁକ୍ତ
ସୁଖରେ ଥାଅ ହନୁମନ୍ତ ।
କଳ୍ପାନ୍ତେ ପୁଣି କପିବୀର
ସାଯୁଜ୍ୟ ଲଭିବ ମୋହର ।
ତହିଁ ଉତ୍ତାରେ ବଇଦେହୀ
କହିଲେ ମାରୁତଙ୍କୁ ଚାହିଁ ।
ତୁ ଯହିଁ ଥିଲେ ହନୁମାନ
ସମସ୍ତ ସୁଖ ଭୋଗମାନ
ମୋହ ଆଜ୍ଞାରେ ଉପସ୍ଥିତ
ନିଶ୍ଚୟେ ହେବ ହନୁମନ୍ତ ।
ଶ୍ରୀରାମ ଜାନକୀ ବଚନ
ଏ ରୂପେ ଶୁଣି ହନୁମାନ ।
ଆନନ୍ଦ ଲଭିଲେ ଅନେକ
ଲୋଚନୁ ବହୁନ୍ତି ଲୋତକ ।
ସର୍ବାଙ୍ଗେ ପୁଲକ ଧରିଣ
ପ୍ରଣାମ କରି ପୁଣ ପୁଣ
କମ୍ପ କମ୍ପରେ ତେଜି ତାଙ୍କୁ
ସେ ହିମାଳୟ ନିକଟକୁ ।
ତପସ୍ୟା କରିବା ନିମନ୍ତେ
ଗଲେ ରାମଙ୍କୁ ଧରି ଚିତ୍ତେ
ତଦନ୍ତେ ସେ ବୃଦ୍ଧ ଶବର
ଭକତି ଭାବେ ଯୋଡ଼କର ।
ଅଗେ ଯେ ଥିଲେ ଲମ୍ବିହୋଇ
ତାଙ୍କୁ ବୋଇଲେ ରଘୁସାଇଁ ।

ହେ ସଖା ଅପଣା ପୁରକୁ
ହେଜ୍ ମୋ ଅଙ୍କରେ ଯିବାକୁ ।
ହୃଦରେ ମୋତେ କର ଧ୍ୟାନ
କର୍ମ ଅର୍ଜିତ ଭୋଗମାନ ।
ଭୁଞ୍ଜି ନେତ୍ରେ ଭୋଗ କରୁଥିବ
ପ୍ରାନ୍ତେ ମୋ ସ୍ୱରୂପ ଲଭିବ ।
ଏମନ୍ତ କହୁ ତାଙ୍କୁ ପୁଣ
ବହୁତ ଦେଇ ଅଭରଣ
ରାଜ୍ୟ ଶାସନ ତୁଲେ ଦେଲେ
ସ୍ନେହରେ ଆଲିଙ୍ଗନ କଲେ ।
ଶବର ହରଷ ହୋଇଲେ
ଶୃଙ୍ଗବେର ପୁରକୁ ଗଲେ ।
କପିମାନଙ୍କୁ ରହିଁ ପୁଣ
ଦୁର୍ଲ୍ଲଭ ବସ୍ତ୍ର ଅଭରଣ ।
ଅନେକ ଦେଇ ରଘୁସାଇଁ
ପୂଜା ସେ କଲେ ହୃଷ୍ଟ ହୋଇ ।
ସୁଗ୍ରୀବାଦି ଶ୍ରେଷ୍ଠ ମାନଙ୍କୁ
ବିଭୀଷଣ ତୁଲେ ସର୍ବଙ୍କୁ
ପରମାତ୍ମା ଯେ ସୀତାକାନ୍ତ
ଯାହାକୁ ଯେମନ୍ତ ଉଚିତ ।
ସେ ପରକାରେ ପୂଜାକଲେ
ସୁଗ୍ରୀବ କିଷ୍କିନ୍ଧ୍ୟାକୁ ଗଲେ ।
ନିଜ ସ୍ଥାନ ମାନଙ୍କୁ ଖରେ
ଗଲେ ଅତି ଉଷବାନରେ ।
ଲଙ୍କାର କର ରାଜ୍ୟ ପାଇ
ପୂଜିତ ଶ୍ରୀରାମରେ ହୋଇ ।
ପରମ ହରଷ ହୋଇଣ
ଲଙ୍କାକୁ ଗଲେ ବିଭୀଷଣ ।
ଶ୍ରୀ ରାମଚନ୍ଦ୍ର ସବୁ ଠଇଁ
ବହୁତ ପ୍ରୀତି ଯୁତ ହୋଇ ।

କଲେ ରାଜ୍ୟ ପରିପାଳନ
ନ ଥିଲା ଲକ୍ଷ୍ମଣର ମନ ।
ଯୁବରାଜରେ ତାଙ୍କୁ ବଳେ
ଶ୍ରୀରାମ ଅଭିଷେକ କଲେ ।
ସେ ପୁଣି ହୋଇ ଭକ୍ତି ଯୁକ୍ତ
ସେବିଲେ ରାମପାଦେ ନିତ୍ୟ ।
ପରମାତ୍ମା ଯେ ରଘୁବୀର
ସାକ୍ଷୀ ସେ ସମସ୍ତ କାର୍ଯ୍ୟର ।
କିଛିହିଁ କାର୍ଯ୍ୟ ନ କରନ୍ତି
ନିର୍ବିକାର ସେହୁ ଅଟନ୍ତି ।
ଆତ୍ମମାନନ୍ଦରେ ସନ୍ତୋଷ
ଏମନ୍ତ ହେଲେ ଉପଦେଶ ।
ଲୋକମାନଙ୍କୁ ଦେବାପାଇଁ
ମାୟା ମନୁଷ୍ୟ ଦେହ ବହି
ଅଶ୍ୱମେଧାଦି ଯାଗଗଣ
କଲେ ସେ କରି ସଦକ୍ଷିଣ ।
ରାଜ୍ୟର ଯେପରି ପାଳନ
କରନ୍ତେ ଶ୍ରୀ ରଘୁନନ୍ଦନ ।
ବିଧବା ହୋଇ କରି ତହିଁ
ସ୍ତ୍ରିଏ କଣେ ନୋହୁଲେ କେହୁ ।
ସର୍ପ ରୋଗ ସକାଶୁ ଭୟ
ସେ କାଳେ ନୋହିଲା ଉଦୟ ।
ଚୌର ଦସ୍ୟୁହିଁ ନାଶ ଗଲା
କିଛିହିଁ ଅନର୍ଥ ନୋହିଲା ।
ବୃଦ୍ଧଙ୍କ ଅଗରେ ସେ କାଳେ
ବାଳକେ ପ୍ରାଣ ନ ତେଜିଲେ ।
ସମସ୍ତେ ରାମଙ୍କୁ ପୂଜନ୍ତି
ତାଙ୍କ ସନ୍ତତେ ଚିନ୍ତୁଥାନ୍ତି ।
ଯେଉଁ କାଳରେ ଲୋଡ଼ା ଯେତେ
ଜଳଦ ବରଷନ୍ତି ତେତେ ।

ବର୍ଣ୍ଣ ଧର୍ମରେ ପ୍ରଜାମାନେ
ସଂଯୁତ ହେଲେ ସବୁ ଜନେ
ତାହାଙ୍କ ସୁତ ପ୍ରାୟେ କରି
ପାଳନା କଲେ ରାବଣାରି ।
ସମସ୍ତ ଲୋକ ସବୁକାଳେ
ଧର୍ମରେ ପରାୟଣ ହେଲେ ।
ସବୁଙ୍କ କରାଇ ହରଷ
ଏଗାର ସହସ ବରଷ ।
ରାଜ୍ୟ ପାଳନ ରାମ କଲେ
ପୁଣି ସେ ବୈକୁଣ୍ଠକୁ ଗଲେ ।
ଏ ଅଧ୍ୟାତ୍ମ ରାମ ଚରିତ
ଅତ୍ୟନ୍ତ ପୁଣ୍ୟ ବଡ଼ ଗୁପ୍ତ ।
ଏ ଧନ ଧାନ୍ୟ ଦୀର୍ଘାୟୁଷ
ଆରୋଗ୍ୟ କରଇ ଅବଶ୍ୟ ।
ଏ ବେଳ କର ଏହା ନିତ୍ୟେ
ପଢ଼ନ୍ତୁ ଶୁଣନ୍ତୁ ସମସ୍ତେ ।
ସନ୍ତୋଷ ହୋଇ ଯେଉଁ ନରେ
ସଂଯୁତ ହୋ'ଇ ଭକତରେ ।
ପଢ଼ନ୍ତି କି ଅବା ଶୁଣନ୍ତି
ସେ ମନ ବାଞ୍ଛିତ ଲଭନ୍ତି ।
କୋଟି କୋଟି ଯେ ମହାଅଘ
କ୍ଷଣକେ ନାଶଇ ତା ବେଗ ।
ସଂଯୁତ ହୋଇ ଯେଉଁ ଲୋକ
ଶୁଣଇ ରାମ ଅଭିଷେକ ।
ଧନ ଅର୍ଥୀ ଯେ କରଇ
ବହୁତ ଦ୍ରବ୍ୟ ସେ ଲଭଇ
ଯେ ପୁତ୍ର କାମନା କରିବ
ଅଦ୍ୟ କାଣ୍ଡରୁ ଅଦ୍ୟ କର ।
ପଢ଼ଇ ତେବେ ସେହୁ ନର
ଲଭଇ ଖଞ୍ଜନ କୁମର ।

ଯେବଣ ନୃପତି ଶୁଣଇ
ସେ ଶତ୍ରୁମାନଙ୍କୁ ଜିଣଇ ।
ଲଭଇ ତାହାଙ୍କ ସମ୍ପତ୍ତି
ତାହାଙ୍କ ଶତ୍ରୁ ନ ବାଧନ୍ତି ।
ସେ ସୁଖୀ ବିଜୟୀ ହୁଅଇ
ସଂଶୟ ଏ କଥାରେ ନାହିଁ ।
ଯେବଣ ବନିତା ଶୁଣଇ
ସବୁର ସେ ପୂଜ୍ୟା ହୁଅଇ ।
ଅଶେଷ ଦୀର୍ଘାୟୁଷବନ୍ତ
ଏ ରୂପେ ଲଭଇ ସେ ପୁତ୍ର ।
ବନ୍ଧ୍ୟା ଅଟଇ ଯେଉଁ ସ୍ତ୍ରିଗ
ଶୁଣଇ ଯେବେ ଶ୍ରଦ୍ଧାକରି ।
ତେବେ ସେ ପରମ ସୁନ୍ଦର
କର ଲଭଇ ସୁକୁମାର ।
କୋପ ମସ୍ତର ଗୁଣ୍ଡ କର
ଶ୍ରଦ୍ଧା ଭକ୍ତି ହୃଦରେ ଧର ।
ଯେବଣ ମନୁଷ୍ୟ ପଢ଼ଇ
ନୋହିଲେ କି ଅବା ଶୁଣଇ ।
ସମସ୍ତ ଦୁର୍ଗତି ଜିଣଇ
ପରମ ସୁଖୀ ସେ ହୁଅଇ ।
ଅଦ୍ୟ କାଣ୍ଡରୁ ଯେଉଁ ଲୋକ
ଶୁଣଇ ସାତ କାଣ୍ଡ ଯାକ
ତ କର ସବୁ ବିଘ୍ନମାନ
ବିନାଶ ହୁଅଇ ବହନ ।
ଦେବତାଗଣେ ତୁଷ୍ଟ ହୋ'ନ୍ତି
ଲଭନ୍ତି ଅନେକ ସମ୍ପତ୍ତି ।
ଯେବଣ ରଘୁମଣି ନାରୀ
ଅଦ୍ୟ କାଣ୍ଡରୁ ଅଦ୍ୟ କର ।
ସଂଯୁତ ଭକତରେ ହୋଇ
ସପତ କାଣ୍ଡ ସେ ଶୁଣଇ ।

ଭବସାଗର କଟି କଣ୍ଠସ୍ଥେ
ଲଭଇ ସେ ପୁଣ୍ୟ କୋଟିଏ ।
ସମସ୍ତ ପତିବ୍ରତା କୁଳେ
ପୂଜିତ ହୁଏ ସବୁ କାଳେ ।
ଏ ପୋଥି ପ୍ରତି ଉତ୍ସବରେ
ଭକତ ଭାବେ ଯେଉଁ ନରେ ।
ପୂଜା କରନ୍ତି ନମସ୍କାର
ସମସ୍ତ ପାପୁ ହୋଇ ହୁଏ ପାର ।
ବିଷ୍ଣୁର ଯେ ପରମ ସ୍ଥାନ
ତହିଁକି କରନ୍ତି ଗମନ ।
ଏ କଥା ସଂଯୁତ ହୋଇଣ
ଯେ ସବୁ କରଇ ଶ୍ରବଣ ।
ନୋହିଲେ ଶ୍ରଦ୍ଧା ଯୁତ ହୋଇ
କି ଅବା ଆପଣେ ପଢ଼ଇ
ତା ଠାରେ ଶ୍ରୀ ରଘୁନନ୍ଦନ
ନିଶ୍ଚୟେ ହୁଅନ୍ତି ପ୍ରସନ୍ନ ।
ପରମ ବ୍ରହ୍ମ ସୀତାପତି
ସେ ଯେବେ ସନ୍ତୋଷ ହୁଅନ୍ତି ।
ଧର୍ମାର୍ଥ କାମ ମୋକ୍ଷ ଯାହା
ଇଚ୍ଛା କରେ ସେ ଲଭେ ତାହା ।
ନିୟମ କରି ଯେଉଁ ଜନ
ଶୁଣି କରଇ ଏହା ପୂର୍ଣ୍ଣ ।
ଅୟୁଷ ଅରୋଗ୍ୟ ହୁଅଇ
ସଂଶୟ ଏ କଥାରେ ନାହିଁ ।
କୋଟିଏ କଳ୍ପର ଅବଶ୍ୟ
ପାପ ସମୂହ କରେ ନାଶ ।
ସମସ୍ତ ପିତୃଦେବ ଗଣେ
ମହତ ଋଷି ଗ୍ରହମାନେ
ଏହା ଯେ ଶ୍ରବଣ କରନ୍ତି
ତାଠାରେ ସନ୍ତୋଷ ହୁଅନ୍ତି

ଅଦ୍ଭୁତ ଯୋ ବୈରାଗ୍ୟ ଜ୍ଞାନ
ଏଥି ସଂଯୁତ ପୁରାତନ ।
ଏମନ୍ତ ପ୍ରକାରେ ଅଛଇ
ନାମରେ ଅଧ୍ୟାତ୍ମ ବୋଲଇ ।
ଏହା ଯେ ପଢ଼ଇ ଶୁଣଇ
ନୋହିଲେ କି ଅବା ଲେଖଇ ।
ସେମାନେ ଅପି ଅଜ୍ଞ ଥରେ
ଜାତ ନୁହନ୍ତି ଏ ସଂସାରେ
ସବୁ ବେଦମାନେ ଅବଶ୍ୟ
ବିସ୍ତର ବିଷ୍ଣୁର ରହସ୍ୟ ।
ମୂରତି ଯେ ତାରକ ବ୍ରହ୍ମ
ସେହି ସ୍ୱରୂପଟି ଶ୍ରୀରାମ ।
ସମସ୍ତ ବେଦରୁ ଯେ ସାର
ସଂଗ୍ରହ କର ଶ୍ରୀରାମର ।
ଅତ୍ୟନ୍ତ ପରମ ଗୁପତ
ଏମନ୍ତ ଅଟେ ଯେଉଁ ତତ୍ତ୍ୱ ।
ସଂକ୍ଷେପେ କରି ତା ପ୍ରକାଶ
ଏ ଗ୍ରନ୍ଥ ପୂର୍ବେ ବେଦବ୍ୟାସ ।
ଉମାଙ୍କ ଆଗେ କହିଛନ୍ତି
ଏ କାଣ୍ଡ ହୋଇଲା ସମାପ୍ତି ।
ଯେଉଁ ରାମଚନ୍ଦ୍ର ମହିମା
ନ ଜାଣେ ବ୍ରହ୍ମା ଶିବ ଉମା ।
ମୁଁ ନର ପତିତ ଅଜ୍ଞାନ
ଅଟଇ ଭକତିରେ ହୀନ ।
କେବଳ ଯେଣୁ ରାମଚନ୍ଦ୍ର
ଅତ୍ୟନ୍ତ କରୁଣା ସମୁଦ୍ର ।
ଅଟନ୍ତି ପତିତପାବନ
ଏ ହେଣୁ ମୁଁ ବଳାଇ ମନ ।
ସାହସ ଅତିଅନ୍ତ କଲି
ଯେତେ ବୁଝିଲି ତା କହିଲି ।

ଏ ଯେବେ ଦୋଷ ଥିଲେ ମୋର
ସୁଜନମାନେ କ୍ଷମା କର ।
ହେ ଦୀନବନ୍ଧୁ ରାବଣାରି
ମୋ ସବୁ ଅଘ ନାଶ କରି ।
ଘୋର ସଂସାର ଭୟ ହର
ଜାନକୀ ସହିତେ ତୁମ୍ଭର ।
ପାଦେ ଭକତି ହେଉ ମୋର
ଏ ରୂପେ ଅନୁଗ୍ରହ କର ।
ଅନ୍ତର୍ଯ୍ୟାମୀ ଶ୍ରୀରଘୁନାଥ
ପୂର୍ଣ୍ଣ କର ମୋ ମନୋରଥ ।
ବୋଲଇ ହଳଧର ପୁଣ
ଏ ଶ୍ରୀ ଅଧ୍ୟାତ୍ମ ରାମାୟଣ ।
ଅଟଇ ଅତ୍ୟନ୍ତ ପବିତ୍ର
ସବୁରି ହିତେ କଲି ଗୀତ ।
ଏ ଗ୍ରନ୍ଥ ସମସ୍ତ କାମଦ
ବିଶେଷ ଭକ୍ତିଦ ମୋକ୍ଷଦ ।
ଏକାନ୍ତ ଚିତ୍ତରେ ବାଞ୍ଛିଲେ
ବିପଦ ନ ଆସଇ ବାରେ ।
ଏବେନି ସମସ୍ତେ ସନ୍ତତେ
ଭାବନା କରେ ଏହା ଚିତ୍ତେ ।
ଅଧ୍ୟା ଏକାନ୍ନ ଶହେ ଶେଷ
ଏକବିଂଶ ପଞ୍ଚଚରଣ ।
ପଦେ ଏ କାଣ୍ଡ ହେଲ ଭଲେ
ସଂଯୁତ ଏ ଷୋଳ ଅଧ୍ୟାରେ ।

ଇତି ଶ୍ରୀ ମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ଲଙ୍କାକାଣ୍ଡେ
ନାମ ଷୋଡ଼ଶୋଽଧ୍ୟାୟଃ ।

# ଉତ୍ତର କାଣ୍ଡ

## ପ୍ରଥମ ଅଧ୍ୟାୟ

ଅଯୋଧ୍ୟା ନଗ୍ରେ ଅନ୍ତଃପୁରେ
ଏକାନ୍ତେ ଆରାମ ମଧ୍ୟରେ ।
ଉତ୍ତମ ପୁଷ୍କରଣୀ ତୀରେ
ମଣି ନିର୍ମିତ ମଣ୍ଡପରେ ।
ଦୁର୍ଲ୍ଲଭ ରତ୍ନ ସିଂହାସନେ
ବିଜେ ଶ୍ରୀରାମ ସୀତାସନେ ।
ନବୀନ ଦୁର୍ବାଦଳ ଶ୍ୟାମ
ଲାବଣ୍ୟ ନିନ୍ଦେ କୋଟି କାମ ।
ଶରଦ ଚନ୍ଦ୍ରମା ବଦନ
ବିକାଶ ପଙ୍କଜ ଲୋଚନ ।
ମର୍କତ ସ୍ତମ୍ଭ ପ୍ରାୟେ ଭୁଜ
କୋଟି ଆଦିତ୍ୟ ପ୍ରାୟେ ତେଜ ।
ହୃଦୟ ପୃଥୁଳ ବିସ୍ତାର
ଚିହ୍ନ ଦର୍ଶନେ ସୁଧାକର ।
ନୟନ ପ୍ରାନ୍ତ କର ମୃଗ
ଅଧର ପାଦତଳ ରଙ୍ଗ ।
ପୀତବସନ କଟି ଦେଶେ
ଘନେ ନିଶ୍ଚଳ ଶମ୍ପା କି ସେ ।
ମୁକୁଟ କୁଣ୍ଡଳ କେୟୂର
କଙ୍କଣ ନୂପୁର ରୁଚିର ।
ପଦକ ପୁଷ୍ପମାଳ ହାର
ହୃଦରେ ଦିଶେ ମନୋହର ।
କର୍ପୂର କୁଙ୍କୁମ ଚନ୍ଦନ
ଶ୍ରୀ ଅଙ୍ଗେ ହୋଇଛି ଲେପନ ।

ବଦନ ହୋଇଛି ପ୍ରସନ୍ନ
ମନ୍ଦହାସରେ ଶୋଭମାନ ।
କେତକୀ ଦଳ ପ୍ରାୟେ କାନ୍ତି
ରଙ୍ଗ ପତନି ପିନ୍ଧିଛନ୍ତି ।
ମୁକୁଟ ବିଭୂଷଣମାନ
ସର୍ବାଙ୍ଗେ ହୋଇଛି ସମ୍ପନ୍ନ ।
ଏ ରୂପେ ସୀତା ଜନ୍ମ ହୋଇ
ବଢ଼ଅ କରନ୍ତି ମଣୋହି ।
ଏମନ୍ତ ଶ୍ରୀରାମଙ୍କ ନିତ୍ୟେ
ଭାବନା କରୁଛି ମୁଁ ଚିତ୍ତେ ।
ଅହେ ରାଜେନ୍ଦ୍ର ସୀତାକାନ୍ତ
ତୁମ୍ଭର ଉଦ୍ଧର ଚରିତ ।
ସ୍ଫୁରୁ ମୋ ମନରେ ବହନ
ଏ ରୂପେ ହୁଅ ପରସନ୍ନ ।
ଅବିଘ୍ନ ହୋଇ ନିର୍ଭା ପାଇ
ଏ ରୂପେ ଅଙ୍କ ସ୍ୱାମୀ ହେଉ ।
ପାର୍ବତୀ ସହିତରେ ପୁଣି
ବନ୍ଦଇ ଶଙ୍କର ଚରଣି ।
କୃପା କର ହେ ବିଶ୍ୱନାଥ
ପୂର୍ଣ୍ଣ ହେଉ ମୋ ମନୋରଥ ।
ବହନ ଏ ଉତ୍ତମ ହୋଇ
ମୋ ମନେ ସ୍ଫୁରୁ ଉମାସାଇଁ ।
ଏଥିକୁ ତୁମ୍ଭଙ୍କୁ ମୋହର
ଅନବରତେ ନମସ୍କାର ।

ଏଠାରୁ ଉତ୍ତର ଚରିତ
ଶୁଣ ସୁଜନେ ଦେଇ ଚିତ୍ତ ।
କୌଶଲ୍ୟା ହୃଦୟ ନନ୍ଦନ
ରଘୁବଂଶ ତିଳକ ରାମ ।
ରାବଣ ହନ୍ତା ପଦ୍ମନେତ୍ର
ଦଶରଥଙ୍କର ଯେ ସୁତ ।
ଜୟଯୁକ୍ତ ହୁଅନ୍ତୁ ସେହି
ଶୁଣ ସୁଜନେ ମନ ଦେଇ ।

ପାର୍ବତ୍ୟୁବାଚ

ପାର୍ବତୀ ବୋଇଲେ ହେ ସ୍ୱାମି
କୌଶଲ୍ୟା ପୁତ୍ର ଯେ ଶ୍ରୀରାମ ।
ଦୈତ୍ୟଙ୍କୁ ମାରି ସେ ଯୁଦ୍ଧରେ
ସୀତା ସହିତେ ଅଯୋଧ୍ୟାରେ ।
ସେ ପୁଣ ଅଭିଷେକ ହୋଇ
ମାୟା ମନୁଷ୍ୟ ଦେହ ବହି ।
କ୍ଷିତିରେ ଯେତେ କାଳ ପୁଣ
ରହିଲେ ସେ ଲୀଳା କରଣ ।
ମନୁଷ୍ୟ ରୂପ ପ୍ରାନ୍ତକାଳେ
ପୁଣି କି ପ୍ରକାରେ ତେଜିଲେ ।
ସେମାନ ଶୁଣିବାକୁ ମୋର
ଶ୍ରଦ୍ଧା ହେଉଅଛି ମହେଶ୍ୱର ।
ଏ ଯେଣୁ ବେଗେ ଅନୁରାଗେ
କହିବା ହେଉ ମୋହ ଆଗେ ।
ଏ କଥା ଅମୃତ ପାନରେ
ଅତ୍ୟନ୍ତ ହୋଇଣ ମନରେ ।
ତୃଷ୍ଣା ବଢ଼ୁଅଛି ମୋହର
ଏ ଯେଣୁ ଶ୍ରୀରାମଚନ୍ଦ୍ରର ।
ବିସ୍ତାରି କରି କଥାମାନ
କହନ କହ ତ୍ରିଲୋଚନ ।

ଏମନ୍ତ ଶୁଣି ଦିଗବାସ
କହିଲେ ହୋଇ ସେ ହରଷ ।

ଶ୍ରୀମହାଦେବ ଉବାଚ

ଶୁଣିମା ହେଉ ଗୋ ଗଉରି
ରାକ୍ଷସମାନଙ୍କୁ ସଂହାରି ।
ରାଜ୍ୟ ଲଭିଲେ ରାମଚନ୍ଦ୍ର
ଏମନ୍ତ ଶୁଣି ମୁନିବୃନ୍ଦ ।
ତାଙ୍କୁ ଆନନ୍ଦ କରିବାକୁ
ଆଇଲେ ଅଯୋଧ୍ୟା ପୁରକୁ ।
ଦୁର୍ବାସା କଣ୍ୱ ବିଶ୍ୱାମିତ୍ର
ଅଙ୍ଗିରା କଶ୍ୟପ ଅସିତ ।
ଭୃଗୁ ଅତ୍ରି ସପତ ଋଷି
ବାମଦେବାଦି ସର୍ବେ ଆସି ।
ଶିଷ୍ୟ ସହିତେ ବହୁ ମୁନି
ଅଗସ୍ତ୍ୟ ସମସ୍ତଙ୍କୁ ଘେନି ।
ଶ୍ରୀରାମ ଦ୍ୱାରେ ମିଳି ବେଗେ
କହିଲେ ପ୍ରତିହାରି ଆଗେ ।
ଜଣାଅ ଶ୍ରୀରାମ ଅଗ୍ରତେ
ଅଗସ୍ତ୍ୟ-ଆଦି ମୁନି ଯେତେ ।
ତୁମ୍ଭଙ୍କୁ କରି ଆଶୀର୍ବାଦ
କରିବା ପାଇଣ ଆନନ୍ଦ ।
ଆସି ଅଛନ୍ତି ଦ୍ୱାରେ ରହି
ଏମନ୍ତ ଶୁଣି ଦୋୖରୀ ହୋଇ ।
ସେଠାରୁ ଯାଇ ପ୍ରତିହାରୀ
ରାମଙ୍କୁ ନମସ୍କାର କରି ।
ବିନୟେ କହିଲୁ କ୍ଷୁଅଇଁ
କହିଲେ କୃତାଞ୍ଜଳି ହୋଇ ।
ସଙ୍ଗତେ ଋଷିବୃନ୍ଦ ଘେନି
ଅଛି ଅଗସ୍ତ୍ୟ ମହାମୁନି ।

ତୁମ୍ଭର ଦର୍ଶନ ଇଚ୍ଛାରେ
ରହି ଅଛନ୍ତି ସିଂହଦ୍ୱାରେ ।
ଏମନ୍ତ ଶୁଣି ରାବଣାରି
ବୋଇଲେ ତାଙ୍କୁ ପୂଜା କରି ।
ଯଥା ସୁଖେ ବିପ୍ରମାନଙ୍କୁ
ବହନ ଆଣ ଭିତରକୁ ।
ବିବିଧ ରତ୍ନରେ ସୁନ୍ଦର
ଏମନ୍ତ ଅଟେ ଯେଉଁ ପୁର ।
ପୂଜିତ ହୋଇ ମୁନିମାନେ
ପ୍ରବେଶ ହେଲେ ସେ ସଦନେ ।
ତାହାଙ୍କୁ ଦେଖି ରଘୁସାଇଁ
ଉଠି ସେ କୃତାଞ୍ଜଳି ହୋଇ ।
ପାଦ୍ୟ ଅର୍ଘ୍ୟରେ ପୂଜି ପୁଣି
ଆସନ କରି ସମର୍ପଣ ।
ଭକ୍ତିରେ କରି ଦଣ୍ଡବତ
ଯାହାଙ୍କୁ ଯେମନ୍ତ ଉଚିତ ।
ତେମନ୍ତ ପ୍ରଭାବେ ବାହନ
ଦିଅନ୍ତେ ଉତ୍ତମ ଆସନ ।
ସମସ୍ତେ ହରଷେ ବସିଲେ
ରାମ କୁଶଳ ପଚାରିଲେ ।
ଶୁଣି ସନ୍ତୋଷ ତପୋଧନ
ବୋଇଲେ ହେ ରଘୁନନ୍ଦନ ।
ଆମ୍ଭର ଭଲ ସବୁଠାରେ
ସମସ୍ତ ଅତ୍ୟନ୍ତ ଭାଗ୍ୟରେ ।
ତୁମ୍ଭଙ୍କୁ ଯାହା ରାବଣାରି
ଦେଖିଲୁ ହତ ଶତ୍ରୁ କରି ।
ରାବଣ ବଧ ହୋଇବାର
ତୁମ୍ଭର ଭାଗ୍ୟ ନୋହେ ସାର ।
ଧରଣି ଥିଲେ ଧନୁବାଣ
ତ୍ରୈଲୋକ୍ୟଯାକ ହିଁ ଆପଣ ।

ଜିଣିବା ନିମନ୍ତେ ଶକତ
ଅଟ ଭାଗ୍ୟରେ ସୀତାକାନ୍ତ ।
ରାବଣ ଆଦି ସେ ରାକ୍ଷସ
ସମସ୍ତେ ହୋଇଲେ ବିନାଶ ।
ଯା ନାମ ହେଲା ଦଶଗ୍ରୀବ
ସେ କଥା କହିବ୍ୟ ଗୌରବ ।
ରାବଣି ମରିବାରି ସାର
ଏହି ଅତ୍ୟନ୍ତ ଦୁସ୍ତର ।
କୁମ୍ଭକର୍ଣ୍ଣାଦି ହେ ଶ୍ରୀରାମ
ଅଟନ୍ତି ଦଣ୍ଡଧର ସମ ।
ଅନ୍ତକ ସମ ଶରଗଣ
ମାରି ହରିଲ ତାଙ୍କ ପ୍ରାଣ ।
ଦଣ୍ଡକ ବନରେ ତୁମ୍ଭଙ୍କୁ
ଶରଣାଗତ ହୋଇଲୁଙ୍କୁ ।
ଅଭୟ ଦକ୍ଷିଣା ଅମ୍ଭଙ୍କ
ପୂର୍ବେ ହୋଇଥିଲ ଦେବାକୁ ।
ଏବେ ମାରି ସେ ରକ୍ଷଗଣ
କୃତକୃତ୍ୟ ହେଲ ଆପଣ ।
ଶ୍ରୀରାମ ଶୁଣନ୍ତେ ଏମନ୍ତ
ବିସ୍ମୟେ ହୋଇ ଅତ୍ୟନ୍ତ ।
କରଯୋଡ଼ି ସେ ପଚାରିଲେ
ତ୍ରୈଲୋକ୍ୟ ଯାକକୁ ଜିଣିଲେ ।
ଏମନ୍ତ ଅଟେ ସେ ରାବଣ
କୁମ୍ଭକର୍ଣ୍ଣାଦି ଦୈତ୍ୟଗଣ ।
ସମସ୍ତେ ଅନ୍ତକ ସମାନ
ତାହାଙ୍କୁ ଛାଡ଼ି ତପୋଧନ ।
କିପାଇଁ ସେ ମେଘନାଦକୁ
ହେଲ ପ୍ରଶଂସା କରିବାକୁ ।
ଅଗସ୍ତ୍ୟ ଶୁଣନ୍ତେ ଏମନ୍ତ
କହିଲେ ହୋଇ ହୃଷ୍ଟ ଚିତ୍ତ ।

ରାବଣ ରାବଣୀର ରାମ
ସଂକ୍ଷେପ କରି କହୁ କର୍ମ ।
କହିବା ଶୁଣ ତୁମ୍ଭ ଆଗେ
ପୂର୍ବକାଳରେ ସତ୍ୟଯୁଗେ ।
ବ୍ରହ୍ମାର ହୋଇଲା କୁମର
ପୁଲସ୍ତ୍ୟ ନାମ ତାହାଙ୍କର ।
ସେ ମେରୁ ପର୍ବତ ପାଶକୁ
ଗଲେ ତପସ୍ୟା କରିବାକୁ ।
ତୃଣବିନ୍ଦୁ ଯେ ରାଜଋଷି
ଏ ତାଙ୍କ ଆଶ୍ରମରେ ବସି ।
ବେଦାଧ୍ୟୟନ କରି ନିତ୍ୟେ
ବହୁତ ତପସ୍ୟା କରନ୍ତେ ।
ଦେବ ଗନ୍ଧର୍ବ କନ୍ୟାମାନେ
ପ୍ରବେଶ ହୋଇଣ ସେ ସ୍ଥାନେ ।
ଗାୟନ ବାଦ୍ୟ ହାସ ନୃତ୍ୟ
ଆନନ୍ଦେ କରି ସେହୁ ନିତ୍ୟ ।
କରନ୍ତେ ତାଙ୍କ ତପ ବିଘ୍ନ
କୋପେ ବୋଇଲେ ତପୋଧନ ।
ଯେ ଅମ୍ଭ ଆଗକୁ ଆସିବ
ନିଶ୍ଚେ ସେ ଗର୍ଭକୁ ଧରିବ ।
ଏମନ୍ତ ଶୁଣି କନ୍ୟାମାନେ
ଶାପକୁ ଭୟ କରି ମନେ ।
ସେ ବନର ଅବଧି ହୋଇ
ସେଠାକୁ ନ ଆସିଲେ କେହି ।
ତୃଣବିନ୍ଦୁ ସୁତା ସେ ମୁନି
ଶାପ ଦେବା ନଥିଲେ ଜାଣି ।
ସେ ପୁଲସ୍ତ୍ୟଙ୍କ ଆଗେ ଯାଇ
ନିର୍ଭୟ ହୋଇ ବୁଲୁଥାଇ ।
ଏମନ୍ତ ହୃଦୟରେ ତାର
ହୋଇଲା କନ୍ଦର୍ପ ବିକାର ।

ଗର୍ଭକୁ ଧରନ୍ତେ ଉଦର
ପାଣ୍ଡୁର ଦଶିଲା ଶରୀର ।
ଏ ରୂପେ ନିଜ ଅପଘନ
ଦେଖିଲା ଝଶିଲା ବିବର୍ଣ୍ଣ ।
ସେ କନ୍ୟା ଭୟ ପାଇ ବେଗେ
କହିଲା ଯାଇ ପିତା ଆଗେ ।
ତୃଣବିନ୍ଦୁ ଶୁଣି ଏମନ୍ତ
ବିସ୍ମୟ ହୋଇ ଅତ୍ୟନ୍ତ ।
ଜ୍ଞାନ ଦୃଷ୍ଟରେ କରି ନୃପ
ଜାଣିଲେ ଏ ମୁନିଙ୍କ ଶାପ ।
କନ୍ୟାକୁ ଘେନି ବେଗେ ଗଲେ
ସମର୍ପ ପୁଲସ୍ତ୍ୟଙ୍କୁ ଦେଲେ ।
ସେ ମୁନି ସନ୍ତୋଷ ହୋଇଲେ
ତାହାଙ୍କୁ ଦାରଗ୍ରହ କଲେ ।
ସେ କନ୍ୟା ସେବାରେ ବହୁତ
ସନ୍ତୋଷ ହୋଇଲେ ପୁଲସ୍ତ୍ୟ ।
ବୋଇଲେ ତୁଇ ବଂଶ ଯାତ
ବଢ଼ାଇ ହୋଇବ ଧାର୍ମିକ ।
ଏ ରୂପେ ତନୟ ଗୋଟିଏ
ତୋହର ହୋଇବ ନିଶ୍ଚୟେ ।
ଏମନ୍ତେ କେତେ ଦିନ ଗଲା
ପୁତ୍ର ଗୋଟିଏ ଜାତ ହେଲା ।
ବିଶ୍ରବା ବୋଲି ନାମ ଦେଲେ
କାଳେ ସେ ବେଦ ପଢ଼ାଇଲେ ।
ତାଙ୍କ ସୁରୂପ ବ୍ରହ୍ମତେଜ
ଦେଖି ସନ୍ତୋଷ ଭରଦ୍ୱାଜ ।
ଆଣି ସେ ଆପଣା ସୁତାକୁ
ବନିତା କରି ଦେଲେ ତାଙ୍କୁ ।
ବିଶ୍ରବାଙ୍କର ତାହା ଠାଇଁ
ଆପଣାର ସମାନ ହୋଇ ।

କେତେ କାଳରେ ହେ ଶ୍ରୀରାମ
କୁବେର ହୋଇଲେ ଜନମ ।
ବ୍ରହ୍ମା ତାହାଙ୍କ ତପସ୍ୟାରେ
ସନ୍ତୋଷ ହୋଇ ହରଷରେ ।
ଯାହା ସେ ବାଞ୍ଛା କରିଥିଲେ
ସେ ଧନପତି ପଣ ଦେଲେ ।
ଏମନ୍ତ ତପେ ସେ କୁବେର
ବ୍ରହ୍ମାଙ୍କ ଠାରୁ ପାଇ ବର ।
ତାହାଙ୍କ ଦେଖି ଯାନେ ବସି
ଆନନ୍ଦ ହୋଇ ବେଗେ ଆସି ।
ପିଅର ଜନନୀ ପଦ୍ମର
ତଳରେ କଲ ନମସ୍କାର ।
ତପସ୍ୟା କଥା ବରଦାନ
ସମସ୍ତ ଜଣାଇ ବହନ ।
ପୁଣି କହିଲେ ଯୋଡ଼ିକର
ବ୍ରହ୍ମା କେବଳ ଦେଲେ ବର ।
ନ ଦେଲେ ରହିବାକୁ ସ୍ଥାନ
ଏଣୁ କର ହେ ତପୋଧନ ।
ସ୍ଥାନ ଗୋଟିଏ ମୋତେ ଦେବ
କାହାର ହିଂସା ଯେ ନଥିବ ।
ଶୁଣି ବିଶ୍ରବା ମୁନିବର
କହିଲେ ଲଙ୍କା ନାମେ ପୁର ।
ରହିବା ପାଇଁ ରକ୍ଷଗଣ
ବିଶ୍ୱକର୍ମାରେ ସେ ନିର୍ମାଣ ।
ବିଷ୍ଣୁର ଡରେ ଦୈତ୍ୟକୁଳେ
ରହିଲେ ଯାଇ ରସାତଳେ ।
ସେ ଲଙ୍କାପୁରେ କେହି ନାହିଁ
ଭରସି ନ ପାରନ୍ତି କେହି ।
ଅଛି ସେ ସମୁଦ୍ର ମଧ୍ୟରେ
ତୁ ଯାଇ ରହ ସେହି ପୁରେ ।

ଏମନ୍ତ ଶୁଣିଣ କୁବେର
ପିତାମାତାଙ୍କୁ ନମସ୍କାର ।
କରି ସେ ତାହାଙ୍କ ଆଜ୍ଞାରେ
ରହିଲେ ଯାଇ ଲଙ୍କାପୁରେ ।
ତାହାଙ୍କଠାରେ ପିତାଙ୍କର
ସେନେହ ହୋଇଲା ଅପାର ।
ଅନେକ କାଳ ଏ ପ୍ରକାରେ
କୁବେର ରହିଲେ ଲଙ୍କାରେ ।
କେତେହେଁ ସହସ୍ର ବରଷ
ଗଲାରେ ସୁମାଳୀ ରାକ୍ଷସ ।
ସାକ୍ଷାତ ଯେସନ୍ତେ ବିଷ୍ଣୁକାନ୍ତା
ଘେନି ଏମନ୍ତ ନିଜ ସୁତା ।
କ୍ରୀଡ଼ା ନିମନ୍ତେ ରସାତଳୁ
ଆସି ପୃଥ୍ୱୀରେ ବୁଲି ବୁଲି ।
କୁବେର ବସି ପୁଷ୍ପକରେ
ଯିବାର ଦେଖି ସେ ନେତ୍ରରେ ।
ଦୈତ୍ୟଙ୍କ ହିତ କରି ଚିନ୍ତା
କୈକେଶୀ ନାମେ ଯେ ତା ସୁତା ।
ତାହାକୁ ଏମନ୍ତ କହିଲା
ବାଳୀ ସମସ୍ତ ତୋର ହେଲା ।
ଯୁବା ଅବସ୍ଥା କନ୍ୟାକେଶୀ
ବଳି ତ ଯାଉଅଛି ଆସି ।
ନାହିଁ କରିବା ଡରେ ମୋତେ
କେହି ତ ନ ମାଗିଲେ ତୋତେ ।
ଏ ବେଳେ କର ତୁ ଗମନ
ବର ବିଶ୍ରବାଙ୍କୁ ବହନ ।
ଏହାଙ୍କୁ ବରିଲେ ତୋହର
ଅତ୍ୟନ୍ତ ସମର୍ଥ ସୁନ୍ଦର ।
ହୋଇଣ କୁବେର ସମାନ
ହେବେ କହୁଛି ପୁତ୍ରମାନ ।

କନ୍ୟା ତା ଶୁଣି ଯାଇ ବେଗେ
ମୁନିଙ୍କ ଅଗ୍ରେ ଅନୁରାଗେ ।
ଚରଣ ଅଗ୍ରେ ଭୂମି ଲେଖି
ରହିଲା ହୋଇ ଅଧୋମୁଖୀ ।
ଦେଖି ବିଶ୍ରବା ମହାଋଷି
ତାହାଙ୍କୁ ପଚାରିଲେ ହସି ।
କେ ତୁମ୍ଭେ ଅଟ କାହା ଝିଅ
ଏ କଥା ଅମ୍ଭ ଆଗେ କହ ।
କର ଯୋଡ଼ି ସେ ନଳକେଶୀ
ବୋଇଲେ ଅହେ ମହାଋଷି ।
ଧ୍ୟାନ କରଣେ ଏ ବିଷୟ
ଜାଣିବା ହେଉ ମହାଶୟ ।
ବିଶ୍ରବା ତାହା ଧ୍ୟାନେ ଜାଣି
କନ୍ୟାକୁ କହିଲେ ସେ ପୁଣି ।
ଅମ୍ଭ ସକାଶୁ ପୁତ୍ରମାନ
ଲଭିବାକୁ କରୁଛୁ ମନ ।
ଦାରୁଣ ବେଳେ ଯେ ପ୍ରବେଶ
ହୋଇଲୁ ଏ ଯୋଗ୍ୟ ଅବଶ୍ୟ ।
ରାକ୍ଷସ ହୋଇ ଅତି ଅନ୍ତ
ଯୋଡ଼ିଏ ପୁତ୍ର ହେବେ ଜାତ ।
ଏମନ୍ତ ଶୁଣି ନଳକେଶୀ
ବୋଇଲେ ଅହେ ମହାଋଷି ।
ତୁମ୍ଭ ସକାଶୁ ଜାତ ହେବେ
ଦାରୁଣ କେମନ୍ତେ ହୋଇବେ ।
ଶୁଣି କହିଲେ ତପୋବନ୍ତ
ପଛେ ଯେ ହେବ ଏକ ପୁତ୍ର ।
ସେ ବଡ଼ ପଣ୍ଡିତ ହୋଇବ
ରାମ ପାଦେ ଭକ୍ତି କରିବ ।
ଏଥି ଜନ୍ମରେ ବଂଶ କର
ମସ୍ତକ ଦଶ ଗୋଟି ତାର ।

ଏମନ୍ତ ରୂପେ ହେ ଶ୍ରୀରାମ
ରାବଣ ପ୍ରଥମେ ଜନମ ।
ଜାତ ମାତ୍ରକେ ତତକାଳ
ଧରଣୀ କମ୍ପିଲା ସକଳ ।
ଭୟ ନିମିତ୍ତେ ଉତପାତ
ସେ କାଳେ ହୋଇଲା ବହୁତ ।
ତହିଁ ଜନ୍ମରେ କୁମ୍ଭକର୍ଣ୍ଣ
ଅଞ୍ଜନ ପର୍ବତ ସମାନ ।
ହୋଇ କର ସେ ହେଲା ଜନ୍ମ
ପୁଣି ସେ ଜନ୍ମରେ ହେ ରାମ ।
ହୋଇଲା ସୂର୍ପଣଖା ଜାତ
ତଦନ୍ତେ ରୂପବନ୍ତ ଶାନ୍ତ ।
ବେଦ ପଢ଼ଇ ସେ ସତତ
ଭୋଜନ ଅଟଇ ସଂଯତ ।
ନିତ୍ୟ କର୍ମରେ ସେ ନିପୁଣ
ଏ ରୂପେ ହେଲେ ବିଭୀଷଣ ।
ସେ କୁମ୍ଭକର୍ଣ୍ଣ ଯେ ଦୁର୍ବୁଦ୍ଧି
ହୋଇ ଅନେକ ତପୋବନ୍ତ ।
ମାନଙ୍କୁ ମାରି ମାଂସ ଖାଇ
ବୁଲୁଥାଇ ନିଶ୍ଚିନ୍ତ ହୋଇ ।
ପ୍ରାଣୀଙ୍କ ମହାଭୟମାନ
ଦିଅନ୍ତା ହୋଇ ଦଶାନନ ।
ସମସ୍ତ ଲୋକ ନାଶ ପାଇଁ
ବଢ଼ିଲା ଅତିଶୟ ହୋଇ ।
ନାମ ହେବାକୁ ଅପଘନ
ଯୋଗମାନ କଲେ ଯେସନ ।
ହେ ରାମ ସମସ୍ତ ଲୋକର
ହୃଦରେ ଅଛୁ ନିରନ୍ତର ।
ସାକ୍ଷୀ ତୁ ସମସ୍ତ ଲୋକର
ଜ୍ଞାନ ନୟନ ଅଟୁ ସାର ।

ନିର୍ମଳ ନିତ୍ୟ ପରକାଶ
ଲୀଳାରେ ହୋଇଛୁ ମନୁଷ୍ୟ ।
ମାୟା ତୋ ମହିମା ଅଟଇ
ତା ଗୁଣ ତେତେ ନ ଲିଗଇ ।
ଯେଣୁ କର ଲୀଳା ନିମନ୍ତେ
ପର୍ଯ୍ୟବବାକୁ ହେଲା ମୋତେ ।
ଏ ଯେଣ ରାକ୍ଷସଙ୍କ କାଳ
କହିଲି ମୁଁ ତୁମ୍ଭଙ୍କୁ ରାମ ।
ତୁମ୍ଭର ଜାଣଇ ମୁଁ ତତ୍ତ୍ୱ
ଅପଣ ନିଶ୍ଚୟେ ଅନନ୍ତ ।
ତୁମ୍ଭ ଶକତି ରଘୁସାଇଁ
ମନରେ ଚିନ୍ତଣ ନୁହଇ ।
ଚୈତନ୍ୟ ପତନାଶୀ ଅଜ
ଜାଣି ଅପଣା ତତ୍ତ୍ୱ ଦୀର୍ଘ ।
ନିଜ ରୂପ ସେ ଅପଣାର
ତା ତତ୍ତ୍ୱ କରଅଛ ସାର ।

ଚଉଦ୍ଦିକି ଅନୁସର ମୁହିଁ
ଅଛନ୍ତି ସେ ରୂପରେ ହୋଇ ।
ତୋ ଅନୁଗ୍ରହରେ ଗୋସାଇଁ
ଯଥା ସୁଖରେ ଭୁଲି ଥାଇ ।
ଶ୍ରୀରାମ ଶୁଣି ଏ ବଚନ
ତାହାଙ୍କୁ କହିଲେ ଏସନ ।
ସମସ୍ତ ଜଗତ ଅଗସ୍ତ୍ୟ
ମାୟାରେ ହୋଇଅଛି ସୃଷ୍ଟ ।
ଏଣୁ କେବଳ ମୋ କୀର୍ତ୍ତନ
ନାଶେ ସମସ୍ତ ପାପମାନ ।
ଶ୍ରୀରାମ ଶ୍ରୀରାମ ସୁମର
କଳିରୁ ହୋଇବ ନିସ୍ତାର ।
ବୋଲିବ ଦୀନ ହଳଧର
ସୀତା ସହିତେ ଶ୍ରୀରାମର ।
ଚରଣ ଖଣ୍ଡୁ ମୋ ବିପଦ
ଏ ଶହେ ଭୈରଅଣୀ ପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଉତ୍ତରକାଣ୍ଡେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶଙ୍କର କହିଲେ ଅଗସ୍ତ୍ୟ
ବୋଇଲେ ଅହେ ସୀତାକାନ୍ତ ।
କେତେ ଦିବସ ଅନନ୍ତରେ
କୁବେର ବସି ବିମାନରେ ।
ପିତାମାତାଙ୍କ ଦେଖିବାକୁ
ଆସନ୍ତେ ତାଙ୍କ ଆଶ୍ରମକୁ ।
ତାହାଙ୍କ ତେଜ ପୁଞ୍ଜ ଦେଖି
କୈକେଶୀ ହୋଇ ବଡ଼ ଦୁଃଖୀ ।

ଡାକି କହିଲେ ରାବଣକୁ
ଦେଖିବା ହେଉ କୁବେରକୁ ।
ଜଳୁଛୁ ଅପଣା ତେଜରେ
ଜନନୀ ମୁଁ ଏ ପ୍ରକାରେ ।
ରାବଣ ଶୁଣି କ୍ରୋଧ ହେଲେ
ପ୍ରତିଜ୍ଞା କରି ସେ କହିଲେ ।
କୁବେର ସମାନ ହୋଇବି
କିଅବା ଅଧିକା ମୁଁ ହେବି ।

ଜାତକେ ହୋଇବ ଏମନ୍ତ
କେ ମାତା ବ୍ରହ୍ମ ହନ୍ତସନ୍ତ ।
ଏମନ୍ତ କହି ସେ ମାତାଙ୍କୁ
ଦୁଷ୍କର ତପ କରିବାକୁ ।
ଗଲେ ସେ ଭାଇମାନ ସଙ୍ଗେ
ଗୋକର୍ଣ୍ଣ ତୀର୍ଥକୁ ସେ ବେଗେ ।
ନିୟମ କରି ତିନି ଭ୍ରାତ
ତପସ୍ୟା କଲେ ସେ ବହୁତ ।
ସମସ୍ତ ଲୋକଙ୍କୁ ସେ ତହିଁ
ମହାଭୟ କରନ୍ତା ହୋଇ ।
ତପସ୍ୟା କୁମ୍ଭକର୍ଣ୍ଣ ଦୈତ୍ୟ
କଲା ସେ ବରଷ ଅୟୁତ ।
ତହିଁର ଅଧେ ବିଭୀଷଣ
ହୋଇଣ ସେ ଏକ ଚରଣ ।
ସତ୍ୟ ଧର୍ମକୁ ଅବଲମ୍ବ
କରି ସେ ରହିଲା ରାଘବ ।
ରାବଣ ସହସ୍ରେ ବରଷ
କରଇ ବୃଭ ଉପବାସ ।
ତେତେକ ହୁଅନ୍ତେ ସମ୍ପୂର୍ଣ୍ଣ
ବହନ ଜାଳି ହୁତାଶନ ।
ମୁଣ୍ଡରୁ ଗୋଟିଏ ଶ୍ରୀରାମ
ଛିଣ୍ଡାଇ କରେ ତହିଁ ହୋମ ।
ଅୟୁତେ ବରଷ ସମ୍ପୂର୍ଣ୍ଣ
ଏ ରୂପେ କରି ଦଶାନନ ।
ଦଶ ମସ୍ତକ ହେ ଶ୍ରୀରାମ
କାଟିବା କରନ୍ତେ ଉଦ୍ୟମ ।
ସମସ୍ତ ଦେବତା କୁଳରେ
ଛବେଶ ବ୍ରହ୍ମା ଅସି ହେଲେ ।
ବୋଇଲେ ଅହେ ଦଶଗ୍ରୀବ
ମନେ ଯା ବାଞ୍ଛା କରିଥିବ ।

ସେ ବର ମାଗ ତା ଅବଶ୍ୟ
ଦେବି ମୁଁ ହୋଇଛି ସନ୍ତୋଷ ।
ରାବଣ ଶୁଣି ହରଷରେ
କହିଲେ କର ଯୋଡ଼ି ଶିରେ ।
ଯେବେ ତା ହୋଇବ ଦେବାକୁ
ମାଗୁଛି ଅମର ହେବାକୁ ।
ସୁପର୍ଣ୍ଣ ନାଗ ଯକ୍ଷ ଦେବ
ଅସୁର ଯେତେକ ଯେ ଦେବ ।
କଣସ୍ତେ ମୁଁ ନୋହୁ ବିନାଶ
କେଣ ପରସ୍ତେ ତ ମନୁଷ୍ୟ ?
ବ୍ରହ୍ମା ତା ସ୍ୱୀକାର କଲେ
ପ୍ରସାଦ କରଣ କହିଲେ ।
ଅନଳେ ଯେଉଁ ମୁଣ୍ଡମାନ
ହୋମ କରିଛୁ ଦଶାନନ ।
ସେ ସବୁ ପୂର୍ବ ପ୍ରାୟେ ହେବ
ବିଶେଷେ ଅକ୍ଷୟ ହୋଇବ ।
ପ୍ରଣାମ ସେ ଉତ୍ତାରେ ପୁଣି
କରୁ ଯେ ଥିଲେ ବିଭୀଷଣ ।
ତାହାଙ୍କୁ ଚାହିଁ ପ୍ରଜାପତି
ବୋଇଲେ ହୋଇ ଅତି ପ୍ରୀତ ।
ଧର୍ମାର୍ଥେ ତପସ୍ୟା ଅପାର
କଲୁ ତ ମାଗ ବାଞ୍ଛା ବର ।
ଏମନ୍ତ ଶୁଣି ବିଭୀଷଣ
ପ୍ରଣାମ କରି ପୁଣ ପୁଣ ।
ବିନୟେ କନ୍ଧର ନୁଆଇଁ
କହିଲେ କୃତାଞ୍ଜଳି ହୋଇ ।
ସମସ୍ତ କାଳରେ ଯେ ଦେବ
ମୋହର ବୁଦ୍ଧି ଧର୍ମେ ଥିବ ।
କେବେ ଅଧର୍ମକୁ ନ ଯାଉ
ଏ ରୂପେ ଅଜ୍ଞା ଦେବା ହେଉ ।

ଶୁଣି ସନ୍ତୋଷେ ପ୍ରଜାପତି
କହିଲେ ହୋଇ ଅତି ପ୍ରୀତି ।
ହେ ବତ୍ସ ତୁମ୍ଭେ ଧର୍ମଶୀଳ
ଏ ଯେଣୁ ଯାହା ବାଞ୍ଛା କଲ ।
ସେ କଥା ହୋଇବ ତେମନ୍ତ
ତୁ ନ ମାଗିଲେ ଅହେ ସୁତ ।
ଅମ୍ଭେ ତୁମ୍ଭଙ୍କ ପ୍ରୀତି ହେଲୁ
ଅମର ବର ଯାଚି ଦେଲୁ ।
ତଦନ୍ତେ ସେ କୁମ୍ଭକର୍ଣ୍ଣକୁ
ବୋଇଲେ ବର ମାଗିବାକୁ ।
ଦେବଙ୍କ ହିତେ ବ୍ରହ୍ମା ବୋଲେ
ଶାରଦା ତା ମୁଖେ ମିଳିଲେ ।
ତହିଁରେ ହୋଇଲେ ଅଛନ୍ନ
ବର ମାଗିଲେ କୁମ୍ଭକର୍ଣ୍ଣ ।
ଛ ମାସ ଶୟନ କରିବି
ଦିବସ ମାତ୍ରକ ଉଠିବି ।
ବିଧାତା ଶୁଣନ୍ତେ ଏମନ୍ତ
ବଚନ କରିଣ ସମ୍ମତ ।
ସମସ୍ତ ଦେବତାଙ୍କ ତୁଲେ
ହରଷ ହୋଇ ସ୍ୱର୍ଗେ ଗଲେ ।
ଶାରଦା ପୁଣି କୁମ୍ଭକର୍ଣ୍ଣ
ବଦନୁ କରନ୍ତେ ଗମନ ।
ସେ ବଡ଼ ଦୁଃଖିତ ହୋଇଲା
ମନେ ଏମନ୍ତ ଚିନ୍ତା କଲା ।
ବଚନ ଅତି ବଳୀୟାର
ଯା ମନେ ନ ଥିଲା ମୋହର ।
ସେ କିପାଁ ବାହାର ହୋଇଲା
ତପସ୍ୟା ବ୍ୟର୍ଥ ତ ହେଲା ।
ଲଭିଲେ ରାବଣାଦି ବର
ସୁମାଳୀ ଶୁଣି ଏ ଉତ୍ତର ।

ପ୍ରହସ୍ତାଦିଙ୍କି ଘେନି ସଙ୍ଗେ
ରସାତଳରୁ ଆସି ବେଗେ ।
ରାବଣକୁ ସ୍ନେହେ ବହନ
କହିଲେ କରି ଆଲିଙ୍ଗନ ।
ହେ ବତ୍ସ ବଡ଼ ଭାଗ୍ୟ ମୋର
ହୋଇଲା ବାଞ୍ଛା କରିବାର ।
ଯେଉଁ ଭୟେ ଲଙ୍କା ଛାଡ଼ିଲୁ
ରସାତଳକୁ ଚାଲି ଗଲୁ ।
ସେ ଭୟେ ତ ଏବେ ଅସୁର
ନାଶ ହୋଇଲା ଦଶଶିର ।
ଅମ୍ଭେମାନେ ପୂର୍ବ ସମୟରେ
ସମସ୍ତେ ଥିଲୁ ଲଙ୍କାପୁରେ ।
ଏବେ ତିଷ୍ଠି ତୋ ଭାଇ କୁବେର
ଭୋଗ ସେ କରୁଛି ସେ ପୁର ।
ପ୍ରୀତିରେ ବଳେ ଅବା ସାର
ଆଣିବାକୁ ହେବ ସେ ପୁର ।
ରାଜ୍ୟ ଭୟେ ନ ଦଶଗ୍ରୀବ
ବନ୍ଧୁ ସୁହୃଦ ତାହୁଁ ହେବ ।
ତାଙ୍କୁ କହିଲେ ଦଶଶିର
କୁବେର ଗୁରୁ ତ ଅସୁର ।
ଏ ରୂପେ ଅମ୍ଭେ ତ ତାହାକୁ
ଯୋଗ୍ୟ ନୋହୁଁ କହିବାକୁ ।
ରାବଣ କହନ୍ତେ ଏମନ୍ତ
ତାହାଙ୍କୁ କହିଲେ ପ୍ରହସ୍ତ ।
ସମର୍ଥ ଲୋକମାନଙ୍କର
ଭାଇ ସ୍ନେହ ଯେ ନାହିଁ ସାର ।
ମୁଁ ଯାହା କହିବି ତୁମ୍ଭଙ୍କୁ
ସେ କଥା ହେବ ଶୁଣିବାକୁ ।
ଦେଖ ଏ ଦେବତା ଦଇତ
ସମସ୍ତେ କଶ୍ୟପଙ୍କ ସୁତ ।

ଭାଇ ସ୍ନେହ ଗୁଣ ସେମାନେ
ଅଯୂଧ ସେନା ଅନ୍ୟୋଅନ୍ୟେ ।
ସଂଗ୍ରାମ କଲେ କ୍ରୋଧ ବହୁ
ମାନ୍ୟ ତ ନ ରଖିଲେ କେହୁ ।
ଏକ୍ଷଣ କାଳର ତ ବୀର
ଏ କଥା ନୋହେ ଦଶଶିର ।
ଦୈବତା ପୂର୍ବ ସମୟରେ
କରିଅଛନ୍ତି ଏ ପ୍ରକାରେ ।
ଏ ରୂପେ ପ୍ରହସ୍ତ ବଚନ
ଶୁଣି ସନ୍ତୋଷେ ଦଶାନନ ।
ସେ କଥା ସିଦ୍ଧକରି କଲେ
ତ୍ରିକୂଟ ପର୍ବତକୁ ଗଲେ ।
ପଠାଇଲ ସେ ପ୍ରହସ୍ତକୁ
ଲଙ୍କା ଭିତରେ କୁବେରକୁ ।
ତାହାର କର ଦେଇ ବେଗେ
ମନ୍ତ୍ରୀମାନଙ୍କ ସେନା ସଙ୍ଗେ ।
ପ୍ରବେଶ ହୋଇ ଲଙ୍କା ପୁରେ
ରହିଲେ ପରମ ସୁଖରେ ।
ପିତାଙ୍କ ଆଜ୍ଞାରେ କୁବେର
ବହନ ତେଜି ସେ ନଗର ।
କୈଳାସ ପର୍ବତକୁ ଗଲେ
ଶିବଙ୍କ ତପେ ତୋଷ କଲେ ।
ସଖା ହୋଇଣ ତାଙ୍କ ସଙ୍ଗେ
ବିଶ୍ୱକର୍ମାକୁ ଆଣି ବେଗେ ।
ଅଳକା ପୁରୀ ତାଙ୍କ କରେ
ଗଢ଼ାଇ ସେହୁ ବିଭବରେ ।
ମହେଶ୍ୱରେ ପାଳିତ ହୋଇ
ଅତି ସୁଖେ ସେ ପୁରେ ରହି ।
କଲେ ସେ ଦିଗପାଳ ପଣ
କୁମ୍ଭକର୍ଣ୍ଣାଦି ଦୈତ୍ୟଗଣ ।

ଲଙ୍କା ଭିତରେ ରାବଣକୁ
କରଣ ଅଭିଷେକ ତାଙ୍କୁ ।
ତ୍ରୈଲୋକ୍ୟ ଯାକକୁ ହେ ବୀର
ବନ୍ଦାକ୍ରା ହୋଇ ଦଶଶିର ।
ପାଳନା କଲେ ଦୈତ୍ୟେ ରାଜ୍ୟ
ଏଥୁ ଅନ୍ତରେ ବଂଶଧ୍ୱଜ ।
ଶୂର୍ପଣଖାକୁ ବିଭା କଲେ
ବିଦ୍ୟୁତ୍‌ଜିହ୍ୱାକୁ ତାଙ୍କୁ ଦେଲେ ।
ମୟ ନାମରେ ଦୈତ୍ୟପତି
ତାହାର ଅଟେ ଏକ ପୁତ୍ରୀ ।
ଅତ୍ୟନ୍ତ ପରମ ସୁନ୍ଦରୀ
ନାମ ଅଟଇ ମନ୍ଦୋଦରୀ ।
ଆଣି ସେ ବିଭା କରି ତାକୁ
ସମର୍ପି ଦେଲା ରାବଣକୁ ।
ଅମୋଘ ଶକ୍ତି ଗୋଟି ଏକ
ଦେଲା ସେ ତାକୁ ଯଜନ୍ତୁକ ।
ବଳୀଙ୍କ ନାତୁଣୀ ହେ ରାମ
ତାହାର ବୃତ୍ରଜ୍ୱାଳା ନାମ ।
କୁମ୍ଭକର୍ଣ୍ଣକୁ ତା ବହନ
ବିବାହ କଲେ ଦଶାନନ ।
ଗନ୍ଧର୍ବ ଶୈଳୂଷ ପୁତ୍ରୀ
ସରମା ନାମେ ରୂପବତୀ ।
ସମସ୍ତ ସୁଲକ୍ଷଣେ ଯୁତ
ଧର୍ମ ସେ ଜାଣଇ ବହୁତ ।
ଏମନ୍ତ କନ୍ୟାକୁ ଆଣିଣ
ବିବାହ ହେଲେ ବିଭୀଷଣ ।
ମନ୍ଦୋଦରୀ ପୁଣି ହେ ରାମ
ମେଘନାଦକୁ କଲା ଜନ୍ମ ।
ସେ ଜାତ ମାତ୍ରକେ ବହନ
ଗର୍ଜନ କଲା ଯେସନେ ଘନ ।

ଏଣୁ କରି କେ ରାମଚନ୍ଦ୍ର
ତା ନାମ ହେଲା ମେଘନାଦ ।
ସେ କୁମ୍ଭକର୍ଣ୍ଣ ଏ ଜନ୍ମରେ
କହିଲେ ରାବଣ ଛାମୁରେ ।
ନିଦ୍ରା ବାଧୁଅଛି ହେ ରାଜନ
ମୁଁ ଏବେ କରିବି ଶୟନ ।
ଏମନ୍ତ ଶୁଣନ୍ତେ ରାବଣ
ଲମ୍ବ ଓସାର ତା ପ୍ରମାଣ ।
ପୁର ଗୋଟିଏ ତୋଳାଇଲେ
ତହିଁରେ ଶୟନ ସେ କଲେ ।
ପୁଣି ସେ ଜନ୍ମରେ ରାବଣ
ବ୍ରାହ୍ମଣ ଦେବ ଋଷିଗଣ ।
ଦାନବ କିନ୍ନର ମନୁଷ୍ୟ
ଜଗତ ସ୍ତ୍ରିସ୍ତ୍ରୀ କଲା ନାଶ ।
ଏରୂପେ ଦୁଷ୍ଟପଣ ତାର
ବାରତା ପାଅନ୍ତେ କୁବେର ।
ଅଧର୍ମ ନ କରିବା ପାଇଁ
ପଠିଆଇଲେ ତାଙ୍କ ଭାଇ ।
ଲଙ୍କାରେ ମିଳିଣ ସେ ଦୂତ
କହିଲା ଅଧର୍ମୁ ନିବର୍ତ୍ତି ।
ରାବଣ ଶୁଣି କ୍ରୋଧ ହୋଇ
କୁବେରଙ୍କ ପୁରକୁ ଯାଇ ।
ସଂଗ୍ରାମ କରି ତାଙ୍କ ତୁଲେ
ପୁଷ୍ପକ ଛଡ଼ାଇ ଆଣିଲେ ।
ରାବଣ ସେ ଜନ୍ମରେ ପୁଣି
ଯମଙ୍କ ବରୁଣଙ୍କ ଜିଣି ।
ଯୁଝିବା ପାଇଁ ଇନ୍ଦ୍ର ତୁଲେ
ସ୍ୱର୍ଗଲୋକକୁ ବେଗେ ଗଲେ ।
ସୁର କିନ୍ନର ତୁଲେ ରାମ
ବହୁତ ହୁଅନ୍ତେ ସଂଗ୍ରାମ ।

ରାବଣ ହୃଦୟକୁ ଚହିଁ
ବଜ୍ର ମାରି ମୋହ କରାଇ ।
ଜରନ୍ତେ ସ୍ୱର୍ଗ ରକ୍ଷା ଇନ୍ଦ୍ର
ଏମନ୍ତ ଶୁଣି ମେଘନାଦ ।
ଚହନ ଯାଇ ସେ ଶ୍ରୀରାମ
ଅନେକ କରି ସେ ସଂଗ୍ରାମ ।
ଜିଣି ସମସ୍ତ ଦେବତାଙ୍କୁ
ବନ୍ଧନ କରି ମହେନ୍ଦ୍ରଙ୍କୁ ।
ପିତାଙ୍କୁ ସଚେତ କରାଇ
ଇନ୍ଦ୍ରଙ୍କୁ ଘେନି ଜୟୀ ହୋଇ ।
ପରମ ହରଷ ମନରେ
ପ୍ରବେଶ ହେଲା ଲଙ୍କାପୁରେ ।
ସେଠାକୁ ବ୍ରହ୍ମା ବେଗେ ଯାଇ
ଇନ୍ଦ୍ରଜିତକୁ ଭେଟ ହୋଇ ।
ଅନେକ ବରମାନ ଦେଲେ ;
ଇନ୍ଦ୍ରଙ୍କୁ ମାଗି ଘେନିଗଲେ ।
ରାବଣ ସେ ଜନ୍ମରେ ପୁଣି
ସମସ୍ତ ଲୋକଙ୍କୁ ସେ ଜିଣି ।
ଆପଣା ନିଜ ଭୁଜବଳେ
କୈଳାସ ଶଇଳ ତୋଳିଲେ ।
ସକ୍ରୋଧ ହୋଇଣ ସେ କାଳେ
ନନ୍ଦ ତାହାକୁ ଶାପ ଦେଲେ ।
ତୋହର ବାନର ମନୁଷ୍ୟ
ସକାଶୁ ହୋଇବ ବିନାଶ ।
ନ ମାନିକରି ସେ ଶାପକୁ
ଗଲା ସହସ୍ରାର୍ଜୁନଠାକୁ ।
ସେ ତାକୁ ବାନ୍ଧି ରଖିଥିଲେ
ତାଠାରୁ ପୁଲସ୍ତ୍ୟ ଆଣିଲେ ।
ପୁଣି ରାବଣ କ୍ରୋଧ ହେଲା
ବାଳିକି ମାରିବାକୁ ଗଲା ।

ତାହାକୁ ଧର ବାଲି ହେଲେ
ଯାଚଣି ବାମ କାଖତଳେ ।
ଚଳିଲେ ସେ ସ୍ୱର ସିନ୍ଧୁରେ
ପ୍ରବେଶ ହେଲେ କିଷ୍କିନ୍ଧ୍ୟାରେ ।
କାଗରୁ କାନ୍ଦନ୍ତେ ସେ ବେଗେ
ରାବଣ ସେ ବାଳିଙ୍କ ସଙ୍ଗେ ।
ଭୟରେ କର ସଖା ହେଲେ
ଆପଣା ଘଟକରୁ ଗଲେ ।
ଏରୂପେ ସବୁ କେଉମାନ
ରାଣକର ସେ ଦଶ ନନ ।
ସମସ୍ତ ଲୋକମାନ ଭଲ
ଅତ୍ୟନ୍ତ ଉତ୍କୃଷ୍ଟ ହୋଇଲ ।
ସେ ଇନ୍ଦ୍ରଜିତ ବଂଶଭୁକ
ଏରୂପେ ଦୁହିଙ୍କର ତେଜ ।
ଏମନ୍ତେ ସେ ଯେଉଁ ରାବଣ
ତାହାକୁ ମାଇଲ ଆପଣ ।
ସେ ଇନ୍ଦ୍ରଜିତର ଏ ପ୍ରାଣ
ହରଲେ ହେଲାରେ ଲକ୍ଷ୍ମଣ ।
ମହାବଳୀ ସେ କୁମ୍ଭକର୍ଣ୍ଣ
ଆପଣ କଲ ତା ନିଧନ ।
ଯେ ଅଦକର୍ତ୍ତା ଏ ସୃଷ୍ଟିର
ସେ ନାରାୟଣ ତୁମ୍ଭେ ବୀର ।
ସ୍ଥାବର ଜଙ୍ଗମ ଜଗତ
ଏ ତୁମ୍ଭ ରୂପ ସୀତାକାନ୍ତ ।
ତୁମ୍ଭର ଯେଉଁ ନାଭିପଦ୍ମ
ତହୁଁ ହୋଇଛି ବ୍ରହ୍ମା ଜନ୍ମ ।
ଶାରଦା ତୁଳେ ସୀତାକାନ୍ତ
ଅଗ୍ନି ତୋ ମୁଖୁଁ ହେଲ ଜାତ ।
ସମସ୍ତ ଲୋକପାଳେ ତୋର
ବେନି ବାହୁରୁ ହେଲେ ବୀର ।
ନୟନ ଯୁଗଳରୁ ଜାତ
ହୋଇଛି ଚନ୍ଦ୍ରମା ଆଦିତ୍ୟ ।
କର୍ଣ୍ଣରୁ ହେଲ ଦିଗମାନ
ଅଶ୍ୱିନୀକୁମାରେ ଘ୍ରାଣକ ।
ଏ ତୋର ନାସିକାରୁ ଜନ୍ମ
ହୋଇ ଅଛନ୍ତି ହେ ଶ୍ରୀରାମ ।
ଭୂବର ଲୋକାଦି ସକଳ
ଜଙ୍ଘରୁ ଜାନୁ ଉରସ୍ଥଳ ।
ହୋଇଅଛନ୍ତି ତୋହଠାରୁ
ଚତୁର ସମୁଦ୍ର ଉଦରୁ ।
ସ୍ତନରୁ ମହେନ୍ଦ୍ର ବରୁଣ
ରେତରୁ ବାଲଖିଲ୍ୟାଗଣ ।
ମେଢ୍ରରୁ ଜାତ ହେଲେ ଯମ
ଗୁହ୍ୟରୁ ମୃତ୍ୟୁ ହେଲେ ଜନ୍ମ ।
କ୍ରୋଧରୁ ରୁଦ୍ର ହେଲେ ଜାତ
ଅସ୍ଥିରୁ ହେଲ ପରବତ ।
ଔଷଧି ରୋମମାନଙ୍କରୁ
ମୂଦର ହୋଇଲେ କେଶରୁ ।
ଯେଉଁ ପ୍ରକୃତ ବିଶ୍ୱରୂପ
ଆପଣଟି ସେହୁ ସ୍ୱରୂପ ।
ଗୁଣ ଭେଦରେ ରଘୁସାଇଁ
ମାୟାରେ ଯୁକ୍ତ ତୁମ୍ଭେ ହୋଇ ।
ସମସ୍ତଠାରେ ତୁ ପ୍ରକାଶ
ହୋଇ ବିବିଧ ରୂପେ ଦଶ ।
ତୁମ୍ଭ ପାଦକୁ ସେବଣାର
ଦେବତାମାନେ ଅଶେଷର ।
ଅମୃତମାନ ସେ ଯାଗରେ
ପାନ କରନ୍ତି ଆନନ୍ଦରେ ।
ସ୍ଥାବର ଜଙ୍ଗମ ଜଗତ
ତୁମ୍ଭେ କରଛ ସବୁ ଜାତ ।

ତୁମ୍ଭଙ୍କ ଅଣସୃଷ୍ଟି କର
ସମସ୍ତେ ପ୍ରାଣ ଛନ୍ତି ଧରି ।
ସବୁ ପଦାର୍ଥେ ତୁମ୍ଭେ ଅଛ
ସବୁରି ବଳ ରୂପେଅଛ ।
ଜୀବଯାକରେ ହୋଇ ସୂତ
ଯେମନ୍ତ ରହିଅଛି ସୂତ ।
ତେମନ୍ତ ପରକାରେ ହୋଇ
ସବୁଠାରେ ତ ଅଛ ରହି ।
ଅନଳ ଆଦିତ୍ୟ ଅବଶ୍ୟ
ତୋତେ ଯେ କରୁଛନ୍ତି ପ୍ରକାଶ ।
ସେମାନେ ତୋତେ ସୀତାପତି
ପ୍ରକାଶ କରୁ ଯେ ନାହାନ୍ତି ।
ତୁମ୍ଭଙ୍କ ସର୍ବଗତ ନିତ୍ୟ
ଏକ କାରଣ ଜ୍ଞାନନେତ୍ର ।
ଅଟନ୍ତି ଯେଉଁ ଲୋକମାନେ
ଦେଖନ୍ତିଟି ସେ ଚିତ୍ତଧନେ ।
ଅଜ୍ଞାନୀ ଅଟନ୍ତି ଯେ ନରେ
ଦେଖନ୍ତି ନାହିଁ ସେ ସ୍ୱପ୍ନରେ ।
ଅନ୍ଧ ଯେମନ୍ତେ ରବିପତ
ସୂର୍ଯ୍ୟଙ୍କୁ ଦେଖି ନ ପାରନ୍ତି ।
ଏ ବେଳେ ନିଜ ଅନ୍ତରନେ
ଖୋଜନ୍ତି ତୋତେ ଯୋଗୀମାନେ ।
ଏଣୁ ନିରଣନାଦ ହୋଇ
ରୂପଣପଦ ଯେ ଅଟଇ ।
ତେଣୁକରି ଯୋଗୀ ନିକରେ
ତୁମ୍ଭ ପଦ ଭକ୍ତ କ୍ଲେଶରେ ।

ଅସ୍ତୁତ ହୋଇ ଜ୍ଞାନରୂପ
ଏମନ୍ତ ଯେ ତୁମ୍ଭେ ନିଷ୍ପାପ ।
ସେ ତୋତେ ଖୋଜିଲେ ଦେଖନ୍ତି
ନୋହିଲେ କେବେ ନ ଦେଖନ୍ତି ।
ସର୍ବଜ୍ଞ ହେ ରଘୁନନ୍ଦନ
ମୁଁ ଯାହା ତୁମ୍ଭଙ୍କୁ ଏମାନ ।
ନିରର୍ଥକ ଏତେ କହିଲି
ମୁଁ ଅନୁଗ୍ରହ ପାଇ ବୋଲି ।
ମୋଠାରେ ଏ କଥା ରାଘବ
କ୍ଷମା ତା କରିବା ହୋଇବ ।
ନାହାନ୍ତି କାଳ ଦିଗ ଦେଶ
ଯେ ଏକ ଚୈତନ୍ୟ ପ୍ରକାଶ ।
ସାକ୍ଷାତେ ଅଜ ତୁ ଅକ୍ଷର
ଚଳନାଦ ଧ୍ୟାନ ଈଶ୍ୱର ।
ଅନନ୍ତ ଗୁଣ ଯେ ଅଟନ୍ତି
ମାୟାକୁ ଛଣ୍ଡାଇ ଅଛନ୍ତି ।
ଭକତ ଲୋକଙ୍କୁ ଅଭିନ୍ନ
ଏମନ୍ତ ଯେ ରଘୁନନ୍ଦନ ।
ତାହାଙ୍କୁ ମୁଁ ହୃଦୟେ ଘେନେ
ଭଜୁଛି ନିତ୍ୟରେ ସନ୍ତତେ ।
ବୋଇଲି ଦାସ ହଳଧର
ଜାନକୀ ସୁତ ଶ୍ରୀରାମର ।
ପାଦପଙ୍କଜେ ଭକ୍ତି ହେଉ
କେବେହେଁ ଏଥୁ ଆନ ନୋହୁ ।
କୃପା କର ହେ ରାମଚନ୍ଦ୍ର
ଏ ଗତେ ଚୌରାଅଣୀ ପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଲଙ୍କାକାଣ୍ଡେ ନାମ ଦ୍ୱିଷଷ୍ଠୋଽଧ୍ୟାୟଃ ।

# ତୃତୀୟ ଅଧ୍ୟାୟ

## ଶ୍ରୀମହାଦେବ ଉବାଚ

ଶିବ ବୋଲନ୍ତି ଗୋ ପାର୍ବତୀ !
ଏଥିଉତ୍ତାରେ ରଘୁପତି ।
ପୁଣି ଅଗସ୍ତ୍ୟଙ୍କୁ ଅନାଇ
କହିଲେ କୃତାଞ୍ଜଳି ହୋଇ ।

ଶ୍ରୀରାମ ଉବାଚ

ବାଳି ସୁଗ୍ରୀବଙ୍କ ସଞ୍ଜାତ
ଶୁଣିବାକୁ ହେ ତପୋଧନ ।
ଶରଧା ହେଉଛି ମୋହର
ଏ ଦୁହେଁ ବାନର ଅକାର ।
ହୋଇ ସଞ୍ଜାତ ହୋଇଛନ୍ତି
ଏରୂପେ ସମସ୍ତେ କହନ୍ତି ।
ବିସ୍ତାରି କହ ସେ ବିଷୟ
କହିବା ହେଉ ମହାଶୟ ।
ଶୁଣି ହରଷେ ହୋଇ ଯୁତ
ଏମନ୍ତ କହିଲେ ଅଗସ୍ତ୍ୟ ।

ଅଗସ୍ତ୍ୟ ଉବାଚ

ସୁବର୍ଣ୍ଣମୟ ଯେ ଅଟଇ
ସୁମେରୁ ପର୍ବତ ତହିଁ ।
ତା ମଧ୍ୟଶୃଙ୍ଗ ମଣିଯୁତ
ତେଜରେ ସେ ସେତେକେ ଅଦ୍ଭୁତ ।
ତହିଁ ପୁଣି ହେ ରଘୁପତି
ଶହେ ଯୋଜନ ଦୀର୍ଘ ପ୍ରସ୍ଥ ।
ଏମନ୍ତ ପ୍ରକାରେ ଧାତାର
ଅଛି ଏକ ସଭା ମନ୍ଦର ।
ତହିଁରେ ବ୍ରହ୍ମା ଏକଦିନ
ଯୋଗାରୂଢ଼ ହୋଇ ଆସନେ ।
ବସନ୍ତେ ନେତ୍ରୁଁ ତାହାଙ୍କର
ବହିଲା ଆନନ୍ଦରେ ନୀର ।
ବେନି କରେ ତା' ବ୍ରହ୍ମା ଧରି
ଏଥି କି ହେବ ଚିନ୍ତାକରି ।
ପକାନ୍ତେ ତହିଁରୁ ହେ ରାମ
କପି ଗୋଟିଏ ହେଲା ଜନ୍ମ ।
ତାହାକୁ ବ୍ରହ୍ମା ବୋଲେ ବୀର
ହେ ବତ୍ସ ! ଶୁଣ ମୋ ଉତ୍ତର ।
ସମସ୍ତ ଲୋକରେ ସଂସ୍ତୁତ
ସୁଖଦ ଅଟଇ ଅତ୍ୟନ୍ତ ।
ଏମନ୍ତ ଅମ୍ଭ ନିକଟରେ
ଥୋକାଏ କାଳ ଥା ସୁଖରେ ।
ପୁଣି ସେ ଉତ୍ତାରେ ବାନର
ହୋଇବ ଶ୍ରେୟକଥା ତୋର ।
ଯହୁଁ ସେ ଏମନ୍ତ ଶୁଣିଲା
ସେଠାରେ ନିଶ୍ଚିନ୍ତେ ରହିଲା ।
କେତେ ହେ କାଳର ଉତ୍ତାରେ
ସେ ଋକ୍ଷାଧିପ ବନକରେ ।
ଫଳ ମୂଳର ପାଇଁ ରଙ୍ଗେ
ଅରଣ୍ୟମାନରେ ବୁଲନ୍ତେ ।
ପାଷାଣ ମଣିରେ ନିର୍ମିତ
ନିର୍ମଳ ଜଳରେ ପୂରିତ ।
ଦେଖି ଏମନ୍ତ ପୁଷ୍କରିଣୀ
ପାନ କରିବା ପାଇଁ ପାଣି ।
ତୃଷାରେ ବ୍ୟଗ୍ର ହୋଇଥାଇ
ତହିଁ ଦେଖି ଆପଣା ଛାଇ ।

ଶକ୍ର ପରସ୍ୱେ ବୃକ୍ଷ ଗରେ
ପଙ୍କଜ ତେଜିଁ ସେ ଜଳରେ ।
ବାନର ନ ପାଇ ସେ ନୀରେ
ବାହାର ହେଲା ପୁଣି ଖରେ ।
ସୁନ୍ଦର ନାରୀ ନିଜ ଗାତ୍ର
ହୋଇଛି ଦେଖି ସେ ଏମନ୍ତ ।
ହୁଅନ୍ତେ ବହୁତ ବିସ୍ମୟେ
ଏମନ୍ତେ ମଧ୍ୟାହ୍ନ ସମୟେ ।
ବ୍ରହ୍ମାଙ୍କ ପୁତ୍ର ତୋଷଣରେ
ମହେନ୍ଦ୍ର ଅଦୃଶ୍ୟ ଅସନ୍ତେ ।
ଅତ୍ୟନ୍ତ ମନୋରମ କରି
ଦେଖିଲେ ବସିଛି ସେ ନାରୀ ।
ପୀଡ଼ିତ ହୋଇ କାମଶରେ
ସ୍ପର୍ଶ ମୁଞ୍ଚିଲେ ତା ଉପରେ ।
ବାଳରେ ପଡ଼ି ଇନ୍ଦ୍ର ରେତ
ହେବାରୁ ବାଳି ହେଲା ଜାତ ।
ମହେନ୍ଦ୍ର ସମ ସେ ଅଟନ୍ତି
ତାହାଙ୍କୁ ଦେଖି ଶଚୀପତି ।
କଣ୍ଠେ ସୁବର୍ଣ୍ଣମାଳା ଦେଲେ
ସ୍ୱର୍ଗ ଲୋକକୁ ସୁଖେ ଗଲେ ।
ଗ୍ରୀବାରେ ସୂର୍ଯ୍ୟ ରେତ ରମ
ପଡ଼ି ସୁଗ୍ରୀବ ହେଲେ ଜନ୍ମ ।
ତା ରକ୍ଷଣେ ସୂର୍ଯ୍ୟ ହନୁକୁ
ନିଯୋଜି ଦେଲେ ସ୍ୱପୁତ୍ରକୁ ।
ଏମନ୍ତ ଏକ ଦିନକରେ
ସେ ବେନି ପୁଅଙ୍କ ତୁଳରେ ।
ନିଦ୍ରା ଯାଇଣ ଥିଲା ରଣ୍ଡେ,
ଉନିଦ୍ର ହୋଇଣ ପ୍ରଭାତେ ।
ଦୂରର ପରସ୍ୱେ ଅପଣ
ବାନର ହୋଇଅଛି ପୁଣ ।

ଏମନ୍ତ ଦେଖି ଋକ୍ଷରାଜ
ଲଭି ସେ ପରମ ଆଶ୍ଚର୍ଯ୍ୟ ।
ସେ ଫଳମୂଳ ଘେନି ଖରେ
ଦୁଇ ପୁଅଙ୍କ ସଙ୍ଗତରେ ।
ବ୍ରହ୍ମାଙ୍କ ସମ୍ମୁରେ ମିଳିଲେ
ତାହାଙ୍କୁ ପ୍ରଣାମ ସେ କଲେ ।
ସେ ତାଙ୍କୁ ଦେଖି ତୋଷ ହେଲେ
ଅନେକ ଆଶ୍ୱାସନା କଲେ ।
ଡାକି ସେ ଏକ ଦେବଦୂତ
ତାହାଙ୍କୁ କହିଲେ ଏମନ୍ତ ।
ବିଶ୍ୱକର୍ମା ପୂର୍ବକାଳରେ
ଗଢ଼ିଅଛନ୍ତି ଯତନରେ ।
ସମସ୍ତ ସୁରମାନେ ଛନ୍ତି
ଦେବେ ଭରସି ନ ପାରନ୍ତି ।
ଏମନ୍ତ କିଷ୍କିନ୍ଧ୍ୟାକୁ ବେଗେ
ଯାଅ ଏହାଙ୍କୁ ଘେନି ସଙ୍ଗେ ।
ସେ ପୁରେ ସିଂହାସନେ ନେଇ
ଏ ଋକ୍ଷାଧିପକୁ ବସାଇ ।
ନୃପତି କରି ସେ ରାଜ୍ୟରେ
ଅଭିଷେକହିଁ କରି ଖରେ ।
ସପ୍ତଦ୍ୱୀପ ଧରଣୀରେ
ଅଛନ୍ତି ଯେତେକ ବାନରେ ।
ଅମ୍ଭ ଅଂଶରେ ସେ ସମସ୍ତେ
ଏହାର ବଶ୍ୟ ହେବେ ନିତ୍ୟେ ।
ଭୂମିର ଭାର ଯେଉଁକାଳେ
ହୋଇଥିବେ ଯେ ଦୈତ୍ୟକୁଳେ ।
ତାହାଙ୍କୁ କରିବାକୁ ନାଶ
ମାୟାରେ ଧରି ନର ବେଶ ।
ଭୂମିରେ ନାରାୟଣ ଜନ୍ମ
ହୋଇବେ ବହି ରାମ ନାମ ।

ସେକାଳେ ସମସ୍ତ ବାନର
ସହାୟ ହୋଇବ ତାଙ୍କର ।
ବ୍ରହ୍ମାର ଶୁଣି ସେ ବଚନ
ତାହାଙ୍କୁ ନେଇ ଦେବଗଣ ।
ନୃପତି କପି ରୂପରେ କଲେ
ସୃଷ୍ଟି ତା ବ୍ରହ୍ମାଙ୍କୁ କହିଲେ ।
ସେ ଭଳି କପିମାନଙ୍କର
ସ୍ଥାନ ହୋଇଲା ସେ ନଗର ।
ଆପଣ ଅଟ ସର୍ବେଶ୍ୱର
ତୁମ୍ଭଙ୍କୁ ବ୍ରହ୍ମା ଏବେ ବର ।
ମାଗିଲୁ ହେ ରାବଣ ବ
ଲୀଳାର୍ଥେ ନରଦେହ ଧର ।
ମାର ସେ ସମସ୍ତ ରାକ୍ଷସ
ଧରଣୀ ଭାର କର ନାଶ ।
ସର୍ବ ଭୂତର ହୃଦେ ନିତ୍ୟ
ରହିଛ ଅଟ ସଦା ମୁକ୍ତ ।
ଆପଣ ଚୈତନ୍ୟ ସ୍ୱରୂପ
ତୁମ୍ଭେଟି ପୂର୍ଣ୍ଣାନନ୍ଦ ରୂପ ।
ଏ ଯେଣୁ ତୁମ୍ଭର ଶରୀର
ଏ ଅଟ କେତେ ପରାକ୍ରମ ।
ତଥାପି ଯେଣୁ ଲୀଳା ପାଇଁ
ମନୁଷ୍ୟ ରୂପ ଅଛ ବହି ।
ଏ ଯୋଗୁ ତୁମ୍ଭ ଯଶ ଗାଇଁ
ସାଧୁ ସମୂହ ତା ବର୍ଣ୍ଣନ୍ତି ।
ଯେଣୁକର ଯଶ ତୁମ୍ଭର
ସମସ୍ତ ଭୂତମାନଙ୍କର ।
ପାତକ-ସମୂହ ନାଶଇ
ଅପମିତ ସୁଖ ଦିଅଇ ।
ହେ ରାମ ତୁମ୍ଭର କଥାକୁ
ଦେଖ ଏ ଅଶ୍ୱସ୍ତ କଲାକୁ ।

ଶ୍ରେଷ୍ଠ ଅଟଇ ଅତଅନ୍ତ
ବାଲି ସୁଗ୍ରୀବଙ୍କ ସଙ୍ଗାତ ।
ଏହା ଯେ ଶ୍ରବଣ କରଇ
ସେ ସବୁ ପାପରୁ ତରଇ ।
ତୁମ୍ଭର ବିଷୟରେ ପୁଣ
ଅଜ କହିବା କଥା ଶୁଣ ।
ସୀତାଙ୍କୁ କର୍ଣ୍ଣ ସହିପାଇଁ
ହୈଦ୍ରାବ ନେଇ ଲଙ୍କପାଇଁ ।
ବ୍ରହ୍ମାର ଅଟନ୍ତି କୁମର
ନାମ ତା ସନତକୁମାର ।
ସତ୍ୟ ଯୁଗରେ ପୂର୍ବକାଳେ
ବସି ସେ ଥିଲେ ଏକାନ୍ତରେ ।
ରାବଣ ଏହି ସମୟରେ
ପ୍ରବେଶ ହୋଇ ତାଙ୍କଠାରେ ।
ପ୍ରଣାମ ଭକତିରେ କଲେ
ବିନୟ ହୋଇ ପଚାରିଲେ ।
ଯାହାକୁ ଅଶ୍ରାକର ସୁରେ
ଶତ୍ରୁଙ୍କୁ ଜିଣନ୍ତି ଯୁଦ୍ଧରେ ।
ସେ ତ ଦେବତାମାନଙ୍କର
ମଧ୍ୟରେ ଅଟେ ବଳସାର ।
ସମସ୍ତ ଲୋକେ ଶ୍ରେଷ୍ଠ ସେ ତ
ନାମ ତାର କ ତପୋବନ୍ତ ।
ବ୍ରାହ୍ମଣେ ଯାହାକୁ ପୂଜନ୍ତି
ଯୋଗୀ ଯାହାକୁ ଚିନ୍ତନ୍ତି ।
ଯେ ଅଟେ ଏମନ୍ତ ପ୍ରକାର
ତା ମୋତେ କହ ମୁନିବର ।
ଯୋଗର ବୃଷ୍ଟିଅଛି ଯାର
ଏମନ୍ତ ସନତକୁମାର ।
ଏରୂପେ ଶୁଣି ତା ବଚନ
କହିଲେ ଜାଣି ତାହା ମନ ।

ସ୍ଥାବର ଜଙ୍ଗମ ଜଗତ
ଯେ କରିଅଛନ୍ତି ସଂଜାତ ।
ଦେବତାମାନେହିଁ ତାହାଙ୍କ
ଅଂଶରୁ ଜନ୍ମ ଶତ୍ରୁଙ୍କୁ ।
ସଂଗ୍ରାମରେ ହେ ଲଙ୍କପତି ।
ହେଳାରେ ନାଶ କରୁଛନ୍ତି ।
ଯୋଗୀନ୍ଦ୍ରଙ୍କରେହିଁ ଯୋଗରେ
ତାହାଙ୍କୁ ଜପନ୍ତି ହୃଦରେ ।
ଏମନ୍ତ ଶୁଣି ସେ ରାବଣ
ମୁନିଙ୍କି ପଚାରିଲା ପୁଣ ।
ଦଇତ ଦାନବ ରାକ୍ଷସ
ଏ ବିଷ୍ଣୁ ହାତେ ହେଲେ ନାଶ ।
ଲଭନ୍ତି କେଉଁ ଅପଘନ
ତା ମୋତେ କହ ତପୋଧନ ।
ଏମନ୍ତେ ଶୁଣି ମୁନି ପୁଣ
ବୋଇଲେ ଶୁଣ ହେ ରାବଣ ।
ଯାହାକୁ ଦେବେ ସଂଗ୍ରାମରେ
ବଧ କରନ୍ତି ସେ ଅସୁରେ ।
ସ୍ୱର୍ଗରେ ସୁଖ ସେ ଭୁଞ୍ଜନ୍ତି
ପୁଣି ସେ ଭୂମିରେ ପଡ଼ନ୍ତି ।
ସେ ପୂର୍ବ ପାତକ ପୁଣ୍ୟରେ
ବେଳକୁ ବେଳ ଏ ସଂସାରେ ।
ଜନ୍ମ ମରଣ ଲଭୁଥାନ୍ତି
ଯେ ବିଷ୍ଣୁ ହାତରେ ମରନ୍ତି ।
ସୁଖରେ ସେ ବେଳ ନିକରେ
ବସନ୍ତି ପରମ ପଦରେ ।
ଏମନ୍ତ ଶୁଣି ସେ ରାକ୍ଷସ
ଲଭିଣ ଅତ୍ୟନ୍ତ ହରଷ ।
ଚିନ୍ତାଇ ମୁଁ ହରି ସଙ୍ଗତେ
ସଂଗ୍ରାମ କରିବି କେମନ୍ତେ ।

ସନତକୁମାର ତା ମନ
ଜାଣି ବୋଇଲେ ହେ ରାଜନ ।
ଏ କଥା ଇଚ୍ଛିବୁ ନିଶ୍ଚୟେ
ମନରେ ନ କର ସଂଶୟେ ।
ଥୋକାଏ କାଳ ସୁଖୀ ହୋଇ
ନିଶ୍ଚିନ୍ତେ ଥାଅ ପୁରେ ରହି ।
ପୁଣି ବୋଇଲେ ହେ ରାବଣ
ଅଜ କହୁଁବା କିଛି ଶୁଣ ।
ଯେ ଅଟେ ଅରୂପୀ ମାୟାଙ୍କ
ତାହାର ସ୍ୱରୂପ କହିବ ।
ସ୍ଥାବର ନଦନଦୀ ମାରେ
ଅଛି ସେ ସମସ୍ତ କାଳରେ ।
ଯେ ସତ୍ୟ ପ୍ରଣବ ସାବିତ୍ରୀ
ଧରିଛି ସବୁ ସୃଷ୍ଟି ସ୍ଥିତି ।
ଯେତେକ ଯାକ ଶେଷ ହୋଇ
ସବୁହିଁ ସେ ବିଷ୍ଣୁ ଅଟଇ ।
ଦେବତା ସପତ ସମୁଦ୍ର
ତବସ ଗ୍ରହ କାଳଚନ୍ଦ୍ର ।
ସମସ୍ତ ଅଣଗୁଣ ବାତ
କୁବେର ଅନଳ ଅଦିତ୍ୟ ।
ବରୁଣ ବ୍ରହ୍ମା ନଇଋତି
ରୁଦ୍ରାଦି ଯେତେକ ଅଛନ୍ତି ।
ଦୈତ୍ୟ ଦାନବ ମଧ୍ୟ ହୋଇ
ସବୁ ଏ ସେ ବିଷ୍ଣୁ ଅଟଇ ।
ଯେ ସବୁ କାଳେ ଜନ୍ମଅଛି
ସନ୍ତତେ ଯେ ଶୋଭା ପାଉଛି
ସର୍ଜନା ପାଳନା ସଂହାର
ଯେ କରୁଅଛି ଏ ସଂସାର ।
ସବୁହିଁ ସେ ବିଷ୍ଣୁ ଅଟନ୍ତି
କ୍ରୀଡ଼ା ଏ ରୂପେ କରୁଛନ୍ତି ।

ଚର ଅଚର ଯେ ଜଗତ
ସବୁ ସେ ଘୋଟିଛି ସନ୍ତତ ।
ନୀଳ ଉତ୍ପଳ ଦଳ ବର୍ଣ୍ଣ
ବିଜୁଳି ପରାୟେ ବସନ ।
ବକ୍ଷେ ସୁବର୍ଣ୍ଣ ପ୍ରକାର
ଏମନ୍ତ ଲକ୍ଷ୍ମୀ ଯାହାଙ୍କର ।
ବାମାଙ୍ଗେ ଶୋଭା ପାଉଛନ୍ତି
ସମସ୍ତ କାଳରେ ସେ ଥାନ୍ତି
ତାଙ୍କୁ ସେ ଆଲିଙ୍ଗନ କରି
ବାମ ବାହୁରେ ଛନ୍ତି ଧରି ।
ଦେବତା ପନ୍ନଗ ଦାନବ
କେହୁ ତାହାଙ୍କୁ ଦଶଗ୍ରୀବ ।
ଦେଖି ନ ପାରନ୍ତି ନେତ୍ରରେ
ସେ ଅନୁଗ୍ରହ ଯାହାଠାରେ ।
କରନ୍ତି ସେମାନେ ବହନ
କରନ୍ତି ତାହାଙ୍କ ଦର୍ଶନ ।
ତପସ୍ୟା ଯଜ୍ଞ ନାନାଦାନ
ସମସ୍ତବେଦ ଅଧ୍ୟୟନ ।
ଏଆଦି କ୍ରିୟାରୁ ଜନକରେ
ଯେତେ ଅଛନ୍ତି ସେ କାହିଁରେ ।
କେବେହେଁ ତାଙ୍କୁ ଦଶଗ୍ରୀବ
ତୁମ୍ଭେ ଯେ ଦେଖି ନ ପାରିବ ।
ସେ ବିଷ୍ଣୁଠାରେ ଯେ ଭକତ
ତାଠାରେ ହୋଇଣ ପ୍ରଣତ ।
ନାଶିଣ ପାତକ ସକଳ
ବେଦାନ୍ତରେ ବୁଦ୍ଧି ନିର୍ମଳ ।
ଯେଉଁ ଲୋକର ହୋଇଥାଇ
ତାହାଙ୍କୁ ସେ ଦେଖି ପାରଇ ।
ଯେବେ ତାହାଙ୍କୁ ଦଶଶିର
ଦେଖିବା ନିମନ୍ତେ ବିଚାର ।

ତେବେ ଯା କହିବି ମୁଁ ପୁଣ
ସେ କଥା ମନଦେଇ ଶୁଣ ।
ତ୍ରେତାଯୁଗେ ସେ ଭଗବାନ
ଧରିବେ ଛଳ ଅପଘନ ।
ଦେବ ମନୁଷ୍ୟ ହିତପାଇଁ
ଇକ୍ଷ୍ୱାକୁ ବଂଶେ ରାମ ହୋଇ ।
ଦଶରଥର ହେବେ ପୁତ୍ର
ହେବେ ଅତ୍ୟନ୍ତ ସୁଚରିତ୍ର ।
ସେ ପୁଣି ପିତା ଆଜ୍ଞାପାଇ
ଭ୍ରାତା ସଙ୍ଗତେ ଯୁତ ହୋଇ ।
ଜଗତମାତା ଯେଉଁ ମାୟା
ସେ ହୋଇଥିବେ ତାଙ୍କ ଜାୟା ।
ଦୁହିଙ୍କ ସେନା ସଙ୍ଗତରେ
ବୁଲିବେ ଦଣ୍ଡକା ବନରେ ।
ଏତେକ ତୁମ୍ଭଙ୍କ ତ ବୀର
କହିଲି କରି ତ ବିସ୍ତାର ।
ଭକତଭାବେ ବାଂଶଲ୍ଲଙ୍କ
ଶ୍ରୀପୁତ ଶ୍ରୀରାମଙ୍କୁ ଭଜ ।
ଏମନ୍ତ ଶୁଣି ଦଶଶିର
ମନରେ କରି କି ବିଚାର ।
ତୁମ୍ଭର ସଙ୍ଗେ ଯୁଦ୍ଧପାଇଁ
ଲକ୍ଷ୍ମଣ ସେ ହରଷ ହୋଇ ।
ଯୁଦ୍ଧ ନିମନ୍ତେ ଲଙ୍କାପାଇଁ
ସମସ୍ତ ଲୋକେ ବୁଲୁଥାଇ ।
ଏଣୁକରି ହେ ସୀତାକାନ୍ତ
ସୁବୁଦ୍ଧି ଯେଣୁ ସେ ଅତ୍ୟନ୍ତ ।
ତୁମ୍ଭର କରେ ନାଶପାଇଁ
ସୀତାଙ୍କୁ ନେଲେକ ଚୋରାଇ ।
ଏ କଥା ଯେ ଅବା ପଢ଼ଇ
କି ଅବା ଶୁଣଇ ଶୁଣାଇ ।

ସେ ଲୋକ ଅପୂର୍ବ ଅରୋଗ୍ୟ
ଅକ୍ଷୟ-ଧନ ସୁଖ ଭୋଗ ।
ଏତେକ ନିଶ୍ଚୟେ ଲଭିବ
ସନ୍ଦେହ ଏ କଥାରେ ନାହିଁ ।
ବୋଲେ ଦୁର୍ବୁଦ୍ଧି ହଳଧର
ଜାନକୀସୁତ ରଘୁବୀର ।
ସମସ୍ତ ଅପରାଧମାନ
ନାଶିଣ ହୁଅ ପରସନ୍ନ ।
ମୋ ଜଣ ଭବାନ୍ତୁ ହେ ସ୍ୱାମି
କି ହେବ ତୁମ୍ଭେ ଅନ୍ତର୍ଯାମୀ ।
ତୋ ପାଦେ ହେଉ ଏ ସମ୍ପଦ
ଅଧ୍ୟା ଣଏ ଏକାନ୍ତ ପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଉତ୍ତରକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଉମାକୁ ବୋଲେ ତ୍ରିଲୋଚନ
ହେ ପ୍ରିୟେ ଶୁଣ ମୋ ବଚନ ।
ଅଗସ୍ତ୍ୟ ମୁନି ସେ ଉତ୍ତରେ
କହିଲେ ଶ୍ରୀରାମ ଛାମୁରେ ।
ରାବଣ ପୁଷ୍ପକ ବିମାନେ
ଦିଗ ଭ୍ରମନ୍ତେ ଏକଦିନେ ।
ବ୍ରହ୍ମାଙ୍କ ଲୋକରୁ ନାରଦ
ଆସନ୍ତେ କରି ବୀଣାନାଦ ।
ତାହାଙ୍କୁ ଦେଖି ଦଶଶିର
କହିଲେ କରି ନମସ୍କାର ।
ଅତ୍ୟନ୍ତ ଶୂରବନ୍ତମାନେ
ଅଛନ୍ତି କେଉଁ କେଉଁ ସ୍ଥାନେ ।
କହିବା ହେଉ ମୁନି ବେଗେ
ଯୁଝିବି ସେମାନଙ୍କ ସଙ୍ଗେ ।
ତେଉଁ ସର୍ବାଣରୁ ଅପଣ
ସବୁ ଲୋକର ବାର୍ତ୍ତା ଜାଣ ।
ଏ ବୋଲ ଏ କଥା ବହନ
କହିବା ହେଉ ତପୋଧନ ।
ନାରଦ ଶୁଣି ଏ ବଚନ
ହସି ବୋଇଲେ ହେ ରାଜନ ।
ଶ୍ୱେତଦ୍ୱୀପରେ ସେ ଲୋକଙ୍କୁ
ହୋଇଅଛ ତ ଜାଣିବାକୁ ।
ସେ ଅତି ସମର୍ଥ ଅଟନ୍ତି
ସେଠାକୁ ଯାଅ ଲଙ୍କପତି ।
ବିଷ୍ଣୁଙ୍କୁ ଯେଉଁ ଯେଉଁ ମାନେ
ପୂଜା କରନ୍ତି ପ୍ରତିଦିନେ ।
ଯେଉଁମାନଙ୍କୁ ହେ ରାବଣ
ନାଶ କରନ୍ତି ନାରାୟଣ ।
ଦେବ ଦାନବ ମାନଙ୍କରେ
ଅଜେୟ ହୋଇ ସେହି ନରେ ।
ସେଠାରେ ନିଷ୍ଠିନ୍ତେ ଅଛନ୍ତି
ଏମନ୍ତ ଶୁଣି ଲଙ୍କପତି ।
ସେଠାକୁ ଯିବ ପାଇଁ ବେଗେ
ଚଳେ ସେ ମନ୍ତ୍ରୀମାନ ସଙ୍ଗେ ।
ସେ ଶ୍ୱେତଦ୍ୱୀପ ତେଜପାଇ
ପୁଷ୍ପକ ପ୍ରଭା ମ୍ଳାନ ହୋଇ ।

ତଳକୁ ନାହିଁ ଏହା ଦେଖି
ତା ମନ୍ତ୍ରୀ ସହିତେ କୁପେକ୍ଷି ।
ସେ ଦ୍ୱୀପ ମଧ୍ୟେ ଲଙ୍କସାଇଁ
ସାହସେ ପଶିଲେ ଫସାଇ ।
ତହିଁ ଭିତରେ ଏକ ସ୍ତ୍ରୀ
ରାବଣ କର କରେ ଧରି ।
ବୋଇଲା ଅଟ ତୁମ୍ଭେ କେହୁ
ଆସିବା ହେଲ କେଉଁଠାଇଁ ।
କେ ପେଷିଅଛୁ ଆପଣଙ୍କୁ
ସେମାନ ହେଉ କହିବାକୁ ।
ପୁଣି ସେ ଅସି ବହୁନାସ
ଲୀଳାରେ ଧରି ହାସ୍ୟ କରି ।
ବିବିଧ ପ୍ରକାରେ ସମସ୍ତେ
କରି ତାଡ଼ଣ ପଣ୍ଡରନ୍ତେ ।
ରାବଣ କଷ୍ଟ କଷ୍ଟ ହୋଇ
ତହିଁରୁ ବରଳୁ ଛଡ଼ାଇ ।
ଅତ୍ୟନ୍ତ ଅଷ୍ଟର୍ଯ୍ୟ ପ.ଇଲା
ଏମନ୍ତ ମନେ ଚିନ୍ତା କଲା ।
ବିଷ୍ଣୁରେ ଯେବେ ମୁଁ ମରିବି
ତେବେ ତ ବୈକୁଣ୍ଠକୁ ଯିବି ।
ଏ ଲୋକ ମୋଠାରେ ଯେମନ୍ତେ
କୋପ କରବେ ବିଷ୍ଣୁ ଶତ୍ରେ ।
ସେ କଥା କରିବି ଅବଶ୍ୟ
ଲକ୍ଷ୍ୟ କରି ସେ ରାକ୍ଷସ ।
ମରାସ୍ତା ବୋଲିଣ ତୁମ୍ଭଙ୍କୁ
ଜାଣି ସେ କରିଲା ସୀତାଙ୍କୁ ।
ତୋ ହାତେ ମରିବାର ପାଇଁ
ସୀତାଙ୍କୁ ଅରଣ୍ୟରୁ ନେଇ ।
ମା ପ୍ରାପ୍ତେ କରଣ ପାଳନା
ଯତ୍ନେ ରଖାଇ ଥିଲା ସିନା ।

ହେ ରାମ ପରମ ଈଶ୍ୱର
ଜ୍ଞାନ ନୟନ ଅଟ ସାର ।
ଏ ଲୋକ ସବୁ ତୁମ୍ଭେ ଜାଣ
ଭୂତ-ଭବିଷ୍ୟ-ବର୍ତ୍ତମାନ ।
ସାକ୍ଷୀ ତୁମ୍ଭେଟି ତ୍ରିକାଳର
ସର୍ବଦା ନିତ୍ୟ ଅଟ ସାର ।
ପରମ ଭକତ ମାନଙ୍କୁ
ଜଗତ ପ୍ରବର୍ତ୍ତାଇବାକୁ ।
ସମସ୍ତ କାଳେ ରାବଣାରି ।
ବିବିଧ କର୍ମମାନ କରି ।
ଧରି ମନୁଷ୍ୟ ଅପରାନ
ମୁନିମାନଙ୍କର ବଚନ ।
ଶୁଣିମା ହେଉଛ ଆପଣେ
ଏହା ବୋଲନ୍ତି ମୁନିମାନେ ।
ଶ୍ରୀରାମ ଶୁଣି ପ୍ରୀତ ହେଲେ
ସବୁ ଋଷିଙ୍କୁ ପୂଜା କଲେ ।
ସଙ୍ଗେ ଘେନି ସେ ସମସ୍ତଙ୍କୁ
ଅଗସ୍ତ୍ୟ ଗଲେ ଆଶ୍ରମକୁ ।
ତହିଁ କଳ୍ପାରେ ରଘୁସାଇଁ
ସୀତା ସହିତେ ଯୁତ ହୋଇ ।
ସମସ୍ତ ଦ୍ୱୀପମାନ ତୁଲେ
ସାକ୍ଷାତ ଲକ୍ଷ୍ମୀକାନ୍ତ ହେଲେ ।
ସଂସାର ମନୁଷ୍ୟ ଯେସନ
ସେ ରୂପେ କରି କ୍ରୀଡ଼ାମାନ ।
ଆନନ୍ଦେ ପୁରରେ ରହିଲେ
ସେ ପୁଣ ଅନାସକ୍ତ ହେଲେ ।
ସୀତା ମାରୁତ ଇତ୍ୟାଦିର
ତୁଲେ ସଂଯୁତ ହୋଇ ସାର ।
ବିଷୟମାନ ଭୋଗ କଲେ
ତହିଁ ଉତ୍ତାରେ ଏକ କାଳେ ।

ଅସି ସେ ପୁଷ୍ପକ ବିମାନ
ରାମଙ୍କୁ କହିଲେ ଏସନ ।
ତୁମ୍ଭ ଛାମୁକୁ ଧନପତି
ମୋତେ ସେ ପଠାଇଅଛନ୍ତି ।
ବୋଇଲେ ରାମ ରାବଣକୁ
ମାରି ତ ଲଭିଲେ ତୁମ୍ଭଙ୍କୁ ।
ଏ ବେଳ କରି ହେ ବିମାନ
ରାମର ହୋଇବ ଅଧୀନ ।
ଏଣୁ ତାଙ୍କ ଛାମୁକୁ ଯାଅ
ସେ ମର୍ତ୍ୟେ ଥିବା ଯାଏ ବହ ।
ଗଲେ ସେ ବୈକୁଣ୍ଠକୁ ପୁଣ
ମୋଠାକୁ ଆସିବ ଆପଣ ।
ଶୁଣନ୍ତେ ଶ୍ରୀରଘୁନନ୍ଦନ
ହସି ବୋଇଲେ ହେ ବିମାନ ।
ମୁଁ ସ୍ମରିବି ଯେତେବେଳେ
ପ୍ରବେଶ ହୋଇବ ସେ କାଳେ ।
ଏବେ ମୋ ଅନୁଜ୍ଞାରେ ଯାଅ
ଧନପାଳକୁ ବହୁଥାଅ ।
ଏମନ୍ତ କହି ବିମାନକୁ
ସମସ୍ତ ଭାଇ ଅମାତ୍ୟଙ୍କୁ ।
ଘେନି ସେ ଯଥାନ୍ୟାୟ କରି
କାର୍ଯ୍ୟ ବୁଝିଲେ ରାବଣାରି ।
ରମାକାନ୍ତ ଯେ ରଘୁପତି
ପାଳନା କରନ୍ତେ ସେ କ୍ଷିତି ।
ବିବିଧ ଶସ୍ୟେ ହେଲା ପୃଥ୍ୱୀ
ଫଳ ନ ଥିଲା ବୃକ୍ଷମାନ ।
ସମସ୍ତେ ହେଲେ ଫଳଯୁତ
ମନୁଷ୍ୟ ହେଲେ ଧର୍ମବନ୍ତ ।
ସେ କାଳେ ଯେତେକ ବନିତା
ଥିଲେ ସେ ହେଲେ ପତିବ୍ରତା ।

ତହିଁରେ ପ୍ରାଣୀ ଜଣେ କେହୁ
ପୁତ୍ର ବିନାଶ ନ ଦେଖଇ ।
ଶ୍ରୀରାମ ଘେନି ଜାନକୀଙ୍କି
ଭରତପ୍ରମୁଖ ଭାଇଙ୍କି ।
ଭଲ୍ଲୁକ ବାନର ତୁଲ ର
ବିଜୟ କରି ପୁଷ୍ପକରେ ।
ବୁଲିଣ ଧରଣୀ ସମସ୍ତ
ଅନେକ ଅମାନୁଷ କୃତ୍ୟ ।
କଲେ ଅବନୀ ମଣ୍ଡଳରେ
ଏମନ୍ତ ଏକ ଦିନକରେ ।
ସେ ପୁରେ ଏକ ବିପ୍ର ସୁତ
ଅକାଳେ ହେଲା ଯହୁଁ ମୃତ ।
ତା ପିତାମାତାର ରୋଦନ
ଶୁଣନ୍ତେ ଶ୍ରୀରଘୁନନ୍ଦନ ।
ବହନ ହୋଇ ସେ ବିମାନେ
ଶୂଦ୍ର ଜଣେ ସେ ଏକ ବନେ ।
କରୁ ଯେ ଥିଲା ତପମାନ
ତାହାକୁ କରିଣ ନିଧନ ।
ବିପ୍ରପୁତ୍ରଙ୍କୁ ଜୀଆଇଲେ
ଶୂଦ୍ରକୁ ବୈକୁଣ୍ଠ ଦେଲେ ।
ସମସ୍ତ ଲୋକମାନଙ୍କର
ହେବାକୁ ଉପଦେଶ ସାର ।
ପରମ ଆସ୍ଥା ରାବଣାରି
ହୋଇଲେ କୋଟି କୋଟି କରି ।
ପୃଥ୍ୱୀ ମଣ୍ଡଳେ ପୁଣ୍ୟସ୍ଥଳେ
ସ୍ଥାପନା ଶିବ ଲିଙ୍ଗ କଲେ ।
ସୁଖ ଭୋଗେ ସେ ରଘୁସାଇଁ
ସୀତାଙ୍କୁ ସନ୍ତୋଷ କରାଇ ।
ଧର୍ମରେ ବଶିଷ୍ଠଙ୍କ ବୋଲେ
ପରିପାଳନା ରାଜ୍ୟ କଲେ ।

ପାତକ ନାଶଇ ସବୁରି
ଏମନ୍ତ କାର୍ଯ୍ୟ ରାବଣାରି ।
ସମସ୍ତ ଲୋକ ରକ୍ଷା କରି
ମାତ୍ର ମନୁଷ୍ୟ ଦେହ ଧରି ।
ସକଳେ ପାଦପଦ୍ମ ନିତ
ଭକ୍ତିରେ ପୂଜା କରୁଥାନ୍ତି ।
ଉମାକୁ ବୋଲେ ଦିଗବାସ
ଏ ରୂପେ ଅୟୁତ ବରଷ ।
ରାଜ୍ୟ ଭୁଞ୍ଜିଲେ ସୀତାକାନ୍ତ
କରି ସେ ଏକ ପତ୍ନୀବ୍ରତ ।
ଯେତେକ ରାଜଋଷି ଥିଲେ
ତାଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେ ।
ଗୃହମେଧୀର ଧର୍ମମାନ
ଶୁଦ୍ଧ ଅଟନ୍ତି ଯେଉଁ ଜନ ।
ଶିକ୍ଷା ସେମାନଙ୍କୁ ଦିଅନ୍ତି
ବିନୟ-ପ୍ରେମ-ଦମ ଭକ୍ତି ।
ଲଜ୍ଜା ଭୟରେ ଯୁକ୍ତ ହୋଇ
ପ୍ରତିଦିନରେ ବଇଦେହୀ ।
ଶ୍ରୀରାମ ପାଖେ ସେବା କଲେ
ତାଙ୍କର ମନୋହାରୀ ହେଲେ ।
ସେ ଏକ ଦିନରେ ସମସ୍ତ
ସଖୀମାନରେ ଅଟେ ଯୁକ୍ତ ।
ଏମନ୍ତ କ୍ରୀଡ଼ା ଆଶ୍ରମରେ
ମଣି ମନ୍ଦିରେ ଏକାନ୍ତରେ ।
ନୀଳମାଣିକ୍ୟ ପ୍ରାୟେ ବର୍ଣ୍ଣ
ବନ୍ଧୁଲି ସମାନ ବସନ ।
ଏମନ୍ତ ରୂପ ରଘୁପତି
ସୁଖେ ଆସନେ ବସିଛନ୍ତି ।
ସମସ୍ତ ଭୂଷଣେ ଭୂଷିତ
ପଙ୍କଜ ପତ୍ର ପ୍ରାୟେ ନେତ୍ର ।

ଏମନ୍ତ ସେଇଁ ବଇଦେହୀ
ସେ ତୀର୍ଥ ଜଳ ଘେନି ଯାଇ ।
ଶ୍ରୀରାମ ପାଦ ଧୋଇ ଦେଇ
କହିଲେ କୃତାଞ୍ଜଳି ହୋଇ ।
ହେ ଜଗନ୍ନାଥ ଦେବ ଦେବ
ପରମ ଆତ୍ମା ହେ ରାଘବ ।
ହେ ଚିଦାନନ୍ଦ ସନାତନ
ହେ ଆଦ୍ୟ ମଧ୍ୟ ପ୍ରାନ୍ତ ହୀନ ।
ହେ ସ୍ୱାମି ଅଶେଷ କାରଣ
ମୁଁ କିଛି ଜଣାଇବି ପୁଣ ।
ଦେବତାମାନେ ପ୍ରତିଦିନ
ତୁମ୍ଭର ବୈକୁଣ୍ଠ ଗମନ ।
ସେହୁ ପ୍ରାର୍ଥନା କରି ମୋତେ
ଏମନ୍ତ କହନ୍ତି ଏକାନ୍ତେ ।
ଚୈତନ୍ୟ ଶକ୍ତି ବଇଦେହୀ
ତୁମ୍ଭର ସଙ୍ଗ ତ ସେ ପାଇ ।
ଅଟଇ ଆପଣାର ଧାମ
ବୈକୁଣ୍ଠ ଯେ ପରମ ବ୍ୟୋମ ।
ତାହା ଅମ୍ଭଙ୍କ ମଧ୍ୟ କରି
ଅନେକ କାଳ ରାବଣାରି ।
ତେଜିକରି ଏ ଧରଣୀରେ
ରହିଲେ ପରମ ସୁଖରେ ।
ଏ ବେଳେ ଅବ ବୈକୁଣ୍ଠକୁ
ଆପଣ ହେଉ ଆସିବାକୁ ।
ତୁମ୍ଭ ଅବଙ୍କ ମାଧବରେ
ଶ୍ରୀରାମ ପୃଥ୍ୱୀ ତେଜି ଗଲେ ।
ଏଥିକୁ ଅବଶ୍ୟ ଆସିବେ
ଅମ୍ଭଙ୍କୁ ସନାଥ କରିବେ ।
ସେମାନେ ମୋତେ କହିଲକୁ
ଜଣାଇଲି ମୁଁ ଆପଣଙ୍କୁ ।

ଯେମନ୍ତ ଅସିତ ରଖିଲୁ
ତେମନ୍ତ ହେଉ କହିବାକୁ ।
ମୁଁ ଏହା ଅଙ୍ଗ ଦେଇ ନାହିଁ
ଏମନ୍ତ ଶୁଣି ରଘୁସାଇଁ ।
ମୁହୂର୍ତ୍ତମାତ୍ର ଧ୍ୟାନ କଲେ
ସୀତାଙ୍କ ଶୁଦ୍ଧି ଅଙ୍ଗ ଦେଲେ ।
ମୁଁ ସବୁ ଜାଣଇ ଜାନକି
ଉପାୟେ କହୁଛି ଏଥିକି ।
ତୁମ୍ଭ ଛପୟେ ବଇଦେହୀ
କପଟେ ଅପବାଦ ଦେଇ ।
ତହିଁକି ଦସ୍ୟୁ କଲ ପ୍ରାୟେ
ହୋଇ ତୁମ୍ଭଙ୍କ ପ୍ରାଣପ୍ରିୟେ ।
ତେଣିକା ଅରଣ୍ୟ ମଧ୍ୟରେ
ଗର୍ଭ ସେ ଅଛି ତୁମ୍ଭଠାରେ ।
ବାଲ୍ମୀକି ଆଶ୍ରମରେ ପ୍ରିୟେ
ଜନ୍ମିବେ ତନୟ ଯୋଡ଼ିଏ ।
ପୁଣି ତ ଅସି ମୋ ଅଗ୍ରେ
ଲୋକଙ୍କ ବିଶ୍ୱାସ ନିମନ୍ତେ ।
ଶପଥ କରି ବଇଦେହୀ
ଭୂମି ବିବର ବାଟେ ଯାଇ ।
ବୈକୁଣ୍ଠ ପ୍ରବେଶ ହୋଇବୁ
ତହିଁ ଉତ୍ତରେ ଅମ୍ଭେ ଯିବୁ ।
ଏ କଥା ଅନ୍ତର କଷ୍ଟୟେ
ଅଶଙ୍କା ନ କରିବ ପ୍ରିୟେ ।
ଏମନ୍ତ ପ୍ରକାରେ କହୁ
ଜ୍ଞାନ ରୂପ ସେ ରଘୁସାଇଁ ।
ସେ ତାଙ୍କୁ ପଠାଇ ଦେଇ
ମନ୍ତ୍ରୀମାନଙ୍କ କୂଳେ ଯାଇ ।
ସେନାପତି ମାନଙ୍କ କୂଳେ
ସଭା ମଧ୍ୟରେ ବିଜେ କଲେ ।

ନିପୁଣ ଯେ ହାସ୍ୟ କଥନେ
ଏମନ୍ତ ପ୍ରିୟ ସଖାମାନେ ।
ସେଠାରେ ପରବେଶ ହୋଇ
ରାମଙ୍କୁ ଆନନ୍ଦ କରାଇ ।
ଚଉଁରେ ବସିଲେ ସମସ୍ତେ
ବିବିଧ ପ୍ରସଙ୍ଗ ପଢ଼ନ୍ତେ ।
କଥା ପ୍ରସଙ୍ଗେ ରାମ ତହିଁ
କହିଲେ ବିଜୟଙ୍କୁ ଚାହିଁ ।
ଅଯୋଧ୍ୟା ପୁର ଲୋକମାନେ
ଜନପଦମାନର ଜନେ ।
ଅମ୍ଭ ଭଲ ମନ୍ଦ ବିଷୟ
କି କହୁଥାନ୍ତି ହେ ବିଜୟ ।
ସୀତା, କୌଶଲ୍ୟା ଭରତର
କି ଅବା ସୁମିତ୍ରା କୈକେୟୀ ।
ନୋହିଲେ ଅବା ଏମାନଙ୍କ
କି ବୋଲନ୍ତି କି କେ କାହାକୁ ।
ପଚାରିଲୁଁ ଅମ୍ଭ ଶପଥ
ଭୟ ନକର କହ ସତ ।
ଏମନ୍ତ ଶୁଣନ୍ତେ ବିଜୟ
କହିଲ ହୋଇ ସେ ନିର୍ଭୟ ।
ସମସ୍ତେ ବୋଲନ୍ତି ଗୋସାଇଁ
ଶ୍ରୀରାମ ଜୟବନ୍ତ ହୋଇ ।
କେହୁ ପୁଣ ଯା ନ କରଇ
ସେ କଥା କଲେ ରଘୁସାଇଁ ।
ରାବଣ ବନରୁ ସୀତାଙ୍କ
ହରି ଯେ ନେଲା ତା ପୁରକୁ ।
ସେ ରାବଣକୁ ଯୁଦ୍ଧେ ମାରି
କଷ୍ଟହିଁ ବିସ୍ମର ନ କରି ।
ରାଷ୍ଟ୍ର ପୁରୁ ଅଣି ତାଙ୍କ
ଅଣି ଅପଣା ମନ୍ଦିରକୁ ।

ସେ ବଇଦେହୀ ସଂକେତରେ
ଶ୍ରୀରାମଚନ୍ଦ୍ର ହୃଦୟରେ ।
କି ହୋଇ ସୁଖ ଜାତ ହୋଇ
ବିଜନ ବନକୁ ସ୍ପୃହାର ।
ନେଇଣ ଥିଲା ସେ ରାବଣ
ଏମନ୍ତ କହୁଥିଲେ ପୁଣ ।
ଅଣଚା ମୁଁ ଏ ସ୍ତ୍ରୀଠାରେ
ଅନେକ ଅକାର୍ଯ୍ୟ ହୁଅଇ ।
ଯେମନ୍ତ ଧର୍ମ କରେ ରାଜା
ତେମନ୍ତ ସିନା କରେ ପ୍ରଜା ।
ଏମନ୍ତ ଶୁଣି ରଘୁସାଇଁ
ସ୍ୱଜନମାନଙ୍କୁ ଅନାଇଁ ।
ବୋଇଲେ ଏ କଥା କେମନ୍ତ
ସମସ୍ତେ ଶୁଣନ୍ତେ ଏମନ୍ତ ।
ବହନ କରି ଦଣ୍ଡବତ
କହିଲେ ଅଟଇ ଏ ସତ୍ୟ ।
ସଂଶୟ ଏଥେ କିଛି ନାହିଁ
ଏମନ୍ତ ଶୁଣି ରଘୁସାଇଁ ।
ନିଜସ୍ୱ ଅନୁଜେ ଅନାଇଁ
ମେଲାଣି ବଡ଼ବେଗେ ଦେଇ ।
ସଙ୍ଗତେ ଘେନି ଲକ୍ଷ୍ମଣଙ୍କୁ
ଏକାନ୍ତେ କହିଲେ ତାହାଙ୍କୁ ।
ସୀତାର ଅପଯଶ ବହୁତ
ଲୋକାପବାଦ ହେଲା ଭ୍ରାତ ।
ଏ ଘେନି ତାଙ୍କୁ ପ୍ରଭାତରେ
ସୀତାଙ୍କୁ ବସାଇ ରଥରେ ।
ବାଲ୍ମୀକିଙ୍କ ଆଶ୍ରମରେ
ଛାଡ଼ି ଆସିବ ଅତି ବେଗରେ ।
ମୋତେ ଏ ଅପଯଶ ଲକ୍ଷ୍ମଣ
କରୁଛି କହିଲେ ଆପଣ ।
ଅମ୍ଭଙ୍କୁ ପ୍ରାଣରେ ତୁମ୍ଭର
ହେବଟି ନଷ୍ଟେଁ ମାରିବାର ।
ଲକ୍ଷ୍ମଣ ଶୁଣନ୍ତେ ଏମନ୍ତ
ବଡ଼ ଭୟରେ ହୋଇ ଯୁତ ।
ପ୍ରଭାତୁ ଉଠି ତ୍ୱରା ହୋଇ
ସୁମନ୍ତ ସହିତରେ ଯାଇ ।
ରଥରେ ବସାଇ ସୀତାଙ୍କୁ
ଘେନି ସେ ଚଳେ ଅରଣ୍ୟକୁ ।
ବାଲ୍ମୀକିଙ୍କ ବନେ ଯାଇ
ଲକ୍ଷ୍ମଣ କୃତାଞ୍ଜଳି ହୋଇ ।
ବୋଇଲେ ହେ ମାତ ତୁମ୍ଭଙ୍କୁ
ଲୋକାପବାଦ ହୋଇଲାକୁ ।
ଶ୍ରୀରାମଚନ୍ଦ୍ର ସେ ଭୟରେ
ତୁମ୍ଭଙ୍କୁ ତେଜିଲେ ବନରେ ।
ଏ ଘେନି ଏଥେ ବଇଦେହୀ
ମୋହର କିଛି ଦୋଷ ନାହିଁ ।
ବାଲ୍ମୀକିଙ୍କ ଆଶ୍ରମକୁ
ସୁଖରେ ହେବ ତୋ ଯିବାକୁ ।
ଏ ରୂପେ କହି ତାଙ୍କୁ ପୁଣ
କରି ପ୍ରଣାମ ପ୍ରଦକ୍ଷିଣ ।
ରଥେ ବସି ସୁମନ୍ତ ତୁଲେ
ଶ୍ରୀରାମ ଛାମୁକୁ ଆଇଲେ ।
ତହିଁ ଜଙ୍ଗଲରେ ବଇଦେହୀ
ରାମ ବିଚ୍ଛେଦେ ଦୁଃଖୀ ହୋଇ ।
ତଳେ ପଡ଼ିଲେ ମୋହ ଯାଇ
ପୁଣି କ୍ଷଣକେ ଜ୍ଞାନ ପାଇ ।
ଅଜ୍ଞାନ-ଲୋକ ପ୍ରାୟ ହୋଇ
ଶୋକ କରନ୍ତେ ବଇଦେହୀ ।
କେ ନାହିଁ ବାନ୍ଧୁ ଅଛି ବନେ
ଏହା କହନ୍ତେ ଶିଷ୍ୟମାନେ ।

ଶୁଣି ତା ବାଲ୍ମୀକି ଋଷି
ମୁହୂର୍ତ୍ତି ମାତ୍ରେ ଧ୍ୟାନେ ବସି ।
ଜ୍ଞାନ ଦୃଷ୍ଟିରେ ତପୋଧନ
ସୀତା ସେ ଜାଣନ୍ତେ ବହନ ।
ସେଠାକୁ ତ୍ୱରି ହୋଇ ଯାଇ
ତାହାଙ୍କୁ ସେ ଶାନ୍ତ କରାଇ ।
ପୂଜା କରି ସେ ଆଶୀର୍ବାଦରେ
କୁଟୀରେ ଆଣିଲେ ସାଦରେ ।
ଭବିଷ୍ୟ ଚିନ୍ତି ହୃଦୟରେ
ମୁନିଙ୍କ ପତ୍ନୀ ମାନଙ୍କରେ ।
ତାହାଙ୍କୁ ସମର୍ପଣ କଲେ
ସେମାନେ ମୁନିଙ୍କର ବୋଲେ ।
ଜାଣିଲେ ନିଶ୍ଚେ ବଇଦେହୀ
ବିଷ୍ଣୁର ଲକ୍ଷ୍ମୀ ଏ ଅଟଇ ।
ଏ ବେନି ଭଗତ ଭାବରେ
ପୂଜନ୍ତି ପ୍ରତି ଦିବସରେ ।

ପରମ ଆତ୍ମା ଶ୍ରୀରାଘବ
ଜ୍ଞାନ-ଦୃଷ୍ଟିରେ ଆଦିଦେବ ।
ମୁନୀନ୍ଦ୍ରବୃନ୍ଦରେ ଯାହାର
ସେବିତ ଅଟଇ ପଦ୍ମର ।
ଏମନ୍ତ ହେଲେ ରାବଣାରି
ସୀତା ବିଚ୍ଛେଦ ଦୁଃଖେ ଭରି ।
ଭୋଗମାନ ଛାଡ଼ି ସମସ୍ତ
ହୋଇ ଅତ୍ୟନ୍ତ ବିରକତ ।
ମୁନି ବ୍ରତକୁ ସେ ଧରିଲେ
ଏମନ୍ତ ପ୍ରକାରେ ରହିଲେ ।
ସୀତା ରାମଙ୍କ ପାଦତଳେ
ମୋ ମନ ରହୁ ସଦାବେଳେ ।
ବୋଲଇ ଦୀନ ହଳଧର
ଜାନକୀ ସହିତେ ମୋହର ।
ସମ୍ପଦ ହେଉ ରାମପଦ
ଅଧା ଷଟେ-ତେୟାଣୀ ପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଉତ୍ତରକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଉମାଙ୍କୁ କହନ୍ତି ଶଙ୍କର
ସମସ୍ତ ଜଗତପାଳର ।
ମଙ୍ଗଳଦାୟକ ଶରୀର
ଏମନ୍ତ ଯେ ଜାନକୀବର ।
ସେ ଅତି ଉତ୍ତମ ଅଟଇ
ନାମରେ ରାମାୟଣ ହୋଇ ।
ଏମନ୍ତ କୀର୍ତ୍ତି ମହୀତଳେ
ସ୍ଥାପନ କରି ପୂର୍ବକାଳେ ।

ରାଜଋଷିରେ ଯେ ବିଦିତ
ଅଟଇ ଉତ୍ତମ ଅତ୍ୟନ୍ତ ।
ଏମନ୍ତ କୃତ୍ୟକର୍ମ କଲେ
ଏଥୁଅନ୍ତରେ କେତେକାଳେ ।
ବଡ଼ ସୁବୁଦ୍ଧି ଯେ ଲକ୍ଷ୍ମଣ
ସେ ପୁଣି କରନ୍ତି ପ୍ରଶନ ।
ପ୍ରାଚୀନ କଥାକୁ ବହୁତ
କହିଲେ ତାଙ୍କୁ ସୀତାକାନ୍ତ ।

ନୃଗ ନୃପତି ଯେମନ୍ତେ ହୋଇ
ଦାନରେ ସାବଧାନ ନୋହି ।
ଯେରୂପେ ବ୍ରାହ୍ମଣ ଶାପରେ
ସରଟ ହୋଇଣ ଜଳରେ ।
ଯେମନ୍ତ ପ୍ରକାରେ ବଞ୍ଚିଲେ
ସେମାନ ସମସ୍ତ କହିଲେ ।
ଲକ୍ଷ୍ମୀରେ ସେବିତ ସନ୍ତତ
ସମସ୍ତ କାମଦ ପଲ୍ଲବ ।
ଅଟେ ଅତ୍ୟନ୍ତ ମନୋହର
ଏମନ୍ତ ଯାହା ପାଦପଦ୍ମ ।
ସେ ରାମ ଏକ ଦିନକରେ
ବସି ଯେ ଥିଲେ ଏକାନ୍ତରେ ।
ଲକ୍ଷ୍ମଣ ଏ ସମୟେ ଯାଇ
ଅତ୍ୟନ୍ତ ଶୁଦ୍ଧମନା ହୋଇ ।
ଭକ୍ତିରେ ନମସ୍କାର କଲେ
ବିନୟ ହୋଇ ପଚାରିଲେ ।
ହେ ସ୍ୱାମୀ ଶ୍ରୀରଘୁନନ୍ଦନ ।
ତୁମ୍ଭେ ପରମ ସ୍ୱଚ୍ଛ ଜ୍ଞାନ ।
ସମସ୍ତ ଦେହୀ-ମାନଙ୍କର
ଆତ୍ମା ଈଶ୍ୱର ନିରାକାର ।
ତୁମ୍ଭର ଚରଣ ନଳିନେ
ଭୃଙ୍ଗ ପରାୟେ ଯେଉଁମାନେ ।
ସେ ଲୋକମାନଙ୍କ ସଙ୍ଗତେ
ମୁକ୍ତ ହୁଅନ୍ତି ସେହୁ ନିଶ୍ଚିତେ ।
ତୁମ୍ଭଙ୍କୁ ନିଶ୍ଚୟ ସେ ଜନେ
ଦେଖନ୍ତି ଯେ ଜ୍ଞାନ ନୟନେ ।
ଏ ହେତୁ ଅଳ୍ପକ୍ଲେଶରେ ବୀର
ଏ ଘୋର ସଂସାର ସାଗର ।
ପାର ହୋଇବି ଯେଉଁ ମତେ
ସେ କଥା ଉପଦେଶ ମୋତେ ।

ଲକ୍ଷ୍ମଣ ମୁଖୁଁ ଏ ପ୍ରକାରେ
ବଚନ ଶୁଣି ସନ୍ତୋଷରେ ।
ଶରଣାପନ୍ନ ଯେ ହୁଅନ୍ତି
ତାଙ୍କର ବ୍ୟଥା ଯେ ଶୁଣନ୍ତି ।
ଏମନ୍ତ ଯେ ଜାନକୀସାଇଁ
ସେ ପରସନ୍ନ ବୁଦ୍ଧି ହୋଇ ।
ଶାନ୍ତ ହେଇବାକୁ ଅଜ୍ଞାନ
ସମସ୍ତ ବେଦର ପ୍ରମାଣ ।
ନୃପତି ମାନରେ ମଣ୍ଡନ
ଏମନ୍ତ ଯେ ରଘୁନନ୍ଦନ ।
ସେ ଲକ୍ଷ୍ମଣଙ୍କୁ ଏ ପ୍ରକାରେ
କହିଲେ ଲକ୍ଷ୍ମଣ ଆଗରେ ।
ପ୍ରଥମେ ନିଜ ବର୍ଣ୍ଣାଶ୍ରମ
ବିହିତ ଅଟେ ଯେଉଁ କର୍ମ ।
ସେମାନ କରି ପୁଣ ତହିଁ
ନିର୍ମଳାନ୍ତଃକରଣ ହୋଇ ।
ତହୁଁ ଉତ୍ତାରେ ଦେହଗଣ
ଯାତରେ ଶୁଣିବ ଲକ୍ଷ୍ମଣ ।
କରିବ ବେଦ ଅଧ୍ୟୟନ
ଶୁଣିବା ହେବ ଉପିଷଣ ।
ତନୟ ଜନ୍ମ କରି ପୁଣ
ତହିଁ ଶୁଣିତ ପିତୃଋଣ ।
ତିନି ଋଣଯାକ କ୍ରମରେ
ତୁଟେ ତା ଶୁଣି ଏ ପ୍ରକାରେ ।
ସମାଧି ଚିତ୍ତ-ସାଧନ ପୁଣ
କର ସେ ଉତ୍ତାରେ ଲକ୍ଷ୍ମଣ ।
ଜ୍ଞାନ ହୋଇବା ପାଇଁ ଜାତ
ଉତ୍ତମ ଗୁରୁ ପାଦେ ଭାତ ।
ହୋଇବ ଆଗେ କରିବାକୁ
କର୍ମ ହେତୁ ଦେହ ହେବାକୁ ।

ସେ ଅପସନରେ ହେ ବୀର
ଜୀବତ୍ୱ ଜାତ ହୁଏ ତାର ।
ତା ସୁଖ ଦୁଃଖକୁ ଦଅନ୍ତି
ଧର୍ମ ଅଧର୍ମ ସେ ଭୋଗନ୍ତି ।
ଥିବାକୁ ସେ ଧର୍ମ ଅଧର୍ମ
ଶରୀର ପୁଣି ହୁଏ ଜନ୍ମ
ଏହୁ ସକାଶୁ କର ସ୍ଥିର
ତହିଁରେ କର୍ମ ପ୍ରବର୍ତ୍ତିର ।
ଏ ଯେନ୍ତ ଚକ୍ର ପ୍ରାୟେ ହୋଇ
ସଂସାର ପୁଣି ଲେଉଟଇ ।
ଜଗତର ମୂଳ କାରଣ
ଅଜ୍ଞାନ ଏ ଯେଣ ଲକ୍ଷ୍ମଣ ।
କେମନ୍ତେ ଅଟେ ଏ ସଂସାର
ତାହାକୁ ବୁଝିବା ହେ ବୀର ।
ସଂସାର କରିବାକୁ ହତ
ବଡ଼ କୁଶଳ ବିଦ୍ୟା ଭ୍ରାତ ।
ଜଗତ ସ୍ୱରୂପ ଜାଣିବ
ଏମନ୍ତ ଜ୍ଞାନ ଯେ ଅଟଇ ।
କର୍ମ ଯେ ତହା କାର୍ଯ୍ୟ ଭାବ
କେବେହେଁ କର ନ ପାରଇ ।
ଅଜ୍ଞାନ ଅନୁଭବ ଦୂର
କର୍ମ ସକାଶୁ ନାଶ ନୋହୁ ।
ଏ ଯେଣୁକରି କର୍ମମାନ
ଜ୍ଞାନର ନୁହଇ ସାଧନ ।
ସେଥି ସକାଶୁ କର୍ମ ଭାବ
ଅତ୍ୟନ୍ତ ଅକାରତ ହୋଇ ।
ପୁଣିହିଁ ହୁଅଇ ସଂସାର
ଏଣୁ ପଣ୍ଡିତ ସେହିଁ ନର ।
ଜ୍ଞାନ ସେ କରବ ବିସ୍ତର
ବେଦମାନେ ପୁରୁଷାର୍ଥର ।

ସାଧିବ ବିଦ୍ୟାକୁ ସେ ପୁଣ
କର ସେ କହିଲେ ଲକ୍ଷ୍ମଣ ।
କର୍ମକୁ କର ସେ କେମନ୍ତ
କହୁ ତ ନାହାନ୍ତି ହେ ଭ୍ରାତ ।
କେବଳ କଥାମାନ ମାତ୍ର
ଲେଖିଲେ ନ ସରିବ ନିତ୍ୟ ।
ବେଦୋକ୍ତ କର୍ମମାନ ଭାଇ
ବିଦ୍ୟାର ସହାୟ କରଇ ।
ଏଣୁ ନ କଲେ କର୍ମମାନ
ଦୋଷ ହୁଅଇ ବୋଲି ପୁଣ ।
କହନ୍ତି ଯେହ୍ନେ ବେଦମାନେ
ଏଣୁ ମୁମୁକ୍ଷୁ ଯେଉଁ ଜନେ ।
ସେ କର୍ମ କରିବେ ଅବଶ୍ୟ
ବିଦ୍ୟା ନୁହଇ ପର ବଶ ।
ସେବକ କାର୍ଯ୍ୟ ସତ୍ୟ ହୋଇ
ତା ବିଦ୍ୟା କରଇ ହେ ଭାଇ ।
ଏଣୁ ବିଦ୍ୟାବନ୍ତ ଅଟଇ
ସେ କାହାରିକି ନ ଲୋଡ଼ଇ ।
ସବୁ ପଦାର୍ଥେ ସ୍ୱତ ହୋଇ
ଯାଗ ଯେଉଁରୂପେ ହୁଅଇ ।
ସ୍ୱର୍ଗ ଲୋଡ଼ରବେଲେ ସେହୁ
ସେ ଦ୍ରବ୍ୟମାନଙ୍କୁ ହେ ଭାଇ ।
କାହାକୁହିଁ ଯେମନ୍ତ ହୋଇ
ଅନ୍ୟ ପୁଣି ସେ ନ ଲୋଡ଼ଇ ।
ଏ ସେହୁ ପ୍ରକାରେ ଜ୍ଞାନ
କର୍ମରେ କର ହେ ଲକ୍ଷ୍ମଣ ।
ମୁକତ ନିମନ୍ତେ ବିଶେଷ
ହୋଇ ସେ ହୁଅଇ ପ୍ରକାଶ ।
ଯେଉଁ କାଳରେ ମୁକ୍ତ ହୋଇ
କର୍ମମାନଙ୍କୁ ନ ଲୋଡ଼ଇ ।

କେହୁ ତରକବାଦୀ ନରେ
ଏମନ୍ତ କହନ୍ତି ଏଠାରେ ।
ଅବୋଧର ଅଟେ କାରଣ
ଏମନ୍ତ ଯେ ଦେହାଭିମାନ ।
କର୍ମ ପ୍ରବର୍ତ୍ତେ ତହିଁ ଜୀବ
ନିବର୍ତ୍ତି ହେଲେ ଅହଙ୍କାର ।
ବିଦ୍ୟା ପ୍ରବର୍ତ୍ତିଲେ ହେ ଭ୍ରାତ
ଉତ୍ତମ ଜ୍ଞାନ ଜାତ ହୋଇ ।
ନେନେ ସଂସୃତ ହୋ'ଇଥାଇ
ପ୍ରାନ୍ତେ ପୁଣି ଜାତ ହୁଅଇ ।
ଯେଉଁ ଅନୁଭୂତି ହେ ଜୀବ
ତାକୁ ବିଦ୍ୟା ବୋଲନ୍ତି ଧୀର ।
ବହୁତ ପଦାର୍ଥରେ ଛଇ
କର୍ମ ପରକାଶ ହୁଅଇ ।
ବିଦ୍ୟା ସବୁ ପଦାର୍ଥ ନାଶ
କରଇ ଏ ସେନି ଅବଶ୍ୟ ।
ଅଶେଷ କର କାର୍ଯ୍ୟଗଣ
ସମସ୍ତ ଖଣ୍ଡିବ ଲକ୍ଷଣ ।
ବିଦ୍ୟା ଯେବେ ବୋଧ ହୁଅଇ
ତେବେ ଏମାନ ଅଜ୍ଞ କେହୁ ।
ନ କହନ୍ତି ଏଣୁ ଅତ୍ମାକୁ
ହେବ ବିସ୍ମର କରିବ କୁ ।
ଉପନିଷମାନଙ୍କ ସମସ୍ତ
ନିବର୍ତ୍ତି ଉକ୍ତ ହେବ ଭ୍ରାତ ।
ଯେତେକ ଧାତୁ ମାୟାରେ
କର ଏ ଅପଦନାଦରେ ।
ଅତ୍ମ ବୁଦ୍ଧି ଅଛି ଯାହାର
ତେତେକାଳ ଥାଏ ସେ ନର ।
ବଶ ହୋଇବ ସେ କର୍ମରେ
ପରମ ଅତ୍ମାର ବାହାରେ ।

ଯେତେକ ଅଛନ୍ତି ସମସ୍ତ
କେହୁ ଅତ୍ମା ନୁହେ ଏମନ୍ତ ।
ଯେଉଁ କାଳରେ ବୁଦ୍ଧି ହେବ
କର୍ମକୁ ସେ କାଳେ ଖଣ୍ଡିବ ।
ଅତ୍ମା ପରମାତ୍ମା ବେଣିର
ଭେଦ ନାଶ ହେବାକୁ ଜୀବ ।
ଅତ୍ମାରେ ଜ୍ଞାନ ଯେତେବେଳେ
ପ୍ରକାଶ ହୁଏ ସେହୁକଳେ ।
ଅପଣା ସଂସାର କାରଣ
ଏମନ୍ତ ଯେ ମାୟା ଲକ୍ଷଣ ।
ସେ କାରଣ ସହିତ ହୋଇ
ନିଃଶେଷ ହୋଇ ନାଶପାଇ ।
ସେ ଅବିଦ୍ୟା ଏରୂପେ ଭ୍ରାତ
ବେଦ ପ୍ରମାଣେ ହୁଏ ହତ ।
କାର୍ଯ୍ୟ କାରଣ ଅଜ୍ଞ ଜୀବ
ସ୍ୱରୂପ ହେବଟି ତାହାର ।
ଯେ ଜ୍ଞାନ ସ୍ୱରୂପ ନିର୍ମଳ
ଅଟେ ଅଦ୍ୱିତୀୟ କେବଳ ।
କ ହୋଇ ଏମନ୍ତ ଲେଖକର
ଅବିଦ୍ୟା ଜାତ ହେବ ଜୀବ ।
ଯେବେ ନାଶଗଲା ତେବେ ତ
ପୁଣି ନୋହିବ ଅଜ୍ଞ ଜାତ ।
ମୁଁ କର୍ତ୍ତା ବୋଲି ବୁଦ୍ଧି ଜୀବ
ଅଜ୍ଞ କାହିଁକି ହେବ ତାର ।
ଏଣୁ ବିଦ୍ୟା ପ୍ରବଣ ହୋଇ
କାହାକୁହିଁ ସେ ନ ଲେଢ଼ଇ ।
କେବଳ ସେ ମୋକ୍ଷ ନିମନ୍ତେ
ପ୍ରକାଶ ହୋଇଛି ସନ୍ତତେ ।
ତରଙ୍ଗିଶାଖା କୋଲେ ଜୀବ
ଖଣ୍ଡି ସବୁ କର୍ମବର ।

କାଣ୍ଡଶାଖାହିଁ ପୁଣି ଶୁଣ
ଏହୁ ପରକାରେ କହଇ ।
ଏ ବେଦ ମୋକ୍ଷକୁ ସାଧନ
କେବଳ ମାତ୍ର ଅଟେ ଜ୍ଞାନ ।
ତହିଁ ସାଧନ ନୁହେ କର୍ମ
ଯାଗ ଅଟଇ ବନ୍ଧ୍ୟା ସମ ।
କହନ୍ତି ଏହା ସାହା ଭ୍ରାତ
ସେ ନୁହେ ସାମାନ୍ୟ ଦୃଷ୍ଟାନ୍ତ ।
ବହୁତ ପଦାର୍ଥରେ ଶୁଣ
ଯାଗମାନ ସାଧନ ହୋଇ ।
ଫଳ ଉପଇ ଭିନ୍ନ ଭିନ୍ନ
ଏଣୁ କର୍ମରୁ ଭିନ୍ନ ଜ୍ଞାନ ।
ମୁଁ ମୋହର ବୋଲି ଯାହାର
ବୁଦ୍ଧି ଅଛି ସେ ମନୁଷ୍ୟର ।
କର୍ମମାନ ନ କଲେ ଦୋଷ
ତାହାର ହୁଅଇ ଅବଶ୍ୟ ।
ଯେବଣ ବେଦ ଜ୍ଞାନୀ ହୋଇ
ଏ ଦୋଷ ତାହାର ନୁହଇ ।
ଏଣୁ ବିବେକ ର ପଣ୍ଡିତ
କରିବ ସବୁ କର୍ମ ତ୍ୟକ୍ତ ।
ସଂସାର ପାଇଁ ଯିନା ଶୁଣ
କର୍ମ ଶାସ୍ତ୍ର ଲେଖିଅଛଇ ।
ଗୁରୁ ପଦାଶ୍ରୁ କରି ଲୋକ
ପାଇବ ଯେଉଁ ମହାବାକ୍ୟ ।
ତହିଁରେ କର ସେତୁ ନର
ଶୁଦ୍ଧମନା ହୋଇ ସାର ।
ଜୀବାତ୍ମା ପରମାତ୍ମା ବେନି
ଏକ ଅଟନ୍ତି ଏହା ଜାଣି ।
ଉଜ୍ଜଳ-ମେରୁ ପ୍ରାପ୍ତେ ହେବ
ଅନନ୍ଦ ହୋଇ ସେ ରହିବ ।

ଜ୍ଞାନ ହେବାକୁ ବାକ୍ୟାର୍ଥର
ପ୍ରଥମ ଦୁଇ ପଦତର
ଅର୍ଥ ସେ ଅଟଇ ଲକ୍ଷଣ
ତାହା ଜାଣିବାର କାରଣ ।
ମହାବାକ୍ୟର ଅଟେ ଅଦ୍ୟ
ଏମନ୍ତ ଯେଉଁ ଦୁଇପଦ ।
ଜୀବ ପରମ ବ୍ରହ୍ମଙ୍କର
ଅର୍ଥଟି ସେ ଅଟଇ ସାର ।
ପ୍ରାନ୍ତପଦ ବୁଝାଇ ଭ୍ରାତ
ଜୀବ ପରମଙ୍କ ଏକତ୍ୱ ।
ଅସ୍ୱାବ ଅଟେ ଯେ କାରଣ
ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ଜ୍ଞାନ ।
ତା ସୂକ୍ଷ୍ମ ଲକ୍ଷଣାରେ ଭ୍ରାତ
ଜାଣିବା ହୋଇବ ଏମନ୍ତ ।
ଏ ଦୁଇ ଅସ୍ମାଙ୍କରେ ପୁଣି
ଯେଉଁ ଚୈତନ୍ୟ ତାହା ଜାଣି ।
ହୋଇବ ଅସ୍ମାରୂପ ଭ୍ରାତ
ଏକତ୍ୱ ରୂପ ଦେଖ ନିତ୍ୟ ।
ଜହତଲକ୍ଷଣାହିଁ ତହିଁ
କେବେହେଁ ସମ୍ଭବଇ ନାହିଁ ।
ଜ୍ଞାନ ସ୍ୱରୂପ ନ୍ୟାସେ ଶୁଣ
ଅଜହତ୍ ଲକ୍ଷଣା ନୁହଇ ।
ସୋଽହଂ ପଦାର୍ଥ ପରକାରେ
ପ୍ରଥମ ଦୁଇ ପଦାର୍ଥରେ ।
ଭାଗ ଲକ୍ଷଣା ତହିଁ ସୂକ୍ଷ୍ମ
କରିବା ହୋଇବ ନେ ଭ୍ରାତ ।
ହୋଇ ଦସାଦ ପଞ୍ଚଭୂତ
ଏ ଯେଉଁ ପଞ୍ଚ ମହାଭୂତ ।
ଜନ୍ମ ହୋଇଛି ତହୁଁ ଶୁଣ
ସୁଖ ଦୁଃଖାଦି ସେ ବୋଲଇ ।

କର୍ମମାନର ଭୋଗ ସ୍ଥାନ
ଅତଏବ ଦେହ ଲକ୍ଷଣ ।
ଅଚିନ୍ତ୍ୟ ପ୍ରାକ୍ତନ କର୍ମ
ଯ ଠାରୁ ସେ ହୋଇଛନ୍ତି ଜନ୍ମ ।
ମାୟାମୟ ସେହୁ ଅଟଇ
ଆତ୍ମାର ଉପାଧି ସେ ଜାଣ ।
ଏମନ୍ତ ଅଟଇ ଯେ ଜୀବ
ତାକୁ ବୋଲି ସ୍ଥୂଳ ଶରୀର ।
ମନ ବୁଦ୍ଧି ଅହଙ୍କାରରେ
ଇନ୍ଦ୍ରିୟ ପ୍ରାଣ ଏମାନରେ ।
ହୋଇ ଯେ ଅଛି ସେ ସହିତ
ନୋହୁ ଯେ ଥାଇ ପଞ୍ଚଭୂତ ।
ଭୋକ୍ତା ଯେ ଅତ୍ମା ତାହାଙ୍କର
ସାଧନ ଅଟେ ସୁଖ'ଦର ।
ଏମନ୍ତ ଯେ ଅଛଇ ସବ
ତା ବୋଲନ୍ତି ସୂକ୍ଷ୍ମ ଶରୀର ।
ଅନାଦି ଯେ ପୁଣି ଅଛଇ
ବଚନେ କହି ତ ନୁହଇ ।
ସମସ୍ତଙ୍କର ଯେ କାରଣ
ଉପାଧି ଭେଦରେ ଲକ୍ଷଣ ।
ହୋଇଅଛନ୍ତି ସେ ଭିନ୍ନ ଭିନ୍ନ
ଅଟଇ ସେ ମାୟା ପ୍ରଧାନ ।
ଏମନ୍ତ ତେଣେଁ କଳେବର
ତାକୁଟି ଅତ୍ମା ବୋଲି ଜୀବ ।
ଅବଧାରିବ ହୃଦୟରେ
ତାହାକୁ ଅପଣା ମନରେ ।
ପଞ୍ଚକୋଷର ସଙ୍ଗ ପାଇ
ସ୍ଫଟିକ ପରାୟେ ସେ ହୋଇ ।
ସେହିମାନଙ୍କ ରୂପ ଗୁଣ
ପ୍ରାପ୍ତେ ସେ ଦିଶଇ ଲକ୍ଷଣ ।

ଅତ୍ମା ତାହାର ସଙ୍ଗ ନୋହୁ
ଅଜନ୍ମା ଅବ୍ୟୟ ଅଟଇ ।
ଏହୁ ବିଷୟ କହି ଭ୍ରାତ
ବୁଦ୍ଧି ଯେ ଗୁଣ ସମ୍ଭବନ୍ତ ।
ତାହାର ଜାଗ୍ରତ ସ୍ୱପନ
ସୁଷୁପ୍ତି ସୁମିତ୍ରା ନନ୍ଦନ ।
ଏରୂପେ ଭିନ୍ନ ପରକାର
ବୃତ୍ତି ହୁଅଇ ଜାଣେଁ ଜୀବ ।
ଏହାଙ୍କ ବ୍ୟତିରିକ୍ତ ଭ୍ରାତ
ଯେ ପର ଅଦ୍ୱିତୀୟ ସତ୍ୟ ।
ମଙ୍ଗଳ ଅଟେ ସେହୁ ବ୍ରହ୍ମ
ତାଠାରେ ମିଥ୍ୟା ହୁଏ ଜନ୍ମ ।
ଇନ୍ଦ୍ରିୟ ପ୍ରାଣ କଳେବର
ମନ ଚୈତନ୍ୟ ଏହଙ୍କର ।
ଯେଣୁ ସଂସାର ତେଣୁ ପୁଣ
ଭ୍ରମର ମୂଳ ଯେ ଅଜ୍ଞାନ
ତହିଁରେ ଲକ୍ଷଣ ଅନନ୍ତ
ଏମନ୍ତ ଯେ ବୁଦ୍ଧିର ବୃତ୍ତି ।
କେଉଟି ପଡ଼ଇ ହେ ଭାଇ
ଯେତେଦିନ ଯାଏ ସେ ଥାଇ ।
ତେତେକ ଦିନ ଏ ଜଗତ
କେଉଟି ହେଉଥାଇ ଜାତ ।
ଏ ସବୁ ମିଥ୍ୟା ବୋଲି ଜାଣ
ଯେବଣ କାଳରେ ତେଜଇ ।
ସେ କଲେ ହୃଦେ ଜ୍ଞାନାମୃତ
ଅସ୍ୱାଦ କରଇ ସନ୍ତତ ।
ଏମନ୍ତ ବେଳ ପୁଣି ଭ୍ରାତ
ବିନାଶୀ ଅଟେ ଯେ ଜଗତ ।
ସୁଖଦ ତା ଯେମନ୍ତ ହୋଇ
ଫଳକୁ ତେଜି ରସ ଖାଇ ।

ଆତ୍ମାର ଜାତ ମୃତ୍ୟୁ ନାହିଁ
କ୍ଷୟ ବୃଦ୍ଧି ନ ବଢ଼ଇ ।
ତାଠାରୁ ଅତିକାମ୍ୟ କେହୁ
ନାହିଁ ସେ ସୁଖସ୍ୱରୂପ ହିଁ ।
ଆପଣା ଇଚ୍ଛାଏ ସନ୍ତତ
ପ୍ରକାଶ ଯେହୁ ସର୍ବଗତ ।
ଏମନ୍ତ ସେ ବିଜ୍ଞାନ ରୂପ
ସେ ସୁଖ ସ୍ୱରୂପ ଆତ୍ମା ଏ ।
ତହିଁ ଦୁଃଖମୟ ସଂସାର
କି ରୂପେ ପୁଣି ପ୍ରତେ କର ।
ଅଜ୍ଞାନଅନ୍ଧକାରୁ ଜୀବ ।
ଆତ୍ମାରେ ପ୍ରକାଶେ ସଂସାର ।
ଜ୍ଞାନ ବୋଧ ହୋଇଲେ ଭ୍ରାନ୍ତ
ବଡ଼ ବେଗେ ସେ ହୋଏ ହତ ।
ରଜ୍ଜୁରେ ଭ୍ରମ ବୁଦ୍ଧି ହୋଇ
ସର୍ପ ଭାବନା ସେ ହୁଅଇ ।
ତାକୁ ଅଧ୍ୟାସ ବୋଲି ଭ୍ରାନ୍ତ
ସେହୁ ଅଧ୍ୟାସରୁ ଜଗତ ।
ଈଶ୍ୱର ଠାରେ ନେଇ ପୁଣ
କର ତାହାକୁ ଅରୋପଣ ।
ବିକଳ୍ପକାରୀ ଯେ ଅଟଇ
ମାୟା ଅଂଶ ଯହିଁରେ ନାହିଁ ।
ଏମନ୍ତ ସେ ଶୁଦ୍ଧାତ୍ମା ଭାଇ
ତା ଠାରେ ଅହଙ୍କାର ଯାଇ ।
ପ୍ରଥମ କଳପିତ ହୋଇ
ଅଧ୍ୟାସ ବୋଲଇଲା ସେହୁ ।
ସେ ବ୍ରହ୍ମଠାରୁଟି ଅବଶ୍ୟ
ସତ୍ୟ କଥାରେ ସେ ଅଧ୍ୟାସ ।
କାରଣ ରୂପେ ହେଲା ଜନ୍ମ
ଇଚ୍ଛା ରାଗ ସୁଖ ଯେ ଧର୍ମ ।

ଯେ ଯହିଁ ଅଛନ୍ତି ଯେମନ୍ତ
ସେ ସେହିଁ ବୁଦ୍ଧିମାନେ ଭ୍ରାନ୍ତ ।
ହେତୁ ଦୁରନ୍ତ ସଂସାରକୁ
ସୁଷୁପ୍ତିରେ ସେ ନ ଥିଲକୁ ।
ଆତ୍ମାକୁ ସୁଖ ସ୍ୱରୂପରେ
ଭାବନା କର ହୃଦୟରେ ।
ଅନାଦି ଯେ ଅବିଦ୍ୟା ଜୀବ
ଅନ୍ତରେ ଅଛି ସେ ଯାହାର ।
ଏମନ୍ତ ଯେଉଁ ବୁଦ୍ଧି ତହିଁ
ଯେଉଁ ଜୀବ ପ୍ରତିବିମ୍ବଇ ।
ତାହାକୁଟି ଚଇତନ୍ୟର
ପ୍ରକାଶ ବୋଲି ଜାଣ ଜୀବ ।
ବୁଦ୍ଧିର ସାକ୍ଷୀ ରୂପେ ଭାଇ
ରହନ୍ତି ଆତ୍ମା ଭିନ୍ନେ ହୋଇ ।
ଯେବଣ ଲୋକ ତ ଜାଣିଲ
ଅଭେଦ ଜ୍ଞାନୀ ସେ ହୁଅଇ ।
ଚୈତନ୍ୟ ପରମ ବୁଦ୍ଧିର
ଏ ସେହିଁ ଏକଠା ହେବାର ।
ତହିଁକି ଅନ୍ୟେ ଅନ୍ୟେ ପୁଣ
ହୁଅଇ ଯେ ଅଧ୍ୟାସମାନ ।
ତାହା ସକାଶ୍ୱ କର ଭାଇ
ତାତଲ ଲୁହା ପ୍ରାୟେ ହୋଇ ।
ଚୈତନ୍ୟ ଶରୀ ଦୁହିଁଙ୍କର
ଜଡ଼ ଅଜଡ଼ତ୍ୱ ବିସ୍ତର ।
ଜଙ୍ଗମ ଗୁରୁ ସକାଶରୁ
ଯେଉଁ ମହାବାକ୍ୟ ତହିଁରୁ ।
ବିଦ୍ୟାର ଅନୁଭବ ହୋନ୍ତେ
ତହିଁ ଜନ୍ତ୍ରରେ ଜାଗାବେ ।
ସବୁ କାଳରେ ଅଛି ପୂର୍ବ
ସେ ଆତ୍ମା ତାକୁ ଦେଖିକର ।

ନୟନରେ ଦେଖୁଣ ଥାଇ
ଯେ ଅତ୍ୟନ୍ତ ଜଡ଼ମୟୀ ।
ଏମନ୍ତ ଅଟେ ଯେ ଜଗତ
ତାକୁ ଛାଡ଼ିବା ହେବ ଭ୍ରାତ ।
ଆପଣା ସ୍ୱୟଂ ପ୍ରକାଶ ମୁଁ
ଅଦ୍ୱୟ ଅଜ ଅବ୍ୟୟ ମୁଁ ।
ବିଶୁଦ୍ଧ ମୁଁ ବିଜ୍ଞାନମୟ
ସମ୍ପୂର୍ଣ୍ଣ ନନ୍ଦ ଅଦ୍ୱିତୀୟ ।
ମୋହର କିଛି କାର୍ଯ୍ୟ ନାହିଁ
ସବୁ କାଳରେ ମୁକ୍ତ ମୁହିଁ ।
ଅଚିନ୍ତ୍ୟ ଶକ୍ତି ଅଛି ମୋର
ଜ୍ଞାନ ଇନ୍ଦ୍ରିୟ ଯେ ମୋହର ।
ତାହାର ନୁହଇ ଗୋଚର ।
ମୁଁ ପୁଣି ନିତ୍ୟେ ନିର୍ବିକାର ।
ବେଦାନ୍ତମାନେ ମୋତେ ଚିହ୍ନେ
ଭାବନା କରନ୍ତି ସନ୍ତତେ ।
ଆତ୍ମାକୁ ଏ ରୂପେ ଚିତ୍ତରେ
ସର୍ବଦା ଯେ ବିଚାର କରେ ।
ସେ କେବଳ ବିଶୁଦ୍ଧ ହୋଇ
ଯେଉଁ ଭାବନ ସେ ହୁଅଇ ।
ସେହୁ ଭାବନା ସାମଗ୍ରୀର
ସହିତ କରଣି ହେ ବୀର ।
ନିଜଟି ଅବିଦ୍ୟାକୁ ନାଶ
ସେ ପ୍ରାଣୀ କରଇ ଅବଶ୍ୟ ।
ଯେମନ୍ତେ ରସାୟନ ପାନ
କଲେ ନାଶଇ ବ୍ୟାଧିମାନ ।
ଏକାନ୍ତ ସ୍ଥାନରେ ଇନ୍ଦ୍ରିୟ
ମନକୁ କରିବ ନିଗ୍ରହ ।
ବସି ନିର୍ମଳ ଆତ୍ମା ହୋଇ
ଆନ ଠାବେ ମନ ନ ଦେଇ ।

ଜ୍ଞାନ ନୟନେ କର ଭାଇ ।
ଅନ୍ତଃସ୍ଥାନରେ ସ୍ଥିତ ରହି
ଏ ଭାବେ ଭାବନା କରିବ
ପରମ ଆତ୍ମାକୁ ଦେଖିବ ।
ଏମନ୍ତ ପ୍ରକାରେ ଯେତେକ
ଜଗତେ ଅଛନ୍ତି ତେତେକ ।
ସବୁର ଆତ୍ମାରେ ଆପଣି
ଲୟ କରିଣ ହେ ଲକ୍ଷ୍ମଣ ।
ପୂର୍ଣ୍ଣ ଆନନ୍ଦମୟ ହୋଇ
ରହିବାକୁ ହୋଇବ ଭାଇ ।
ସେତେ କେ ବାହାର ଅନ୍ତର
କିଛିହିଁ ନ ଜାଣିଣ ବୀର ।
ସମାଧି ପୂର୍ବରୁ ଜଗତ
ପ୍ରଣବମୟ କର ଭ୍ରାତ ।
ଜାଣିବ ପ୍ରଣବ ବାଚକ
ବ୍ରହ୍ମ ଅଟଇ ବାଚ୍ୟ ଏକ ।
ଏ ଜ୍ଞାନ ବଶରୁ କରଣ
ଭାବନା କରିବ ଲକ୍ଷ୍ମଣ ।
ଅକାର ଅଟଇ ଯେ ବିଶ୍ୱ
ଉକାର ଅଟଇ ତୈଜସ ।
ମକାର ପ୍ରାଜ୍ଞ ଅଟେ ଭ୍ରାତ
ସମାଧି ପୂର୍ବରୁ ଏମନ୍ତ ।
ପଣ୍ଡିତ ନିକର କହନ୍ତି
ତତ୍ତ୍ୱର ଏ କିଛି କୁହନ୍ତି ।
ଓଁକାର ମଧ୍ୟରେ ବହୁତ
ପରକାରରେ ଅଛି ଭ୍ରାତ ।
ଏମନ୍ତ ସେ ଯେଉଁ ଓଁକାର
ଜଗତ ପୁରୁଷ ସେ ବୀର ।
ବିଶ୍ୱ ତୁଲରେ ନେଇ ତାକୁ
ହୋଇବ ଲୀନ କରିବାକୁ ।

ମକାରେ ସେ କଣ୍ଠରେ ପୁଣ
କରିବ ଉକାରକୁ ଲୀନ ।
ଚୈତନ୍ୟରେ ନେଇଣ ବୀର
ପ୍ରାଜ୍ଞ ସେ ଯେବଣ ମକାର ।
ତାହାକୁ ଲୀନ କର ପୁଣ
ଏମନ୍ତ ଅଟେ ଯେ ଲକ୍ଷ୍ମଣ ।
ସେ ପରଂବ୍ରହ୍ମ ମୁଁ ଅଟଇ
ସଦାକାଳରେ ମୁକ୍ତ ମୁହିଁ ।
ସାକ୍ଷୀ ମୁଁ ଅଟଇ ଜ୍ଞାନର
ନିରୁପାଧି ମୁଁ ନିଶ୍ଚେ ବୀର ।
ପରମ ଆତ୍ମା ଏ ପ୍ରକାରେ
ଭାବନା ଜାଣି ହୃଦୟରେ ।
ସନ୍ତୋଷ ସାନନ୍ଦରେ ହୋଇ
ସବୁ ପାସୋରି କର ଭାଇ ।
ନିତ୍ୟ ସୁଖ ପ୍ରକାଶ କରେ
ନିଶ୍ଚଳ ସାଗର ପ୍ରକାରେ ।
ସାକ୍ଷାତ ଏହୁ କଳେବରେ
ମୁକତ ହୋଇବ ସୁଖରେ ।
ଅତ୍ୟ ପ୍ରାନ୍ତରେ ଦୂର ଠାବ
ଯେତ ଅଭ୍ୟାସ କରିଥାଇ ।
ସବୁ ଇନ୍ଦ୍ରିୟମାନେ ବୀର ।
ନିବର୍ତ୍ତି ଥାଆନ୍ତି ଯାହାର ।
କାମ କ୍ରୋଧାଦି ଜିଣି ଥାଇ
ସେ ମୋତେ ସାକ୍ଷାତେ ଦେଖଇ ।
ଏ ପରକାରେ ଦିବା ରାତ୍ର
ଆତ୍ମାକୁ ଧ୍ୟାନ କର ଭ୍ରାତ !
ଛାଡ଼ି ସମସ୍ତ ବନ୍ଧମାନ
ଥିବ ନ କରି ଅଭିମାନ ।
ସେ ପ୍ରାରବଧ କର୍ମମାନ
ଭୁଞ୍ଜୁଣ ଥିବ ହେ ଲକ୍ଷ୍ମଣ ।

ଏମନ୍ତ ଲୋକ ମୋହ ଠାଇଁ
ସାକ୍ଷାତ ହୋଇ ଲୀନ ହୋଇ ।
ଅଦ୍ୟ ମଧ୍ୟ ପ୍ରାନ୍ତେ ନିଶ୍ଚୟ
ତିନି କାଳରେ ଭବ ଭୟ ।
ସ୍ତ୍ରୋତର ଅଟଇ କାରଣ
ଏମନ୍ତ ଜାଣି ହେ ଲକ୍ଷ୍ମଣ ।
କରମ ମାର୍ଗକୁ ତେଜିବ
ପରମ ଆତ୍ମାକୁ ଭଜିବ ।
ଜଗତପାଳ ଆତ୍ମା ଠାରେ
ଚିନ୍ତା କରିବ ଅଭେଦରେ ।
ଆତ୍ମାକୁ ମୋହ ସଙ୍ଗତରେ
ଚିନ୍ତିବ ଅଭେଦ ଭାବରେ ।
ନୀରରେ ନୀର କ୍ଷୀରେ କ୍ଷୀର
ନଭେ ନଭ ବାତେ ସମୀର ।
ଏମାନେ ମିଶିଲେ ଯେମନ୍ତ
ଅଭେଦ ହୁଅନ୍ତି ହେ ଭ୍ରାତ ।
ଦେଖିବ ଏ ପ୍ରକାରେ ଯେବେ
ବେଦ ବାକ୍ୟ ପ୍ରମାଣ ତେବେ ।
ମିଥ୍ୟା ବୋଲିଣ ଏ ଜଗତ
ନିଶ୍ଚୟେ ଜାଣିବ ଏମନ୍ତ ।
ଚନ୍ଦ୍ର କିରଣ ଭ୍ରମେ ଭାଇ
ମୃଗ ଭ୍ରମ ସେ ଜଳମଳ ।
ଚିନ୍ତିଲେ ପୁଣି ଜାଣି ହୁଏ
ଜଗତେ ସେତେ ଦିନ ଯାଏ ।
ମୋହର ସ୍ୱରୂପ କିରଣ
ନ ଜାଣି ଥିବ ହେ ଲକ୍ଷ୍ମଣ ।
ଗୁରୁଭକ୍ତିରେ ଅତିଶୟେ
ସଂଯୁକ୍ତ ହୋଇଣ ନିଶ୍ଚୟେ ।
ତେତେକ ଦିନ ଯାଏ ମୋତେ
କରିବ ଆରାଧନା ନିତ୍ୟେ ।

ସବୁ ଭାଳେ ଏମନ୍ତ କରେ
ଦେଖନ୍ତି ମୋତେ ହୃଦୟରେ ।
ଏ କଥା ଗୁପତ ମୋହର
ସମସ୍ତ ବେଦର ଏ ସାର ।
ଏହା ଈଶ୍ୱର ହୃଦୟରେ
ତୁମ୍ଭଙ୍କୁ କହିଲି ସ୍ନେହରେ ।
ଏହା ଯେଉଁ ସୁବୁଦ୍ଧି ନର
ମନରେ କରଇ ବିଚାର ।
କ୍ଷଣକେ ସେ ଲୋକ ଅବଶ୍ୟ
ପାପ ସମୂହ କରେ ନାଶ ।
ପୁଣି ବୋଇଲେ ଅହେ ଭ୍ରାତ
ଦେଖୁଛ ଯେତେକ ଜଗତ ।
ମାୟା ବୋଲିଣ ଏହା ଚିହ୍ନେ
ଜାଣି ସକଳ ଚେତ ଯତ୍ନେ ।
ହୋଇ ଅତ୍ୟନ୍ତ ସ୍ୱଚ୍ଛ ମନା
କରଣ ଅମ୍ଭଙ୍କୁ ଭାବନା ।
ଆନନ୍ଦମୟ ହୋଇ ଭାବ
ଥିବାରୁ ହେବ ସୁଖୀ ହୋଇ ।
ଯେଉଁ ମନୁଷ୍ୟମାନେ ମୋତେ
ନିର୍ଗୁଣ କହଣ ସନ୍ତତେ ।
ନୋହିଲେ ସଗୁଣରେ ଚିହ୍ନେ
ସେବା କରନ୍ତି ସେବା ଯତ୍ନେ ।

ମୁଁ ନିଶ୍ଚେ ପ୍ରେମ ନକ୍ତ ଭାଇ
ଚରଣ ରେଣୁରେ ଛୁଅଁଇ ।
ଈଶ୍ୱର ପ୍ରାପ୍ତେ ସେହୁ ନର
ପବିତ୍ର କରେ ତ୍ରିପୁର ।
ଏ ଜ୍ଞାନ ସମସ୍ତ ବେଦର
ଏହା ହୋଇଣ ଅଟେ ସାର ।
ଉପନିଷଦ ହେ ଲକ୍ଷ୍ମଣ ।
ଜାଣେ ଯା ପଦ ବଡ଼ ପଣ ।
ଏମନ୍ତ ଯେ ଅମ୍ଭେ ଆପଣ
କହିଲୁଁ ଏହା ଯେଉଁ ଜନ ।
ଶ୍ରଦ୍ଧା ଭକ୍ତିରେ ଯୁକ୍ତ ହୋଇ
ପଢ଼େ ଯେବେ ତାହାର ଭାଇ ।
ମୋ ବାକ୍ୟେ ବିଶ୍ୱାସ ହୋଇବ
ତେବେ ମୋ ସ୍ୱରୂପ ଲଭିବ ।
ବୋଲଇ ଦାସ ହଳଧର
ପଣ୍ଡିତେ ଶୁଣ ମୋ ଉତ୍ତର ।
ଯୋଗ ଅଭ୍ୟାସ ଏ ପ୍ରକାରେ
କରିବେ ସମସ୍ତେ ନିର୍ଭରେ ।
ଜାନକୀ ସୁତ ଶ୍ରୀରାମର
ଚରଣେ ଭକ୍ତି ହେଉ ମୋର ।
ଏ ଅର୍ଥ ପରମ ମୋକ୍ଷଦ
ହୁଇଣ ସନ୍ତୁଷ୍ଟ ଏ ପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଉତ୍ତରକାଣ୍ଡେ ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶଙ୍କର ପୁଣି ସେ ଉତ୍ତରେ
କହନ୍ତେ ଭବାନୀ ଆଗରେ ।

ଯମୁନା ତୀରେ ଏକଦିନେ
ଅସଂଖ୍ୟ ହୋଇ ମୁନିମାନେ ।

ଲବଣାସୁରଠାରୁ ଭୟେ
ମହାଭୟ ପାଇ ସର୍ବେ ।
ଶ୍ରୀରାମ ପଦାବ୍ଜ ଅଭୟ
ପାଇବା କର ଏ ଆଶ୍ରୟ ।
ଚ୍ୟବନ ଋଷିଙ୍କ ଅଗରେ
କର ମିଳିଲେ ରାମଠାରେ ।
ତାହାଙ୍କୁ ଦେଖି ସୀତାକାନ୍ତ
ଅତି ଭକ୍ତିରେ ହୋଇ ସ୍ୱତ ।
ବିଧି ପ୍ରମାଣେ ରାବଣାରି
ସବୁ ଋଷିଙ୍କୁ ପୂଜାକରି ।
ଆସନମାନଙ୍କେ ବସାଇ
ସବୁଙ୍କୁ ହରଷ କରାଇ ।
ପରମ ମଧୁର ବଚନ
କହିଲେ ଶ୍ରୀରଘୁନନ୍ଦନ ।
ଯହିଁକି ଆଇଲ ସର୍ବେ
ତାହା ମୁଁ କରିବି ନିଶ୍ଚୟେ ।
ମୁଁ ଅତି ସୁକୃତ ଅଟଇ
ଯାହା ମୋତେ ଦେଖିବା ପାଇଁ ।
ଆଇଲ ତୁମ୍ଭେମାନେ ଆଜ
ଏ ବେଳେ କହ ତୁମ୍ଭ କାର୍ଯ୍ୟ ।
ହେ ଭବ ଅକର୍ତ୍ତବ୍ୟ ଯେବେ,
ନିଶ୍ଚୟେ କରିବି ମୁଁ ତେବେ ।
ଦାସ ମୁଁ ତୁମ୍ଭମାନଙ୍କର
ବ୍ରାହ୍ମଣେ ଦେବତା ମୋହର ।
ଏ ବେଳେ ଆଜ୍ଞା ଦିଅ ମୋତେ
ହରଷ ହୋଇ ସେ ସମସ୍ତେ ।
ରାମଙ୍କୁ ଜଣାଇ ଚ୍ୟବନ
କହିଲେ ଏମନ୍ତ ବଚନ ।
ସତ୍ୟ ଯୁଗରେ ପୂର୍ବେ ରାମ
ଦଇତେ ଥିଲା ମଧୁନାମ ।

ଦେବତା ବ୍ରାହ୍ମଣ ପୂଜକ
ପରମ ଧାର୍ମିକ ଅଟଇ ।
ଶୂଳ ଗୋଟିଏ ତାକୁ ଦେଲେ
କହିଲେ ଶିବ ତୁଷ୍ଟ ହୋଇ ।
ଯାହାକୁ ମାରିବୁ ଏ ଶୂଳ
ସେ ଭସ୍ମ ହେବ ତତକାଳ ।
ରାବଣର ଭଗ୍ନୀ ହେ ରାମ
ତାହାର କୁମ୍ଭୀନସୀ ନାମ ।
ସେ କନ୍ୟାକୁ ମଧୁଦଇତ
ବିଭା ହୋଇଲା ସୀତାକାନ୍ତ ।
ତାହାର କୁମ୍ଭୀନସୀ ଠାଇଁ
ଅତ୍ୟନ୍ତ ଭୟଙ୍କର ହୋଇ ।
ନାଶ କରଇ ବିପ୍ର ସୁର
ଏ ରୂପେ ଲବଣ ଅସୁର ।
ସଂଜାତ ହେଲା ରଘୁସାଇଁ
ତାହା ସଦାଏ ପୀଡ଼ା ପାଇ ।
ଭୟରେ ଆସି ଋଷିଗଣ
ତୁମ୍ଭଙ୍କୁ ପଶିଲୁ ଶରଣ ।
ଶୁଣି କହିଲେ ରାମଚନ୍ଦ୍ର
ଭୟ ନ କର ମୁନିବୃନ୍ଦ ।
ଲବଣାସୁରକୁ ମୁଁ ନାଶ
ନିକଟେ କରିବି ଅବଶ୍ୟ ।
ନିଶ୍ଚିନ୍ତ ହୋଇ ତୁମ୍ଭେମାନେ
ଥିବାକୁ ହେଉ ତପୋବନେ ।
ଏମନ୍ତ ରୂପେ ରାବଣାରି
ତାହାଙ୍କୁ ଆଶ୍ୱାସନା କରି ।
ତଣ ଭାଇକି ଅନାଇଲେ
ତାଙ୍କୁ ଏମନ୍ତ ଆଜ୍ଞା ଦେଲେ ।
କେ ତୁମ୍ଭେ ମାରି ଲବଣକୁ
ଅଭୟ ଦେବ ବ୍ରାହ୍ମଣଙ୍କୁ ।

ଏମନ୍ତ ଶୁଣନ୍ତେ ଭରତ
କହିଲେ ଯୋଡ଼ି ବେନି ହସ୍ତ ।
ଆଜ୍ଞା ଦେବାକୁ ହେଉ ବୀର
ମୁଁ ବଧ କରିବି ତାହାର ।
ଏମନ୍ତ ଶୁଣିଣ ବଚନ
ବିନୟ ହୋଇ ଶତ୍ରୁଘନ ।
ରାମଙ୍କୁ ନମସ୍କାର କଲେ
କୃତାଞ୍ଜଳି ହୋଇ କହିଲେ ।
ଯୁଦ୍ଧେ ଅନେକ କାର୍ଯ୍ୟମାନ-
କରି ତ ଅଛନ୍ତି ଲକ୍ଷ୍ମଣ ।
ନନ୍ଦିଗ୍ରାମରେ ତ ଭରତ
ଦୁଃଖ ପାଇଛନ୍ତି ବହୁତ ।
ଏ ବେନି ତା ବଧ ନିମନ୍ତେ
ଆଜ୍ଞା ଦେବାକୁ ହେଉ ମୋତେ ।
ତୁମ୍ଭ ପ୍ରସାଦେ ମୁଁ ଅବଶ୍ୟ
କରିବି ଲବଣକୁ ନାଶ ।
ଶୁଣି ତାହାଙ୍କ ରଘୁସାଇଁ
କହିଲେ କୋଳରେ ବସାଇ ।
କରିବାକୁ ମଥୁରା-ରାଜ୍ୟ
ଏଠାରେ ମୁଁ ତୁମ୍ଭଙ୍କୁ ଆଜ ।
କରିବି ଅଭିଷେକ ଭାଇ
ଏମନ୍ତ ରୂପେ ତାଙ୍କୁ କହି ।
ଲକ୍ଷ୍ମଣଙ୍କୁ ସେ ଆଜ୍ଞା ଦେଇ
ସମସ୍ତ ସମ୍ଭାର ଆଣାଇ ।
ନ ଥିଲା ତାହାଙ୍କର ମନ
ବଳେ ତାଙ୍କୁ ରଘୁନନ୍ଦନ ।
ସନ୍ତୋଷେ ହୋଇଣ କକୁତ୍ସ୍ଥ
ବନ୍ଧନ କରି ଅଭିଷେକ ।
ଶର ଗୋଟିଏ ପୁଣି ଦେଲେ
ଏମନ୍ତ ବଚନ କହିଲେ ।

ଏହି ବାଣରେ ଶତ୍ରୁଘନ
କରିବ ତାହାକୁ ନିଧନ ।
ସେ ଶୂଳ ହୀନେଣ ଅସୁର
ନାଶ କରିଣ ଜନ୍ତୁ ବାର ।
ଭୋଜନ କରିବାକୁ ସ୍ୱର
ଅରଣ୍ୟକୁ ସେ ନିତ୍ୟେ ଯାଇ ।
ତହିଁ ପୁଣି ସେ ମନ୍ଦିରକୁ
ନ ଆସୁ, ଯାଇ ସେ ସ୍ଥାନକୁ ।
ତା ପୁର ଦ୍ୱାର ରୁଦ୍ଧ କରି
ରହିବ ଧନୁଶର ଧରି ।
କ୍ରୋଧେ ସେ ତୁମ୍ଭ ସଙ୍ଗତରେ
ଯୁଝିଲେ ମରିବ ସେଠାରେ ।
ସେ ଅସୁରକୁ ବଧ କରି
ନିର୍ମ୍ମାଣ କରି ମଧୁପୁରୀ ।
ବସାଇ ଅଙ୍କରେ ମୋହର
ତୁମ୍ଭେ ସେ ପୁରେ ଥିବ ବୀର ।
ପାଞ୍ଚ ସହସ୍ର ଅଶ୍ୱବର
ପଚିଶଶତ ରଥ ବୀର ।
ଛ'ଶତ ମହାମତ୍ତ ଦନ୍ତୀ
ଲକ୍ଷସହସ୍ର ପଦାତି ।
ତୋ ପଛେ ଯିବେ ଏତେ ସୈନ୍ୟ
ଅଗ୍ରରେ କରି ତୁ ଗମନ ।
ଏମନ୍ତ କହି ରାଘବେ
ଅନେକ ଆଲିଙ୍ଗନ କରି ।
ଆଘ୍ରାଣ କରି ସେ ମସ୍ତକ
କଲ୍ୟାଣ କରି ସେ ଅନେକ ।
ଚ୍ୟବନ ଆଦି ମୁନି ତୁଲେ
ତାହାଙ୍କୁ ପଠିଅଇ ଦେଲେ ।
ରାମ ଯେମନ୍ତ କହିଥିଲେ
ଶତ୍ରୁଘ୍ନ ସେହି ରୂପେ କଲେ ।

ଲବଣାସୁରକୁ ସଂହାରି
ବସାଇଲେ ସେ ମଧୁପୁରୀ ।
ଦାନରେ ସମ୍ମାନରେ ସର
ତୁଷ୍ଟି କଲେ ସେ ସର୍ବପୁର ।
ଜାନକୀ ଏକ ଦିବସରେ
ବାଲ୍ମୀକିଙ୍କ ଆଶ୍ରମରେ ।
ପୁତ୍ର ଯୋଡ଼ାଏ କଲେ ଜନ୍ମ
ମୁନି ତାଙ୍କର ଦେଲେ ନାମ ।
ବଡ଼କୁ କୁଶ ବୋଲି ଦେଲେ
ଅପର ନାମ ଲବ କଲେ ।
ଶାସ୍ତ୍ର ପ୍ରମାଣେ ତପୋଧନ
କରି ସମସ୍ତ କର୍ମମାନ ।
କାଳରେ ବ୍ରତ ପୂର୍ଣ୍ଣ କଲେ
ବେଦାଧ୍ୟୟନ କରାଇଲେ ।
ଶଙ୍କର ଯାହା ପୂର୍ବକାଳେ
ଉମାଙ୍କ ଆଗେ କହିଥିଲେ ।
ଏବେ ଏ ସେହି ରାମାୟଣ
ବେନି ଭାଇଙ୍କି ତପୋଧନ ।
ସମସ୍ତ କରି ତା ପଢ଼ାଇ
ଆଗମ ଅର୍ଥ ବୁଝି ପାଇ ।
ତା ପୁଣି ଉତ୍ତମ ପ୍ରକାରେ
ଶୁଣାଇ ତାହାଙ୍କ ଠାବରେ ।
ସେ ସୀତା ପୁତ୍ର ଦୁହିଁଙ୍କର
ସ୍ୱର ସୁସ୍ୱର ମନୋହର ।
ଅଶ୍ୱିନୀକୁମରେ ଯେସନ
ତେସନ୍ତେ ଶୋଭନ ଆସନ ।
ବୀଣାଲୟରେ କରି ସ୍ତୁତି
ଗାୟନ କରି ବେନି ଭ୍ରାତ ।
ବୁଲନ୍ତି ଆଶ୍ରମମାନରେ
ଏମନ୍ତେ ଏକ ଦିନକରେ ।

ମୁନିମାନଙ୍କ ସଭାସ୍ଥଳେ
ଗାୟନ ମାନ କରୁଥିଲେ ।
ତାହାଙ୍କୁ ଦେଖି ଋଷିବୃନ୍ଦ
ହୋଇଣ ଅତ୍ୟନ୍ତ ଆନନ୍ଦ ।
ପରମ ଆଶ୍ଚର୍ଯ୍ୟ ପାଇଲେ
ଏମନ୍ତ ବଚନ କହିଲେ ।
ଗନ୍ଧର୍ବ କିନ୍ନର ଲୋକରେ
ଦୈବତା ସୁର ଧରଣୀରେ ।
ପାତାଳେ ବ୍ରହ୍ମସଦନରେ
ସମସ୍ତ ଲୋକମାନଙ୍କରେ ।
ଛରଗ୍ରାମତ ଅପ୍ସେମାନେ
ବହୁଣ ଥାଇ ସବୁଦିନେ ।
ଏତେ ସ୍ୱରେ ତ ଶୁଣିଥାଇ
କେଉଁ କାଳେ ତ କେଉଁଠାଇଁ ।
ଏ ଗୀତ ଶୁଣି ତ ନ ଥାଇ
ଏ ରୂପେ ଦେଖିଲାଇଁ ନାହିଁ ।
ଏମନ୍ତ ରୂପେ ତପୋବନ୍ତେ
ପ୍ରଶଂସା କରୁଥାନ୍ତି ନିତ୍ୟେ ।
ବାଲ୍ମୀକିଙ୍କ ଆଶ୍ରମରେ
ରହିଲେ ଦୁହେଁ ଏ ପ୍ରକାରେ ।
ଏଥୁଅନ୍ତରେ ରାବଣାରି
ସୁବର୍ଣ୍ଣ ମୟୀ ସୀତା କରି ।
ଅଶ୍ୱମେଧାଦି ଯାଗମାନ
କଲେ ସେ ଦକ୍ଷିଣା ବରଣ ।
ସେ ଯାଗ ଘରେ ଦେବଋଷି
ବହୁତ ବ୍ରହ୍ମଋଷି ଆସି ।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ
ପୁରରାଜ୍ୟର ଲୋକମାନେ ।
ଶୋଭାରେ ଦେଖିବା ନିମନ୍ତେ
ସମସ୍ତେ ପ୍ରବେଶ ହୁଅନ୍ତେ ।

ଏମନ୍ତେ ବାଲ୍ମୀକି ମୁନି
କୁଶ ଲବଙ୍କ ସଙ୍ଗେ ଘେନି ।
ସେଠାରେ ପ୍ରବେଶ ହୋଇଲେ
ଋଷି ମଣ୍ଡପେ ସେ ବସିଲେ ।
ଏମନ୍ତେ ଏହି ସମୟରେ
ଧ୍ୟାନେ ସମାଧି ଅନନ୍ତରେ ।
ସେ ବାଲ୍ମୀକି ନିଶ୍ଚିନ୍ତରେ
ସୁଖେ ଅଛନ୍ତି ଏକାନ୍ତରେ ।
କୁଶ ତାହାଙ୍କୁ ଜ୍ଞାନ ଶାସ୍ତ୍ର
ପୁଚ୍ଛିଲେ ଯୋଡ଼ି ବେନି ହସ୍ତ ।
ହେ ଭଗବାନ ତପୋଧନ
ତୁମ୍ଭ ସମ୍ପୂର୍ଣ୍ଣ ଯେଉଁମାନ ।
କରୁଛି ଶୁଣିବାକୁ ମନ
ସେ କଥା ମୋ ଆଗେ ବହନ ।
କହିବା ହେଉ ମୁନିବର
ସଂସାର ବନ୍ଧ ମନୁଷ୍ୟର ।
କୃପା ହୋଇ ହେ ତପୋବନ୍ତ
କିରୂପେ ତୁଟଇ ସେ ଜାତ ।
ପୁଣି ସେ କି ପ୍ରକାରେ ହୋଇ
ଚିତ୍ତୁ ମୁକତ ହୁଅଇ ।
ତୁମ୍ଭର ଶିଷ୍ୟ ଅଟେ ଯହୁଁ
ଏ ବେନି କହିବାକୁ ହେଉ ।

ବାଲ୍ମୀକି ଉବାଚ

ପୁଣି କହିଲେ ମୁନିବର
ହେ ବତ୍ସ ସଂସାର ବନ୍ଧର ।
ସ୍ୱରୂପ ମୋକ୍ଷର ସାଧନ
କହିବା ସଂକ୍ଷେପେ ତା ଶୁଣ ।
ଅସ୍ମଠାରୁ ତା ଜାଣି ପୁଣ
କର ଯଥାର୍ଥ ଆଚରଣ ।
ଜୀବନ-ମୁକ୍ତ ହେବ ଜୀବ
ଅଦେହ ଯେ ଚୈତନ୍ୟ ଭାବ ।
ମନର ଅଟଇ ଶରୀର
ମନ୍ତ୍ରୀ ତାହାର ଅହଙ୍କାର ।
ତାହାର କଳେବର ଧାମ
ଏମନ୍ତ ହୋଇ ଯେଉଁ ନାମ ।
ସେ ପୁଣ ଅହଙ୍କାରେ ବଶ
କେବଳ ଚୈତନ୍ୟରେ କୁଶ ।
ତା ଅନ୍ୱେଷଣ କର ଚନଇ
ପୁଣି ଓସ ଅହଙ୍କାର ଯାଇ ।
ସଂସୃତ ଚୈତନ୍ୟରେ ହୋଇ
ତାହା ସମାନ ରୂପ ପାଇ ।
ଆପଣା ଚେଷ୍ଟା ସେ ଚୈତନ୍ୟ
ସଙ୍ଗତେ କର ତା ବିଧାନ ।
ଆପଣ ସେ ଚୈତନ୍ୟ କୁଶ ।
ହୋଇଣ ଥାଇ ପରକାଶ ।
ଓସ ଅହଙ୍କାରରେ କରଣ
ସଂକଳ୍ପକୁ ଦେଖି ଲକ୍ଷଣ ।
ସଂକଳ୍ପ ଶୃଙ୍ଖଳାକୁ ପାଇ
ତହିଁରେ ନରବନ୍ଧା ହୋଇ ।
ସ୍ତ୍ରୀଆଦି ଦାସ ଧନ ପୁତ୍ର
ଚିନ୍ତା ସେ କରଇ ସତତ ।
ସେ ଯେବେ ନାଶ ପୁଷ୍ଟି ହୋଇ
ତେବେ ଶୋଚନା କରୁଥାଇ ।
ସେ ଅହଙ୍କାରର ହେ ପୁତ୍ର
ତମ-ସତ୍ତ୍ୱ-ରଜ ଏମନ୍ତ ।
ଅଧମ-ଉତ୍ତମ-ମଧ୍ୟମ
ଏରୂପେ ତିନିଗୋଟି ନାମ ।
ଜଗତ ବର୍ତ୍ତିବା ନିମନ୍ତେ
କାରଣ ଅଟନ୍ତି ସମସ୍ତେ ।

ଜନ୍ମ ରୂପ ସଂକଳ୍ପ ଭୂପ
ପ୍ରଭ ଉଦୟରେ ତାମସ ।
ଚେଷ୍ଟାରେ ତାମସ ଅତ୍ୟନ୍ତ
ହୋଇ ଲଭେ କୃମି କୀଟତ୍ୱ ।
ସେ ସତ୍ତ୍ୱରୂପ ସଙ୍କଳ୍ପେଣ
ଧର୍ମ-ଜ୍ଞାନ ପରାୟଣ ।
ହୁଅଇ ନିକଟେ ତାହାର
ମୋକ୍ଷସମ୍ପଦ ଥାଇ ସ୍ଥିର ।
ଅପଣା ସୁଖୀ ହୋଇ ଥାଇ
ରଜରୂପ ସଂକଳ୍ପ ପାଇ ।
କରଇ ସେ ଲୋକ ବେଭାର
ପୁତ୍ର-ଦାର-ଧନ-ମନ୍ଦିର ।
ଇତ୍ୟାଦିରେ ସଂଯୁତ ହୋଇ
ସଂସାର-କ୍ଳେଶ ଭୁଞ୍ଜୁଥାଇ ।
ଏ ତିନି କଥା ଗୁଡ଼ ନାଶ
ହୋଇଲେ ମୋକ୍ଷ ହୁଏ ଭୂପ ।
ଦେଖିବା ହେଉଛି ଯେତେକ
ଲକ୍ଷଣ ସେ ଏତେକ ଯାକ ।
ଅପଣା ମନ କର ପୁତ୍ର
ମନକୁ କରବ ସଂଯତ ।
ତାହାର ହୃଦୟ ଭିତର
ବେନିଁ ସଂକଳ୍ପ ନାଶକର ।
ପାତାଳ ଭୂମି ସ୍ୱର୍ଗପୁରେ
ଏ ତିନିଠାରୁ ସ୍ଥାନକରେ ।
ଦାରୁଣତପ ଯେବେ ଭୂପ
କରଇ ସହସ୍ରେ ବରଷ ।
ତେବେ ସଂକଳ୍ପ ନାଶ ନୋହୁ
ମୋକ୍ଷକୁ ଉପାୟ ସେ ନାହିଁ ।
ତାହା ସତ୍ୟେ ବାଧ ନୋହୁ
କହୁଣସି ବିଚାର ନାହିଁ ।

ସୁଖଦ-ପରିଶ ହେ ଭୂପ ।
ଏମନ୍ତ ସଂକଳ୍ପ ଯେ ନାଶ ।
ପଞ୍ଚରୂପରେ ବେଗେ ସ୍ଥିର
ଭକ୍ତିରେ ବେଗେ ଯତ୍ନ କର ।
ଯେଣୁ ସେ ସଂକଳ୍ପ ସୂତାରେ
ସମସ୍ତ ବିଭବ ନିକରେ ।
ଅନନ୍ତ ଦୃଢ଼େ ଗୁନ୍ଥା ହୋଇ
ଯେବେ ସେ ସୂତା ଛିଡ଼ିଯାଇ ।
ତେବେ ବିଭବମାନେ କାହିଁ
ଯାଆନ୍ତି କେହୁ ନ ଜାଣଇ ।
ସଂକଳ୍ପ ଶୂନ୍ୟ ହୋଇ ଭୂପ
ଯେମନ୍ତ ପଡ଼ିବ ଅବଶ୍ୟ ।
ତହିଁକି କରିବ ବେଭାର
ସଂକଳ୍ପ କ୍ଷୟ ହେଲେ ସ୍ଥିର ।
ଜୀବ ବ୍ରହ୍ମଭାବକୁ ପାଇ
ସଂଶୟ ଏ କଥାରେ ନାହିଁ ।
ପରମାର୍ଥକୁ ଜାଣି ପୁତ୍ର
ସବୁ ସଂକଳ୍ପ କର ତ୍ୟାଗ ।
ସୁଷୁପ୍ତି କାଳୋଚିତ ମତ
ସମସ୍ତଠାରେ କର ଶାନ୍ତ ।
ବିସ୍ତାର ସୁଖ ପାଇବାକୁ
ବହନ ଅପଣା ଅଶ୍ୱାକୁ ।
ବ୍ରହ୍ମର ଭଲେ ପରବେଶ
କରିବା ହେଉ ଅହେ ଭୂପ ।
ଜାନକୀ ସୁତ ଶ୍ରୀରାମର
ଅଖିଳ-ଆନନ୍ଦ-ପଦ୍ମର ।
ଶ୍ରୀରାମ ନାମ ଗାଇ ଭକ୍ତ
ଦେହକୁ ଯତ୍ନେ ମୋର ପିଣ୍ଡ ।
ନାୟ ହଳଧର ଦାସଦ
ଅଧ୍ୟା ଶବେ ପଞ୍ଚମ ପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଉତ୍ତରକାଣ୍ଡେ ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଉମାକୁ କହନ୍ତେ ପିନାକୀ
ଶୁଣ କହନ୍ତେ ବାଲ୍ମୀକି ।
କୁଶ ଅଶନ କରି ଶାନ୍ତ
ଅନ୍ତରେ ମୁକ୍ତ ହୋଇଥାନ୍ତି ।
ସମସ୍ତ କାର୍ଯ୍ୟ ସେ ବାହାରେ
କରଣ ରହିଲେ ସୁଖରେ ।
ପୁଣି ସେ ବାଲ୍ମୀକି ଋଷି
କୁଶ ଲବଙ୍କୁ ସ୍ନେହି ହସି ।
ବୋଇଲେ ତୁମ୍ଭେ ବେନି ଭାଇ
ପୁରମାନଙ୍କେ ଗାଅ ଯାଇ ।
ଶ୍ରୀରାମ ଅଗ୍ରେ ଦେବେ ଯେବେ
ତାହାଙ୍କୁ ଶୁଣାଇବ ତେବେ ।
ସେ କିଛି ଦେଲେ ନ ନେବ
ଏମନ୍ତ ଶୁଣି କୁଶ ଲବ ।
ସେ ବେନି ଭାଇ ପୁରେ ପୁରେ
ଗାୟନ କଲେ ସବୁଠାରେ ।
ବାଳକେ ଗାଉଛନ୍ତି ଗୀତ
ସ୍ୱରରେ ଅପୂର୍ବ ଚରିତ ।
ସୁବ ବୟସ୍ୱ ଅପଣାର
ଅଟେ ପରମ ମନୋହର ।
ଏମନ୍ତ ଶୁଣି ରଘୁସାଇଁ
କହନ୍ତ ଭରତକୁ ପାଇ ।
ଯାଗକର୍ମ ଅନ୍ତରେ ଯାଇ
ପଣ୍ଡିତକୁଳ ମଣ୍ଡଳର ।

ପୌରାଣିକ ଶାସ୍ତ୍ରବୋଦ୍ଧା
ପରଜା ବୃନ୍ଦ ବୃଦ୍ଧ ସିଦ୍ଧ ।
ଋଷି ବରଣ ସବୁଙ୍କୁହିଁ
ଘେନାଇ ଅପି ହରଷଇ ।
ଗାୟକ ଦୁହିଙ୍କର ତୁଲେ
ସଭା ସଦନେ ବସେ ଭଲେ ।
ସମସ୍ତ ଲୋକେ ହୃଷ୍ଟ ହୋଇ
ରାମଙ୍କୁ ସେ ଦୁହିଙ୍କୁ ଚାହିଁ ।
ଅଦ୍ଭୁତ ବିସ୍ମୟ ହୋଇଲେ
ଏମନ୍ତ କୁହାକୁହି ହେଲେ ।
ପ୍ରଦୀପୁଁ ଦୀପର ପ୍ରାୟେ
ହୋଇ ଅଛନ୍ତି ଏ ତନୟେ ।
କେବଳ ଏ ଜଟା ମଣ୍ଡଳ
ନ ଧରିଥିଲେ ତ ବଳ୍କଳ ।।
ରାମଙ୍କ ଏ ଯୋଡ଼ିକ ପୁତ୍ର
ଭଲେ ଭଲେ ରୂପ ଭରି ତ ।
ନ ଜାଣିପାରି ତ ସମସ୍ତେ
ଏମନ୍ତ ପ୍ରକାରେ କହନ୍ତେ ।
ଗାୟନ କଲେ ବେନି ଭାଇ
ଅତ୍ୟନ୍ତ ଅମାନୁଷ ହୋଇ ।।
ଯହୁଁ ପ୍ରବର୍ତ୍ତିଲେ ଗାନ୍ଧର୍ବ
ଦେଖି ତା ଅନନ୍ଦେ ସ୍ୱଭାବ
ସେ ଭରତଙ୍କୁ ଚାହିଁ ଠାବ
କହିଲେ କର୍ଣ୍ଣେ କୁଣ୍ଡଳର ।

ଏହାଙ୍କ ଅଗ୍ରତେ ସୁବର୍ଣ୍ଣ
ଆଣାଇ ଭଅଅ ବହନ ।
ଭରତ ସୁବର୍ଣ୍ଣ ଥାଳିଲେ
ସେ ତାହା ନ ସେଣି କହିଲେ ।
ଅମ୍ଭେ ତ ଫଳମୂଳ ଖାଉ
ଅରଣ୍ୟେ ବାସ କରିଥାଉ ।
ଅମ୍ଭେ କି କରିବୁ ସୁବର୍ଣ୍ଣ
କହି ସେ ଏମନ୍ତ ବଚନ ।
ଦେଇର ଦ୍ରବ୍ୟ ସେ ତେଜିଲେ
ବାଲ୍ମୀକିଙ୍କଠାକୁ ଗଲେ ।
ଶ୍ରୀରାମ ଆପଣା ଚରିତ
ଏମନ୍ତ ପରବ'ରେ ଜାତ୍ୟ ।
ଶୁଣନ୍ତେ ସେ ଦୁହଙ୍କ ପୁଣି
ଜାନକୀ ପୁତ୍ର ବୋଲି ଜାଣି ।
ଶତ୍ରୁଘ୍ନ ଅଙ୍ଗଦ ସୁଷେଣ
ପବନ ସୁତ ବିଭୀଷଣ ।
ଏ ପାଞ୍ଚ ଲୋକଙ୍କୁ ଅନାଇ
ଅନୁଜ୍ଞା ଦେଲେ ରଘୁସାଇଁ ।
ବାଲମୀକିଙ୍କି ଘେନିଦେଇ
ସତ୍ୱରେ ଘେନି ଅସ ଯାଇ ।
ବିଶ୍ୱାସ ପାଇଁ ଏ ସଭାରେ
ଜାନକୀ ସତ୍ୟର ଅଗରେ ।
ଶପଥ କରନ୍ତୁ ଜର୍ଗରେ
ନିଷ୍ପ ପ କର ସବୁ ନରେ ।
ନେତ୍ରେ ଦେଖନ୍ତୁ ଜାନକୀକି
ଏମନ୍ତ କହିବ ମୁନିକି ।
ଶୁଣି ସେ ଦୂତ ହୋଇଗଲେ
ଋଷିଙ୍କ ସେରୂପେ କହିଲେ ।
ବାଲମୀକ ଏମନ୍ତ ଶୁଣି
କହିଲେ ରାମ ମନ ଜାଣି ।

ସଭା ମଧ୍ୟରେ ଯାଇ କାଲି
ପ୍ରତ୍ୟୟ ଦେବେ ମହୀସୁତୀ ।
ସେହିଁ ସକାଶୁ ଡର ଭଣ୍ଡି
କାନ୍ତାର ପରମ ଦେବତା ।
ଏଣୁ ତା କରିବେ ନିଷ୍ଟୟେ
ଏମନ୍ତ ଶୁଣି ସେ ସର୍ବେ ।
ମୁନିଙ୍କ ଆଜ୍ଞା ଅସି ତେଗେ
ଜିଣାଇଲେ ଶ୍ରୀରାମ ଅଗେ ।
ଏମନ୍ତ ଶୁଣି ରଘୁସାଇଁ
କହିଲେ ସମସ୍ତଙ୍କ ଗୃହି ।
ସକଳ ରାଜା ମୁନିଗଣ
ଯେ ଅଛ ସେ ସର୍ବେ ଶୁଣ ।
ଭଲ କି ମନ୍ଦ ବଇଦେହୀ
ଏ କଥା ସମସ୍ତେହେଁ ଥାଇ ।
ନିୟମ କରଣ ପ୍ରଭାତେ
ହୋଇବ ଦେଖିବାକୁ ନେତ୍ରେ ।
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟ ଶୂଦ୍ର
ଋଷି ଗନ୍ଧର୍ବ ଦେବବୃନ୍ଦ ।
ଏ ଅଦ୍ଧ ଅଇଲେ ଅନେକ
ହୋଇଣ ଅତ୍ୟନ୍ତ ଉତ୍ସୁକ ।
ଏହି ସମୟେ ବାଲମୀକ
ସଙ୍ଗରେ ଘେନି ଜାନକୀକି ।
ମୁନି ଅଗରେ ହୋଇଛନ୍ତି
ତାହାଙ୍କ ପଛେ ମୁଖ ପୋତି ।
ଯୋଡ଼ି ଅଛନ୍ତି ବେନି କର
ନେତ୍ରୁ ବହୁଛି ଅଶ୍ରୁଧାର ।
ଏମନ୍ତ ରୂପେ ବଇଦେହୀ
ଶୋକରେ ଗଦଗଦ ହୋଇ ।
ଲଜ୍ଜାରେ ମନ୍ଦ ମନ୍ଦ ହୋଇ
ମିଳନ୍ତେ ସଭାସବେ ଯାଇ ।

ବ୍ରହ୍ମା ପକ୍ଷରେ ଲକ୍ଷ୍ମୀ ଯେସନ୍ତେ
ବାଲ୍ମୀକଙ୍କ ପଛେ ସେସନ୍ତେ ।
ଅପଲେ ନୟନେ ସକଳେ
ଦେଖନ୍ତେ ସାଧୁ ସାଧୁ ବୋଲେ ।
ଏମନ୍ତ ରୂପେ ବାଲ୍ମୀକ
ସଙ୍ଗତେ ସେଣ ଜାନକୀକି ।
ସମସ୍ତ ଲୋକଙ୍କ ମଧ୍ୟରେ
ପ୍ରବେଶ ହୋଇଲେ ସତ୍ୱରେ ।
ଶ୍ରୀରାମ ମୁଖକୁ ଚାହିଁଲେ
ଏମନ୍ତ ବଚନ କହିଲେ ।
ହେ ଦାଶରଥି ରଘୁବୀର
ଧର୍ମଚାରିଣୀ ଏ ତୁମ୍ଭର ।
ଅପାପୀ ଅଟେ ବଇଦେହୀ
ଏହାର କିଛି ଦୋଷ ନାହିଁ ।
ଲୋକାପବାଦେ ଭୟ କରି
ମୋ ଆଶ୍ରମେ ସେ ଛାଡ଼ିଥିଲ ।
ଏବେ ଏ କରନ୍ତୁ ପ୍ରତ୍ୟୟ
ଅଜ୍ଞା ଦେବାକୁ ହେଉ ରାମ ।
ଏ କୁଶ ଲବ ସୀତାସୁତ
ଯାଆଁଳା ହୋଇ ହେଲେ ଜାତ ।
ମୁଁ ସତ୍ୟ କହୁଅଛି ବୀର ।
ଏ ଦୁହେଁ ତୁମ୍ଭର କୁମର ।
ବରୁଣଙ୍କର ମୁଁ ଦଶମ
ତନୟ ଅଟଇ ହେ ରାମ ।
ମିଥ୍ୟା ସ୍ମରଣ ଯେତେ ଯାଏ
ମନେ ନ କରଇ ନିଶ୍ଚୟେ ।
ଏ ଦୁହେଁ ତୁମ୍ଭର ତନୟ
ଏଥିରେ ନ କର ସଂଶୟ ।
ଅନେକ ସହସ୍ର ବର୍ଷର
ତପ ମୁଁ କରିଛି ଉପର ।

ସୀତାର ଦୋଷ ଥିବ ଯେବେ
ସେ ଫଳ ନ ପାଇବି ତେବେ ।
ଏମନ୍ତ ଶୁଣି ରଘୁସାଇଁ
କହିଲେ ତାହାଙ୍କୁ ଅନାଇ ।
ଯାହା କହିଲେ ଭଗବନ୍ତ
ସେ କଥା ଅଟଇ ତେମନ୍ତ ।
ତୁମ୍ଭ ବଚନରେ ଅବଶ୍ୟ
ଆମ୍ଭର ହୋଇଲା ବିଶ୍ୱାସ ।
ପୂର୍ବେ ଜାନକୀ ଲଙ୍କାପୁରେ
ଦେବତାମାନଙ୍କ ମଧ୍ୟରେ ।
ଅନଳେ ପ୍ରବେଶ ହୋଇଲା
ମୋତେ ପ୍ରତ୍ୟୟ ଦେଇଥିଲା ।
ଅପାପୀ ହେଲେ ବଇଦେହୀ
ଲୋକାପବାଦେ ଭୟ ପାଇ ।
ତାହାଙ୍କୁ ତେଜିଲି ମୁଁ ଯାହା
ମୋଠାରେ କ୍ଷମା କର ତାହା ।
ଏ କୁଶ ଲବ ତପୋବନ୍ତ
ମୋଠାରୁ ହୋଇଛନ୍ତି ଜାତ ।
ଏ କଥାରେ ସଂଶୟ ନାହିଁ
ଏହା ମୁଁ ନିଶ୍ଚୟ ଜାଣଇ ।
ସଭ୍ୟଙ୍କ ମଧ୍ୟେ ବଇଦେହୀ
ଶୁଦ୍ଧି ହେଲେ ତାହାଠାଇଁ ।
ବହୁତ ପ୍ରୀତ ହେବ ମୋର
ଦେବତାମାନେ ଶ୍ରୀରାମର ।
ହୃଦୟ ଜାଣନ୍ତି ସମସ୍ତେ
ବ୍ରହ୍ମାଙ୍କୁ କରି ସେ ଅଗ୍ରତେ ।
ହୋଇ ଅତଅନ୍ତ ହରଷ
ସେଠାରେ ହୋଇ ସେ ପ୍ରବେଶ ।
ପୁର ରାଜ୍ୟରେ ଯେତେ ଲୋକେ
ସମସ୍ତେ ମିଳିଲେ କୌତୁକେ ।

ପଡନ୍ତି ପିଣ୍ଡ ତରଦେଶ୍ମ
ଜଣ୍ଠର ଧଗଲୁ ଅନାଇ ।
ଯୋଡ଼ି ଅପଣା କର ଦୁଇ
କହିଲେ ମସ୍ତକ ଅନାଇ ।
ମନ ବଚନ କର୍ତ୍ତବ୍ୟରେ
ଯେମନ୍ତ ଶ୍ରୀରାମ ବାହାରେ ।
ଅନଙ୍କୁ ଚିନ୍ତା ନ କରଇ
ତେମନ୍ତ ପରକାରେ ମୁହିଁ ।
ବହନ ମାର୍ଗ ଦିଅ ମୋତେ
ଏମନ୍ତେ ବିନୟ କରନ୍ତେ ।
ନାଗ ସମୂହ ତାଙ୍କ ଅଗେ
ଦିବ୍ୟ ଶରୀର ଧର ବେଗେ ।
ଅଃର ଅତ୍ୟନ୍ତ ଅଦ୍ଭୁତ
ବିବିଧ ରତ୍ନରେ ଜଡ଼ିତ ।
ଶୋଭା କରୁଛି ଦିଗମାନ
ଏରୂପେ ଦିବ୍ୟ ସିଂହାସନ ।
ଗୋଟିଏ ଘେନି ସେ ସକଳେ
ଭୂମିରୁ ବାହାର ହୋଇଲେ ।
ପୃଥ୍ୱୀଦେବୀ ଦୁଇ ବାହୁରେ
ସୀତାଙ୍କୁ ଭିଡ଼ି ହୃଦୟରେ ।
କୁଶଳ ପରଶନ କଲେ
ଅସନେ ନେଇ ବସାଇଲେ ।
ସିଂହାସନରେ ଦେଖି ତାଙ୍କୁ
ଯାଅନ୍ତେ ସେ ରସାତଳକୁ
ସମସ୍ତ ସ୍ୱରେ ତାଙ୍କ ଶିରେ
କୁସୁମ କରଷି ହର୍ଷରେ ।
ଅନେକ ସାଧୁ ସାଧୁ କଲେ
ଗନ୍ଧର୍ବେ ଗୀତ ଅରମ୍ଭିଲେ ।
ବିମାନମାନଙ୍କେ ଗଗନେ
ରହି ଦେବତା ସିଦ୍ଧମାନେ ।

ବିବିଧ ପ୍ରକାରେ ବଚନ
କହିଲେ ହୋଇ ଅନ୍ୟେ ଅନ୍ୟ ।
ଅନ୍ତରୀକ୍ଷରେ ଧରଣୀରେ
ସ୍ଥାବର-ଜଙ୍ଗମ-ସ୍ଥାନରେ ।
ପୁରୁଷ-ସ୍ତ୍ରୀ-ବୃଦ୍ଧ-ବାଳକ
ସେଠାରେ ଥିଲେ ସେ ଯେତେକ ।
ଦେଖନ୍ତେ ଜାନକୀ ବିସ୍ମୟ
ସମସ୍ତେ ହୋଇ ସସମ୍ଭ୍ରମ ।
କେ ଦୁଃଖେ ନୟନ ବୁଜିଲେ
କେ ନାନା ଚିନ୍ତାମାନ କଲେ ।
କେ ରାମ ମୁଖକୁ ଚାହିଁଲେ
କେ ଜାନକୀଙ୍କି ଅନାଇଲେ ।
ସୀତା ପୃଥ୍ୱୀକି ଗଲା ଦେଖି
ଅତ୍ୟନ୍ତ ଶୋକେ ହୋଇ ଦୁଃଖୀ ।
ମୋହେ ସମସ୍ତେ ଜଡ଼ମତେ
ରହିଲେ ମୁହୂର୍ତ୍ତି ପର୍ଯ୍ୟନ୍ତେ ।
ସବୁ ଭବିଷ୍ୟ ବାର୍ତ୍ତାମାନ
ଜାଣନ୍ତି ଶ୍ରୀରଘୁନନ୍ଦନ ।
ତଥାପି ମୂଢ଼ ପ୍ରାପ୍ତେ ହୋଇ
ଶୋଚନା କଲେ ସୀତା ପାଇଁ ।
ଯେମନ୍ତେ ନିଦ୍ରାଗଲ ଲୋକ
ସ୍ୱପନେ କରୁଥାଇ ଶୋକ ।
ଉନ୍ନିଦ୍ର ହେଲେ ପୁଣି ଯେହ୍ନେ
ସେ କଥା ନ ଘେନଇ ମନେ ।
ବ୍ରହ୍ମାଦି ମୁନିମାନଙ୍କରେ
ବୋଧିତ ହୋଇ ସେ ପ୍ରକାରେ ।
ଅପଣା ନିତ୍ୟକୃତ୍ୟମାନ
କରଣ ଶ୍ରୀରଘୁନନ୍ଦନ ।
ଋତ୍ୱିକ ମାନଙ୍କୁ ବହୁତ
ବିବିଧ ରତ୍ନ ଧନବସ୍ତ୍ର ।

ଦେଇ ସେ ସନ୍ତୋଷ କରାଇ
ସେବକଙ୍କି ସମସ୍ତଙ୍କୁ ଦେଇ ।
ସେ ସେଣ ଦେଣ ତନୟଙ୍କୁ
ବିଦାୟ କଲେ ଅଯୋଧ୍ୟାକୁ ।
ସେହୁ ଭକ୍ତଙ୍କୁ ସୀତାକାନ୍ତ
ଦେଇଣ ସମ୍ଭୋଗ ସମସ୍ତ ।
ଅସ୍ଥା ଭାବନା କରି ନିତ
ନିର୍ଜନ ସ୍ଥଳେ ବସିଥାନ୍ତି ।
ଧ୍ୟାନନିଷ୍ଠ ହୋଇ ଏମନ୍ତେ
ବସିଥିଲେ ଯବେ ଏକାନ୍ତେ ।
ସାକ୍ଷାତ ବିଷ୍ଣୁ ରାବଣାରି
ଏମନ୍ତ ଜାଣି ନିଷ୍ଠେଁ କରି ।
କୌଶଲ୍ୟା ହରଷେ ପଣତ-
ହୋଇ ସେ ଯୋଡ଼ି ଦେଣ ହସ୍ତ ।
ବୋଇଲେ ଓହେ ଶ୍ରୀରାମଚନ୍ଦ୍ର
ଅଟ ଏ ଜଗତର ଆଦ୍ୟ ।
ଆଦି-ଅନ୍ତ-ମଧ୍ୟ ତୁମ୍ଭର
ନିଶ୍ଚେଁ ନାହାନ୍ତି ରଘୁବୀର ।
ତୁମ୍ଭେ ପରମାତ୍ମା ନିଷ୍ପାପ
ପରମ ଆନନ୍ଦ ସ୍ୱରୂପ ।
ସକଳ ସମ୍ପୂର୍ଣ୍ଣ ଈଶ୍ୱର
ପ୍ରାଣୀର ଅନ୍ତଃସ୍ଥ ସାର ।
ମୋହର ଉଦରେ ଶ୍ରୀରାମ
ଆପଣେ ହୋଇଲ ଜନମ ।
ମରଣ ସମୟ ମୋହର
ନିକଟ ହେଲା ଆସି ବୀର ।
ଆଜହିଁ ଅଜ୍ଞାନରୁ ଜନ୍ମ
ଯେଉଁ ସଂସାର ହୁଏ ଭ୍ରମ ।
ସେ ତ ନ ଛିଣ୍ଡିଲା ମୋର
ଏ ଯେଣୁ ସଂସାର-ବନ୍ଧର ।

ତତ୍ତ୍ୱଙ୍କ ଯେମନ୍ତ ଜ୍ଞାନ
ହୋଇବ ତା ମୋତେ କହନ ।
ସଂକ୍ଷେପେ ଉତ୍ତମ କରଣ
କହିବା ହେଉ ତା ଆପଣ ।
ସଂସାର ବନ୍ଧରେ ଅତ୍ୟନ୍ତ
ହେଉଅଛି ମୁଁ ସନ୍ତପତ ।
ଜନ୍ମରେ ଜର୍ଜର ଅଟଇ
ଏମନ୍ତ କୌଶଲ୍ୟାଙ୍କ ଶୁଣି ।
ମାତୃଭକ୍ତ ଯେ ସୀତାକାନ୍ତ
ସେ ତାଙ୍କୁ କହିଲେ ଏମନ୍ତ ।
ଜ୍ଞାନ-ଭକତି-କ୍ରିୟା ଯୋଗ
ଏରୂପେ ତିନିଗୋଟି ମାର୍ଗ ।
ମୋକ୍ଷକୁ ଅଟେ ତା କାରଣ
କହନ୍ତି ଅଶେଷ ଶାସ୍ତ୍ରଗଣ ।
ସେ ଯେଉଁ ତ୍ରିବିଧ-ସାଧନ
ତହିଁ ଭକ୍ତିଯୋଗ ପ୍ରଧାନ ।
ସତ୍ତ୍ୱ-ରଜ-ତାମସ ଭେଦେ
ଭକତ ହୁଅଇ ତ୍ରିବିଧେ ।
ଯାହାର ସ୍ୱଭାବ ଯେମନ୍ତ
ତାହାର ଭକତ ତେମନ୍ତ ।
ସକ୍ରୋଧ ହୋଇ ଯେହୁ ଚିତ୍ତେ
ଦମ୍ଭ-ହିଂସାରେ କରେ ମୋତେ ।
ଯେ ଭେଦ ବୁଦ୍ଧିରେ ଭଜଇ
ତାମସ-ଭକ୍ତ ସେ ବୋଲାଇ ।
ସମସ୍ତ ଭୋଗ ଯଶ ଧନ
ଏ ଅର୍ଥ ଫଳେ କରି ମନ ।
ଯେ ନରେ ପ୍ରତିମା ଆଦିରେ
ଭେଦ ବୁଦ୍ଧିରେ ମୋହଠାରେ ।
କରନ୍ତି ଆରାଧନା ମାତ୍ର
ସେମାନେ ରାଜସ ଭକତ ।

ଯେ ଭେଦ ବୁଦ୍ଧିରେ ସଂସାର
ଦମ୍ଭକୁ ହୋଇବାକୁ ପାର ।
ମୋଠାରେ ଭକ ଅନ୍ୱେଷଣ
କରେ ସମସ୍ତ କର୍ମଗଣ ।
ତ ଏବା ନୋହିଲେ ସେ ନର
ଏ କଷ୍ଟେ ଅଟେ ଭବବାର ।
ଏମନ୍ତ ଈଶ୍ୱର ଚରତ
ସାତ୍ତ୍ୱିକ ଭକ୍ତ ସେ ବୋଲାଇ ।
ମୋହର ଯେଉଁ ଗୁଣମାନ
ତାହା ଭକ୍ତମାନେ ଶ୍ରବଣ ।
ସୁଖ-ସ୍ୱରୂପ ଅନନ୍ତ
ମହିମା ଅଟେ ଅପ୍ରମିତ ।
ଏମନ୍ତ ଯେ ମୁଁ ମୋହଠାରେ
ଶୁଣି ଭକତ ହୃଷ୍ଟ ହେଲେ ।
ଗଙ୍ଗାର ଜଳଧାର ଯେସନ୍ତେ
ମିଶଇ ସମୁଦ୍ରରେ ତେସନ୍ତେ ।
ନିସ୍ପୃହ ପ୍ରବର୍ତ୍ତିବ ମନ
ନିର୍ଗୁଣ ଭକ୍ତିଯୋଗ ଚିହ୍ନ ।
କହୁ ତ ଫଳ ନ ଇଚ୍ଛଇ
ମଧ୍ୟରେ ଅନ୍ତର ନହଇ ।
ଏମନ୍ତ ହୋଇ ମୋହଠାରେଁ
ଯେବଣ ଭକ୍ତିଯୁକ୍ତ ହୋଇ ।
ସାଯୁଜ୍ୟ ସାଲୋକ୍ୟ ସମାନ
ସାମୀପ୍ୟ ସାରୂପ୍ୟ ଏମାନ ।
ଦେଇ ତ ପାରଇ ମୁଁ ମାତ
ତଥାପି ହୋଇଲେ ଏମନ୍ତ ।
ମୋ ସେବା ତେଜି ଭକ୍ତମାନେ
ସେମାନେ ନ ସେନନ୍ତି ମନେ ।
ଏ କଥା ଭକ୍ତମାର୍ଗେ ମାତ
ଶ୍ରେଷ୍ଠ ଅଟଇ ଅପ୍ରମିତ ।

ଏଥିରେ ଭବ ଭଞ୍ଜଗୁଣ
ତେଜ ମୋ ଭାବକୁ ଲଭଣ ।
ନିଷ୍କାମ ହୋଇକର ପୁଣ
ଯେଉଁ ସ୍ୱଧର୍ମ-ଆଚରଣ ।
ହିଂସା ନ ଥିବ ଅନନ୍ତ
ପ୍ରଶସ୍ତ ହୋଇବ ଏମନ୍ତ ।
ଏ ଯେଉଁ କର୍ମଯୋଗମାନ
ତେବେଣ ଭବ ମୋ ଦର୍ଶନ ।
ସ୍ତୁତି ପୂଜନ ସୁବଦନ
ଅନବରତେ ସ୍ମରଣ ।
ଯେତେ ଅଛନ୍ତି ଜୀବମାନେ
ତହିଁ ମୁଁ ଅଛି ବୋଲି ମନେ ।
ଭାବନା ସବୁଠାରେ ମାତ ।
ନୋହିବ ଅତି ଅସଙ୍ଗତ ।
ସତ୍ୟ-ବ୍ରହ୍ମ ଭବବାର
ମହତ ଲୋକଙ୍କୁ ଅପାର ।
ସତ୍କାର କରିବାର ମାତ ।
ଦୁଃଖୀ ଲୋକଠାରେ ବହୁତ ।
ଦୟାରେ ସମାନ ହୋଇବ
ତାଠାରେ ଭବ ମିତ୍ରଭାବ ।
ଶାନ୍ତ ଓ ଅଦ ଛ ପ୍ରଭାବ
ଯେଉଁ କଥା ତା ସେମାର ।
ବେଦାନ୍ତ ବାକ୍ୟର ଶ୍ରବଣ
ମୋ ଯେଉଁ ନାମ ସଙ୍କୀର୍ତ୍ତନ ।
ସଙ୍ଗ କରିବା ସାଧୁଙ୍କର
ଭାବେ କୁଟିଳ ନୋହିବାର ।
ମୋ ଧର୍ମେ ଯେଉଁ ଇଚ୍ଛା ତହିଁ
ଅତି ବଶ୍ୟ ହୋଇଥାଇ ।
ଯେଉଁ ଲୋକ ଅନ୍ତଃକରଣ
ମୋହର ଗୁଣ ସ୍ମରଣ ।

ଭଜ ମାନବେ ଅନାୟାସେ
ନିସ୍ତରି ମୋତେ ଲଭିବେ ସେ ।
ପବନ ବଶରୁ ଯେମନ୍ତ
ଗନ୍ଧମାନେ ହୋଇ ପ୍ରେରିତ ।
ନିଜ ଆଶ୍ରୟରୁ ଯାଆନ୍ତି
ଲୋକ ନାସାରେ ପ୍ରବେଶନ୍ତି ।
ଯୋଗ ଅଭ୍ୟାସ ସେ ପ୍ରକାରେ
ଭଜ ଲୋକ ଚିତ୍ତ ସେବାରେ ।
ଭବ ସେ ଆତ୍ମାକୁ ଲଭଇ
ସମସ୍ତ ପ୍ରାଣୀମାନେ ଚହିଁ ।
ଆତ୍ମାରୂପେ ଅଛି ମୁଁ ରହି
ଅଜ୍ଞାନ ବଶେ ଯତ ହୋଇ ।
ମୂଢ଼ ମାତ ଲୋକମାନେ ମୋତେ
ବାହାରେ ଖୋଜନ୍ତି ସନ୍ତତେ ।
ବିବିଧ ଦ୍ରବ୍ୟମାନଙ୍କରେ
ଅମ୍ଭଙ୍କ ପ୍ରତିମା ଆଦରେ ।
ଯେବେ ସେ ପୂଜା କରୁଥାନ୍ତି
ପ୍ରାଣୀଙ୍କି ଅବଜ୍ଞା କରନ୍ତି ।
ମୁଁ ତେବେ କ୍ରୁହଲ ପୂଜିତ
ଯେତେ ଦ୍ରବ୍ୟ ଯାଏ ପାତ ।
ସମସ୍ତ ଭୂତମାନ ଠାଇଁ
ଅପଣା ଦେହେ ମଧ୍ୟ ହୋଇ ।
ମୁଁ ରହିଅଛି ବୋଲି ଚିତ୍ତେ
ନ ଜାଣି ଥିବା ପର୍ଯ୍ୟନ୍ତେ
ଅପଣା ବର୍ଣ୍ଣଧର୍ମେ ଥାଇ
ଶଙ୍କା ଚିତ୍ତରେ ସ୍ଥିତ ହୋଇ ।
ପ୍ରତିମାଦିରେ ବର ମୋତେ
ପୂଜା ସେ କରୁଥିବ ନିତ୍ୟେ ।
ସନ୍ତତ ମୋ ସେବାରେ ଥିବ
ସରୂପ ସଙ୍ଗେ କର ଭାବ ।

ଅପଣା ପର ବୁଦ୍ଧିଙ୍କର
ଭେଦ କରଇ ଯେଉଁ ନର ।
ସେ ଖଳ ଦୃଷ୍ଟିକି ମୁଁ ନିତ୍ୟ
ଦିଅଇ ମୃତ୍ୟୁ ଭୟ ମାତ ।
ଏହୁ ନ୍ୟାୟରୁ ନିରନ୍ତରେ
ଅଛି ଯେ ସର୍ବ ପ୍ରାଣୀଠାରେ ।
ମାନ ସୁହୃଦ ଭାବୁ ମାତ ।
ବୁଦ୍ଧିଙ୍କ ଠାରେ ଏକମତ
ଚିତ୍ତରେ ସମସ୍ତ ଭୂତଙ୍କୁ
ହୋଇବ ପୂଜା କରିବାକୁ ।
ଶୁଦ୍ଧ ଚୈତନ୍ୟ ରୂପ ତତ୍ତ୍ୱ—
ଜୀବ ରୂପେ ଅଛି ଏମନ୍ତ
ଜାଣି ଈଶ୍ୱର ଜୀବ ମାତ ।
ବୁଦ୍ଧିଙ୍କଠାରେ କଦାଚିତ ।
କରିବ ନାହିଁ ବୁଦ୍ଧି ଭେଦ
ଭକତ ଯୋଗ ଜ୍ଞାନବୃନ୍ଦ ।
କହିଲି ଏ ରୂପେ ଗୋ ମାତ !
ଏଥୁ ଯେ କଥାଏ ସନ୍ତତ ।
ଯେ ନିତ୍ୟ ଅଭ୍ୟାସ କରଇ
ସେ ଜଣେ ବୁଦ୍ଧିକି ଲଭଇ ।
ଏ ଓବନି ସମସ୍ତ ହୃଦରେ
ରହିଛି ମୁଁ ସେ ନିରନ୍ତରେ ।
ମୋ ଠାରେ ଭକତ ଯୋଗରେ
କି ଅବା ବ୍ରହ୍ମ ସ୍ୱରୂପରେ ।
ଶ୍ରବଣ କରଣ ସନ୍ତତ
ଶାନ୍ତ ଭଜବା ହେଉ ମାତ ।
ଏହା କହନ୍ତେ ରାମଚନ୍ଦ୍ର
କୌଶଲ୍ୟା ହୋଇଲେ ଅନନ୍ଦ ।
ରାମଙ୍କୁ ସମସ୍ତ କାଳରେ
ଧ୍ୟାନ କରି ସେ ହୃଦୟରେ ।

ଛିଣ୍ଡାଇ ସଂସାରର ଫାଶ
ଭବ ଗତାଗତ କରି ନାଶ ।
ପରମ ଗତିକି ଲଭିଲେ
ସେ ଯେଉଁ ଯୋଗ ସ୍ପୃହାକାଳେ ।
କହୁଣଥିଲେ ସୀତାପାଇଁ
ସେ କଥା ଜାଣି ବଲବେଶ୍ୱୀ ।
ଶ୍ରଦ୍ଧାଭକ୍ତିରେ ହୋଇ ସ୍ଥିତ
ରାମଙ୍କୁ ଭାବି ହୃଦେ ନିତ୍ୟ ।
ଶରୀରୁ ପ୍ରାଣ ଛାଡ଼ି ବେଗେ
ସୁଖେ ପ୍ରବେଶ ହୋଇ ସ୍ୱର୍ଗେ ।
ଦଶରଥଙ୍କ ସଙ୍ଗତରେ
ରହି ପରମ ଆନନ୍ଦରେ ।
ସୁମିତ୍ରା ସହିତେ ତ ଜ୍ଞାନୀ
ଅନାୟାସରେ ସେ ଏ ସେଣ ।
ପ୍ରାଣମାନଙ୍କୁ ତ୍ୟାଗ କଲେ
ଦଶରଥଙ୍କ ଠାକୁ ଗଲେ ।

କରୁଣାକର ରଘୁନାଥ
ଅନ୍ତରେ ଫେଡ଼ ମୋ ଅରତ ।
ବୋଲଇ ଦାସ ହଳଧର
ଜାନକୀ ସହିତେ ମୋହର ।
ପଲ୍ଲମ ରୁଷର ଭାମଦ
ଏମନ୍ତ ଅଟେ ଯେଉଁ ପଦ ।
ଅହେ ରାଜେନ୍ଦ୍ର ରଘୁସାଇଁ
ତୁମ୍ଭ ବ୍ୟତେ କେହି ନାହିଁ ।
ସୀତା ସହିତେ ତୁମ୍ଭ ପଦ
ହେଉ ମୋ ସମସ୍ତ ସମ୍ପଦ ।
ତୁମ୍ଭ ଚରଣେ ମୋ ଶରଣ
ସବୁ କାଳରେ ରହୁ ଜାଣ ।
ମୁଁ ବଡ଼ ଦୀନ ଜନ ହୀନ
ତୁମ୍ଭେ ତ ପତିତପାବନ ।
କେବଳ ହେଉ ସେ ସମ୍ପଦ
ଏ ତୁଳସୀ ପଦର ପଦ ।

ଇତି ଶ୍ରୀମଦଧ୍ୟାତ୍ମ ରାମାୟଣେ ଉମା ମହେଶ୍ୱର ସମ୍ବାଦେ
ଉତ୍ତରକାଣ୍ଡେ ନାମ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ

ଶ୍ରୀ ମହାଦେବ ଉବାଚ

ପୁଣି କହିଲେ ତ୍ରିପୁରାରି
ଏଥୁ ଉତ୍ତରେ ଗୋ ଶଙ୍କରୀ ।
ଏକ ଦିନକେ ସୁଖାନ୍ୱିତ
ଘଟିଅଇ ଥିବକ ଦୂତ ।
ବହୁ ସୈନ୍ୟରେ ସ୍ଥିତ ହୋଇ
ଭରତ ସେ ରାଜ୍ୟରେ ଯାଇ ।
ଶ୍ରୀରାମ ଆଜ୍ଞାରେ କରି
ଗନ୍ଧର୍ବ ତିନି କୋଟି ମାରି ।

ଭରତ ସେ ରାଜ୍ୟେ ରହିଣ
ପୁର ଦୁଇଗୋଟି ବସାଇଣ ।
ତାଙ୍କର ସେ ଜ୍ୟେଷ୍ଠ କୁମାର
ପୁଷ୍କର ନାମ ତାହାଙ୍କର ।
ତାଙ୍କ ପୁଷ୍କରାବତୀ ପୁରେ
ସେ ଅଭିଷେକ କଲେ ଘରେ ।
ତକ୍ଷଶିଳା ଯେ ଏକ ପୁରୀ
ତହିଁ ତକ୍ଷକୁ ରାଜା କରି ।

ସେ ବେଳ ପ୍ରଭୁଙ୍କ ଭରତ
ଏ ରୂପେ ରାଜ୍ୟ କରି ଦଣ୍ଡ ।
ସମ୍ପୂର୍ଣ୍ଣ କରି ଧନଧାନ୍ୟ
ରଖି ସୁହୃଦ ବନ୍ଧୁଜନ ।
ଅଯୋଧ୍ୟା ପୁରକୁ ଆଇଲେ
ଶ୍ରୀରାମ ପାଦେ ସେବା କଲେ ।
ତହିଁ ଉତ୍ତରେ ରାବଣାରି
ବହୁତ ଅନୁରାଗ କରି ।
ଆଜ୍ଞା ଦେଲେ ଲକ୍ଷ୍ମଣଙ୍କ
ଘେନ ତୁମ୍ଭ ବେନି ପୁତ୍ରଙ୍କ ।
ଗମନ କର ପଶ୍ଚିମକୁ
ତହିଁରେ ସମସ୍ତ ଜନଙ୍କୁ ।
କରନ୍ତି ପୀଡ଼ା ପ୍ରଚଣ୍ଡନେ
ଅନନ୍ତ ଦୁଷ୍ଟ ମଲ୍ଲମାନେ ।
ତାହାଙ୍କୁ ଜିଣି ଅନ୍ୟୋଗନେ
ଗଜ ତୁରଙ୍ଗ ଧନ ଧାନ୍ୟ ।
ସମ୍ପୂର୍ଣ୍ଣ କରି ବେଗେ ବୀର
ବସାଇ ଯୋଡ଼ିଏ ନଗର ।
ତହିଁ ତୁମ୍ଭ ବେନି ପୁତ୍ରଙ୍କ
ଅଙ୍ଗଦ ଏ ଚନ୍ଦ୍ରକେତୁଙ୍କୁ ।
କରିଣ ଅଭିଷେକ ପୁଣ
ମୋ ଠାକୁ ଆସିବ ଆପଣ ।
ଶ୍ରୀରାମ ଆଜ୍ଞାରେ ଲକ୍ଷ୍ମଣ
ଘେନିଣ ଚତୁରଙ୍ଗ ସୈନ୍ୟ ।
ସେ ରାଜ୍ୟେ ହୋଇଣ ପ୍ରବେଶ
ଖଳ ସମୂହ କରି ନାଶ ।
ବସାଇ ଦୁଇ ଗୋଟି ପୁରୀ
ବେନି ପୁତ୍ରଙ୍କ ରାଜା କରି ।
ପୁଣି ସେ ଲେଉଟି ଆଇଲେ
ଶ୍ରୀରାମ ଚରଣ ସେବିଲେ ।

ପୁଣି ଏମନ୍ତ ପରକାରେ
କେତେହେଁ ସମସ୍ତ ଅନ୍ତରେ ।
ସବୁ ଦିନରେ ସ୍ୱଧର୍ମରେ
ରଘୁଚନ୍ଦ୍ର ନିରନ୍ତରେ ।
ଏମନ୍ତ ଯେ ଶ୍ରୀରାମ ଠାକୁ
କାଳଦେବତା ଦେଖିବାକୁ ।
କପଟେ ଧରି ଋଷି ବେଶ
ଅଯୋଧ୍ୟାରେ ହୋଇ ପ୍ରବେଶ ।
ଲକ୍ଷ୍ମଣ ଯେ ଦ୍ୱାରରେ ଥିଲେ
ତାହାଙ୍କୁ ଏମନ୍ତ କହିଲେ ।
ଯା ନାମ ଅତିବଳ ଋଷି
ମୁଁ ତାହାଙ୍କର ଶିଷ୍ୟ ଅଟି ।
ବହୁତ୍ତୁ ଦେଖିବ ରାମଙ୍କୁ
ଏମନ୍ତ ଜଣାଅ ତାହାଙ୍କୁ ।
ସେ ମହାଋଷି ରାମ ଆଗେ
କିଛି କହିବା ପାଇଁ ବେଗେ ।
ଦେଇ ଅଛନ୍ତି ପଠାଇ
ଲକ୍ଷ୍ମଣ ଶୁଣି ତ୍ୱରା ହୋଇ ।
ତାହାଙ୍କ ଆସିବାର ବେଗେ
କହିଲେ ଶ୍ରୀରାମଙ୍କ ଆଗେ ।
ଏମନ୍ତ ଶୁଣି ରାବଣାରି
ବୋଇଲେ ସତ୍କାର କରି ।
ତାହାଙ୍କୁ ଆଣି ବେଗେ ବୀର
ମୋ ଆଗେ ପରବେଶ କର ।
ଲକ୍ଷ୍ମଣ ଶୁଣନ୍ତେ ଏମନ୍ତ
ସତ୍ୱରେ କଲ ତା ସମ୍ମତ ।
ଘୃତ ପଡ଼ିଣ ଅଗ୍ନି ଯେହ୍ନେ
ନିଜ ତେଜରେ ଜଳ ତେହ୍ନେ ।
କଳ୍ପନ୍ତ ସେ ମହାମୁନି
ତାଙ୍କୁ ଲକ୍ଷ୍ମଣ ସଙ୍ଗେ ଘେନି ।

ପ୍ରବେଶ ହେଲେ କେତେ ଋଷି
ଶ୍ରୀରାମଙ୍କୁ ସେ ଦେଖି ହସି ।
ମଧୁର ବଚନ ତପୋବନ୍ତ
ବୋଇଲେ ହୁଅ ଜୟଯୁକ୍ତ ।
ତାହାଙ୍କୁ ପୁଣି ରାବଣାରି
ଯଥା ବିଧିରେ ପୂଜା କରି ।
ଅନାମୟ ବାରତାମାନ
କଲେ ତାହାଙ୍କୁ ପରଶନ ।
ରାମଙ୍କୁ ପୁଣି ସେହୁ ଋଷି
କୁଶଳ ପଚାରିଲେ ହସି ।
ଶ୍ରୀରାମ ତାହାଙ୍କୁ ଆସନ
ଦେଲେ ସେ ଭକ୍ତିରେ ବହନ ।
ଦିବ୍ୟଆସନେ ବସାଇଲେ
ତାଙ୍କୁ ଏମନ୍ତ ପଚାରିଲେ ।
ଆସିବା ହେଲା କି ନିମିତ୍ତ
ତା ମୋତେ କହ ତପୋବନ୍ତ ।
ଶୁଣି ସେ ଏମନ୍ତ ବଚନ
ତାଙ୍କୁ କହିଲେ ତପୋଧନ ।
ମୁଁ ଯାହା କହିବି ରାଘବ
କେହି ଏ ନିକଟେ ନଥିବ ।
ସେ କଥା କେହି ନ ଶୁଣିବ
ତୁମ୍ଭେ କାହାକୁ ନ କହିବ ।
ଯେବେ ତା କେ ଜଣେ ଶୁଣିବ
କି ଅବା ଏଠାକୁ ଲକ୍ଷିବ ।
ତେବେ ଆପଣ ସେ ଲୋକକୁ
ନିଶ୍ଚେ ହୋଇବ ମାରିବାକୁ ।
ରାମ ତା ସ୍ୱୀକାର କଲେ
ଡାକି ଲକ୍ଷ୍ମଣ କହିଲେ ।
ହେ ବତ୍ସ ଦ୍ୱାର ଜଗିଥିବ
ଏଠାକୁ କେହି ନ ଆସିବ ।
ଯେବେହେଁ ଜଣେ କେ ଆସିବ
ତେବେ ସେ ନିଶ୍ଚେ ବଧ ହେବ ।
ଶୁଣି ସେ ଦ୍ୱାର ରକ୍ଷା କଲେ
ରାମ ମୁନିଙ୍କୁ ପଚାରିଲେ ।
କେଉଁ ଅବା ତୁମ୍ଭଙ୍କୁ ପେଷିଛି
ଯାହା ତୁମ୍ଭର ମନେ ଅଛି ।
ସେ କଥା କହ ତପୋବନ୍ତ ।
ଶୁଣି ସେ କହିଲେ ଏମନ୍ତ ।
ହେ ରାମ ଯଥାର୍ଥ ବଚନ
ଯାହା କହିବା ତାହା ଶୁଣ ।
କାର୍ଯ୍ୟରେ ମୋତେ ପ୍ରଜାପତି
ତୁମ୍ଭ ଛାମୁଙ୍କୁ ପ୍ରେଷିଛନ୍ତି ।
ସମସ୍ତ ପ୍ରାଣୀଙ୍କ ପୂର୍ବରୁ
ମାୟା ସଙ୍ଗମୁଁ ତୁମ୍ଭଠାରୁ ।
କରିବା ହେଲା ମୋତେ ଜାତ
କାଳ ନାମେ ମୁଁ ତୁମ୍ଭ ସୁତ ।
ପୂଜନ୍ତି ସମସ୍ତ ଦେବତା
ଏମନ୍ତ ଘଟେ ଯେଉଁ ଧାତା ।
ସେ ତୁମ୍ଭ ଅଂଶ ଉଦ୍ଭୂତ ।
କହିବା ପାଇଁ ବୋଲିଛନ୍ତି ।
ସ୍ୱର୍ଗକୁ ଯିବାର କାଳ
ତୁମ୍ଭର ହୋଇଲା ଏ ବେଳ ।
ପୂର୍ବକାଳେ ହେ ରାବଣାରି
ସମସ୍ତ ଲୋକଙ୍କୁ ସଂହାରି ।
କେବଳ ଥିଲ ଯେ ଆପଣ
କେତେକାଳର ଅନ୍ତେ ପୁଣ ।
ଅଟଇ ଆପଣାର ଜାୟା
ଏମନ୍ତ ରୂପେ ଯେଉଁ ମାୟା ।
ତହିଁରେ କଲ ମୋତେ ରାମ
ଜନମ୍ୟ କରି କଲ ଜନ୍ମ ।

ଜଳ ମଧ୍ୟରେ ଅଛୁ ବହୁ
ଅନନ୍ତ ନାଗ ଯେଉଁ ଅଙ୍ଗ ।
କରିବା ହେଲ ତାଙ୍କୁ ଜାତ
ତହିଁ କଣ୍ଠରେ ସୀତାକାନ୍ତ ।
ମଧୁ କୈଟଭଙ୍କ ଅଙ୍ଗ
ବାହୁ ସ୍କନ୍ଧେ କରି ନିଧନ ।
ତାଙ୍କର ଯେଉଁ ଅସ୍ଥି ମେଦ
ସେ ଭୁବନରେ ସ୍ୱପତନ୍ତ୍ର ।
ମେଦିନୀ କରି ତୁମ୍ଭେ ଜନ୍ମ
ସୂର୍ଯ୍ୟ ପ୍ରାପ୍ତେ ଯେ ନାଭିପଦ୍ମ ।
ତହିଁରୁ ମୋତେ ଜାତ କଲ
ଏ ପ୍ରଜାପତି ପଣ ଦେଲ ।
ସମସ୍ତ ଭାର ମୋହଠାରେ
କଲ ନିବେଦନ ଗୋସାଇଁ ।
ମୁଁ ପୁଣି ସୃଜି ତା ସମସ୍ତ
ତୁମ୍ଭଙ୍କୁ କହିଲି ଏମନ୍ତ ।
ସୃଷ୍ଟିରେ ଯେଉଁ ଯେଉଁ ଭୂତ
ଜୀର୍ଣ୍ଣ କରନ୍ତି ମୋର ହତ ।
ତାଙ୍କ ସକାଶୁ ଏବେ ଭାର
ରକ୍ଷିବା ହେତୁ ଏ ସଂସାର ।
ଏମନ୍ତ କହିଲି ମୁଁ ଯହୁଁ
କଶ୍ୟପ ଅଦିତିଙ୍କ ତହୁଁ ।
ବାମନ ରୂପ ଧରି ରାମ
ଭୂମିରେ ହୋଇ ତୁମ୍ଭେ ଜନ୍ମ ।
ରାକ୍ଷସମାନଙ୍କୁ ମାରିଲ
ଧରଣୀ ଭାର ନାଶ କଲ ।
ପୁଣି ସମସ୍ତ ଧର୍ମମାନ
ନାଶ ହେଲରୁ ଭଗବାନ ।
ଦେବଙ୍କ ଛଳେ ରକ୍ଷା ପାଇଁ
ଦଶକନ୍ଧର ବଧପାଇଁ ।
ଏକାଦଶ ସହସ୍ର ବରଷ
ସମସ୍ତ କରିତ ଅୟୁଷ ।
ମନୁଷ୍ୟ ଲୋକକୁ ଅଇଲ
ସେ ପ୍ରତିଜ୍ଞାତ ପୂର୍ଣ୍ଣ କଲ ।
ଏବେ ଏ ଲୋକରେ ତୁମ୍ଭର
ଅୟୁଷ ପୂରିଲାଙ୍କ ସାର ।
ଏଣୁ କାଳ ମୁଁ ହୋଇ ଋଷି
ତୁମ୍ଭ ସମ୍ମୁଖେ ଅଛୁ ଅସି ।
ଅଧୁର ଯେବେ ରାଜ୍ୟ ତୋର
କରିବା ହେଉଛି ବିଚାର ।
ଏମନ୍ତ ହେଲେ ରଘୁବୀର
ସେମନ୍ତ ଇଚ୍ଛା ତାହା କର ।
ବ୍ରହ୍ମା କହୁଛନ୍ତି ଏମନ୍ତ
ଦେବଲୋକକୁ ସୀତାକାନ୍ତ ।
ଯେବେ ଯିବାକୁ ଥିବ ମନେ
ତେବେ ସମସ୍ତ ଦେବମାନେ ।
ବସ୍ତୁରେ କରି ରଘୁନାଥ
ବେଗେ ସେ ହୁଅନ୍ତୁ ସନାଥ ।
ଏମନ୍ତେ ସେ କାଳଦେବତା
କହନ୍ତେ ବିଧାତା ବାରତା ।
ଶ୍ରୀରାମ ହସ ହସ ହୋଇ
କହନ୍ତି କାଳକୁ ଅନାଇ ।
ଶୁଣିଲି ତୁମ୍ଭ କହିବାର
ଏ କଥା ଅଭୀଷ୍ଟ ଅମ୍ଭର ।
ଅସିବା ହେଲ ଯହା ତୁମ୍ଭେ
ବଡ଼ ସନ୍ତୋଷ ହେଲୁ ଅମ୍ଭେ ।
ତ୍ରିଜଗତ କାର୍ଯ୍ୟ ପାଇଁ
ଏରୂପେ ଜନ୍ମ ମୁଁ ହୁଅଇ ।
ଏବେ ମଙ୍ଗଳ ତୋର ହେଉ
ଅସିଲୁ ଅମ୍ଭେ ଯେଉଁଠାଉଁ ।

ଯିବୁ ସେ ସ୍ଥାନକୁ ଲକ୍ଷ୍ମଣେ
ମନରେ ନ କର ସଂଶୟେ ।
ଅସ୍ଥିର ବିସ୍ତର ଯେ ଥିଲା
ଏବେ ତ ସେ କଥା ହୋଇଲା ।
ମୋହର ଦେବତା ସକଳେ
ଦାସ ଅଟନ୍ତି ସର୍ବକାଳେ ।
ମୁଁ ସେମାନଙ୍କ କାର୍ଯ୍ୟପାଇଁ
ମାୟା ସଙ୍ଗତେ ଯୁକ୍ତ ହୋଇ ।
ମୁଁ ସବୁଠାରେ ଥିବି ନିତ୍ୟ
ଯା ବ୍ରହ୍ମା କହେ ସେହୁ ସତ୍ୟ ।
କଥା ହୁଅନ୍ତେ ଏ ପ୍ରକାରେ
ଦୁର୍ବାସା ଏହି ସମୟରେ ।
ରାମଙ୍କୁ ଦେଖିବାର ପାଇଁ
ଆସି ଅତ୍ୟନ୍ତ ତ୍ୱରା ହୋଇ ।
ପ୍ରବେଶ ରାଜଦ୍ୱାରେ ହୋଇ
କହିଲେ ଲକ୍ଷ୍ମଣଙ୍କୁ ଚାହିଁ ।
ବଡ କାର୍ଯ୍ୟଅଛି ଆମ୍ଭର
ଅତି ସତ୍ୱରେ ଯାଇ ବୀର ।
ଶ୍ରୀରାମ ସମ୍ମୁଖରେ ଜଣାଅ
ତାହାଙ୍କ ଦର୍ଶନ କରାଅ ।
ଏମନ୍ତ ଶୁଣନ୍ତେ ଲକ୍ଷ୍ମଣ
କହିଲେ ଦୁର୍ବାସାଙ୍କୁ ପୁଣ ।
ଅନୁଜ୍ଞା ଦିଅ ରାମ ଯାହା
କହିବେ ମୁଁ କରିବି ତାହା ।
କିଛି କାର୍ଯ୍ୟରେ ସୀତାକାନ୍ତ
ଅଛନ୍ତି ହୋଇଣ ଏକାନ୍ତ ।
ଏ ଯେଣୁ କ୍ଷଣେ ମାତ୍ର ତାଙ୍କୁ
ହେଉ ଅପେକ୍ଷା କରିବାକୁ ।
ଦୁର୍ବାସା ଶୁଣନ୍ତେ ଏମନ୍ତ
କ୍ରୋଧରେ ହୋଇ ପ୍ରଜ୍ୱଳିତ ।
ତମ୍ଭର ପ୍ରାଣେ କଚ ନେଣ
କହିଲେ ଲକ୍ଷ୍ମଣ ଉଦନ୍ତ ।
ରାମଙ୍କୁ ଏ କ୍ଷଣରେ ଯେବେ
ନ ଦେଖାଇବୁ ମୋତେ ତେବେ ।
ରାମ ସହିତେ ବଂଶ ଯାକ
ପୁର ରାଜ୍ୟର ସବୁଲୋକ ।
ଭସ୍ମ କରିବି ମୁଁ ଲକ୍ଷ୍ମଣେ
ନାହିଁ ଏ କଥାରେ ସଂଶୟେ ।
ଦୁର୍ବାସା ମୁଖରୁ ଏସନ
ଘୋର ଭୟଦ ଏ ବଚନ ।
ଶୁଣନ୍ତେ ଲକ୍ଷ୍ମଣ ମନରେ
ଚିନ୍ତିଲେ ଏମନ୍ତ ପ୍ରକାରେ ।
ଏ ଶାପ ଦିଅନ୍ତେ ଅବଶ୍ୟ
ସମସ୍ତେ ହେବେ ଯାହା ନାଶ ।
ଏହୁ ପୃଚ୍ଛାଇଁ ଏକା ମୋର
ଭଲ ହୋଇବ ନାଶିବାର ।
ଏମନ୍ତ ବିଚାରି ସେ ଭଲେ
ରାମ ସମ୍ମୁଖରେ ଜଣାଇଲେ ।
ଶୁଣି ଏମନ୍ତ ରଘୁସାଇଁ
କାଳକୁ ପଠାଇଲ ଦେଇ ।
ବାହାର ହୋଇ ପ୍ରଭୁ ବେଗେ
ମିଳିଲେ ଦୁର୍ବାସାଙ୍କ ଆଗେ ।
ବହନ ନମସ୍କାର କଲେ
ସାଦର କରି ପଚାରିଲେ ।
କି କାର୍ଯ୍ୟ କରିବି ତୁମ୍ଭର
କହିବା ହେଉ ମୁନିବର ।
ଦୁର୍ବାସା ଶୁଣନ୍ତେ ଏମନ୍ତ
ବୋଇଲେ ଅହେ ସୀତାକାନ୍ତ ।
ସଂପୂର୍ଣ୍ଣ ସହସ୍ରେ ବରଷ
କରିଛୁ ଅମ୍ଭେ ଉପବାସ ।

ସେ କୃତାର୍ଥ ସେ ସ୍ୱପାପତ
ଅଜ ହୋଇଲ ରଘୁପତ ।
ଏଣୁ ତୁମ୍ଭ ପୁରେ ରାଘବ
ଯା ପାଇ ହୋଇ ବନ୍ଧୁଥିବ ।
ସେ ଅନ୍ନ କରିବ ଭୋଜନ
ଏ ରୂପେ ହେଉଅଛୁ ମନ ।
ଏହା ଶୁଣି ରଘୁନନ୍ଦନ
ସେ ପାତ ହେ ଇଥିଲ ଅନ୍ନ ।
ସନ୍ତୋଷେ ତାହା ଆଣି ବେଗେ
ଦେଲେ ସେ ଦୁର୍ବାସାଙ୍କ ଆଗେ ।
ଅମୃତ ପ୍ରାୟ ଅନ୍ନ ଖାଇ
ଦୁର୍ବାସା ଗଲେ ତୋଷ ହୋଇ ।
ତହିଁ ଅନ୍ତରେ ରାବଣାରି
କାଳ ବଚନ ଚିନ୍ତା କରି ।
ଦୁଃଖ ବଶେ ହୋଇ ଅବତ
ଅଜ୍ଞନ ହୋଇ ଅତଅନ୍ତ ।
ନୋହୁଛୁ କହିବାକୁ କିଛି
ମୁଖ ତଳକୁ କରିଛନ୍ତି ।
ଲକ୍ଷ୍ମଣ ଦେଖିଲେ ହତ ପ୍ରାୟେ
ଏମନ୍ତ ଜାଣି ସେ ନିଶ୍ଚୟେ ।
ନେତ୍ରୁ ପାଉଛୁ ଲୁହ ବହି
ବାଜେ ଜଳେ ମଜ୍ଜନ ହୋଇ ।
ଚିନ୍ତାକୁଳ ହୋଇ ଦୁଃଖରେ
ନିଃଶ୍ୱାସ ମାନ ତେଜି ଘରେ
ସେ କଦା କରନ୍ତି ସ୍ନେହରୁ
ଏମନ୍ତ ରୂପେ ଶ୍ରୀରାମଙ୍କୁ ।
ଦେଖି ଲକ୍ଷ୍ମଣ ଦୁଃଖ ଭରେ
କହୁଲେ ବିନୟ ସ୍ୱରରେ ।
ମୋହ କିମନ୍ତେ କରୁଥାର
ସନ୍ତାପ ତେଜ ମୋତେ ମାର ।

କାଳପତି ଏ ସୀତାକାନ୍ତ
ପୂର୍ବେ ମୁଁ ଜାଣିଛୁ ଏମନ୍ତ ।
ପ୍ରତିଜ୍ଞା ଭଙ୍ଗିଲେ ତୁମ୍ଭର
ନରକ ସିନା ହେବ ମୋର ।
ପ୍ରୀତିରେ ପ୍ରସାଦ ମୋଠାରେ
ଯେବେଟି ଅଛୁ ହୃଦୟରେ ।
ତେବେ କଷ୍ଟହିଁ ନ କରିବ
ଏଦ୍ଧକ୍ଷଣି ହେ ରାବଣାରି ।
ବଚନ ପାଳିବାକୁ ହେତୁ
ଅଧର୍ମ ଅନ୍ୟ ଜାତ ନୋହୁ ।
ଲକ୍ଷ୍ମଣ ମୁଖରୁ ଏମନ୍ତ
ବଚନ ଶୁଣି ସୀତାକାନ୍ତ ।
ପୁଣି ଅତ୍ୟନ୍ତ କ୍ଷୋଭ ପାଇ
ସମସ୍ତ ମନ୍ତ୍ରୀଙ୍କି ଡକାଇ ।
ବଶିଷ୍ଠଙ୍କୁ ସ୍ୱହିଁ କହୁଲେ
କାଳ ଯେମନ୍ତ ବୋଲିଥିଲେ ।
ଅପଣା ପ୍ରତିଜ୍ଞା କଥାର
ଦୁର୍ବାସା ମୁନି ଅସିବାର ।
ଏମନ୍ତ ଶୁଣି ପୁରୋହିତେ
ସମସ୍ତ ମନ୍ତ୍ରିଙ୍କ ସହିତେ ।
ଶ୍ରୀରାମ ମୁଖକୁ ଅନାଇ
କହିଲେ କୃତାଞ୍ଜଳି ହୋଇ ।
ଭୂମି ଭାର ନାଶ କରନ୍ତା
ଜଗତ ଯାକର କରତା ।
ଏମନ୍ତ ଅଟ ରଘୁବୀର
ଲକ୍ଷ୍ମଣ କୁଳରେ ତୁମ୍ଭର ।
ବିଚ୍ଛେଦ ହେବାର ସମସ୍ତେ
ଦୂରରୁ ଜାଣୁ ଜ୍ଞାନ ନେତ୍ରେ ।
ଏ ବେଳ ତେଜ ଲକ୍ଷ୍ମଣଙ୍କୁ
ପ୍ରତିଜ୍ଞା ନୋହୁ ଛାଡ଼ିବାକୁ ।

ପ୍ରତିଜ୍ଞା ହତ ହେଲେ ରାମ
ନାଶ ହୋଇବ ପିତା ଧର୍ମ ।
ଧର୍ମର ଲୋପରେ ରାଘବ
କୈକେୟୀ ପାତ ନଁଶ ପିବ ।
ତୁମ୍ଭେ ତ ସମସ୍ତ ଲୋକର
ପାଳକ ଅଟ ରଘୁବୀର ।
ଏ ଯେଣୁ ସତ୍ୟ ଲକ୍ଷ୍ମଣଙ୍କୁ
ହେଉ କୈକେୟୀ ରଖିବାକୁ ।
ଏ ରୂପେ ଧର୍ମାର୍ଥ ସହିତ
ବଚନ ଶୁଣି ସୀତାକାନ୍ତ ।
ସଭା ମଧ୍ୟରେ ଶବଦାଇ
କହିଲେ ଲକ୍ଷ୍ମଣଙ୍କୁ ଚାହିଁ ।
ହେ ବତ୍ସ ଲକ୍ଷ୍ମଣ ହେ ବୀର
ଯେଣିକି ଇଚ୍ଛା ହେବ ତୋର ।
ତେଣିକି ବେଗ ଯିବା ହେଉ
ଧର୍ମର ଅଙ୍ଗ ନାଶ ନୋହୁ ।
ସାଧୁମାନଙ୍କର ନିକଟରେ
ସମାନ 'ବଧ' 'ତ୍ୟାଗ' ଦୁହେଁ ।
ଲକ୍ଷ୍ମଣ ଶୁଣିଲେ ଏମନ୍ତ
ଦୁଃଖରେ ହୋଇ ସନ୍ତାପିତ ।
ନେତ୍ରୁ ଝରନ୍ତି ଲୁହ ଧାର
ରାମଙ୍କ ସଦନରୁ ହୋଇ ।
ପ୍ରଣାମ ପ୍ରଦକ୍ଷିଣ କରି
ତାହାଙ୍କ ନିଜ ଚିତ୍ତେ ଧରି ।
ତତ୍ପରେ ପଦମଦ ହୋଇ
ଆପଣା ମନ୍ଦିରକୁ ଯାଇ ।
ସେଠାରୁ ଅନୁକୂଳ କଲେ
ମିଳି ସରଯୂ ନଦୀ କୂଳେ ।
ନବଦ୍ୱାରକୁ ରୁନ୍ଧି କରି
ପ୍ରାଣକୁ ବ୍ରହ୍ମରନ୍ଧ୍ରେ ଧରି ।

ସଦା କାଳରେ ଅଛି ରହି
ଯେତ୍ତୁ ଅବିନାଶୀ ଅଟଇ ।
ବାସୁଦେବ ହୋଇ ଯା ନାମ
ପରଂବ୍ରହ୍ମ ପରମ ଧାମ ।
ଏମନ୍ତ ଅଟେ ଯେଉଁ ସ୍ଥାନ
ତାହା ମନରେ କରି ଧ୍ୟାନ ।
ଏମନ୍ତ ପ୍ରକାରେ ସେ ଅନ୍ତେ
ସମସ୍ତ ପବନ ରୁନ୍ଧନ୍ତେ ।
ସମସ୍ତ ମହର୍ଷିମାନେ
ଅଗ୍ନି ପ୍ରମୁଖ ଦେବ ଗଣେ ।
ସେଠାରେ ପ୍ରବେଶ ହୋଇଲେ
ବିବିଧ ରୂପେ ସ୍ତୁତି କଲେ ।
ସ୍ୱର୍ଗରେ ଦୁନ୍ଦୁଭି ଶୁଭିଲା
ଆକାଶୁ ପୁଷ୍ପ ବୃଷ୍ଟି ହେଲା ।
ଥୋକାଏ ଦେବତାଏ ତହିଁ
ନୟନେ ନ ପାରିଲେ ଚାହିଁ ।
ମହେନ୍ଦ୍ର ଲକ୍ଷ୍ମଣଙ୍କୁ ନେଇ
ଉତ୍ତମ ବିମାନେ ବସାଇ ।
ସେହୁ ଶରୀର ସହିତରେ
ସ୍ୱର୍ଗକୁ ଗଲେ ହରଷରେ ।
ବିଷ୍ଣୁର ଅଟଇ ସେ ଅଙ୍ଗ
ସାକ୍ଷାତ ଯେ ଚତୁର୍ଥ ଭାଗ ।
ସମସ୍ତ ତପସ୍ୱୀ ଜନର
ପୂଜିଲେ ଆନନ୍ଦ ମନରେ ।
ଲକ୍ଷ୍ମଣ ମିଳିଲେ ସ୍ୱର୍ଗରେ
ଏହା ଜାଣିବ ମାନବରେ ।
ସତ୍ୟଲୋକରେ ଯୋଗୀ ଯେତେ
ଥିଲେ ତାଙ୍କ ସେହି ସଙ୍ଗତେ ।
ଅତ 'ହ'ଚମେ ପ୍ରଜାପତି
ସର୍ପ ରୂପକୁ ଧରନ୍ତି ।

ଏମନ୍ତ ଯେ ଲକ୍ଷ୍ମଣ ତାଙ୍କୁ
ଅବଲେ ଦେବେ ଦେଖିବାକୁ ।
ବୋଲଇ ଦାସ ହଳଧର
ସୀତା ଲକ୍ଷ୍ମଣ ତୁଲେ ମୋର ।
ରାମ ଜାନକୀ ପାଦପଦ୍ମ
ମନରେ ହେଉ ନିତ୍ୟେ ସଦ୍ମ ।
ଏ ଶରେ ବସ୍ୟାଶୋଇ ପଦ
ଜାନ୍ତୁ ମୋ ସମସ୍ତ ଅପଦ ।

ଇତି ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସଂବାଦେ
ଉତ୍ତରକାଣ୍ଡେ ନାମ ଅଷ୍ଟମୋଽଧ୍ୟାୟଃ ।

## ନବମ ଅଧ୍ୟାୟ

### ଶ୍ରୀ ମହାଦେବ ଉବାଚ

ଶୁଣି କହିଲେ ତ୍ରିପୁରାରି
ଏଣୁ ଉତ୍ତରରେ ଗୋ ଗଉରୀ ।
ଏମନ୍ତ ରୂପେ ରାବଣାରି
ଲକ୍ଷ୍ମଣଙ୍କୁ ସେ ତ୍ୟାଗ କରି ।
ସମସ୍ତ ଅମାତ୍ୟ ମାନଙ୍କ
ବଶିଷ୍ଠ ଆଦି ବ୍ରାହ୍ମଣଙ୍କ ।
ଦୁଃଖରେ ସନ୍ତପନ୍ତ ହୋଇ
କହିଲେ ସମସ୍ତଙ୍କୁ ଚାହିଁ ।
ଭରତ ଅଜ ଏ ରାଜ୍ୟରେ
ହୁଅନ୍ତୁ ଅଭିଷେକ ଖରେ ।
ଲକ୍ଷ୍ମଣ ମାର୍ଗେ ବହନ
ମୁଁ ଏବେ କରିବି ଗମନ ।
ଏହା ଶୁଣନ୍ତେ ଅତି ଶୋକେ
ପୁର ରାଜ୍ୟର ସବୁ ଲୋକେ ।
ଦୁଃଖ ବଶରେ ହୋଇ ଅତି
ମୂଳ କାଟିଲ ବୃକ୍ଷ ମତ ।
ସମସ୍ତ ଲୋକର ଜମାଇ
ପଡ଼ିଲେ ଭୂମିତଳେ ଶୋଇ ।
ଶୁଣି ଭରତ ମୋହ ହୋଇ
ମୂର୍ଛି କ୍ଷଣକେ ଜ୍ଞାନ ପାଇ ।
ରାଜ୍ୟକୁ ନିନ୍ଦାମାନ କଲେ
ଏମନ୍ତ ବଚନ କହିଲେ ।
ହେ ନାଥ ତୁମ୍ଭ ପାଦ ଧରି
କହୁଛି ମୁଁ ନିୟମ କରି ।
ନୋହିବ ସତ୍ୟଫଳ ମୋର
ଯେବେ ତୁମ୍ଭର ବିନା ଘର ।
ଭୂମିରେ କି ଅବା ସ୍ୱର୍ଗରେ
ରାଜ୍ୟ ମୁଁ ଇଚ୍ଛିବ ମନରେ
କୁଶଙ୍କୁ କୋଶଳରେ ସାର
ବଡ଼ ବେଗରେ ରାଜା କର ।
ଉତ୍ତର କୋଶଳେ ଲବଙ୍କୁ
ହେଉ ନୃପନ୍ତ କରବୋକୁ ।
ଶତ୍ରୁଘ୍ନ ଅସିବାର ପାଇଁ
ଯାଆନ୍ତୁ ଦୂତେ ବେଗ ହୋଇ ।
ଅମ୍ଭର ବୈକୁଣ୍ଠେ ଗମନ
ଦେବେ ଶୁଣନ୍ତୁ ବନ୍ଧୁଜନ ।
ଏମନ୍ତ ରାମଙ୍କ ଭରତ
କହନ୍ତେ ଯୋଡ଼ି ବେନି ହସ୍ତ ।
ସବୁ ପ୍ରଜାଏ ଭୟ ପାଇ
ବହୁତ ଉଦବେଗ ହୋଇ ।

ରାମ ଶତ୍ରୁଘ୍ନ ଚନ୍ଦ୍ର ଛତ୍ରେ
ଭାତର ହୋଇଲେ ସମସ୍ତେ ।
ଭରତ ବାକ୍ୟ ଶୁଣି ଉତ୍ସେ
ଲୁହାଲୁହ ହେଲେ ସର୍ବେ ।
ବଶିଷ୍ଠ ମୁଣି ସେ ଉତ୍ତରେ
କହିଲେ ଶ୍ରୀରାମ ସମ୍ମୁଖେ ।
ଦେଖିବା ହେଉ ରାମଚନ୍ଦ୍ର
ଭୂମି ତଳେ ଯେ ପ୍ରଜାବୃନ୍ଦ ।
ପଡ଼ିଅଛନ୍ତି ଭୟ କରି
ତାଙ୍କ ଭାବକୁ ଅନୁସରି ।
ବହନ ଅନୁଗ୍ରହ ଭରି
ଏମନ୍ତ ଶୁଣି ରଘୁବୀର ।
ଜଣ ଜଣକେ ନେଇ ଧରି
କହିଲେ ଅତି ପ୍ରୀତିକର ।
ମୁଁ ଯା କରିବି ତା ସମସ୍ତ
କହିବା ହେଉ ବେଗେ ମୋତେ ।
ସେମାନେ ଶୁଣି ଏ ବଚନ
କହିଲେ ଯୋଡ଼ି କରମାନ ।
ବୋଇଲେ ଅମ୍ଭଠାରେ ବୀର
ଏରୂପେ ଅନୁଗ୍ରହ କର ।
ଆପଣ ଯିବ ଯେଉଁଠାକୁ
ସମସ୍ତେ ଯିବୁ ସେ ସ୍ଥାନକୁ ।
ତୋ ସଙ୍ଗେ ଯିବାର ଅମ୍ଭର
ଏ ଅତି ପ୍ରୀତିକଥା ବୀର ।
ଏ କଥା ସମସ୍ତ କାଳରେ
ଅମ୍ଭମାନଙ୍କ ହୃଦୟରେ ।
କଣ୍ଟଳ କରଅଛୁ ବହୁ
ଏ ସେବକର ରକ୍ଷାର୍ଥେ ।
ତପୋବନ କି ସ୍ୱର୍ଗ ହେଉ
କି ଅବା ବୈକୁଣ୍ଠ ପୁର ହେଉ ।

ଯେ କେହି ହୋଇଲେ ସ୍ୱବଶ
ଆପଣ ଯେଉଁଠାକୁ ଯିବ ।
ଅମ୍ଭେ ତନୟ ଦାରା ତୁଲେ
ଯିବୁ ସେ ସ୍ଥାନକୁ ସକଳେ ।
ଏରୂପେ ସର୍ବ ପ୍ରଜା ଯାକ
ମନରେ ଦୃଢ଼ କଲ ବାକ୍ୟ ।
ଏ ବେନି କଥା ରାବଣାରି
ହୃଦୟ ମଧ୍ୟେ ଚିନ୍ତାକରି ।
ଭକ୍ତ ଅଟନ୍ତି ଆପଣର
ଏମନ୍ତ ଯେ ପ୍ରଜାନିକର ।
ତାହାଙ୍କଠାରେ ଦୟା କଲେ
ଏ କଥା ହେଉ ସେ ବୋଇଲେ ।
ଏମନ୍ତ ଭଣ୍ଡସ୍ଥ ସେ କଲେ
କୁଶ ଲବଙ୍କୁ ଅଣାଇଲେ ।
ଅଭିଷେକ କରି ତାହାଙ୍କୁ
ପେଷିଲେ ସେ ବେନି ସ୍ଥାନକୁ ।
ରଥ ଅଠ ଅଠ ସହସ୍ର
ମାତଙ୍ଗ ଦଶ ଦଶ ଶତ ।
ଷାଠିଏ ଷାଠିଏ ସହସ୍ର
ଦୁହିଙ୍କି ଦେଲେ ଦିବ୍ୟଅଶ୍ୱ ।
ଅନେକ ଧନବସ୍ତ୍ର ବହୁ
ବହୁତ ହୃଷ୍ଟ ପୁଷ୍ଟ ଜନ ।
ସଙ୍ଗତେ ଦେଇ ବେନି ବୀର
କଲେ ପିତାଙ୍କୁ ନମସ୍କାର ।
କଷ୍ଟ କଷ୍ଟରେ ଛେଡ଼ି ତାଙ୍କୁ
ଗଲେ ସେ ବେନି କୋଶଳକୁ ।
ଶତ୍ରୁଘନଙ୍କୁ ଅଣିବାକୁ
ଶ୍ରୀରାମ ପେଷିଲେ ଦୂତଙ୍କୁ ।
ସେମାନେ ଶୀଘ୍ର ହୋଇ ଯାଇ
ପ୍ରବେଶ ମଧୁପୁରେ ହୋଇ ।

କାଳଦେବଙ୍କ ଆଗମନ
ଦୁର୍ବାସାଙ୍କର କୋପ ପାନ ।
ରାମର ପ୍ରତିଜ୍ଞା ଭଙ୍ଗର
ଲକ୍ଷ୍ମଣ ବର୍ଜନ କଲେ ବୀର ।
କୁଶ ଲବଙ୍କୁ ଅଭିଷେକ
ଶ୍ରୀରାମ କରିଲେ ଯେତେକ ।
ସେମାନ ମଧ୍ୟ କରି ତେବେ
କହିଲେ ଶତ୍ରୁଘ୍ନ ଆଗେ ।
ଦୂତଙ୍କଠାରୁ କୁଳ ନାଶ
ଶୁଣି ସେ ହୋଇଲେ ବିରସ ।
ଧରଣି ହେଇଲେ ପୁଣି
ତାହାଙ୍କ ବେନିପୁତ୍ର ଅଣି ।
ସୁବାହୁଙ୍କୁ ସେ ମଥୁରାରେ
କରିଣ ଅଭିଷେକ କରେ ।
ଶତ୍ରୁଘାତୀ ନାମେ ଏକପୁତ୍ର
ଯୂପକେତୁଙ୍କୁ ତହିଁ କରି ।
ଶୋକେ ଉତ୍କଣ୍ଠକ ବ୍ୟଗ୍ର ହୋଇ
ରାମଙ୍କୁ ଦେଖିବାର ପାଇଁ ।
ସଙ୍ଗତେ ସୈନ୍ୟ ସେ ଦୂତଙ୍କ
ଆଇଲେ ଅଯୋଧ୍ୟା ପୁରକୁ ।
ତେଜରେ କରି ଅପମାନ
ହୋଇଛନ୍ତି ଅନଳ ଯେସନ ।
ଦୁଃଖର ଦର୍ଶ୍ୟ ହୀନ ବସ୍ତ୍ର
ଯୋଡ଼କେ ହୋଇଛନ୍ତି ଯତି ।
କେତେ ଅନେକ ମହାଋଷି
ସୁରପାଶରେ ଛନ୍ତି ବସି ।
ରମାର ରମଣ ଅନନ୍ତ
ଏମନ୍ତ ଯେଉଁ ରଘୁନାଥ ।
ତାହାଙ୍କୁ ଦେଖି ଶତ୍ରୁଘ୍ନ
ପ୍ରଣାମ କରିଣ ବହନ ।

ସମର୍ଥ ସନ୍ଦର୍ଭ ଉତ୍ତର
କହିଲେ ଯୋଡ଼ି ବେନି କର ।
ଦୁଇପୁତ୍ରଙ୍କୁ ଯବଣାର
ରାଜ୍ୟରେ ଅଭିଷେକ କରି ।
ତୁମ୍ଭ ସଙ୍ଗତେ ଯିବାପାଇଁ
କୃତ ନିଶ୍ଚୟ ଅଛି ହୋଇ ।
ଏରୂପେ ମୋତେ ଜାଣ ବୀର ।
ବିଶେଷେ ଭକ୍ତ ମୁଁ ତୁମ୍ଭର ।
ଏଣୁ ତେଜିବା ନୋହୁ ମୋତେ
ନେବାକୁ ହୋଇବ ସଙ୍ଗତେ ।
ଏ ଦୃଢ଼ବୁଦ୍ଧି ତାହାଙ୍କର
ଜାଣି କହିଲେ ରଘୁବୀର ।
ମଧ୍ୟାହ୍ନକାଳେ ଅମ୍ଭ ସଙ୍ଗେ
ଯିବାକୁ ସଜ ହୁଅ ବେଗେ ।
କ୍ଷଣକେ ଏହୁ ସମୟରେ
କାମରୂପୀ ଭକ୍ତ ବାନରେ ।
ଅନେକ ଯୋପୁଛୁ ରାକ୍ଷସ
ସର୍ବଦେବତା ଋଷି ଅଂଶ ।
ରାମ ଯିବା ଶୁଣିଲା ମାତ୍ରେ
ପ୍ରବେଶ ହୋଇଲେ ସମସ୍ତେ ।
ଭକ୍ତିରେ କୃତାଞ୍ଜଳି ହୋଇ
କହିଲେ ଶ୍ରୀରାମଙ୍କୁ ଚାହିଁ ।
ଯିବାକୁ ତୁମ୍ଭର ସଙ୍ଗତେ
ନିଶ୍ଚୟ କରିଣ ସମସ୍ତେ ।
ଆସିଛୁ ଆପଣ ଅମ୍ଭଙ୍କୁ
ଏରୂପେ ହେତୁ ଜାଣିବାକୁ ।
ଏମନ୍ତ ସମୟେ ସୁଗ୍ରୀବ
ଭଗତ ବଶ ଯେ ରାଘବ ।
ତାହାଙ୍କୁ କରି ନମସ୍କାର
କହିଲେ ଯୋଡ଼ି ବେନିକର ।

ଅଙ୍ଗଦଙ୍କୁ ମୁଁ କିଷ୍କିନ୍ଧାରେ
କରିଣ ଅଭିଷେକ ଗରେ ।
ଅସିଛି ମୁଁ କଣ୍ଠସ୍ଥ ହୋଇ
ତୁମ୍ଭ ସଙ୍ଗତେ ଯିବାପାଇଁ ।
ଏରୂପେ ଶ୍ରୀରଘୁନନ୍ଦନ
ମୋଠାରେ କର ଅବଧାନ ।
ଦୂତ ବଚନ ସଂକ୍ଷର
ଏରୂପେ ଶୁଣି ରାବଣାରି ।
ସାଦର କରି ସେ କୋମଳେ
ବିଭୀଷଣଙ୍କୁ ଅଙ୍କ ଦେଲେ ।
ଧରଣୀ ଥିବା ଯାଏ ପୁଣ
ଏଥିରେ ରହିଣ ଆପଣ ।
ସୁଖେ ରାକ୍ଷସରାଜ୍ୟ ସାର
ଧର୍ମେ ପରିପାଳନା କର ।
ଅମ୍ଭ ଜନ୍ମପତି ତୁମ୍ଭଙ୍କୁ
ମୋ ପିତୃବଧ କରବାକୁ ।
ଯେବେ ତୁମ୍ଭର ମନ ଥିବ
ତେବେ କିଛିହିଁ ନ କହିବ ।
ତହିଁ ଉତ୍ତରେ ରଘୁସାଇଁ
କହିଲେ ମାରୁତଙ୍କୁ ଚାହିଁ ।
ଆପଣ ଚିରଞ୍ଜୀବୀ ହୋଇ
ବହୁତ କାଳ ଥାଅ ରହି ।
ଅମ୍ଭ ବଚନ କରିବ !
ଅନ୍ୟଥା କରି ତା ନ କର ।
ପୁଣି ଜାମ୍ବବନ୍ତଙ୍କୁ ଚାହିଁ
କହିଲେ ହସ ହସ ହୋଇ ।
ଆପଣ ଥାଅ ଏ ଶରୀରେ
ଦ୍ୱାପର ଯୁଗର ଅନ୍ତରେ ।
କିଛି କାରଣେ ରଣଘୋର
ଯୁଦ୍ଧ ହେବ ତୁମ୍ଭ ଅମ୍ଭର ।

ଉଦନ୍ତେ ସମସ୍ତଙ୍କୁ ଚାହିଁ
ଅତ୍ୟନ୍ତ ଦୟା ହୃଦେ ବହି ।
ଅନୁଜ୍ଞା ଦେଲେ ମୋ ସଙ୍ଗତେ
ଯିବାକୁ ହୋଇବ ସମସ୍ତେ ।
ଏମନ୍ତେ କହନ୍ତେ ପ୍ରଭାତ
ଶ୍ରୀକଳପଦ୍ମ ପ୍ରାପ୍ତେ ନେତ୍ର ।
ହୃଦସ୍ଥ ବିଶାଳ ରୁଚିର
ଏମନ୍ତ ସେ ଜାନକୀବର ।
ବଶିଷ୍ଠଙ୍କୁ ସେ ଅନାଇଲେ
ତାଙ୍କୁ ଏମନ୍ତ ଅଜ୍ଞା ଦେଲେ ।
ଅନଳହୋତ୍ରଙ୍କୁ ବହନ
ବାହାର କର ତପୋଧନ ।
ଶୁଣି ମହାପ୍ରସ୍ଥାନ ବିଧି
ସମସ୍ତ କଲେ ତପୋନିଧି ।
ପିନ୍ଧି ଶୁକ୍ଳ କ୍ଷୀନବସ୍ତ୍ର
କରେ ଧରି କୁଶ ପବିତ୍ର ।
କୋଟିଏ ଚନ୍ଦ୍ର ପ୍ରାୟେ କାନ୍ତି
ଏମନ୍ତ [illegible] ଜାନକୀ ପ ।
ସେ ମହାପ୍ରସ୍ଥାନ କଲେ
ନଗରୁ ବାହାର ହୋଇଲେ ।
ବାମ ପାର୍ଶ୍ୱରେ ତାହାଙ୍କର
ପଦ୍ମ ସମାନ ନେତ୍ର ଯାର ।
ଶ୍ୱେତ ପଙ୍କଜ ଘେନି କରେ
ରମା ମିଳିଲେ ଏ ପ୍ରକାରେ ।
ଶ୍ରୀରାମ ଦକ୍ଷିଣ ପାଶରେ
ରକ୍ତପଦ୍ମ ଧରି କରେ ।
ଶ୍ୟାମା ପୃଥ୍ୱୀଦେବୀ ବାହାର
ଲୀଳାରେ ଧରି କଳେବର ।
ରାମଙ୍କୁ ହେଲେ ଅନୁଗତ
କୋଦଣ୍ଡ କାଣ୍ଡ ଶସ୍ତ୍ର ଶାସ୍ତ୍ର ।

ବେଦ ସମୂହ ମଧ୍ୟେ ହୋଇ
ସମସ୍ତେ ଦେହମାନ ବହି ।
ଦେବତା ଋଷିକୁଳ ତୁଲେ
ଶ୍ରୀରାମ ସଙ୍ଗତରେ ଗଲେ ।
ଗାୟତ୍ରୀ ପ୍ରଣବ ବ୍ୟାହୃତ
ଗଲେ ଏ ହୋଇ ମୂର୍ତ୍ତିମନ୍ତ ।
ତନୟ ଦାର ବନ୍ଧୁ ତୁଲେ
ସମସ୍ତ ପ୍ରଜାମାନେ ଗଲେ ।
ଯେସନ ପିଛେ ମେଷପଥ
ତେସନ ଯେଣେ ରଘୁନାଥ ।
ତାହାଙ୍କ ପଛରେ ଭରତ
ଶତ୍ରୁଘ୍ନ ତୁଲେ ହୋଇ ସ୍ୱତ ।
ରାଜସ୍ତ୍ରୀମାନଙ୍କ ସହିତେ
ଅନ୍ତଃପୁରର ଲୋକ ଯେତେ ।
ସେ ସମସ୍ତଙ୍କୁହିଁ ଘେନାଇ
ଗମନ କଲେ ତ୍ୱରା ହୋଇ ।
ଲକ୍ଷ୍ମୀରେ ହୋଇଣ ସହିତ
ଯାଉ ଅଛନ୍ତି ସୀତାକାନ୍ତ ।
ଏମନ୍ତ ଦେଖନ୍ତେ ନୟନେ
ସମସ୍ତ ପୁରବାସିମାନେ ।
ବାଳକ ବୃଦ୍ଧା ଯୁବା ତୁଲେ
ବନିତା ପୁରୁଷ ସକଳେ ।
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟ ଶୂଦ୍ର
ସମସ୍ତ ଅନ୍ୟ ଜାତିବୃନ୍ଦ ।
ମନ୍ତ୍ରୀମାନଙ୍କ ସହିତରେ
ସୁଗ୍ରୀବ ଭଲ୍ଲୂକ ବାନରେ ।
ଉତ୍ତମ ସଙ୍ଗତ ପାଇଲେ
ବିଶୁଦ୍ଧ ହୋଇ କରି ଗଲେ ।
ସଂସାର ଦୁଃଖରେ ପୀଡ଼ିତ
ଧ୍ୟାନ ବାହ୍ୟସୁଖେ ଅଶକ୍ତ ।
ଅତ୍ୟନ୍ତ ସାଧାରଣ ହେଲ
ଭକ୍ତିରେ ରାଜପୁରେ ଜେନ୍ତୁ ।
ଭସ୍ମରେ ସୂତ ହୋଇ ପ୍ରବେ
ନ ଥିଲେ ସେବକ ଗୋଷ୍ଠୀ ଏ ।
ଅନନ୍ତେ ହୋଇଣ ସଂଯୁତ
ଶ୍ରୀରାମଠାରେ ଅନୁରକ୍ତ ।
ହୋଇଣ ପଶୁ ଭୃତ୍ୟ ଯେତେ
ବାହାର ହୋଇଲେ ସମସ୍ତେ ।
ଅଦୃଶ୍ୟ ଜୀବ ଥିଲେ ଯେତେ
ସ୍ଥାବର ଜଙ୍ଗମ ସହିତେ ।
ସମସ୍ତେ ଏ ଘୋର ସଂସାରେ
ବିରକ୍ତ ହୋଇଣ ସତ୍ୱରେ ।
ଆନନ୍ଦ ସ୍ୱରୂପ ଯେ ରାମ
ତାହାଙ୍କ ସଙ୍ଗତେ ପରମ ।
ହରଷ ହୋଇକରି ଗଲେ
ଯେ ପୁରେ ଯେତେ ଜନ୍ତୁ ଥିଲେ ।
ସମସ୍ତେ ଅନୁରାଗେ ବେଗେ
ଗୋଡ଼ାଇ ଗଲେ ରାମ ସଙ୍ଗେ ।
ରାଜା ଯେ ଶ୍ରୀରଘୁନନ୍ଦନ
ସେ ପୁଣ କରନ୍ତେ ଗମନ ।
କ୍ଷଣେ ପାହନ୍ତେ ଗୋ ଗଉରୀ ।
ଶୂନ୍ୟ ହୋଇଲା ସେହୁ ପୁରୀ ।
ନଗରୁ ଏମନ୍ତ ପ୍ରକାରେ
କେତେକେଁ ଦୂରର ଅନ୍ତରେ ।
ବିଷ୍ଣୁ ନେତ୍ରରୁ ଅଶ୍ରୁ ହୋଇ
ଏମନ୍ତ ଯେ ସରଯୂ ନଈ ।
ତାହାଙ୍କୁ ଦେଖି ରାମଚନ୍ଦ୍ର
ହୋଇଲେ ପରମ ଆନନ୍ଦ ।
ତହିଁରେ ଯାତ୍ରା କଲ ମାତ
କରନ୍ତ ପରମ ପଦ୍ମଜ ।

ଏମନ୍ତ ଅଚ୍ଛନ୍ତି ଯେ ରାମ
ସେ ଅପଣାର ହୃଦପଦ୍ମ ।
ଯହିଁରେ ସମସ୍ତ ଜଗତ
ଦେଖିଲେ ହୋଇଛି ସ୍ଥିରତ ।
ଏହି ସମୟେ ପଦ୍ମଯୋନି
ସିଦ୍ଧ ଋଷିଙ୍କ ସଙ୍ଗେ ଘେନି ।
ବେଗେ ପରମ ଆନନ୍ଦରେ
ପ୍ରବେଶ ହୋଇଲେ ସେଠାରେ ।
ଅପଣା ଇଚ୍ଛାଏ ପ୍ରକାଶ
ତେଜୋବନ୍ତ ସେ ଯେସନେ ହଂସ ।
ଏରୂପେ ସୁରମାନଙ୍କର
ଶୋଭନ ବିମାନ ନିକର ।
ଚଳିଲ କୋଟି କୋଟି ହୋଇ
ସମସ୍ତ ଆକାଶ ପୂରାଇ ।
ଶୀତଳ ସୁଗନ୍ଧରେ ସୁତ
ହୋଇ ସେ କାଳରେ ମରୁତ ।
ମନ୍ଦ ମନ୍ଦ ହୋଇ ବହିଲା
ଅବଧି ପୁଷ୍ପବୃଷ୍ଟି ହେଲା ।
ଦେବେ ଦୁନ୍ଦୁଭି ବଜାଇଲେ
ଅପସରାଏ ନୃତ୍ୟ କଲେ ।
ଗନ୍ଧର୍ବ-କିନ୍ନର-ଗୁହଗଣ
ସମସ୍ତ ବିଦ୍ୟାଧରଗଣ ।
ପରମ ଆନନ୍ଦ ହୋଇଲେ
ଗାୟନମାନ ଆରମ୍ଭିଲେ ।
ଦୁଇ ଚରଣେ ବନ୍ଦିସାରି
ସରଯୂ ଜଳ ଥରେ ଛୁଇଁ ।
ବାହୁଡ଼ି ବଳେ ବଳେ ଜୀବର
ବ୍ରହ୍ମା ଏମନ୍ତ ସମୟରେ ।
ଭକ୍ତିରେ କୃତାଞ୍ଜଳି ହୋଇ
କହିଲେ ଶ୍ରୀରାମଙ୍କୁ ଚାହିଁ ।

ହେ ରାମ ରଘୁବଂଶ ବୀର ।
ପରମାତ୍ମା ପରମ ଈଶ୍ୱର ।
ସାକ୍ଷାତ ଶାଶ୍ୱତ ନିଷ୍ପାପ
ସର୍ବଦା ଆନନ୍ଦ ସ୍ୱରୂପ ।
ଅଧ୍ୟକ୍ଷ ଦ୍ରଷ୍ଟା ସବୁଠାଇଁ
ତୁମ୍ଭର ତତ୍ତ୍ୱ ମୁଁ ଜାଣଇ ।
ତୁମ୍ଭେ ଏସନ୍ତେ ହେଲେ ବୀର
ଅଧୀନ ଭଗତମାନର ।
ମୁଁ ଯେଣୁ ତୋ ଦାସ ଅଟଇ
ଏ ଲୋକ ଭଜ ରଘୁସାଇଁ ।
ପୂର୍ବେ ମାଗୁଣି ଥିଲା ଯାହା
ଦେବାକୁ ତ ଦେଲ ତାହା ।
ଏବେ ଯେ ଅଛ ଅମରନ
ତହିଁ ମିଳିବ କି ଅପଣା ।
କି ଅବା ପରମଦେହଙ୍କୁ
ହେବ ପ୍ରବେଶ ହୋଇବାକୁ ।
ଯେ ଇଚ୍ଛା ତାହା କର ବୀର
ଅମ୍ଭମାନଙ୍କ ରକ୍ଷାକର ।
ଦେବଙ୍କ ଅଧିପ ଅଟଇ
ଯେଣୁ ବିଷ୍ଣୁଟି ତୁମ୍ଭେ ସେହି ।
ଯେ ଭେଦ ଅଜ୍ଞାନ ଦୁଅଇ
ତୁମ୍ଭଙ୍କ ସେ ଜାଣଇ ନାହିଁ ।
ସହସ୍ରେ ବାର ଭବ ବୀର
କରୁଅଛି ମୁଁ ନମସ୍କାର ।
ପ୍ରସନ୍ନ କରଣ ବଦନ
ମୋ ଠାରେ ହୁଅ ପରସନ ।
ମୁଁ ପୁଣ ପୁଣ କରି ହେମ
ତୁମ୍ଭଙ୍କ କରୁଛି ପ୍ରଣାମ ।
ମାଗନ୍ତେ ବ୍ରହ୍ମା ଏ ପ୍ରକାରେ
ଦେବ ଅଚ୍ଛନ୍ତି ସର୍ବସ୍ୱରେ ।

ତେଜରେ ଦେବତାଙ୍କ ନେତ୍ର
ଜନ୍ମୁ ସେ ଅନନ୍ତ ମୂର୍ତ୍ତି ।
ଶଙ୍ଖ ରଥାଙ୍ଗ ଗଦା କଞ୍ଜ
ଧରି ହୋଇଲେ ଚତୁର୍ଭୁଜ ।
ତେବନ୍ତେ ଆପଣ ଲକ୍ଷ୍ମଣ
ଧରି ଅଦ୍ଭୁତ ଫଣାଗଣ ।
ଶୟନ ରୂପେ ଶେଷ ହେଲେ
ଭରତ ଶତ୍ରୁଘ୍ନ ହୁଲେ ।
ଶଙ୍ଖ ଚକ୍ର ହୋଇ ଅଦ୍ୟରେ
ମିଳିତ ଥିଲେ ତାଙ୍କ କରେ ।
ଲକ୍ଷ୍ମୀରୂପରେ ବଇଦେହୀ
ସଙ୍ଗତେ ଥିଲେ ଅଗ ହୋଇ ।
ହାଣି ପୁରୁଷ ଓପ ଅଟନ୍ତି
ସେ ବିଷ୍ଣୁ ହେଲେ ରଘୁପତି ।
ଏମନ୍ତ ରୂପେ ରାବଣାରି
ପ୍ରଥମ କଳେବର ଧରି ।
ତେଜୋ ସ୍ୱରୂପ ଧବଂମୂର୍ତ୍ତି
ହୋଇଲେ ଯହୁଁ ସେ ଶ୍ରୀପତି ।
ବିଷ୍ଣୁଙ୍କ ଲଭି ଏ ପ୍ରକାରେ
ବ୍ରହ୍ମା ଇନ୍ଦ୍ରାଦି ସବୁ ସୁରେ ।
ସିଦ୍ଧ ମୁନି ଯକ୍ଷ ଚାରଣ
ପନ୍ନଗ ଖଗ ପିତୃଗଣ ।
ସମସ୍ତେ କଲେ ସ୍ତୁତିମାନ
ପୂଜା ସେ କଲେଣ ବହନ ।
ଅନନ୍ତ ସନ୍ଦୋହ ଲଭିଲେ
ସମ୍ପୂର୍ଣ୍ଣ ମନୋରଥ ହେଲେ ।
ବ୍ରହ୍ମାଙ୍କୁ ଏ କଳ୍ପରେ ସୃଷ୍ଟି
ଅନୁଜ୍ଞା ଦେଲେ ଲକ୍ଷ୍ମୀସାଇଁ ।
ଏଠାରେ ଛନ୍ତି ଯେତେ ଭୂତ
ସମସ୍ତେ ଭକ୍ତ ଅନୁଗତ ।

ସ୍ୱର୍ଗକୁ ମୁଁ ଆସିବାବେଳେ
ମୋ ତୁଲେ ଗୋଡ଼ାଇ ଆସିଲେ ।
ଏ ପଶୁ ଦେହ ଥିଲେ ଧରି
ଅନନ୍ତ ପ୍ରାଣୀମାନ କରି ।
ଏ ସେଣି ଅମ୍ବର ଅଗ୍ରରେ
ଏମାନଙ୍କୁ ନେଇ ସୁଖରେ ।
ବୈକୁଣ୍ଠପୁର ଲୋକମାନ
ଧାଅଁ ନେଇଣ ବହନ ।
ଶୁଣି ସେ ଶ୍ରୀରାମ ବଚନ
କହିଲେ ଚତୁରାନନ ।
ବାନର ଭେକରେ ସଂଯୁତ
ଅଟନ୍ତି ବଡ଼ ପ୍ରଜ୍ଞାବନ୍ତ ।
ଏ ରୂପେ ମୋହର ଅନେକ
ଅଛନ୍ତି ସାନ୍ତାନିକ ଲୋକ ।
ପୁଣ୍ୟ ସମୂହ ଛନ୍ତି କରି
ତୁମ୍ଭଙ୍କ ଛନ୍ଦେ ଛନ୍ତି ଧରି ।
ଏ ସେନା ଏମାନେ ବହନ
ତହିଁକି କରନ୍ତୁ ଗମନ ।
ମରଣକାଳେ ଅଜ୍ଞାନରେ
ପତିତ ଯେ ତୋ ନାମ ଧରେ ।
ହେଳାରେ କରନ୍ତି ଗାୟନ
ସେ ନର ଲୋକରେ ତହନ ।
ଯୋଗୀନ୍ଦ୍ର ବୃନ୍ଦଙ୍କର ଗମ୍ୟ
ମହା ପବିତ୍ର ଅତିରମ୍ୟ ।
ନାମ ବୋଲିଲ ସାନ୍ତାନିକ
ଏମନ୍ତ ହୋଇ ଯେଉଁ ଲୋକ ।
ସେ ଲୋକେ ଯାଅନ୍ତି ତହିଁକି
ଏ ଅବା ନ ଯିବେ କାହିଁକି ।
ଏଥି କହ୍ନାର ସୋ ଗରବ !
ରାଘବ ଅଧ ଭକ୍ତ ହରି ।

ସମସ୍ତେ ସହରଷ ହୋଇ
ସରଯୂ ନଦୀ ଜଳବୁଡ଼ି ।
ପ୍ରାଣରେ ଶରୀର ତେଜିଲେ
ଯେ ଯେଉଁ ଅଂଶ ହୋଇଥିଲେ ।
ସେ ରୂପେ ପୂର୍ବଦେହମାନ
ସମସ୍ତେ ଲଭିଲେ ବଂଦନ ।
ସୁଗ୍ରୀବ ସୂର୍ଯ୍ୟଙ୍କ ପାଇଲେ
ସେ ତାଙ୍କଠାରେ ଲୀନ ହେଲେ ।
ପୁଣ୍ୟ ସରଯୂ ନଦୀ ନୀରେ
ସ୍ନାନ କରି ସେ ସବୁ ନରେ ।
ତେଜି ମନୁଷ୍ୟ ଦେହମାନ
ଲଭିଲେ ଦିବ୍ୟ ଅପଘନ ।
ଉତ୍ତମ ବସନ-ଭୂଷଣେ
ସଂଯୁତ ହୋଇ ସୁରମାନେ ।
ସାନ୍ତାନିକ ଲୋକକୁ ଗଲେ
ତିର୍ଯ୍ୟକ ଜାତି ଯେତେ ଥିଲେ ।
ଶ୍ରୀରାମ ଦେଖିଲକୁ ନେଇ
ଜଳ ମାଝ ବୁଡ଼ି ସମସ୍ତେ ।
ହବ୍ୟମଣଶ୍ରୀର ଲଭିଲେ
ସ୍ୱର୍ଗକୁ ମହାସୁଖେ ଗଲେ ।
ଯେ ଅନରାଜ୍ୟମାନଙ୍କୁ
ରାମଙ୍କ ଦେଖିବାକୁ ଦୂରୁ ।
ଆନନ୍ଦ ହୋଇ ଜନ୍ତୁବରେ
ଆସିଥିଲେ ଯେତେକ ନରେ ।
କରି ଶ୍ରୀରାମଙ୍କ ଦର୍ଶନ
ଗୁଣ୍ଡ ବୃହାଦ ସଙ୍ଗମାନ ।
ଲୋକ ଗଲୁ ଯେ ରାବଣାରି
ତାହାଙ୍କୁ ସୁମରଣା କରି ।
ପ୍ରବେଶ ହୋଇ ସରଯୂରେ
ସ୍ୱର୍ଗକୁ ଗଲେ ହରଷରେ ।

ସ୍ଥାବର ଜଙ୍ଗମ ସବୁତେ
କୀଟ ପତଙ୍ଗ ଥିଲେ ଯେତେ ।
ବିମାନମାନଙ୍କେ ବସିନ୍ତେ
ସ୍ୱର୍ଗକୁ ଗଲେ ସେ ସମସ୍ତେ ।
ବିଷ୍ଣୁ ଅନ୍ତର୍ଦ୍ଧାନ ହୋଇଲେ
ବୈକୁଣ୍ଠେ ଯେ ଯାହାଠାକୁ ଗଲେ ।
ବ୍ରହ୍ମା କହିଲେ ନାରଦଙ୍କୁ
ବୃତ୍ତ କହିଲେ ସମସ୍ତଙ୍କୁ ।
ଅବଶେଷ ରାମ କଥାର
ରହିଥିଲା ଯେ, କହିବାର ।
ଏ ରୂପେ ତାହା ପଶୁପତି
ଉମାଙ୍କ ଆଗେ କହୁଛନ୍ତି ।
ପାଠେ ଯେ ପଢ଼ିଲ ଏଥିକୁ
ସହସ୍ର ଜନମ ପାପରୁ ।
ତରଇ ବିମୁକ୍ତ ହୋଇ
ଯେ ନିତ୍ୟ ଶ୍ଳୋକେକ ପଢ଼ଇ ।
ସେ ସବୁ ପାପମୁକ୍ତ ହୋଇ
ତାହାର ଯା ଲଭ୍ୟ ଜୁହଇ ।
ଏମନ୍ତ ସାଲୋକ୍ୟ ରାମର
ଅବଶ୍ୟ ଲଭଇ ସେ ନର ।
ଅଷ୍ଟ ଦେବଙ୍କୁ ସୀତାକାନ୍ତ
ପୂର୍ବେ ଏ ଭବିଷ୍ୟ ଚରିତ ।
ଶଙ୍କର ଅତି ଅନୁରାଗେ
କହିଲେ ପାର୍ବତୀଙ୍କ ଆଗେ ।
ଏ କଥା ଶୁଣିଲେ ଅବଶ୍ୟ
ଶ୍ରୀରାମ ତୁଷନ୍ତି ସନ୍ତୋଷ ।
ଏ ଶ୍ରୀ ଅଧ୍ୟାତ୍ମ ରାମାୟଣ
ହୋଇଲ ଅପ୍ରମିତ ପୁଣ୍ୟ ।
ସାକ୍ଷାତ ଏହା ପଶୁପତି
ଉମାଙ୍କ ଆଗେ କହୁଛନ୍ତି ।

ଏହା ଯେ ଭକ୍ତିରେ ପଢ଼ଇ
କି ଅବା ନୋହିଲେ ଶୁଣଇ ।
କୋଟି ଜନ୍ମର ପାପମାନ
ନାଶ କରଇ ସେ ବଚନ ।
ଏ ଶ୍ରୀ ଅଧ୍ୟାତ୍ମ ରାମାୟଣ
ଭକ୍ତିରେ ପଢ଼େ ଯେଉଁ ଜନ ।
କି ଅବା ଶୁଣଇ ଲେଖଇ
ଛନ୍ଦଇ ପ୍ରଣାମ କରଇ ।
ତା ଠାରେ ଶ୍ରୀ ରଘୁନନ୍ଦନ
ହୋଇ ପରମପ୍ରସନ୍ନ ।
ସୀତା ତୁଲେ ସଂଯୁକ୍ତ ହୋଇ
ସେ ଲୋକ ନିକଟରେ ଥାଇ ।
ତାହାର ମନୋବାଞ୍ଛା
ନିତ୍ୟେ ବିସ୍ତାର କରୁଥାନ୍ତି ।
ଏ ଶାସ୍ତ୍ର ସମସ୍ତ ଜନର
ଅଟଇ ପରମ ମନୋହର ।
ଏ ଅଧ ଭାବ୍ୟ ସ୍ତୁତି ନିତ୍ୟ
ବ୍ରହ୍ମାଦି ଦେବତା ସମସ୍ତେ ।
ସ୍ତୁତି କରନ୍ତି ନିରନ୍ତର
ଏ ଶୋଭ କର ଯେଉଁ ନର ।
ଶ୍ରଦ୍ଧା ଭକ୍ତିରେ ଯୁକ୍ତ ହୋଇ
ପଢ଼ଇ କି ଅବା ଶୁଣଇ ।
ବିଷ୍ଣୁଙ୍କ କଳେବର ପାଇ
ସେ ବିଷ୍ଣୁ ମନ୍ଦିରକୁ ଯାଇ ।
ଋଷିରଚିତ୍ୟ ଯେ ଚରିତ
ସେ ହେଲା ଏଠାରୁ ସମାପ୍ତ ।

ରଚେଣ ଶ୍ରୀମୁକୁନ୍ଦ ଦେବ
ବିବେକୀ ବ୍ରହ୍ମଣ୍ୟ ବୈଷ୍ଣବ ।
ପ୍ରଜା ପାଳନେ ଧର୍ମ ସମ
ଦଣ୍ଡ ଦେବାରେ ସେହୁ ଯମ ।
ସଂଗ୍ରାମେ ମହେନ୍ଦ୍ର ସମାନ
ରୂପରେ ଯେସନ ମଦନ ।
ଯାଚକଠାରେ କଳ୍ପଦ୍ରୁମ
ତେଜରେ ଚଣ୍ଡକର ସମ ।
ଯାହାର ସଦଃ ପୁଣ୍ୟ କୀର୍ତ୍ତି
ସମ୍ପୂର୍ଣ୍ଣ କରନ୍ତି ଏ କ୍ଷିତି ।
ତାଙ୍କର ଯେତେ ଗୁଣମାନ
ଏହା କହିବ କେଉଁ ଜନ ।
ସବୁ ଉତ୍ତମ ଗୁଣେ ଯୁତ
ସମସ୍ତ ଦୁର୍ଗୁଣ ରହିତ ।
ଏମନ୍ତ ପରକାରେ ଯେହୁ
ତାଙ୍କର ଅନ୍ତ ରାଅଜ ।
* ଶ୍ରୀ ଅନନ୍ତ ପଟ୍ଟନାୟକ
ସେ ବଡ଼ ବ୍ରହ୍ମଣ୍ୟ ଧାର୍ମିକ ।
ବିବେକୀ ବିଦ୍ୟାବନ୍ତ ଶାନ୍ତ
ବୈଷ୍ଣବ ଅଗ୍ରେ ନିଷ୍ଠିତ ।
ଜନ୍ମିଲୁଁ ପୁତ୍ର ମୁଁ ତାଙ୍କର
ମୋହର ନାମ ହଳଧର ।
ଯେତେକ ଉତ୍ତମ ଗୁଣ ହୋଇ
ତହୁଁ ଗୋଟିଏ ମୋର ନାହିଁ ।
ଏଣୁ ସନ୍ତତେ ପାପ କଲି
ସ୍ୱପ୍ନେ ବିଷ୍ଣୁଙ୍କୁ ନ ଚିନ୍ତିଲି ।

* ( ଖଲି ଶ୍ରୀ ସମନାଥ ଦାଶ ଏ ବଡ଼ ବ୍ରହ୍ମଣ୍ୟ ଧାର୍ମିକ । କଳାହାଣ୍ଡି ଅଞ୍ଚଳରୁ ସଂଗୃହୀତ ଓଡ଼ିଶା ମ୍ୟୁଜିୟମରେ ସଂରକ୍ଷିତ (ORP-318) ପୋଥିରେ ଏ ପାଠଭେଦ ଦେଖାଯାଏ )